# ସ୍ମୃତିର ସୁରଭି

ଲେଖକ :
ବୈକୁଣ୍ଠନାଥ ମହାନ୍ତି

ପ୍ରକାଶକ :
ଗୋବିନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍‌ଷ୍ଟୋର୍
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ :
ରାସ ପୂର୍ଣ୍ଣିମା—୧୯୮୫

ପ୍ରଚ୍ଛଦ :
ଅଜିତ ମୁଖାର୍ଜି

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍
ଝୋଲାସାହି, କଟକ-୨

ମୂଲ୍ୟ :
ସାଧାରଣ—**ପଞ୍ଚତ୍ରିଂଶ ଟଙ୍କା**

ଶୋଭନ—**ଚାଳିଶ ଟଙ୍କା**

**Smrutira Suravi**

by
Baikunthanath Mohanty

Published by
Gobindacharana Patra
Orissa book Store
Binodbehari, Cuttack-2

First Edition : 1985

**Price : 40/-**

ସେବା ଓ ତ୍ୟାଗର ଆଜୀବନ ପୂଜାରଣୀ...

ସ୍ନେହ ଓ ମମତାର ମୂର୍ତ୍ତିମନ୍ତ ପ୍ରତିଛବି, ଭକ୍ତିଭାଜନ **ନୂମା ( ଶ୍ରୀମତୀ ମାଳତୀ ଚୌଧୁରୀ )**ଙ୍କ ପବିତ୍ର କର କମଳରେ...

ସ୍ନେହାଧୀନ

**ବୈକୁଣ୍ଠ**

# ପହିଲ ପାହାଚ

୧୯୮୦ ମସିହା ଏପ୍ରିଲ ୧୬ ତାରିଖରେ କେତେକ ଉତ୍ସାହୀ ବନ୍ଧୁଙ୍କ ଉଦ୍ୟମରେ ମୋର ୬୪ତମ ଜନ୍ମଜୟନ୍ତୀ ପାଳନ କରାଗଲା । ସହରର ଚନ୍ଦ୍ର-ଶିକ୍ଷାବିତ୍, ଡାକ୍ତର, ଇଞ୍ଜିନିଅର, ଓକିଲ, କବି, ଲେଖକ, କଳାକାର ଓ ସମାଜ ସେବୀଙ୍କ ସମାବେଶରେ ସମ୍ବର୍ଦ୍ଧନା ସଭା ପରିଚାଳନାକଲେ ମୋର କେଳବନ୍ଧୁ ବରିଷ୍ଠ ସାମ୍ବାଦିକ ସ୍ୱର୍ଗତ ଶ୍ରୀହର୍ଷ ମିଶ୍ର । ବହୁ ଶୁଭେଚ୍ଛା ଓ ବିଭିନ୍ନ ଅନୁଷ୍ଠାନ ମୋତେ ଅଭିନନ୍ଦିତ କରି ମୋର ଦୀର୍ଘଜୀବନ କାମନା କଲେ । ମୋର ପରମ ସୌଭାଗ୍ୟ ଯେ ଭକ୍ତଭାଜନ "ନୂମା" (ଶ୍ରୀମତୀ ମାଳତୀ ଦେବୀ) ସଭାରେ ଉପସ୍ଥିତ ରହି ମୋତେ ଆଶୀର୍ବାଦ କରିଗଲେ ।

ସଭା ପରେ କେତେକ ବନ୍ଧୁ ଅନୁରୋଧ କଲେ "ବଇଭାଇ ତୁମେ ନିଜର ଜୀବନୀଟି ଲେଖ । ତାହାରି କୋଳ ମଣ୍ଡନ କରୁ ସ୍ୱାଧୀନତା ସଂଗ୍ରାମ ଦିନର ଲିହୁ ଲୁହର କାହାଣୀ; ବୈଚିତ୍ର୍ୟମୟୀ ଭାରତବର୍ଷର ପଲ୍ଲୀ ଜନପଦର ନୈସର୍ଗୀକ ସୁଷମାର ଅପାଶୋର ସ୍ମୃତି; ବୈଧାନିକ ଜୀବନରେ ରାଜନୈତିକ ଝଡ଼ଝଞ୍ଜା; ଗୀତିକାର, ନାଟ୍ୟକାର ଓ ଔପନ୍ୟାସିକ ରୂପରେ ନିରଳସ ସାରସ୍ୱତ ସାଧନା; ମଞ୍ଚ ତଥା ଚଳଚ୍ଚିତ୍ର ଜୀବନର କେତେକ ମନଛୁଆଁ ସରସ ସୁନ୍ଦର ଅନୁଭୂତି, ତଥା ତୁମର ପ୍ରାଣପ୍ରିୟ ଓଡ଼ିଶାର କଳାର କୋଣାର୍କ 'କଳାବିକାଶ କେନ୍ଦ୍ର'ର ବାଲ୍ୟ, କଶୋର ଓ ଯୌବନର ଜୀବନଧାରା ।"

ସେତେବେଳେ ଅବଶ୍ୟ ହସିଦେଇ ପ୍ରସଙ୍ଗ ଏଡାଇ ଦେଇଥିଲି । କିନ୍ତୁ 'ଅନୁରୋଧ' କ୍ରମେ 'ଦାବୀ'ରେ ରୂପାନ୍ତରିତ ହେଲା । ବାଧ୍ୟ ହୋଇ କଲମ ଧରିଲି । ଲେଖା ଆଗେଇ ଚାଲିଲା । ମୋର ପୁତ୍ର ଶ୍ରୀମାନ ଅରବିନ୍ଦ ବରାବର ତାକୁ ପଢ଼ି କେତେକ ସ୍ଥଳରେ ମାର୍ଜିତ କରି ଦେଉଥାଏ ଏବଂ ଆଗକୁ ଯିବାଲାଗି ଉତ୍ସାହିତ କରୁଥାଏ ।

କ୍ରମାଗତ ଶାରୀରିକ ଅସୁସ୍ଥତା ଲେଖା ଅଗ୍ରଗତିରେ ଅନ୍ତରାୟ ସୃଷ୍ଟି କରିଥାନ୍ତା ଯଦି ସ୍ନେହାସ୍ପଦ ଡାକ୍ତର ଆଲେକ କାନୁନ୍‌ଗୋ ସ୍ୱତଃପ୍ରବୃତ୍ତଭାବେ ମୋର ଚିକିତ୍ସାର ଦାୟିତ୍ୱ ବହନ କରିନଥାନ୍ତେ । ତାଙ୍କର ନିରବଚ୍ଛିନ୍ନ ପ୍ରଚେଷ୍ଟା ହିଁ ମୋତେ ଆଜି କର୍ମକ୍ଷମ କରି ରଖିଛି । ସେବା ଓ ତ୍ୟାଗର ମହାମନ୍ତ୍ରରେ ଦୀକ୍ଷିତ ଏହି ତରୁଣ ଚିକିତ୍ସକଙ୍କର ଗୌରବୋଜ୍ଜ୍ୱଳ ଦୀର୍ଘ ଭବିଷ୍ୟତ ମୁଁ କାମନା କରୁଛି ।

ଲେଖାଟି ଶେଷ ହେବାପରେ ମୋର ଶୁଭାକାଂକ୍ଷୀ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶକ, ସମାଲୋଚକ ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କୁ ଦେଲି ତା'ଉପରେ ତାଙ୍କର ସାହିତ୍ୟିକ ଦୃଷ୍ଟି ଘୂରାଇ ଆଣିବାଲାଗି । ସାଗ୍ରହେ ପାଣ୍ଡୁଲିପିଟି ଗ୍ରହଣ କଲେ । ନାନା କାର୍ଯ୍ୟବ୍ୟସ୍ତ ମଧ୍ୟରେ ତାହା ପଢ଼ି ଆବଶ୍ୟକ ସ୍ଥଳେ ସଂଶୋଧନ ମଧ୍ୟ କରିଦେଲେ । ତାଙ୍କୁ ଅନୁରୋଧ କଲି ବହି ବିଷୟରେ ଦ'ପଦ ଲେଖିବାକୁ । ମୋ କଥା ସେ ଏଡ଼ାଇ ପାରି ନାହାନ୍ତି । ତାଙ୍କର ଏହି ସାହାଯ୍ୟ ଲାଗି ମୁଁ ଗଭୀର କୃତଜ୍ଞତା ଜଣାଉଛି ।

ଜୀବନୀ ଲେଖିବାଲାଗି ଯେଉଁ ଦୁଇ ଜଣଙ୍କର ପ୍ରେରଣା ମୁଁ ପାଇଛି ତାହା ଏଠାରେ ଗଭୀର ଶ୍ରଦ୍ଧାରେ ସ୍ମରଣ କରୁଛି । ସେମାନେ ହେଲେ ମୋର ସହଧର୍ମିଣୀ ଶରତକୁମାରୀ ଓ ପୁତ୍ରବଧୂ ପୂର୍ଣ୍ଣିମାରାଣୀ । ପାଣ୍ଡୁଲିପିଟିକୁ ସ୍ପଷ୍ଟଭାବେ ଲେଖି ଦେଇଛନ୍ତି ଶ୍ରୀମାନ ସୁରେନ୍ଦ୍ର, ବୀରେନ୍ଦ୍ର, ଶ୍ରୀମନ୍ତ,କୁମାରୀ ମିନତି ଓ ସୁସ୍ମିତା । ମୁକ୍ତ ପ୍ରାଣରେ ମୁଁ ତାଙ୍କୁ ଶୁଭାଶିଷ ଜଣାଉଛି ।

ପଦଟିଏ କଥାରେ, ଓଡ଼ିଶା ବୁକ୍‌ଷ୍ଟୋରର ସ୍ୱତ୍ୱାଧିକାରୀ ପ୍ରିୟ ଭାଇନା ଗୋବିନ୍ଦଚନ୍ଦ୍ର ସାହୁ ଏ ପୁସ୍ତକ ପ୍ରକାଶନର ଗୁରୁଦାୟିତ୍ୱ ବହନକଲେ । ସେହିପରି ଗୁରୁପ୍ରସନ୍ନ ପ୍ରେସର ପ୍ରସନ୍ନବାବୁ ଏହାର ପ୍ରୁଫ୍ ସଂଶୋଧନ ଠାରୁ ଛପାକାର୍ଯ୍ୟ ପର୍ଯ୍ୟନ୍ତ ବ୍ୟକ୍ତିଗତ ତତ୍ତ୍ୱାବଧାନରେ ଶେଷ କରିଦେଲେ । ଉଭୟଙ୍କୁ ମୋର ଅନ୍ତରର କୃତଜ୍ଞତା ଜଣାଉଛି ।

ବହିଟିର ପ୍ରକାଶନରେ ଯାହାଙ୍କର ବହୁଦିନର ସ୍ୱପ୍ନ ସାକାର ହେଲା, ସେ କିନ୍ତୁ ଆଖିପୂରାଇ ଦେଖିବାକୁ ଆମପାଖରେ ରହିଲେ ନାହିଁ । ୪୧ ବର୍ଷର ଦୀର୍ଘ ବନ୍ଧୁତାର ସୂତ୍ରକୁ ଛିନ୍ନକରି ସେ ଚାଲିଗଲେ ପରପାରକୁ । ମୋର ଅତିପ୍ରିୟ ବାବୁଭାଇ (ବାବୁଲାଲ ଦୋଶୀ) ହଜିଗଲେ ପବିତ୍ର ସ୍ୱର୍ଗଦ୍ୱାରର ମୁଠିଏ ପାଉଁଶ ଭିତରେ । ଆଉ ବେଳାଭୂମିର ତଟରେ ଗଢ଼ି ଉଠିଥିବା ଜୀବନ ଲୀନ ହୋଇଗଲା ବଙ୍ଗୋପସାଗରରେ । କେତେ କଥା ଅକୁହା ରହିଗଲା ।

ବାବୁଭାଇ; ଆଜି ତୁମରି ସ୍ମୃତିକୁ ପାଥେୟକରି ଯେଉଁ କଳାବିକାଶ କେନ୍ଦ୍ରରେ ସଂପାଦକ ଦାୟିତ୍ୱ ତୁମେ ସୁରୁଖୁରୁରେ ଚଳାଇ ଆସୁଥିଲ ତାହାକୁ କେନ୍ଦ୍ରର ବହୁ ସଭ୍ୟ ଓ ଶୁଭେଚ୍ଛୁମାନଙ୍କ ଅନୁରୋଧରେ ମୋତେ ବହନ କରିବାକୁ ପଡ଼ିଲା । ବାବୁଭାଇ ! ସ୍ୱର୍ଗଧାମରୁ ତୁମର ଏ ଶୋକାତୁର ବନ୍ଧୁର ଲେଖା ଦୁଇଧାଡ଼ି ପ୍ରତି ଦିବ୍ୟ ଦୃଷ୍ଟିଦେଲେ ଏବଂ ତୁମର ଅସମାପ୍ତ କାର୍ଯ୍ୟକୁ ଆଗେଇ ନେବାକୁ ଶକ୍ତି ଓ ସାମର୍ଥ୍ୟ ଦେଲେ ନିଜକୁ ଧନ୍ୟ ମନେ କରିବି ।

**ଲେଖକ**

# "ସ୍ମୃତିର ସୁରଭି"ର ଆମୋଦିତ ପରିଭାଷା

ଉତ୍‌ପତ୍ତି ଜୀବନର କଙ୍କରିଳ ରାଜପଥରେ ପଥିକର ଅଗାଧିକାର କାହାଣୀ କେତେ ବିଚିତ୍ର ଘନଘଟାରେ ପରିପୂର୍ଣ୍ଣ । ଅନ୍ଧାର ଓ ଆଲୋକର ଲୁଚକାଳି ଖେଳ ମଧ୍ୟରେ କେତେ ହସ କାନ୍ଦ, ଲୁହ ଲହୁର ଉର୍ମିଶୀତଳ ଅନୁଭୂତି କୁହୁକର ଖେଳଭଳି ମାୟାବିସ୍ତାର କରି ମୁହଁ ଲୁଚାଇ ଯାଇଛନ୍ତି । ସେଥିମଧ୍ୟରୁ ଯେଉଁ କେତୋଟି ଘଟଣା ଓ ଦୁର୍ଘଟଣା ମନରେ ଗଭୀର ରେଖାପାତ କରି ଆଜୀବନ ସ୍ମୃତିର-ସାଗରରେ ମଧୁମୟ ତରଙ୍ଗ ସୃଷ୍ଟି କରିବାରେ ଲାଗିଛନ୍ତି ସେହିଗୁଡ଼ିକର ଜୀବନ୍ତ-ଆଲେଖ୍ୟ ରୂପାୟିତ ହୋଇଛି ଅତ୍ୟନ୍ତ ସାବଲୀଳ ଭାବରେ "ସ୍ମୃତିର ସୁରଭି" ଗ୍ରନ୍ଥରେ । ଶ୍ରୀଯୁକ୍ତ ବୈକୁଣ୍ଠନାଥ ମହାନ୍ତିଙ୍କର ଅନବଦ୍ୟ ଗ୍ରନ୍ଥ "ସ୍ମୃତିର ସୁରଭି" ଏକ ଭିନ୍ନ ସ୍ୱାଦର ସାରସ୍ୱତ ଅବଦାନ । କାରଣ ଏଥିରେ ଭାରତ ଭ୍ରମଣର ବିଚିତ୍ର ଅନୁଭୂତି ଅତ୍ୟନ୍ତ ରସାପ୍ଲୁତ ଭାଷାରେ ସ୍ଥାନ ଲାଭ କରିଥିଲେ ହେଁ ଏହା କ'ଣ ଭ୍ରମଣ କାହାଣୀ ପର୍ଯ୍ୟାୟରେ ଗ୍ରହଣ କରାଯାଇପାରିବ ? ଜୀବନର ଅନୁଭୂତିକୁ ଉଖାରି ନିଖାରି ଯାହା ସାର୍ବଜନୀନ ଏବଂ ସର୍ବଜନଗ୍ରାହ୍ୟ ଆଦରର ସାମଗ୍ରୀ, ତାହାର ଏକ ସାର୍ଥକ ରୂପାୟନ 'ସ୍ମୃତିର ସୁରଭି' ହେଲେ ହେଁ ଏହି ଗ୍ରନ୍ଥକୁ ନିଚ୍ଛକ ଏକ ଜୀବନଚରିତ ବୋଲିତ କହିହେବ ନାହିଁ ? ସେହିପରି ଭାବନା ମନକୁ ଆସିଲେ ସାଧାରଣ ପାଠକ ଜଣେ ରାଜନୈତିକ କର୍ମୀର ଜୀବନ କାହାଣୀ ପଢ଼ିବାକୁ ଆଗ୍ରହୀ ହେବ ଅବା କାହିଁକି ? ଓଡ଼ିଆ ସାହିତ୍ୟରେ ଡାଏରୀ-ସାହିତ୍ୟର ଏକାନ୍ତ ଅଭାବ । ଲେଖକଙ୍କର ଦୀର୍ଘକାଳର ନିରବଚ୍ଛିନ୍ନ 'ଦିନଲିପି' ଏକ ରସୋତ୍ତୀର୍ଣ୍ଣ ସାହିତ୍ୟିକ-ସାମଗ୍ରୀ ଯେ ହୋଇପାରେ, "ସ୍ମୃତିର ସୁରଭି" ପାଠ ନକଲେ ଏହା ଅନୁଭବ କରି ଯାଇପାରିବ ନାହିଁ ।

ବାସ୍ତବ ସମାଜ ଜୀବନରେ ବିବାହିତା ପତ୍ନୀର ସ୍ନେହ, ପ୍ରେମ, ସେବା, ତ୍ୟାଗ ଓ ସୋହାଗ ଯେତେ ପ୍ରୀତିକର ହେଉନା କାହିଁକି ଯେଉଁମାନେ ସ୍ୱପ୍ନ-ସୁନ୍ଦରୀର ପ୍ରେମରେ ପଡ଼ିନାହାନ୍ତି, ସେମାନଙ୍କ ପାଇଁ ଜୀବନଟା କେବଳ ଅପୂର୍ଣ୍ଣ ରହିଗଲା ନାହିଁ, ଆଉ ଅନେକଙ୍କ ପାଇଁ ମଧ୍ୟ ସେମାନେ ନିସ୍ତରଙ୍ଗ ନିର୍ଜୀବ ହୋଇ ରହିଗଲେ । ସେପରି ଜୀବନର ହିସାବ କିଏ ରଖେ ?

ଏହି ଦୃଷ୍ଟିରୁ ବୈକୁଣ୍ଠନାଥଙ୍କର ମାନସ-ସୁନ୍ଦରୀ "ସ୍ମୃତିର-ସୁରଭି" ନିଜର ସ୍ୱଭାବସୁଲଭ ମନଛୁଆଁ ଭାଷାରେ ଯେଉଁ କାହାଣୀ ଶୁଣାଇ ଚାଲିଛି, ସେଥିରେ ଯେ କୌଣସି ଶ୍ରୋତା କୌଣସି ନୀତି ଅନୀତି ସ୍ୱୀକାର ନକରି ଯଦି ତାର ପ୍ରେମରେ ପଡ଼ିଯାଏ, ଏଥିରେ "ବଇରାଇ" ଆଶ୍ଚର୍ଯ୍ୟ ହେବେ ଅବା କାହିଁକି ? ପ୍ରେମଶୀଳାକୁ ହିଁ ତ ପ୍ରେମ କରାଯାଏ । ବେଳେବେଳେ ମନେହୁଏ, "ବଇରାଇ" ଉପନ୍ୟାସ

ଲେଖିଲେ ନାହିଁ କାହିଁକି ? ସେ ଯେତେବେଳେ ଭାରତର ପଦଯାତ୍ରୀ ଭାବରେ ପହଞ୍ଚିଛନ୍ତି ବିହାର ପ୍ରଦେଶର ଶ୍ରେଷ୍ଠ ଷ୍ଟେସନଟିଏ ଝୁମ୍ରିତିଲିଆରେ, ଅଜଣା ଅଚିହ୍ନା ଲୋକ ବୋଲି ସମସ୍ତେ ଅବିଶ୍ୱାସ କଲାବେଳେ ଅତି ଆଦରରେ ଆଶ୍ରୟ ଦେଇଥିଲେ ଜଣେ ଦରିଦ୍ର ହକାରକ 'ସୁବ୍ରତ ସେନ' । ଅତି ଆଗ୍ରହରେ କେବଳ ଅତିଥି ସତ୍କାର କଲେନାହିଁ, ଏଇ ଅଜଣା ପରିବ୍ରାଜକଙ୍କ ଆଗରେ ନିଜ ଜୀବନର ଦୁଃଖର କାହାଣୀ କହି ବସିଲେ । ଏମ୍. ଏ. ଜୀବନର ସହପାଠିନୀ ସୁନ୍ଦରୀ 'ରେଖା'ଙ୍କୁ ପ୍ରେମ କରି ସୁବ୍ରତ ବିବାହ କରିଥିଲେ । ପାଞ୍ଚୋଟି ବର୍ଷର ପ୍ରେମପୂତ ଜୀବନରେ ଅସ୍ନିକ ଯବନିକା ପଡ଼ି ଆସିଲା । ଶେଷ ପରିଣତି ହେଲା ଗୃହପଣ । ବିରାଟ ଶୂନ୍ୟତା, ଅନୁଶୋଚନା ଏବଂ ହାହୁତାଶକୁ ପାଥେୟ କରି ସୁବ୍ରତ ଝୁମ୍ରିତିଲିଆରେ ଏକପ୍ରକାର ନିର୍ଜନ କାରାବାସ କରୁଥିଲେ । ନିଜର ବନ୍ଧୁ ପ୍ରଶାନ୍ତର ଅନୁରୋଧରେ ଦିନେ ଯାଇଥିଲେ ତାର ସ୍ତ୍ରୀକୁ ସ୍ୱାଗତ କରି ଆଣିବାପାଇଁ ଷ୍ଟେସନକୁ । ଏକାନ୍ତ ଅପେକ୍ଷମାଣ ଅବସ୍ଥାରେ ସୁବ୍ରତ ବନ୍ଧୁପତ୍ନୀ ବୋଲି ଯାହାକୁ ଆବିଷ୍କାର କଲେ ସେ ଥିଲେ ତାଙ୍କର ଏକଦା ପ୍ରେମିକା ଓ ପରେ ବିବାହିତା ମାନସୀ । ସେହି ଅତର୍କିତ ଓ ଆକସ୍ମିକ ସାକ୍ଷାତର କାହାଣୀ ରୂପାୟିତ ହୋଇଛି ବୈକୁଣ୍ଠନାଥଙ୍କ ଲେଖନୀରେ ଏହିପରି—'ଅନାଇ ଅନାଇ ହଠାତ୍ ମୋର ଦୃଷ୍ଟି ପ୍ଲାଟଫର୍ମର ଶେଷପ୍ରାନ୍ତରେ ନିବଦ୍ଧ ହେଲା । ଗୋଟିଏ ଭଦ୍ର ମହିଳା । ମହିଳା ବୋଧହୁଏ ତାକୁ କୁହାଯାଇ ପାରିବ ନାହିଁ । ତରୁଣୀ କହିବା ସଙ୍ଗତ । ହାତରେ ମଧ୍ୟମ ଧରଣର ସୁଟକେଶଟିଏ ନେଇ ମନ୍ଥର ପଦରେ ଆଗେଇ ଆସୁଛି । ଆଜି ସେଇଥିରେ ପାହାଡ଼ ଆଉ ପ୍ରାନ୍ତର ଘେରା ଏଇ ଷ୍ଟେସନରେ ଯେପରି ଦୃଶ୍ୟର ପରିବର୍ତ୍ତନ ହୋଇଯାଇଛି । ଅନେଇ-ଥିଲି । କିନ୍ତୁ ଏତେ ଦୂରରୁ ମୁଁ ବି ଚକ୍ଷୁ ଭଲ କିଛି ଦେଖିପାରୁ ନଥିଲି । ତଥାପି ମନେ ହେଉଥିଲା ସେ ସୁଗଠନା । ସରୁ କମର ତଳେ ବିଶାଳ ,ନିମ୍ନ ଦେଶ ଏବଂ ଉପର ଦେଶର ଅଜସ୍ର ଔଦ୍ଧତ୍ୟ ତାକୁ ସୁଦେହିନୀର ମର୍ଯ୍ୟାଦା ଦେଇଛି । ମନ୍ଥର ଗାମିନୀ ହେଲେ ମଧ୍ୟ ଅନେକ ଆଗେଇ ଆସିଛି ସେ । ନିକଟକୁ ଆସିବାରୁ ବୁକୁର ଶ୍ୱାସ ଯେପରି ମୋର ରୁଦ୍ଧ ହୋଇ ଆସିଲା । ହୃତ୍ପିଣ୍ଡର ଉତ୍ଥାନ ପତନ ଯେପରି ମୁଁ ବୁଝିପାରୁନ—ସେପରି ଜଣା ପଡ଼ିଲା । ମୋତେ ବେଷ୍ଟନ କରି ସମସ୍ତ ପୃଥିବୀ ଘୂରୁଛି । ସିଏ ଆସିଛି ସେ "ରେଖା" ।

ଆହା ! ବିଚରା ସୁବ୍ରତ ସେନ୍ !! ପ୍ରଶାନ୍ତ ଘୋଷର ସ୍ତ୍ରୀ ଭାବେ 'ରେଖା'କୁ ଆବିଷ୍କାର କଲାବେଳେ ତା'ର ମର୍ମନ୍ତୁଦ ଯନ୍ତ୍ରଣାର ସୀମା ନାହିଁ । ଲେଖକଙ୍କର ଭାଷାରେ—"ଶିକାରୀର ଫାନ୍ଦରେ ପଡ଼ିଥିବା ଦୁଇଟି ଜନ୍ତୁଭଳି ଆମେ ଛଟପଟ କରି ଉଠିଲୁ ଭିତରେ ଭିତରେ ।"

"କେହି ଯେପରି ମନ୍ତ୍ର ପଢ଼ି ମୋତେ ଅଚଳ ଓ ନିଶ୍ଚଳ କରି ଦେଇଛି । ବନ୍ଧୁପତ୍ନୀଙ୍କୁ ଧରି ବସାକୁ ଫେରିଲାବେଳେ ତାଙ୍କର ଦୋଳନ ମଧ୍ୟରେ ଲଗାଲଗି ହେବାର ଅନୁଭୂତ—"କେତେକାଳ ପରେ ରେଖାର ସ୍ପର୍ଶ ପାଉଛି । ଏହି ସ୍ପର୍ଶର ସ୍ୱାଦ ଯେ ମୋର ଅଜଣା, ତା ନୁହେଁ । କିନ୍ତୁ ଦୁଃସହ ଅପରିଚିତ ମନେ ହେଉ-ଥାଏ । ତଥାପି ଜଣା ପଡ଼ୁଥାଏ ଯେପରି ଆମେ ଦୁହେଁ ପୃଥିବୀର ଦୁଇ ପ୍ରାନ୍ତରେ ମେରୁରେ ରହିଛୁ । ମଝିରେ ଅନ୍ତହୀନ, ସୀମାହୀନ ବ୍ୟବଧାନ ।"

ଅନ୍ତର ମଧ୍ୟରେ ସୁବ୍ରତର କାତର ଚିତ୍କାର ଲେଖକଙ୍କୁ ବ୍ୟାକୁଳ କରିଛି— "ଯାହା ଯାଇଛି ତାକୁ ମୁଁ ପାଇବିନି ଜାଣେ । ଯାହା ମୁଁ ହଜାଇଛି ତାହା ମୁଁ ଖୋଜିବିନି ····ମୁଁ ଆଜି ନିର୍ଜନ ଦ୍ୱୀପରେ ନିର୍ବାସିତ ଭଳି ବିଳାପ କରୁଛି ।"

"ମୃତର-ସୁରଭି"ରେ ଏଇମିତି ବହୁ ଚିତ୍ର ଓ ଚରିତ୍ର ପାଠକର ଆଖିରେ ପଡ଼େ ଯାହାକୁ ସେ ଆଦୌ ଭୁଲିପାରିବ ନାହିଁ । ଅତ୍ୟନ୍ତ ମନମତାଣିଆ ମନଚହଲା ସେ ଅନୁଭୂତ ପାଠ କରୁ କରୁ ପାଠକ ମନେକରେ ସତେ ଯେପରି ସେ ନିଜେ ଅନୁଭବ କରି ଚାଲିଛି । ଏଇମିତି ଏକ ଚରିତ୍ର କାନପୁର ନଗରର "ଦାଦାଜୀ" । ଅଦ୍ଭୁତ ଏ ଚରିତ୍ର । ଅଗଣିତ ଶ୍ରମିକର ସେ ଆଶା ଭରସା; ଅତ୍ୟାଚାରିତ ଲୁଣ୍ଠିତର ସେ ଆଶ୍ରୟଦାତା । ସହରର ଗୁଣ୍ଡା ବଦ୍‌ମାସ ତାଙ୍କର ବଚସ୍କର । କେହି କହି-ପାରିବେ ନାହିଁ ତାଙ୍କର ପରିଚୟ କଣ ? କିନ୍ତୁ ଅତିଥି ପରାୟଣତାର ସୀମା ନାହିଁ । ସ୍ନେହ ଓ ଆନ୍ତରିକତାରେ ସେ କିଣି ନିଅନ୍ତି ସମସ୍ତଙ୍କୁ । ସେଇମିତି ଲକ୍ଷ୍ନୌ ସହରରେ ଶୁକ୍ଳାଜୀଙ୍କ କଥା । ସେଇଠାରେ ଶୁକ୍ଳାଜୀଙ୍କ ଜରିଆରେ ପରିଚୟ ହୁଏ ସ୍ୱନାମଧନ୍ୟା ବାଇଜୀ, "ସୁଶୀଳା" ସହିତ ଯାହାଙ୍କ ପାଦତଳେ ଧନକୁବେରମାନେ ନିଜକୁ ଅଜାଡ଼ି ଦିଅନ୍ତି । 'ବାଇଜୀ'ର ଜୀବନ ରହସ୍ୟ ଖୋଲି ହୋଇଯାଏ ଯେତେବେଳେ ତାଙ୍କୁ ଭଉଣୀ ଭାବରେ କିଣି ନିଅନ୍ତି 'ମୃତର ସୁରଭି'ର ଲେଖକ । 'ସୁଶୀଳା' ବି ଦିନେ ଥିଲେ ଅଭିଜାତ ଧନୀ ଘରର ଅଲିଅଳୀ କନ୍ୟା । ପ୍ରେମ କରି ବିବାହ କରିଥିଲେ ଅଜାତିରେ । ଅହଂକାରୀ ପିତା ଚକ୍ରାନ୍ତ କରି ହତ୍ୟାକଲେ ଏଇ ଅଜାତିର ପୁରୁଷକୁ ଯେ ଥିଲା ତାଙ୍କ କନ୍ୟାର ମନର ମଣିଷ । ଜୀବନ ଓଲଟପାଲଟ ହୋଇଗଲା । ସୁଶୀଳା ଦିନେ କନ୍ୟା ଥିଲା, ଜାୟା ଥିଲା, ମାତା ମଧ୍ୟ ଥିଲା । ସେ ଆଜି ପାଲଟିଗଲା ବାରବନିତା । ତାର ମୁହଁର ଭାଷାକୁ ଲେଖକ ରୂପ ଦେଇଛନ୍ତି ଏହିପରି—"କିନ୍ତୁ ସବୁ ଥାଇ ମୁଁ ଆଜି ନିଃସ୍ୱ । ଘର ପରିବାର ମାୟା ମମତାଠାରୁ ମୁଁ ଦୂରେଇ ଯାଇଛି । ଏ ଅଳଙ୍କାର ମୋ ଦେହକୁ କଣ୍ଟାସମ ବିନ୍ଧୁଛି । ଏ ବିଳାସ ବ୍ୟସନ, ଏ ହାବେଲୀ, ଏ ଘୋଡ଼ାଗାଡ଼ି ମୋର ଏ ପବିତ୍ର ଦେହ ବଦଳରେ ମୁଁ ଅର୍ଜନ କରିଛି । ନାରୀର ସମ୍ମାନ ମୁଁ ରକ୍ଷା କରିପାରିନି । ଧନ ଅଛି କିନ୍ତୁ ପ୍ରାଣ

ନାହିଁ । ବିଭବ ଅଛି କିନ୍ତୁ ପ୍ରେମ ନାହିଁ । ରେଳର ଇଞ୍ଜିନ ପରି ଏକ ଦୁର୍ବିସହ ଜୀବନ ନେଇ ମୁଁ ଗଡ଼ି ଚାଲିଛି । ଜାଣେନା ତା ଷ୍ଟେସନ କେଉଁଠି, ଶେଷ କେଉଁଠି, ପରିଣତି କେଉଁଠି । ଆଜି ଯାହାସବୁ କହିଗଲେ, ଦିନେ ମୁଁ ସବୁ ଥିଲି । ଆଜି ବାଇଜୀ, ବେଶ୍ୟା, ପତିତା, ବାରାଙ୍ଗନା, ବାରନାରୀ । ଏ ସମାଜ ଉପରେ ପ୍ରତି-ଶୋଧ ନେବା ପାଇଁ ମୁଁ ତିଳ ତିଳ ହୋଇ ନିଜକୁ ଜାଳି ଚାଲିଛି ।"

ଚଳଚ୍ଚିତ୍ରର ପରଦାରେ ଆଲୋକ ଛାୟାର ଲୁଚକାଳି ଖେଳ ଭଳି "ସ୍ମୃତିର ସୁରଭି ପର୍ଦ୍ଦା ଉପରେ ଗୋଟିକ ପରେ ଗୋଟିଏ ଅପୂର୍ବ ଦୃଶ୍ୟ ଫେରି ବୁଲୁଥାଏ । ହିମାଳୟର ଅଗମ୍ୟ ଅଞ୍ଚଳର କେଉଁ ସାଧୁର କଥା କୁହାଯାଇଛି ଯେ କେବଳ ପତ୍ର ଖାଇ ଜୀବନ ଧାରଣ କରିଥାନ୍ତି । ପେଶୱାରର ପାର୍ବତ୍ୟ ଅଧିବାସୀ ଓ୍ୟାଜିରିସ୍ଥାନର ଦୁର୍ଦ୍ଧର୍ଷ ଓ ଦୁର୍ଦ୍ଦମ ଲୋକମାନେ ଯେଉଁମାନେ ମୃତ୍ୟୁକୁ ମଧ୍ୟ ଡରନ୍ତି ନାହିଁ, ଆଫ୍ରିଦି ଜାତି ସହିତ ସଶରୀର ସାକ୍ଷାତ୍ ଯେଉଁମାନେ ଜୀବନ ନେବାପାଇଁ ଅନ୍ଧକାର ଅପେକ୍ଷା କରିଥାନ୍ତି, ନାଚାଳଣି, ଚମ୍ବଲ ଉପତ୍ୟକା, କାଶ୍ମୀରର ଅମରନାଥ, ଦାକ୍ଷିଣାତ୍ୟର ପକ୍ଷୀତୀର୍ଥ—ସବୁସ୍ଥାନର ବିଚିତ୍ର ଅନୁଭୂତି ଜୀବନ୍ତ ହୋଇ ଉଠିଛି ଏହି ଗ୍ରନ୍ଥରେ ।

ଆଲୋଚ୍ୟ ପୁସ୍ତକର ଏକ ସ୍ୱତନ୍ତ୍ର ଆକର୍ଷଣ ହେଲା ସ୍ୱାଧୀନତା ଆନ୍ଦୋଳନ କାଳୀନ କେତେକ ଜୀବନ୍ତ ସ୍ମୃତି । ଏହି ସଂଗ୍ରାମର ଜଣେ ପ୍ରତ୍ୟକ୍ଷଦର୍ଶୀ ସୈନିକ ହିସାବରେ ବୈକୁଣ୍ଠନାଥ ଲେଖନୀଚାଳନା କରିଥିବାରୁ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ରମାଦେବୀ, ମାଳତୀ ଚୌଧୁରୀ, ଆଚାର୍ଯ୍ୟ ହରିହର, ଈଶ୍ୱରଲାଲ ବ୍ୟାସ, ଗୁଣନିଧି ମହାନ୍ତି, ଜାତୀୟ କବି ବୀରକିଶୋର, ଜୟପ୍ରକାଶ, ସୁବ ସଚନ୍ଦ୍ର, ରାମମନୋହର ଲୋହିଆ ଅଥବା ଜାତିର ପିତା ଗାନ୍ଧିଜୀଙ୍କ ସମ୍ପର୍କରେ ବର୍ଣ୍ଣିତ ଅନୁଭୂତି ପ୍ରକାଶ କରି ଯାଇଛନ୍ତି । ଏଥି ସହିତ ସ୍ୱାଧୀନତା ସଂଗ୍ରାମର ଅନେକ ସୈନିକ ଯେଉଁମାନେ ଦେଶ ପାଇଁ ସର୍ବସ୍ୱ ତ୍ୟାଗ କରି ମଧ୍ୟ ବିସ୍ମୃତପ୍ରାୟ ହୋଇ ରହିଗଲେ, ସେହିପରି ବ୍ୟକ୍ତିତ୍ୱ—ଦରିଦ୍ର କୃଷକ ବଶ୍ରନପୁରର ମଦନ ଜେନା, ମାନ ସାମଲ, ନରସିଂହପୁରର ଦାସ ମଲ୍ଲିକ, କଟକର ରଘୁ ମହାପାତ୍ର, ଯାନନ୍ଦ ବେହେରା, ଦାଶରଥି ବେହେରା, ଗୋବିନ୍ଦ ଖାଇ ଇତ୍ୟାଦି ଯେଉଁମାନେ ସ୍ୱାଧୀନତା ସଂଗ୍ରାମ ରୂପକ ଅଗ୍ନିରେ ହସି ହସି ଜୀବନ ଉତ୍ସର୍ଗ କରିଗଲେ, ସେହିମାନଙ୍କୁ ସ୍ମରଣ କରି ସ୍ୱାଧୀନତା ସଂଗ୍ରାମ ଇତିହାସର ନୂତନ ଅଧ୍ୟାୟ ଲେଖକ ସୃଷ୍ଟି କରିଛନ୍ତି । ନଟି-ଖାଇ, ବାବା ଆନନ୍ଦ ସ୍ୱରୂପ, ଶାମ ପୁହାଣ, ସିଦ୍ଧେଶ୍ୱର ସାହୁ, ଲକ୍ଷ୍ମଣ ସାହୁ ପ୍ରଭୃତି ବୀର ସନ୍ତାନମାନଙ୍କୁ କିଏ ଆଜି ମନେ ରଖିଛି ? "ସ୍ମୃତିର ସୁରଭି"ରେ ସେମାନଙ୍କର ସ୍ମୃତି ତର୍ପଣ କରାଯାଇଛି ।

ଆଲୋଚ୍ୟ ପୁସ୍ତକରେ ସ୍ୱାଧୀନତା ଆନ୍ଦୋଳନର ଇତିହାସ ବିନ୍ଦୁ ସମସ୍ତରେ ବିବରଣାତ୍ମକ ହୋଇ ପଡ଼ିଥିବାରୁ ତାହା ନୀରସ ହୋଇ ପଡ଼ିଛି । ଏପରିକି ଲେଖକ ନିଜର କର୍ମମୟ ଜୀବନର କୌଣସି ନୈତିକତାର କାର୍ଯ୍ୟର ସୂଚନା ପ୍ରଦାନ କଲା ବେଳେ ତାହା ଏତେ ବ୍ୟକ୍ତିନିଷ୍ଠ ହୋଇ ପଡ଼ିଛି ଯେ ବେଳେ ବେଳେ ପାଠକ ପ୍ରାଣରେ ସେଇ ବର୍ଣ୍ଣନା ପୀଡ଼ା ପ୍ରଦାନ କରିଥାଏ । ଏ ସବୁ ବର୍ଣ୍ଣନା ଗୁଡ଼ିକରେ ପ୍ରାଣର ଆବେଗ ଅପେକ୍ଷା ଅଭିବ୍ୟକ୍ତିର ସଚେତନତା ଅଧିକ ଲକ୍ଷ୍ୟ କରାଯାଇଥାଏ । ତେବେ ଅନେକ କ୍ଷେତ୍ରରେ ଲେଖକ ତାଙ୍କର ସ୍ୱଭାବସୁଲଭ ଅଟ୍ଟଳ ବର୍ଣ୍ଣନାରେ ପାଠକକୁ ହସାଇ ରସାଇ ଗଭୀର ଆନନ୍ଦ ପ୍ରଦାନ କରିଥାନ୍ତି । ଯେପରି ଲୁଣମରା ଆନ୍ଦୋଳନବେଳେ ଡେପୁଟି ମାଧ ମିଶ୍ରଙ୍କ ଆଦେଶରେ ଦଫାଦାର ଚୌକିଆମାନେ ଫଟୋଗ୍ରାଫର ନବକିଶୋର ପଟ୍ଟନାୟକଙ୍କୁ ବାନ୍ଧିବା ପାଇଁ ଗଲାବେଳେ ଫଟୋ-ଷ୍ଟାଣ୍ଡକୁ ବନ୍ଧୁକ ଛଳନାରେ ବାଡ଼େଇ ଦିଅନ୍ତି । ସିପାହିମାନେ ପ୍ରାଣ ବିକଳରେ ପଳାଇ ଗଲାବେଳେ ବାନରସେନାଏ ଚିତ୍କାରି କହିଥାଆନ୍ତି—"ମାଧିଆ ନନା ହୋ ମାଧିଆ ନନା—ଲୁଣ ମରା ହେଲା ପଛକୁ ଅନା ।" ଏତିକିବେଳେ ଡେପୁଟିଙ୍କ ଘୋଡା ତୁରୁଡ଼ି ଯାଇ ବିଲରେ ଦଉଡ଼େ ଏବଂ ମାଧ ମିଶ୍ର କଚଡ଼ା ଖାଇ ତଳେ ପଡ଼ନ୍ତି"........ଇତ୍ୟାଦି ।

"ସ୍ମୃତିର ସୁରଭି" ବିଗତ ସମାଜର ଏକ ପ୍ରାଣବନ୍ତ ପ୍ରତିଛବି । ସ୍ୱାଧୀନତା ଆନ୍ଦୋଳନକାଳୀନ ଭାବବୋଲା ଇତିହାସର ଏକ ନିଛକ ପରିପ୍ରକାଶ । ଏଥିରେ ଲେଖକର ଜୀବନ-ସାଧନା ଏକ ଉପଲକ୍ଷ୍ୟ ମାତ୍ର ।

ଉପନ୍ୟାସ-ସୁଲଭ ବର୍ଣ୍ଣନାବିଳାସ ନିରବଚ୍ଛିନ୍ନ ଭାବରେ ଶେଷ ପର୍ଯ୍ୟନ୍ତ ରକ୍ଷା କରାଯାଇ ପାରିନଥିଲେ ହେଁ ଏବଂ କେତେକ ବ୍ୟକ୍ତିନିଷ୍ଠ ନୀରସ ବିବରଣୀ ସ୍ଥାନ ଲାଭ କରିଥିଲେ ହେଁ "ସ୍ମୃତିର ସୁରଭି" ଯେ ଅନନ୍ୟସାଧାରଣ ହୋଇ ରହିଯିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ପଠାଣି ପଟ୍ଟନାୟକ
୨୨ । ୧୦ । ୮୫



॥ ଲେଖକ ॥



॥ ସହଧର୍ମିଣୀଙ୍କ ସହିତ ॥



ପିତା ଓ ମାତାଙ୍କ ସହ ଏକ ଅଭୁଲା ମୁହୂର୍ତ୍ତରେ ।



॥ ୧୯୫୭ ମସିହାରେ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହେବା ପରେ ପ୍ରଜା-ସମାଜବାଦୀ ଦଳର ଅନ୍ୟ ଏମ୍. ପି ଓ ଏମ୍. ଏଲ୍. ଏ ମାନଙ୍କ ସହ ॥



।। ସାଧାରଣ ସମ୍ପାଦକ ସ୍ୱରରେ କଳାବିକାଶ କେନ୍ଦ୍ରର
କୁମାରଉତ୍ସବରେ ପ୍ରଥମ ଅଭିଭାଷଣ ।।

।। ରଘୁନାଥଜୀଉ ବାଦ୍ୟ ପୀଠର,
ପରିଚାଳନା କମିଟି ସଭ୍ୟ ବୃନ୍ଦ, ଶିକ୍ଷକ ଓ ଶିକ୍ଷୟିତ୍ରୀଙ୍କ ଗହଣରେ ।।

॥ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ହସ୍ତରେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ମାନପତ୍ର ଗ୍ରହଣ ॥



॥ ସୁନଭର୍ସରେ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ସମ୍ବର୍ଦ୍ଧନା ॥

॥ ସୁନଭର୍ସରେ ରାଜ୍ୟପାଳଙ୍କ ଠାରୁ ଗବେଷଣା ଗ୍ରନ୍ଥ "Gandhi and Modern —times" ଗ୍ରହଣ



॥ ସରତ ଭ୍ରମଣର ପଥପ୍ରାନ୍ତେ ॥



।। କସ୍ତୁରୀ ସମାରୋହରେ ବନ୍ଧୁ ବରିଷ୍ଠ ସାମ୍ବାଦିକ ଶ୍ରୀହର୍ଷ ମିଶ୍ର ଓ ଅଧ୍ୟାପକ ପଠାଣୀ ପଟ୍ଟନାୟକଙ୍କ ସହିତ ଶ୍ରୀଯୁକ୍ତା ମାଳତୀଚୌଧୁରୀ ।

The President Dr. Radhakrishnan with the artistes of the Kala Vikash Kendra at New Delhi

।। ରାଷ୍ଟ୍ରପତି ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ସହ ରାଷ୍ଟ୍ରପତି ଭବନରେ ଲେଖକ ଓ ପତ୍ନୀ ଶରତ କୁମାରୀ ।।



॥ ନୂଆଦିଲ୍ଲୀ ଷ୍ଟେସନରେ କଳାବିକାଶ କେନ୍ଦ୍ରର ସାଂସ୍କୃତିକ ଦଳ ଓ ସହଧର୍ମିଣୀଙ୍କ ସହ ଲେଖକ ॥




॥ କଳାବିକାଶ କେନ୍ଦ୍ରର ୩୩ତମ ବାର୍ଷିକ ଉତ୍ସବରେ ବିବରଣୀ ପାଠ ॥



॥ ଜୟନ୍ତୀ ସମାରୋହରେ ବନ୍ଧୁ ବରିଷ୍ଠ ସାମ୍ବାଦିକ ଶ୍ରୀହର୍ଷ ମିଶ୍ର ଓ ଅଧ୍ୟାପକ ପଠାଣୀ ପଟ୍ଟନାୟକଙ୍କ ସହିତ ଶ୍ରୀଯୁକ୍ତା ମାଳତୀଚୌଧୁରୀ ।

The President Dr. Radhakrishnan with the artistes of the Kala Vikash Kendra at New Delhi.

॥ ରାଷ୍ଟ୍ରପତି ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ସହ ରାଷ୍ଟ୍ରପତି ଭବନରେ ଲେଖକ ଓ ପତ୍ନୀ ଶରତ କୁମାରୀ ॥



॥ ନୂଆଦିଲ୍ଲୀ ଷ୍ଟେସନରେ କଳାବିକାଶ କେନ୍ଦ୍ରର ସାଂସ୍କୃତିକ ଦଳ ଓ ସହଧର୍ମିଣୀଙ୍କ ସହ ଲେଖକ ॥




॥ କଳାବିକାଶ କେନ୍ଦ୍ରର ୩୩ତମ ବାର୍ଷିକ ଉତ୍ସବରେ ବିବରଣୀ ପାଠ ॥



।। କଳାବିକାଶ କେନ୍ଦ୍ରର ନାଟ୍ୟଶିଳ୍ପୀ ଓ କର୍ମକର୍ତ୍ତାଙ୍କ ଗହଣରେ ।।



।। କଳାବିକାଶ କେନ୍ଦ୍ରର ଏକ ଉତ୍ସବ ମୁହୂର୍ତ୍ତରେ [illegible] ।।

ସେଦିନ ସବୁ ଆଜି କାହିଁ କେଉଁଆଡ଼େ ହଜିଗଲଣି । ବାଲ୍ୟ ଚପଳତା, କୈଶୋରର ଚଞ୍ଚଳତା ଓ ଯୌବନର ଉଦ୍ଦାମତାକୁ ପଛରେ ପକାଇ ମୁଁ ପ୍ରୌଢ଼ତ୍ୱରେ ପାଦ ଦେଲିଣି । ନଦୀଧାର ପରି ଅଙ୍କାବଙ୍କର ଏ ଜୀବନ କେତେବେଳେ ଦୁର୍ଗମ ଶିଳାର କଙ୍କରିତ ପଥରେ ଝରିଯାଇ ଯନ୍ତ୍ରଣାକୁ ନିଜର କରିଛି ତ କେତେବେଳେ ସମତଳ ଭୂଇଁର ମଧୁର ସ୍ପର୍ଶରେ ବହିଯାଇଛି, କୁଳୁକୁଳୁ ତାନକରି ମନ ଫୁଲଣିଆ ଗୀତ ଗାଇ ଗାଇ । ଅଳସ ମୁହୂର୍ତ୍ତିରେ ସେହି ହଜିଲା ଅତୀତ ଛାଇ ଆଲୁଅର ଖେଳପରି କେତେବେଳେ ପାଖରେ ଆସି ଧରାଦେଉଛି ତ କେତେବେଳେ ଗ୍ରିଲିଯାଉଛି, ଦୂରରୁ ଦୂରକୁ । ଧରି ରଖିବାର ଅଦମ୍ୟ ବାସନା ପରାହତ ହେଲେ ବି ତା'ର 'ସ୍ମୃତିର ସୁରଭି' ଏ ପରିଣତ ବୟସରେ ମୋତେ ଅପୂର୍ବ ପୁଲକରେ ରୋମାଞ୍ଚିତ କରୁଛି ।

ଅଳକା ନଦୀ କୂଳର ଘନ ନାରିକେଳ ଓ ଆମ୍ରକୁଞ୍ଜ ଘେରା ସେହି ମୋର ଆଦରର ଗାଁ।—'କଣିଆ'' ଯେଉଁଠି ୧୯୧୭ ମସିହା ମେ ୧୪ ତାରିଖରେ ମୁଁ ଦୁନିଆର ପହିଲି ଆଲୋକ ଦେଖିଥିଲି । କଟକ ଜିଲ୍ଲାର ବାଲିକୁଦା ଥାନାରେ ଅବସ୍ଥିତ ଏହି ଗାଁଟିର ବୁକୁ ଚିରି ଲମ୍ବିଯାଇଛି କଟକ—ମାଛଗାଁ ରାସ୍ତା । ଜନଶ୍ରୁତି ଅଛି ଅଳକା ନଦୀ ଦିନେ ଥିଲା ସୁନାବ୍ୟା । ତାର ଉଚ୍ଛୁଳା ଜଳ ରାଶିରେ ଶୁଭ୍ର ପାଲ ଉଡ଼ାଇ ବାଣିଜ୍ୟ ପୋତ ଭାସି ଯାଉଥିଲା ସୁଦୂର ଜାଭା ସୁମାତ୍ରାକୁ । ବହିରାଗତ ଧନ ଦରବରେ ପାର୍ଶ୍ୱବର୍ତ୍ତୀ ଗ୍ରାମଗୁଡ଼ିକ ଦିନେ ହସି ଉଠୁଥିଲା । ପଟୁଆ ନଈ ମୁହାଣରୁ ଏଇବାଟ ଦେଇ ଇଂରେଜମାନେ କଟକ ଅଭିମୁଖେ ଯାତ୍ରା କରିଥିଲେ । ତାର ମୂକସାକ୍ଷୀ ଆଜି ଜଗତ୍‌ସିଂହପୁରର ଫିରିଙ୍ଗି କୁଦ । ଅଳକା କୂଳର ନାଗପୁର ଥିଲା ଗୋଟିଏ ବାଣିଜ୍ୟପୀଠ । ମୋ ପିଲାଦିନେ ଅଳକାର ଅଥଳ ଜଳରାଶିରେ କୁମ୍ଭୀରଙ୍କର ଆତଯାତ ସ୍ରୋତସଞ୍ଚାର କରୁଥିଲା ।

କାଲିର ଗୌରବ ଆଜି ରୌରବରେ ପରିଣତ ହୋଇଛି । ଅଳକାର ଦୁଇପଟେ ମୁହଁ ବନ୍ଦ କରି ଇଂରେଜ ସରକାର କେନାଲ ଓ ରାସ୍ତା କରିଦେବା ଫଳରେ ତାହା ଆଜି ଗୋଷ୍ପଦ ହୋଇପଡ଼ିଛି ।

ଗାଁର ପଶ୍ଚିମ ପାର୍ଶ୍ୱରେ ମରହଟ୍ଟା ଅମଳରୁ ପ୍ରତିଷ୍ଠିତ ଶ୍ରୀ ଶ୍ରୀ ଗଦାଧର ଜୀଉଙ୍କର ମଠ ସହ ବନ୍ଧୁ ଦେବା ଦେବୀ ଏଠାରେ ବିରାଜମାନ କରୁଛନ୍ତି । ସରଳ ନିଷ୍କପଟ ଗ୍ରାମବାସୀମାନେ ଏହିମାନଙ୍କ ପୂଜା ମହୋତ୍ସବରେ ସାମିଲ ହୋଇ ଦିନର ଦିନଗୁଡ଼ିକ କଟାଇ ନିଅନ୍ତି । ସଞ୍ଜ ସକାଳେ ତାଙ୍କର ପାଦରେ ପ୍ରଣତି ବାଢ଼ି ଜଣାନ୍ତି ନିଜର ହାରି ଗୁହାରି ।

ମାଛଗାଁ କଟକ କଚ୍ଚା ରାସ୍ତାରେ ବେପାର ବଣିଜ ଲାଗି ଶଗଡ଼ ହିଁ ଥିଲା ଏକମାତ୍ର ସାହା-ଭରସା । ତା'ର ଉପରେ ମାଲ ପତ୍ର ଲଦି ଦୂରଦୂରାନ୍ତରୁ ଲୋକେ ଖରା, ବର୍ଷା ସହି ଛୁଟନ୍ତି କଟକ । ଆମ ଗାଁର କାନୁନ୍‌ଗୋ ସାହି ପାଖରେ ଯେଉଁ ବିରାଟ ବରଗଛ ଥିଲା, ତା'ର ମୂଳରେ ରାତି କଟାଇ ପୁଣି ବାହାରି ପଡ଼ନ୍ତି ଗନ୍ତବ୍ୟ ପଥରେ ।

ସମୟର ପ୍ରବାହମାନରେ ସେ କଚ୍ଚା ସଡ଼କ ଆଜି ପକ୍କା ସଡ଼କ ହେଲାଣି । ଶଗଡ଼ ବଦଳରେ ଟ୍ରକ୍, ମଟର ଛୁଟିଲାଣି । ନିଶୀଥରେ ଗାଁ ବୁକୁରେ ଝରି ପଡୁଥିବା ରାଶି ରାଶି ଜହ୍ନ ଆଲୋକକୁ ଉପହାସ କରି ବିଜୁଳି ଆଲୋକ ଝଲକି ଉଠିଲାଣି । ଗାଁର ଧୂଳିମାଟି ଓ ପାଣି ପବନରେ କେମିତି ଆଜି ଆଧୁନିକତାର ସ୍ପର୍ଶ । ସରଳ ଛନ୍ଦହୀନ ଜୀବନରେ ଆଜି କେମିତି ପଟ୍ଟପରିବର୍ତ୍ତନ ।

ମୋର ଜେଜେ ବାପାଙ୍କ ନାଁ ଭଗବାନ ମହାନ୍ତି । ତାଙ୍କର ତିନି ପୁଅ, ଯଥାକ୍ରମେ ପର୍ଶୁରାମ ମହାନ୍ତି, ପୁରୁଷୋତ୍ତମ ମହାନ୍ତି ଓ ବ୍ରଜ କିଶୋର ମହାନ୍ତି । ବଡ଼ ଭାଇ ପର୍ଶୁରାମ ମହାନ୍ତିଙ୍କର ତିନି ପୁଅ ଓ ତିନି ଝିଅ । ସାନ ଭାଇ ବ୍ରଜ କିଶୋର ନିଃସନ୍ତାନ ଥିବାରୁ ବଡ଼ ଭାଇଙ୍କ ପୁଅ ବଚିଦାନନ୍ଦଙ୍କୁ ପୁଅକରି ନେଇ-ଥିଲେ । ତାଙ୍କର ଆଉ ଗୋଟିଏ ପୁଅ ପୋଷ୍ୟ ପୁତ୍ର ରୂପେ ଯାଇଥିଲେ ଦେବଗ୍ରାମ ଗୋପବନ୍ଧୁ ମହାନ୍ତିଙ୍କ ଘରକୁ । ଆମ ବାପା ପୁରୁଷୋତ୍ତମ ମହାନ୍ତିଙ୍କର ଆମେ ଦୁଇ ପୁଅ—ମୁଁ ଓ ମୋର ସାନ ଭାଇ ବିଷ୍ଣୁ । ବଡ ବାପାଙ୍କ ବଡ଼ ପୁଅଙ୍କ ନାମ ଗୋକୁଳାନନ୍ଦ ମହାନ୍ତି । ଦେଖିବାକୁ ରାଜପୁତ୍ରପରି ଚେହେରା । ଆହାର ବିହାରରେ ବି ରାଜକୀୟ ଠାଣି । ନିଜ ପାଇଁ ଯେପରି ଖର୍ଚ୍ଚ କରୁଥିଲେ ପର ପାଇଁ ବି ଅକାତରେ ପଇସା ବାଣ୍ଟି ଦେଉଥିଲେ । ଆମେ ସବୁଭାଇମାନେ ଜନ୍ମ ନ ହେବା ଆଗରୁ ସେ ଥିଲେ ତିନି ଭାଇଙ୍କର ନୟନ ପିତୁଳା । ସମସ୍ତଙ୍କର ସ୍ନେହ ସୋହାଗର ପାତ୍ର ହେବାରୁ ସେ ଅସ୍ୱସୀ ହୋଇ ଯାଇଥିଲେ । ପରେ ପରେ ଆମେମାନେ ଆସିଲୁ । ତାଙ୍କର ସ୍ନେହ ଶ୍ରଦ୍ଧା ଓ କରୁଣାର ଦ୍ୱାର ଆମ ପାଇଁ ଥିଲା ଉନ୍ମୁକ୍ତ । ଏତେ ମାୟା ମମତା ଦେଇ ଶ୍ରେଷ୍ଠ ଭାଇ ଭଉଣୀଙ୍କୁ ନିଜର କରିବା ମୁଁ ଖୁବ୍ କମ୍ ଦେଖିଛି ।

ବିଧିର ବିଧାନ ଥିଲା କିଛି ଭିନ୍ନ । ଏକ ତୁଚ୍ଛ କାରଣ ଯୋଗୁଁ ସେ ଓ ତାଙ୍କ ସ୍ତ୍ରୀ ଆକସ୍ମିକ ଭାବେ ଆତ୍ମହତ୍ୟା କରି ବସିଲେ । ତାଙ୍କର ଅକାଳ ମୃତ୍ୟୁ ଆମକୁ ଓ ଆମ ପରିବାରକୁ ଅସହାୟ କରିଦେଲା । ଘରର ମଙ୍ଗଳମୟୀ ଚାଲିଗଲା । ଠିକ୍ ତା ପରେ ପରେ ପରିବାର ଭିତରେ ଦେଖା ଦେଲା ବିବାଦ ଓ ବିଦ୍ୱେଷ ।

ଏବେ ବି ତାଙ୍କ କଥା ମନେ ପଡ଼ିଲେ ଆଖିର ଲୁହ ବାଧା ମାନେନା । ଭାବେ ନିଜେ ତ ଗଲେ । ସାଥୀରେ ସ୍ତ୍ରୀକୁ ମଧ୍ୟ ନେଇଗଲେ । ପ୍ରଶ୍ନ ଉଠେ ବିଧାତାର ବିଧାନ କ'ଣ ଏଇଆ ଥିଲା ? ତାଙ୍କ ସ୍ତ୍ରୀ ବଞ୍ଚିଥିଲେ ପରିବାରର ଅବସ୍ଥା ବିକଟ ରୂପ ଧାରଣ କରିଥାଆନ୍ତା । କାରଣ, ସେ ଥିଲେ ବଡ଼ ଭାଇଙ୍କ ଚରିତ୍ରର ଠିକ୍ ଓଲଟା ।

ମୋ ବାପା ତିନିଥର ବିବାହ କରିଛନ୍ତି । ପ୍ରଥମ ସ୍ତ୍ରୀ ସତ୍ୟଭାମା, ଏକମାତ୍ର କନ୍ୟା ସହ ସ୍ୱର୍ଗଗାମିନୀ ହେଲା । ତା ପରେ ତା'ର ସାନ ଭଉଣୀ ଅବଳା (ହେମନ୍ତ କୁମାରୀ)କୁ ବାପା ବିବାହ କଲେ । ଅବଳାର ଗର୍ଭରୁ ବୈଶାଖ ଶୁକ୍ଳ ଦ୍ୱିତୀୟା ଅର୍ଥାତ୍ ୧୯୧୭ ମସିହା ମେ' ୧୪ ତାରିଖରେ ମୋର ଜନ୍ମ । ଖୁବ୍ ଶୀଘ୍ର ଦିନେ ସେ ମୋତେ ଛାଡ଼ି ଆରପୁରକୁ ଚାଲିଗଲା । 'ବୋଉ'ର ମଧୁର ଡାକ ସେ ମୋ ଠାରୁ ଶୁଣିନି କି 'ମା'ର କ୍ଷୀର ମୋ ଅଙ୍ଗକୁ ପୁଷ୍ଟ କରିନି । ମୋର ଜନ୍ମ ପରେ ଭୀଷଣ ରକ୍ତ ଆମାଶୟରେ ଯାଣ୍ଡି ହୋଇ ସେ ମରଣ ପଥର ଯାତ୍ରୀ ହେଲା । ମା' ଛେଉଣ୍ଡ ହୋଇ ଏକାକୀ ରହିଗଲି ଭାଗ୍ୟର ଏକ ନିଷ୍ଠୁର ବିଡ଼ମ୍ବନାରେ ।

ବୋଉର ମୃତ୍ୟୁ ପରେ ପରେ ମୁଁ ମାମୁଁଘରକୁ ଚାଲିଗଲି । ପୁରୀ ଜିଲ୍ଲା ତାଲଦା ମୋ ମାମୁଁ ଘର ଏକ ସମ୍ଭ୍ରାନ୍ତ ପରିବାର ଭାବେ ଗଣ୍ୟ । ମାମୁଁ ଅଜା ବାଞ୍ଛାନିଧି ମହାନ୍ତି ଓ ତାଙ୍କ ଭାଇ ଶିବଚରଣ ମହାନ୍ତିଙ୍କ ନାଁ ଦଶଖଣ୍ଡି ମୌଜାରେ ଡାକ ଥିଲା । ମୋ ବୋଉକୁ ଶିବଚରଣ ତାଙ୍କ ଭାଇ ବାଞ୍ଛାନିଧିଙ୍କଠାରୁ ଝିଅ କରି ଆଣିଥିଲେ । ଅଦ୍ୟାପି ସେ ବଂଶର ବହୁ ଲୋକ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ।

ମୋର ଶୈଶବ ମାମୁଁଘର ମା' କୋଳରେ ହସି ଖେଳି କଟାଇ ଦେଇଛି । ମୋତେ ସେ ଗଣ୍ଠିଧନ କରି ରଖିଥିଲା । ବୋଉର ଦୂର ସମ୍ପର୍କୀୟ ପିଉସୀ ରମା ଅପା ତା'ର ସ୍ନେହ ସୋହାଗ ମୋ ଉପରେ ଅଜାଡ଼ି ଦେଇଛି । ମଣିଷ ସତରେ ସ୍ନେହ କାଙ୍ଗାଳ । ଏଇ ସବୁଥିରେ ବାନ୍ଧି ହୋଇ ମୁଁ ଘର କଥା ଭୁଲିଗଲି । ବାପା ମୋତେ ଆଣିବା ପାଇଁ ଯେତେ ଲୋକ ପଠାଇଲେ କାହାର ସାଙ୍ଗରେ ଆସିଲି ନାହିଁ । ହେଲେ' ସୁରୁଜ ଅପା' ଯେତେବେଳେ ମୋତେ ଆଣିବା ପାଇଁ ଯାଇ ତାଲଦାରେ ପହଞ୍ଚିଲା ସେଠାର ସମସ୍ତଙ୍କ ଆଦର ସୋହାଗକୁ ପଛରେ ପକାଇ ତା'ର କୋଳକୁ ଡେଇଁ ପଡ଼ିଲି ।

ଆମର ଗାଁର ଗୋପାଳ ଘରର ଝିଅ 'ସୁରୁଜଅପା' । ସିବାହ ନ କରି ସାରା ଜୀବନ ବିତାଇ ଦେଲା । ଆମରି ଘରେ ସେତେବେଳେ କାମ ଦାମ କରି ଚଳୁଥାଏ । ଶୁଣିଛି, ମଲାବେଳେ ବୋଉ ତାକୁ କହିଥିଲା—"ସୁରୁଜ ଲୋ ! ମୁଁ ଆଉ ବଞ୍ଚିବି ନାହିଁ । ମୋ 'ବଇ' କୋଡେ ଲାଗିଲା ।" ସତରେ ତା ସ୍ନେହ ଆଦରରେ ମୁଁ ତାକୁ ଆଦରିଗଲି । ମା'କୁ ହରାଇ ମା' ପାଇଛି ବୋଲି ଅନୁଭବ କଲି । ସେ ମୋତେ ସାଙ୍ଗରେ ଶୁଆଏ । ସାଙ୍ଗରେ ଖୁଆଏ । ପିଲାଦିନେ ପିତ୍ତଲା ମାରିବାରୁ ମୁଁ ଥରେ ଅଚେତ ହୋଇଗଲି । ସେହି ଅବସ୍ଥାରେ ମୋତେ କାନ୍ଧରେ ପକାଇ ଖରା ଖରା ଦୌଡ଼ିଲା ପାଞ୍ଚ ମାଇଲ ଦୂର ଚଉବାର ଜପୁଲେଇ ଠାକୁରାଣୀଙ୍କ ପାଖକୁ । ତାଙ୍କରି ପାଦଦୋକ ଓ ସୁରୁଜ ଅପାର ଐକାନ୍ତିକ ସେବା ମୋତେ ବଞ୍ଚାଇ ଦେଲା । ସେ କେଉଁ ଦିନୁ ପର ପାରିକୁ ଚାଲିଗଲାଣି । ହେଲେ ସେହି ସରଳା ନିରୀହା ଗ୍ରାମ୍ୟ ସ୍ତ୍ରୀ ଲୋକଟିର ମାୟା, ମମତା ମୋତେ ଏବେ ବି ମୋହାଚ୍ଛନ୍ନ କରି ରଖିଛି । ଆଜି ଦେଖୁଛି ସେ ଭଳି ମହନୀୟ ଚରିତ୍ର ସବୁ ଦୁଷ୍ପ୍ରାପ୍ୟ ହୋଇ ଯାଉଛନ୍ତି । ପରକୁ ଆପଣାର କରିବା, ଅସହାୟଙ୍କୁ ସହାୟ ହେବା ଭଳି ଗୁଣ କପରି ମନୁଷ୍ୟଠାରୁ ଅପସରି ଯାଉଛି ।

ମୋ ବାପାଙ୍କର ତୃତୀୟ ସ୍ତ୍ରୀ 'ନଣ୍ଡା' ମୋ ସାନଭଉଣୀ ବିନ୍ଦୁର ଜନ୍ମଦାତ୍ରୀ । ସେ ଥିଲେ ଅସାମାନ୍ୟା ସୁନ୍ଦରୀ ଓ କାର୍ଯ୍ୟଦକ୍ଷା । ମୋ ପ୍ରତି ତାର ବାତ୍ସଲ୍ୟ ମମତା ଥିଲା ଅପୂରନ୍ତ । ବିନ୍ଦୁ ଅତି ଶ୍ରେଷ୍ଠ ଥିବାରୁ ବଡ଼ ଘରର ଆଦର-ଯତ୍ନ ସବୁ ପାଇ ମା'ର ବିଚ୍ଛେଦ ଭୁଲିଗଲା । ବିଧାତାର ନିର୍ମମ ପରୀକ୍ଷା କିନ୍ତୁ ଶେଷ ହେଲା ନାହିଁ । ମୋତେ କୋଳରେ ଧରି ଏକ ଗମ୍ଭୀର ବର୍ଷଣ ମୁଖର ରାତ୍ରିରେ ସେ ଆଖି ବୁଜିଲା । ତା ମୃତ୍ୟୁ ନେଇ କିଏ କେତେ କଥା କହିଲା । କିଏ କହିଲା ବିଷ ଖାଇଛି ତ କିଏ କହିଲା ଦଉଡ଼ି ଦେଇଛି । ମୃତ୍ୟୁର ସେ କି ଅସହ୍ୟ ଯନ୍ତ୍ରଣା ! ଅତି ଛଳଛଳରେ ସେ ମରିଛି । ପିଲା ହେଲେ ବି ମୋ'ର ସେ ସବୁ ଝାପ୍‌ସା ମନେ ଅଛି । ବାପା ପାଖରେ ନ ଥାଆନ୍ତି । ତାଙ୍କ ପାଖକୁ ଲୋକ ଗଲେ । ଯେପରି ତା'ର ପ୍ରାଣ ବାପାଙ୍କୁ ଦେଖିବ ବୋଲି ଅପେକ୍ଷା କରିଥିଲା ! ତାଙ୍କୁ ଦେଖିବା ମାତ୍ରେ ସେ ସେଇଠି ଢଳିପଡ଼ିଲା ।

ଏହା ପରେ ଆମ ଦୁଇ ଭାଇଙ୍କ ଲାଳନପାଳନ ଭାର ପଡ଼ିଲା ଆଈ ବୋଉ (ଜେଜେ)ଙ୍କ ଉପରେ । ତାଡ଼ନା ଓ ସୁହାଗ ଉଭୟ ଦେଇ ସେ ଆମକୁ ବଢ଼ାଇଲେ । ବିନ୍ଦୁ ପାଇଁ ସେ ଯାହା କରିଛି, ତାହା ଭୁଲି ହେବ ନାହିଁ । ପିଲାବେଳେ ବିନ୍ଦୁକୁ ହେଲା ଭୀଷଣ ବସନ୍ତ । ଜୀବନ ତାର ହେଲା ସଙ୍କଟାପନ୍ନ । ଦିନ ଦିନ ଧରି ମଣିଷ ଆଉ ଯମ ମଧ୍ୟରେ ଚାଲିଲା ଟଣା ଓଟରା । କିନ୍ତୁ ଆଈ ବୋଉର ଐକାନ୍ତିକ ସେବା ଓ ନିଷ୍ଠା ତାକୁ ମରଣ ମୁହଁରୁ ଫେରାଇ ଆଣିଲା ।

ବଡ଼ ବାପା ଥିଲେ ଖୁବ୍ ଆତ୍ମଅଭିମାନୀ ଓ ଜିଦ୍‌ଖୋର । ନିଜର ଜିଦ୍ ବଜାୟ ରଖିବାକୁ ସେ ପଛେ ନିଃସ୍ୱ ହୋଇଯିବେ, କିନ୍ତୁ ସେଥିରୁ ଟଳିବେ ନାହିଁ । ଓକିଲାତି କରି ବହୁତ ପଇସା କମାଇଛନ୍ତି ଓ ସମ୍ମାନ ପାଇଛନ୍ତି । କିନ୍ତୁ ସ୍ୱଭାବ ପ୍ରତି ନିରପେକ୍ଷ ଥିବାରୁ ନିଜ ପାଇଁ କିମ୍ବା ପରିବାର ପାଇଁ କିଛି କରିପାରି ନାହାନ୍ତି । ୧୯୭୪ ମସିହା ଡିସେମ୍ବରରେ ସେ ତାଙ୍କ ପ୍ରିୟ 'ନେଡି' ଘରେ ଥାଆନ୍ତି । ହଠାତ୍ ଫେରିଆସି ଟଳିପଡ଼ିଲେ । ଦେଢ଼ଦିନ ଭିତରେ ୧୯୭୫ ମସିହାରୁ ଯାଇଥିଲେ । ଆମ ଘରେ ତାଙ୍କର କିଛି ସ୍ୱତନ୍ତ୍ର ସତ୍ତ୍ୱା ନ ଥିଲା । ଯେତେବେଳେ ଯିଏ ତାଙ୍କୁ ପ୍ରଶଂସା କରେ ସେ ତା ଆଡ଼କୁ ଢଳିପଡ଼ନ୍ତି ।

ବାପା ଥିଲେ ଅତି ଶାନ୍ତ, ସରଳ ଓ କାର୍ଯ୍ୟଦକ୍ଷ ଲୋକ । ବାଦ ବିସମ୍ବାଦ ଠାରୁ ସେ ସବୁବେଳେ ଦୂରେଇ ରହୁଥିଲେ । ହସି ହସି ଦୁଃଖ ସହିନେବା ତାଙ୍କ ଜୀବନର ବ୍ରତ ଥିଲା । ତା ନ ହୋଇଥିଲେ ଗୋଟି ଗୋଟି ହୋଇ ତାଙ୍କର ତିନିଟି ସ୍ତ୍ରୀ ଆଗପଛ ହୋଇ ଚାଲିଗଲେ, ସେ କିନ୍ତୁ ନିର୍ବିକାର ଭାବରେ ସେ ସମସ୍ତ ସହି ଯାଇଥିଲେ ଶାନ୍ତ ଗମ୍ଭୀର ଶିବଙ୍କ ଭଳି । ପରିବାର ଚଳାଇବା ଲାଗି ସେ ୩ୟର ଥର ବିବାହ କଲେ ଓ ବୋଉର ଆମେ ଦୁଇଭାଇ ଓ ଆମର ପିଲାମାନେ ହେଲେ ସମ୍ବଳ । ଘରକୁ ସମ୍ଭାଳି ପିଲାମାନଙ୍କୁ ସେ ମଣିଷ କଲା । ତାର ସରଳ ଅକପଟ ବ୍ୟବହାର ଦେଖିଲେ କେହି ମନେ କରିବେ ନାହିଁ ସେ 'ସାବତ ମା' ବୋଲି । ସେ ଖୁବ୍ ଧର୍ମପ୍ରାଣା । ବାର ଓଷା ଓ ତେର ବ୍ରତ କରି, ସବୋପରି ଗାଁ ଦେବତା କାଳିଆ ଠାକୁର ପାଖେ ସକାଳ ସନ୍ଧ୍ୟେ ମୁଣ୍ଡିଆ ମାରି ଆମ ପରିବାରର ଶୁଭ ମନାସି ଚାଲିଛି । ତା'ର ଋଣ ଏ ଜୀବନରେ ଶୁଝିବା ଧୃଷ୍ଟତା । ୧୯୭୧ ମସିହା ଅକ୍ଟୋବର ୧୯ ତାରିଖ ଦିନ ବାପା ଘ. ୨° ମିନିଟରେ ଶେଷ ନିଶ୍ୱାସ ତ୍ୟାଗ କଲେ ମୃତ୍ୟୁ ସହିତ ଯୁଝି ଯୁଝି । ସେଦିନ ଥାଏ ଗିରି ଗୋବର୍ଦ୍ଧନ ପୂଜା । ତାଙ୍କ କାର୍ଯ୍ୟ ସୁରୁଖୁରୁରେ ହୋଇଚାଲି । ଯଦିଓ ମୋ ପାଖରେ ବିଶେଷ ସମ୍ବଳ ନ ଥାଏ, ହଜାର ହଜାର ଟଙ୍କା କୁଆଡ଼ୁ ଆସି କୁଆଡ଼େ ଗଲା ସେକଥା ମୁଁ ଜାଣିପାରିନି ।

ଆଜି ବାପା (ଦାଦା) ଅତ୍ୟନ୍ତ ସ୍ନେହୀ ଥିଲେ । ଅପର୍ଯ୍ୟାପ୍ତ ଅର୍ଥ ଯେପରି ରୋଜଗାର କରିଛନ୍ତି, ଖର୍ଚ୍ଚ କରିଛନ୍ତି ସେହିପରି ମୁକ୍ତ ହସ୍ତରେ । ପରବର୍ତ୍ତୀ ସମୟରେ ତାଙ୍କ ଦୃଷ୍ଟିକୋଣ ଆମମାନଙ୍କ ପ୍ରତି ବଦଳିଲା ୪ର୍ଥ ବାପା ବୋଉଙ୍କୁ ସେ ସେମାନଙ୍କଠାରୁ ପୃଥକ କରିଦେଲେ । ତାଙ୍କ ମୃତ୍ୟୁ ଅତି ଆଶ୍ଚର୍ଯ୍ୟ ଧରଣର । ଗାଧୋଇ ସାରି ଠାକୁର ପୂଜା କରୁ କରୁ ସେ ଟଳି ପଡ଼ିଲେ ।

ସେତେବେଳେ ଆମ ଗାଁ ନିମ୍ନ ପ୍ରାଥମିକ ସ୍କୁଲଟି ୩୭ ଖଣ୍ଡ ଗ୍ରାମରେ ଏକମାତ୍ର ସ୍କୁଲ ଥିଲା । ଅଲାଭଉ, ନବାଙ୍ଗ, ନୂଆ ଗାଁ, ବଡ଼ ଗାଁ ଓ ଈଶ୍ୱରପୁର ପ୍ରଭୃତିରୁ ପିଲା ଆସି ସେଠାରେ ପଢ଼ୁଥାନ୍ତି । କାନଗୋଇ ସାହି ଆଗରେ ସେ ସ୍କୁଲଟି ଥାଏ । ବର୍ତ୍ତମାନ ତାହା ଆମ ଗାଁର ପୂର୍ବପଟକୁ ଉଠି ଯାଇଛି ।

ମୋର ଆଦ୍ୟଗୁରୁ ସ୍ୱର୍ଗୀୟ ପରମାନନ୍ଦ ଷଡ଼ଙ୍ଗୀ । ଗୋଟିଏ ଆଖି ତାଙ୍କର ନଷ୍ଟ ହୋଇ ଯାଇଥାଏ । ଅନ୍ୟ ଆଖିଟିରେ ସେ କାର୍ଯ୍ୟ ଚଳାଉଥିଲେ । ସେତେବେଳେ ଶିକ୍ଷକଙ୍କ ବେତନ ଥାଏ ମାତ୍ର ପାଞ୍ଚଟଙ୍କା । ପରେ ତାହା ବଢ଼ି ସାତ ଟଙ୍କା ପର୍ଯ୍ୟନ୍ତ ହେଲା । ଶିକ୍ଷକଙ୍କ ଖାଦ୍ୟପେୟ ଆମେ ପିଲାମାନେ ପାଳିକରି ଦେଉଥିଲୁ । ଯେଉଁଦିନ ଯିଏ ଭଲ ପାଳି ଆଣେ ସେ ସେଦିନ ମାଷ୍ଟରଙ୍କଠାରୁ ପ୍ରଶଂସା ଶୁଣେ । ଝିଅ ପାଳି ଆଣୁଥିବା ପିଲାର ଭାଗ୍ୟ ଗୌରାଙ୍ଗ ଦାସ ମହାପ୍ରଭୁ (ବେତ) ଉପରେ ଗୁଡ଼ିଏ ବାଧା ଯାଉଥିଲା । ଆମ ଗୁରୁ ଟିକେ ଲୋଭୀ ଥିଲେ । ଯିଏ ତାଙ୍କୁ ଗୋଟିଏ ଦୁଇଟି ପଇସା ସନ୍ଧ୍ୟା ସକାଳେ ଭେଟି ଦେଉଥିଲା, ସେ ତାଙ୍କର ଅତି ପ୍ରିୟ ଛାତ୍ର ହେଉଥିଲା । ତଥାପି ତାଙ୍କର ବିଦ୍ୟାଦାନ ପ୍ରଣାଳୀ ଅତି ଉଚ୍ଚ ଧରଣର ଥିଲା । ତାଙ୍କ ଗୁଣ ମାହା ପିଠିରେ ବାଜିଛି, ସେ ମଣିଷ ହୋଇଛି । ଆଉ ଜଣେ ଶିକ୍ଷକ ଅଳ୍ପଦିନ ଲାଗି ଆସିଥିଲେ. ତାଙ୍କ ନାମ ପରମାନନ୍ଦ ନାୟକ । ସେ ବେଶୀଦିନ ଆମ ଗାଁରେ ରହି ପାରିଲେନି । ପୁଣି ଆସିଲେ ଆମର ପୁରାତନ ଶିକ୍ଷକ । ମାଇନର ସ୍କୁଲକୁ ଯିବା ପର୍ଯ୍ୟନ୍ତ ସେ ଆମର ଶିକ୍ଷକ ଥିଲେ । ଆମେ ନିମ୍ନ ପ୍ରାଥମିକ ସ୍କୁଲରେ ପଢ଼ୁଥିବାବେଳେ ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀ ଥରେ ଆମ ବିଦ୍ୟାଳୟ ପରିଦର୍ଶନରେ ଆସିଥିଲେ । ଫୁଲ୍ ଟିସୁର୍‌ଡ୍ରେସ୍ ଗାଢ଼ ନାଲି ରଙ୍ଗର । ସେତେବେଳେ ସେ କଟକ ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ ଥିଲେ । ଆମ ସ୍କୁଲ ପରିଦର୍ଶନ କରି ସେ ବାଲିସାହି ରାଜୁବାବୁଙ୍କ ଘରକୁ ଗଲେ । ରାଜୁବାବୁ ତାଙ୍କର ନିଜ ଭଣଜା ।

ଆମ ପିଲାଦିନେ ଭୂତ ପ୍ରେତର ଭୀଷଣ ଡର ଥିଲା । ଡେଙ୍ଗାପୋଲ ପାଖରେ ପଠାଣଭୂତ, ଛତା ବେଣ୍ଟ ପୋଲ ପାଖରେ ଘୋଡ଼ା ଭୂତ, କେଉଟି ସଇତାନ ଇତ୍ୟାଦି କହି ପିଲାମାନଙ୍କୁ ଭୟଭୀତ କରି ରଖାଯାଉଥିଲା । ଏହି ପରି ହସ କାନ୍ଦ ମଧ୍ୟ ଦେଇ ଗାଁ ସ୍କୁଲର ପଢ଼ା ସାଙ୍ଗ ହେଲା ।

ସେତେବେଳେ ଶତକଡ଼ା ସାକ୍ଷରତା ହାର ଅତି ଉଚ୍ଚ ଥିଲା । ପ୍ରଥମ ମାଟ୍ରିକ୍ୟୁଲେଟ ବାମନଚରଣ କାନୁନଗୋ ୧୯୦୭ରେ କଲିକତା ବିଶ୍ୱବିଦ୍ୟାଳୟରୁ ପାସ କଲେ । ତା ପରବର୍ଷ ପଣ୍ଡା ସାହେବ ମାଟ୍ରିକ୍ ପାସ କଲେ । ସେତେବେଳେ ଏହି ମାଟ୍ରିକ୍‌କୁ କୁହାଯାଉଥାଏ ଏନଟ୍ରାନ୍‌ସ ।

ବଡ ଭାଇ ଓ ମୁଁ ବାଲକୁଦା ମାଇନର ସ୍କୁଲକୁ ଆସିଲୁ । ସ୍ୱର୍ଗୀୟ ଜମିଦାର ପଣ୍ଡିତ ଦାସ ଏ ସ୍କୁଲଟିକୁ ସ୍ଥାପନ କରିଥିଲେ ୧୮୮୫ ମସିହାରେ । ପରେ ତାଙ୍କର ନାତି ରାଜକିଶୋର ଦାସ ଏହାକୁ ହାଇସ୍କୁଲ କରିବା ଲାଗି ବହୁ ଶ୍ରମ ସ୍ୱୀକାର କରିଛନ୍ତି । ସେତେବେଳେ ଆମ ସ୍କୁଲର ହେଡ୍‌ମାଷ୍ଟର ଥାନ୍ତି ସ୍ୱନାମ-ଧନ୍ୟ ରାଜକିଶୋର କାନୁନ୍‌ଗୋ । ସେ ଥିଲେ ପରମ ବୈଷ୍ଣବ, ଧର୍ମଭୀରୁ ଓ ମିତବ୍ୟୟୀ । ସେ ତନ୍ତବୁଣା ଦେଶୀ ଲୁଗା, ଟସର ବା ରେଶମ୍ କାମିଜ୍ ବ୍ୟବହାର କରୁଥିଲେ । ପିଲାଙ୍କ ଚରିତ୍ର ଗଠନରେ ସେ ଥିଲେ ଅଦ୍ୱିତୀୟ । ପ୍ରତି ଗଣେଶ ପୂଜା ଓ ସରସ୍ୱତୀ ପୂଜାରେ ତାଙ୍କର ଉଦ୍ୟମରେ ଚତୁର୍ଥ ପ୍ରହସନ କିମ୍ବା ଅଷ୍ଟମ ପ୍ରହସନ ହେଉଥିଲା ସ୍କୁଲରେ ।

ତାଙ୍କର ଶୁଦ୍ଧ ପୂତ ଚରିତ୍ର ଛାତ୍ରମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇ-ଥିଲା । ଆମ ଗାଁର ଆନନ୍ଦ ଚନ୍ଦ୍ର ମହାନ୍ତି ଥିଲେ ଥାର୍ଡ଼ ପଣ୍ଡିତ, ଭୋଲାନାଥ ଦାଶ ଥିଲେ ସେକେଣ୍ଡ ପଣ୍ଡିତ, ଗୋପାଳପୁର ଜଗନ୍ନାଥ ଦାସ ଥିଲେ ସହକାରୀ ଶିକ୍ଷକ ଏବଂ ନନ୍ଦକିଶୋର ସେନଗୁପ୍ତ ଥିଲେ ହେଡ୍ ପଣ୍ଡିତ । ସ୍ୱର୍ଗୀୟ ଉତ୍କଳର ପ୍ରାଣକୃଷ୍ଣ ପରିଜା ତାଙ୍କର ଥିଲେ ଅତି ପ୍ରିୟ ଛାତ୍ର । ତାଙ୍କ କାନ ମୋଡ଼ା ଯିଏ ନ ଖାଇଛି ସେ ଆଗେଇ ପାରିନାହିଁ । ଛାତ୍ରମାନଙ୍କୁ ସେ ଅତି ସ୍ନେହରେ 'ମେଣ୍ଢା' ବୋଲି ଡାକୁଥିଲେ । ଖଣ୍ଡେ ଖଣ୍ଡିଆ ପେନ୍‌ସିଲ ଧରି ଛାତ୍ର-ମାନଙ୍କୁ ଛେଚି ଦେଇ ଯାଉଥିଲେ ସତ କିନ୍ତୁ ପିଲାମାନଙ୍କ ପଢ଼ାପଢ଼ି ଉପରେ ସେ ଅଧିକ ଧ୍ୟାନ ଦେଉଥିଲେ । ପ୍ରବଳ ପାନ ଖାଉଥିଲେ । ବତିଶ ଦାନ୍ତ ମଧ୍ୟରୁ ପ୍ରାୟ ଅର୍ଦ୍ଧେକରୁ ବେଶୀ ଦାନ୍ତ ଯାଇଥିଲା । ତେଣୁ ଆମଠୁ ଯେଉଁ ବହି ଖଣ୍ଡିକ ମାଗି ନେଉଥିଲେ ପଢାଇବାକୁ, ସେ ବହି ଆଉ ଅକ୍ଷତ ଅବସ୍ଥାରେ ଫେରୁ ନ ଥିଲା । ପୂରା ପାନ ପିକରେ ପୃଷ୍ଠା ଭରି ଯାଉଥିଲା । ତେଣୁ ପିଲାଏ ସେ ବହି ମାଗିଲାବେଳେ ନାନା ଛଳନା କରୁଥିଲେ । ସ୍ୱର୍ଗୀୟ ଶ୍ରୀଧର ସାହୁ ଓ ପୂର୍ଣ୍ଣଚନ୍ଦ୍ର କାନୁନ୍‌ଗୋ ମଧ୍ୟ ପରେ ବିଦ୍ୟାଳୟରେ ଯୋଗ ଦେଇ ଆମକୁ ପାଠ ପଢ଼ାଇଲେ ।

ସେତେବେଳର ଶିକ୍ଷକମାନଙ୍କର ନୈତିକ ଚରିତ୍ର ଗଠନର ଗୁରୁ ଦାୟିତ୍ୱ ତଥା ଅନ୍ୟ ଦଗରେ ଛାତ୍ରର ଅଶେଷ ଗୁରୁଭକ୍ତି ଶିକ୍ଷାୟତନରେ ଏକ ବିଶେଷ ଶୃଙ୍ଖଳିତ ପରିବେଶ ସୃଷ୍ଟି କରିପାରିଥିଲା । ବିଦ୍ୟାଳୟ ତା ପରିସରରୁ ଭଲ ମଣିଷଟିଏ ଗଢ଼ି ସମାଜକୁ ଦାନ କରୁଥିଲା । ଆଜି ବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି ସହ ଶିକ୍ଷାର ମାନ ମଧ୍ୟ ଉଚ୍ଚ ହୋଇଗଲାଣି । କିନ୍ତୁ ଛାତ୍ରର ଚାରିତ୍ରିକ ମୂଲ୍ୟ-ବୋଧ ପ୍ରତି କାହିଁ ସେପରି ଦୃଷ୍ଟି ଦିଆଯାଉ ନାହିଁ । ପ୍ରଚଳିତ ସମାଜର ଅଧୋଗତି

ପାଇଁ ଏହା ଯେ ମୁଖ୍ୟ କାରଣ ଏକଥା ଉଣାଅଧିକେ ଆମ ଭଳି ବୟସର ଲୋକେ ନିଶ୍ଚୟ ଅନୁଭବ କରିବେ ।

ଆମବେଳେ ଛୁଆଁ ଛୁତର ଭାବ ପ୍ରବଳ ଥିଲା । ହରିଜନ ପିଲାମାନେ ସବର୍ଣ୍ଣ ପିଲାଙ୍କ ଠାରୁ ଦୂରରେ ବସୁଥିଲେ । ଅନେକ ଶିକ୍ଷକ ସେମାନଙ୍କୁ ସ୍ପର୍ଶ କରୁ ନ ଥିଲେ । ଦଣ୍ଡ ଦେବାକୁ ହେଲେ ସେମାନଙ୍କୁ କାନ ଧରି ବସ ଉଠ କରାଉଥିଲେ । ସେତେବେଳେ କୁକୁର ଛୁଇଁବା ଏକ ଧର୍ତ୍ତବ୍ୟ ଅପରାଧ ରୂପେ ଗଣ୍ୟ ହେଉଥିଲା । ଥରେ ମୁଁ କୁକୁରଟିଏ ଛୁଇଁ ନିନିକନି ଆ ଶୀତ ସଞ୍ଜରେ ଯାତଥର ପାଣିରେ ବୁଡ଼ିଛୁ । ଆଜିକାଲି ଆମ ସାହିରେ କୁକୁରଙ୍କ ମେଳା ବସୁଛି । କୁକୁର ପାଳିଟିଛନ୍ତି ବଳେଇ ।

ସେତେବେଳେ ହାଫ୍ ପ୍ୟାଣ୍ଟ କମ୍ବା ସାର୍ଟର ପ୍ରଚଳନ ନ ଥିଲା । ସ୍କୁଲକୁ ଯିବାବେଳେ ଆମକୁ ଗ୍ରେଟ ଲୁଗା, ଫତେଇ ଏବଂ ଚଦର ଯୋଗାଇ ଦିଆ-ଯାଉଥିଲା । ଆମେ ଗାମୁଛା ବଦଳି ସେ ଲୁଗା ପିନ୍ଧି ସ୍କୁଲକୁ ଯାଉଥିଲୁ । ପୁଣି ଫେରି ଗାମୁଛା ପାଲଟି ସେ ଲୁଗା ରଖି ଦେଇ ଅନ୍ୟ ଲୁଗା ପିନ୍ଧୁଥିଲୁ । ରବିବାର ଦିନ ଅର୍ଥାତ୍ ସପ୍ତାହରେ ଥରେ ସେ ଲୁଗା ସଫା ହେଉଥିଲା । ସାତଦିନ କାଳ ନିମାନ୍ୟରେ ତାକୁ ପିନ୍ଧିବା ଫଳରେ ତାହା ଅତ୍ୟନ୍ତ ଦୁର୍ଗନ୍ଧ ହେଉଥିଲା । ସେତେବେଳେ ଲୁଗା ଏତେ ଇସ୍ତ୍ରୀ ହେଉ ନ ଥିଲା । କଦଳୀ ପାଟୁଙ୍ଗା ଖାରରେ ଧୋବଣୀ ସକାଳୁ ନେଇ କାଚି ଶୁଖାଇ ସଞ୍ଜରେ ଦେଉଥିଲା । ଲୁଗା ସଫା ସାବୁନର ପ୍ରାୟ ପ୍ରଚଳନ ନ ଥିଲା ।

ଆଉ ଜଣେ ବୃଦ୍ଧ ଶିକ୍ଷକ ଆମର ଥିଲେ, ତାଙ୍କ ନାମ ତାରାଚାନ୍ଦ ସିଂହ । ନୈତିକ ଚରିତ୍ର ତାଙ୍କର ଆଦୌ ଭଲ ନ ଥିଲା । ପ୍ରାୟ ବର୍ଷେ ପର୍ଯ୍ୟନ୍ତ ସେ ରହି ବିଦାୟ ନେଲେ । ଏହିପରି ଧୀରେ ଧୀରେ ଆମେ ସପ୍ତମ ଶ୍ରେଣୀକୁ ଆସିଲୁ ।

ଆମ ତଳ ଶ୍ରେଣୀରେ ପଢ଼ୁଥାନ୍ତି ଆଜିର ସ୍ୱନାମଧନ୍ୟ ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାସ, ପୋଲିସ ବିଭାଗର ଜଣେ ଅବସରପ୍ରାପ୍ତ କର୍ମକର୍ତ୍ତା ଘନଶ୍ୟାମ ଦାସ ପ୍ରଭୃତି । ପରେ ମାଇନର ସ୍କୁଲ ହାଇସ୍କୁଲରେ ପରିଣତ ହେଲା । ଏହାର ବହୁ ପୁରାତନ ଛାତ୍ର ଆଜି ସ୍ୱ କ୍ଷେତ୍ରରେ ପ୍ରତିଷ୍ଠିତ । ସେ ସମୟର ଏକମାତ୍ର ବିଦ୍ୟାଳୟ ରୂପେ ଉଭା ହୋଇ ଏ ଅଞ୍ଚଳର ଅଜ୍ଞାନ ତମସାକୁ ଆଲୋକବର୍ତ୍ତିକା ସମ ଯେ ଦୂର କରିଥିଲା, ତାର ସେହି ଉଦ୍‌ଭାସିତ ଅମ୍ଳାନ ଜ୍ୟୋତିକୁ ମୁଁ ତାର ପୁରାତନ ଛାତ୍ର ରୂପେ ଅଭୂମି ପ୍ରଣତି ଜଣାଉଛି ।

ପିଲାଦିନରୁ ଗୀତ ଲେଖିବା ଏବଂ ବିଭିନ୍ନ ସ୍ଥାନକୁ ଯାଇ ରାତି ଅନିଦ୍ରା ହୋଇ ଯାତ୍ରା ଦେଖିବା ମୋର ଏକାନ୍ତ ଅଭ୍ୟାସରେ ପଡ଼ିଯାଇଥିଲା ।

ଆମ ଘରପାଖ ଅଳାଭରର ବ୍ରାହ୍ମଣ ଶାସନରେ ଯାହାଙ୍କୁ ସାତସାନ୍ଧ୍ର ଭୂଦ୍ଧନ୍ତ, ସାତଟି ଯାତ୍ରା ଦଳ ଆସି ପ୍ରାୟ ୫ ଦିନ କାଳ ଦୋଳବେଳେ ଯାତ୍ରା କରୁଥିଲେ । ଅଧିକାଂଶ ଯାତ୍ରାଥିଲା ସ୍ୱର୍ଗୀୟ ବୈଷ୍ଣବ ପାଣିଙ୍କ ରଚିତ ଗୀତାଭିନୟ । ମୋର ମନେ ଅଛି ପ୍ରାୟ ସବୁ ଗୀତାଭିନୟ ଗୁଡ଼ିକ ଥିଲା ସଂଗୀତ ବହୁଳ ଓ ପୌରାଣିକ । ଆମ ଗାଁ ରଥଯାତ୍ରା ମଧ୍ୟ ସେଥିଆଡ଼େ ପ୍ରସିଦ୍ଧି ଲାଭ କରିଥିଲା । ତିନିଦିନ ଧରି ବଜାର ବସେ । ନାଟ ତାମସା ଚାଲେ । ବହୁ ଜନଗହଳି ହୁଏ । ଏବେ ବି ତାହା ଚାଲିଛି । ଶଗଡ଼ ଚକ ଧୀରେ ଧୀରେ କାଠ ଚକରେ ରୂପାନ୍ତରିତ ହୋଇଛି । ଆମ ଗାଁରେ ଓ ଈଶ୍ୱରପୁରରେ ମଧ୍ୟ ସେତେବେଳେ ଦୁଇଟି ନାଟଦଳ ଥିଲେ । ସେମାନେ ମଧ୍ୟ ବୈଷ୍ଣବ ପାଣିଙ୍କ ଲେଖା ବହି ଅଭିନୟ କରୁଥିଲେ । ପରେ ପରେ ବାଳକୃଷ୍ଣ ମହାନ୍ତିଙ୍କ ରଚିତ ଗୀତାଭିନୟଗୁଡ଼ିକ ପ୍ରସିଦ୍ଧି ଲାଭ କଲା । ଏଥିରେ ଗୀତ ଓ କଥାଭିନୟ ଥିଲା ସତ କିନ୍ତୁ ବୈଷ୍ଣବପାଣିଙ୍କ ରଚିତ ନାଟକ ଗୁଡ଼ିକ ଅତ୍ୟନ୍ତ ଜନାଦୃତ ହୋଇଥିଲା । ଏସବୁ ଗୀତାଭିନୟରେ ରାଜା, ରାଣୀ ଓ ମନ୍ତ୍ରୀଙ୍କ ପାର୍ଟ ଅପେକ୍ଷା ଦୁଆରି ପାର୍ଟ ଦେଖିବାକୁ ମୋତେ ଖୁବ ଭଲ ଲାଗୁ ଥିଲା । ଆମ ପିଲାବେଳେ ବାଲକ ମଶାଲରେ କନା ଗୁଡ଼େଇ ପିମ୍ପାରୁ ପୁନାଙ୍ଗ ତେଲ ଢ଼ାଳି ଅଭିନେତାଙ୍କ ମୁହଁ ପାଖରେ ଧରୁଥିଲା । ଅଭିନେତା ଯେଉଁ ପଟେ ବୁଲୁ ଥିଲେ, ମଶାଲଧାରୀ ବାଳକ ସେ ବାଟେ ବୁଲୁଥିଲା । ଏକରକମ ସେ ବି ଏକ ଅଭିନେତା ଥିଲା । ଗୋଟିଏ ହାତରେ ମଶାଲ ଅନ୍ୟ ହାତରେ ତେଲ ପିମ୍ପା ଏକ ଦୁରୂହ ବ୍ୟାପାର । ପରେ କାର୍‌ବାଇଟ ଦିଆ ଗ୍ୟାସଷ୍ଟାଣ୍ଡ ହେଲା । ତାପରେ ପେଟ୍ରୋମାକ୍ସ ଆସିଲା । ବର୍ତ୍ତମାନ ବିଜୁଳି ଆଲୁଅ ନ ହେଲେ ଯାତ୍ରା ହେବନି । ଆଗେ ଯାତ୍ରା ଦଳ ୨୫।୩୦ ଟଙ୍କାରେ ରାତିକର ବଇନା ନେଉଥିଲେ । ବର୍ତ୍ତମାନ ତାହା ଦୁଇ ହଜାର ଉପରକୁ ଉଠିଛି । ବର୍ତ୍ତମାନ ଅପେରାରେ ଆଗ କାଳର ମୌଳିକତା ନାହିଁ । କବି ଗୋପାଳ ଦାସ, ବୈଷ୍ଣବପାଣି, ବାଳକୃଷ୍ଣ ମହାନ୍ତି, ରାମଚନ୍ଦ୍ର ସ୍ୱାଇଁ ସେତେବେଳେ ଯେଉଁ ଗୀତାଭିନୟ ମାନ ଲେଖିଥିଲେ, ସେଥିରେ ତାଙ୍କର ନିଜସ୍ୱ ଥିଲା । ବର୍ତ୍ତମାନ ଓଡ଼ିଆ ଅପେରା ପାର୍ଟି ଜନପ୍ରିୟତା ଲାଭ କରି ଯଥେଷ୍ଟ ଅର୍ଥ ଉପାର୍ଜନରେ ସକ୍ଷମ ହୋଇଥିଲେ ମଧ୍ୟ ବଙ୍ଗଳାବହିକୁ ଅନୁବାଦ କରି, ସିନେମାକୁ ଅନ୍ଧ ଅନୁସରଣ କରି ନିଜର ମୌଳିକତା ହରାଇ ବସିଛି । ସେତେବେଳେ ନାଟକ ଦଳର ପଇସା ରୋଜଗାର କରିବାର ଅଭିଳାଷ ସେତେ ନଥିଲା, ଲୋକଙ୍କୁ ଆମୋଦ ଦେବାର ଦାୟିତ୍ୱ ବେଶି ଥିଲା । ବର୍ତ୍ତମାନ ସମସ୍ତ ଅପେରା ବ୍ୟବସାୟିକ ଭିତ୍ତିରେ ଗଢ଼ି କରୁଛି । ଜାଣେନା ଏହାର ଭବିଷ୍ୟତ କେଉଁଠି ? ଖାଲି ପଇସାର ଖେଳ । କଳା ସୃଷ୍ଟିର ଅବକାଶ ନାହିଁ ।

୧୯୩୦ ମସିହା ଭାରତ ଇତିହାସରେ ଏକ ଉଲ୍ଲେଖନୀୟ ବର୍ଷ । ଏହି ବର୍ଷ ଇଂରେଜ ସରକାର ବିରୁଦ୍ଧରେ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ଐତିହାସିକ ଦାଣ୍ଡି ଅଭିଯାନ ଆରମ୍ଭ ହେବା ସଙ୍ଗେ ସଙ୍ଗେ ସାରା ଭାରତବର୍ଷରେ ଏକ ଅପୂର୍ବ ଜନ ଜାଗରଣ ଦେଖା ଦେଲା । ବର୍ଷ ବର୍ଷ ଧରି ପରାଧୀନତାର ଶୃଙ୍ଖଳରେ ବାନ୍ଧି ହୋଇଥିବା ଏ ଜାତି ଚେଇଁ ଉଠିଲା ନବ ଉନ୍ମାଦନାରେ, ନବୀନ ପ୍ରେରଣାରେ । ବିଲାତି ଲୁଗା ବର୍ଜନ ହେଲା । ମଦ, ଗଞ୍ଜେଇ, ଅଫିମ ଦୋକାନ ଆଗରେ ଦଳ ଦଳ ହୋଇ ଶ୍ରେଷ୍ଠ ପିଲାମାନେ ପିକେଟିଂ ଆରମ୍ଭ କଲେ । ଦେଶସାରା ଆଲୋଡ଼ନ ସୃଷ୍ଟି ହେଲା । ପୋଲିସର ଅତ୍ୟାଚାର, ଅନାଚାର, ବ୍ୟଭିଚାର ଦିନକୁ ଦିନ ଅତି ନଗ୍ନ ରୂପ ଧାରଣ କଲା । ଛାତ୍ରମାନେ ସ୍କୁଲ, କଲେଜ ଛାଡ଼ିଲେ । କର୍ମଚାରୀମାନେ ଅଫିସ ବର୍ଜନ କଲେ । ଧନୀମାନେ ନିଜର ବିଳାସବ୍ୟସନ ତେଜି ରାଜପଥରେ ଆସି ଉଭା ହେଲେ । ଦରିଦ୍ର, ଚାଷୀ, ମୂଲିଆ ଓ ଝଟିଝିଆ ସେମାନଙ୍କ କ୍ଷେତ, ଖମାର, କାରଖାନା, କୁଡ଼ିଆ ଓ ପରିବାରର ମାୟା ମମତାଧିକୁ ପଛକୁ ପକାଇ ଜାତିର ଏ ମହାନ ଯଜ୍ଞରେ ପୁରୋଧା ହେଲେ । ନାରୀମାନଙ୍କ ମଧ୍ୟରେ ଏ ଆଲୋଡ଼ନ ଅଭୁତପୂର୍ବ ରୂପ ନେଲା । ସତ୍ୟାଗ୍ରହ ଦିନକୁ ଦିନ ପ୍ରବଳରୁ ପ୍ରବଳତର ହେଲା । ମୋ ଥାନା ବାଲିକୁଦା ସେଥିରୁ ବାଦ୍ ଯାଆନ୍ତା ବା କିପରି ? ପୂର୍ବରୁ ଏକ ଲବଣ ସତ୍ୟାଗ୍ରହୀ ଦଳ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଅଭିମୁଖେ ଚାଲିଥାନ୍ତି । ସେତେବେଳେ ଶ୍ରୀମତୀ ମାଳତୀ ଦେବୀ (ଚୌଧୁରୀ)ଙ୍କ ନେତୃତ୍ୱରେ ଲୁଣମରା ଚାଲିଥାଏ, କୁଜଙ୍ଗ ଲୁଣ ଚଟାଣରେ । ପୁରୀ ଜିଲ୍ଲାର ଏହି ସତ୍ୟାଗ୍ରହୀମାନଙ୍କ ଉଦ୍ଦେଶ୍ୟରେ ବାଲିସାହି ପତିତପାବନ ମନ୍ଦିର ପ୍ରାଙ୍ଗଣରେ ଏକ ସମ୍ବର୍ଦ୍ଧନା ସଭା ହେଲା । ସତ୍ୟାଗ୍ରହୀମାନେ ଶୁଭ୍ର ଖଦଡ଼ଧୋତି ପିନ୍ଧିଥିଲେ । ଖଣ୍ଡେ ଶୁଭ୍ର ଚଦର ଅଙ୍ଗାଭରଣ ରୂପେ ବ୍ୟବହାର କରୁଥିଲେ । ମୁଣ୍ଡରେ ଧଳା ଗାନ୍ଧୀ ଟୋପି, କାନ୍ଧରେ ଖଣ୍ଡିଏ ଖଦଡ଼ ଝୁଲା । ସେଥିରେ ଆବଶ୍ୟକୀୟ ଜିନିଷପତ୍ର ଥାଏ । ତେଲ ଲଗାଇବେ ନାହିଁ । ମସଲା ଖାଇବେ ନାହିଁ । ମାଛ ମାଂସ ଭକ୍ଷଣ ନିଷିଦ୍ଧ । ଅତି ସରଳ ନିରାଡ଼ମ୍ବର ଜୀବନ । ମୁଁ ସେ ସଭାରେ ଉପସ୍ଥିତ ଥିଲି । ସେମାନଙ୍କ ଭାଷଣ ଶୁଣି, ସେମାନଙ୍କ ମଧୁର ବ୍ୟବହାର ଦେଖି ମୁଁ ମୁଗ୍ଧ ହେଲି । ମୋର ବୟସ ସେତେବେଳେ ତେର ବର୍ଷ । ବିଚାର କରିବାର ଶକ୍ତି ମୋର ନ ଥାଏ । କିନ୍ତୁ ମନ କେଜାଣି ଏକ ଅଜଣା ଶିହରଣରେ ଉଲ୍ଲସିତ ହେଉଥାଏ । ଭାବୁଥାଏ ଆମଭଳି ପିଲାମାନଙ୍କର କ'ଣ ଦେଶ ପାଇଁ କିଛି କର୍ତ୍ତବ୍ୟ ନାହିଁ ? ଆମେ କ'ଣ ଗାନ୍ଧିଜୀଙ୍କର ପବିତ୍ର ଆହ୍ୱାନରେ ଜବାବ୍ ଦେଇ ପାରିବୁ ନାହିଁ ? କିନ୍ତୁ ଭାବିଲେ କ'ଣ ହେବ ?

ଆମର ଶିକ୍ଷା ଓ ପାରିପାର୍ଶ୍ୱିକ ଅବସ୍ଥା ସେତେବେଳେ ଏତେ ଉନ୍ନତ ନ ଥିଲା କିମ୍ବା କିଛି ଗ୍ରହଣ କରି ସିଦ୍ଧାନ୍ତରେ ପହଞ୍ଚିବାର ବୟସ ମଧ୍ୟ ଆସି ନ ଥିଲା ।

ସତ୍ୟାଗ୍ରହୀମାନେ ତହିଁ ଆରଦିନ ସକାଳେ ବିଦାୟ ନେଲେ । କିନ୍ତୁ ତାର ସ୍ମୃତି ମୋ ପ୍ରାଣରେ ଚିର ଜାଗରଣ ସୃଷ୍ଟି କଲା । ସେହିଦିନଠାରୁ ମୋ ଜୀବନର ଗତି ଅନ୍ୟ ପଥରେ ରୂପ ନେଲା । ମନ ମଧ୍ୟରେ ଧୀରେ ଧୀରେ ଦେଶପ୍ରେମର ଝରଣାଟି ଝର ଝର ହୋଇ ଝରିବାକୁ ଲାଗିଲା । ଜାଣେନି କେତେବେଳେ ସେ ନଦୀ ରୂପ ନେଇ ସାଗର ବକ୍ଷରେ ଲମ୍ଫ ଦେଲା, ଏକ ମହାମିଳନ ଆଶାରେ ।

ବଳାତ ଦଳ ସେତେବେଳେ ଗାଁ ଗହଳରେ ପୋଖରୀ, ଗଡ଼ିଆ ନଈ ନାଳ ମାନଙ୍କରେ ମାଡ଼ି ଯାଇଥାଏ । ଫଳରେ ମଶା ଜନ୍ମି ମେଲେରିଆ ଜ୍ୱର ଘରେ ଘରେ ବ୍ୟାପୁଥାଏ । ମୁଁ ମଧ୍ୟ ଅନେକ ଦିନ ତା'ର ଶିକାର ହୋଇଥିଲି । ବହୁ କଷ୍ଟରେ କୁଇନାଇନ୍ ମିକ୍‌ଚର ପିଇ ପିଇ ଆରୋଗ୍ୟ ହେଲି । ମୃତ୍ୟୁ ସଂଖ୍ୟା ବଢ଼ିବାର ଦେଖି ସରକାର ଏ ସବୁର ପ୍ରତିକାର ପାଇଁ ମାଧବ ମିଶ୍ର ଡେପୋଟିଙ୍କୁ ନିଯୁକ୍ତ କଲେ । ସେ ଆଜି ସ୍ୱର୍ଗରେ । କିନ୍ତୁ ସେ ଆମ ପାଇଁ ଯାହା କିଛି କରି ଯାଇଛନ୍ତି, ତାହା ଭୁଲିବାର ନୁହେଁ । ସେ ଗାଁ ଗାଁ ବୁଲି ଜମିଦାରଙ୍କ ଉପରେ ମକଦ୍ଦମା ଓ ଜରିମାନା କରି ଏବଂ ଜେଲର ଭୟ ଦେଖାଇ ବଳାତ ଦଳ ନିଷ୍କାସନ କରିଥିଲେ । ଫଳରେ ଲୋକ ଟିକିଏ ଆଶ୍ୱସ୍ତିରେ ନିଶ୍ୱାସ ମାରିଲେ । ସେହି ମାଧବମିଶ୍ରଙ୍କ ଉପରେ କଟକ ଜିଲ୍ଲାର ସତ୍ୟାଗ୍ରହ ଆନ୍ଦୋଳନ ଦବାଇବାର ଭାର ପଡ଼ିଲା । ସେ ଚୌକିଦାର, ଦଫାଦାର, ୟୁନିୟନ୍‌ର ପ୍ରେସିଡେଣ୍ଟ ଓ ଗ୍ରାମର ମୁଖିଆ ଏବଂ ଜମିଦାରମାନଙ୍କୁ କଂଗ୍ରେସଦଳ ତଥା ଦଳର ନେତୃବୃନ୍ଦଙ୍କ ବିରୁଦ୍ଧରେ ବହୁତ କୁତ୍ସିତ ବାଣୀ ଶୁଣାଇଲେ । ସେମାନଙ୍କର ତଥା ଦଳର ସୁଗୁଣ ଓ ତ୍ୟାଗ କୁହୁଡ଼ି ପାଙ୍ଗରେ ମିଳାଇଗଲା । ଏମିତିକି ଗୁଡ଼ାଏ ମନଗଢ଼ା କଥା କହି ତାଙ୍କର ଦୁର୍ଗୁଣ ଗାଇ ବୁଲିଲେ । ଯେଉଁଠାରେ କଂଗ୍ରେସ ସଭା ହେଲା, ସେ ତାକୁ ଭଣ୍ଡୁର କରିବାକୁ ଚେଷ୍ଟା କଲେ । କଂଗ୍ରେସ ସଭା ସ୍ଥାନରୁ କିଛି ଦୂରରେ ଗୋଟିପୁଅ ନାଚ ଆରମ୍ଭ କରି ଦିଆଗଲା । କଂଗ୍ରେସ ଗୀତର Parody କରି ଗୁରିଆଡ଼େ ନାଚ-ବାଲଙ୍କୁ ଶିଖାଇ ଗାଇ ବୁଲିଲେ । ଗୋଟିଏ ଗୀତର ଦୁଇପଦ ମୁଁ ଲେଖୁଛି—

ଲୁଣ ମାରିବାକୁ ଗ୍ଲଲ ଭାଇ
ମହାତ୍ମା ଆଦେଶ ପାଳ ହୋ······
ଆମ ଘର ପାଶେ ବେଢ଼ିଛି ସାଗର,
ଲୁଣ ମୁଠେ ପାଇଁ ନାହିଁ ଅଧିକାର ।
ଏ ଅନ୍ୟାୟ, ଏ ଅନୀତି କୁହନ୍ତିକି ସହିଥିବା କେତେ କାଳ ହୋ···

ପାରେଶ୍ଭ—

ଲୁଣ ମାରିବାକୁ ଚାଲ,
ଯେବେ ପିଠି ହୁଏ ଗଲଗଲ ହୋ......
ଛେଚ୍ଚା ଖାଇ ତୁମେ ଜେଲଖାନା ଯିବ,
କଣ୍ଡା ପିଟି, ଘଣା ଠେଲିଣ ମରିବ ।
ତୁମ ପିଠିରୁ ଉଠିବ ଗୁଲ ହୋ......

କିନ୍ତୁ ଏହା ସତ୍ତ୍ୱେ ବି ଆନ୍ଦୋଳନ ପ୍ରବଳରୁ ପ୍ରବଳତର ହୋଇଯାଉଥିଲା । ଥରେ ରମାଦେବୀ ବାଲିସାହି ଦୋଳ ମଣ୍ଡପରେ ସଭା କଲେ । ଖଦୀ ବିକ୍ରୀ ଚାଲିଥାଏ । ଗାଁ ଗାଁରୁ ଦ୍ରବ୍ୟ ଆକାରରେ ବହୁତ ଚାନ୍ଦା ଆଦାୟ ହେଉଥାଏ । ବୋହୂ ଝିଅମାନେ ଅତି ସତର୍କରେ ନିଜ ନିଜର ଅଳଙ୍କାରମାନ ଖୋଲି ରମାଦେବୀଙ୍କୁ ଦେଉଥାନ୍ତି । ଜାତୀୟ ସଙ୍ଗୀତରେ ତାନରେ ଗଗନ ପବନ ମୁଖରିତ ହୋଇ ଉଠୁଥାଏ । ମାଧବ ମିଶ୍ରଙ୍କର ଶତ ଉଦ୍ୟମ ସତ୍ତ୍ୱେ ସେଦିନ ଯେଉଁ ସଭା ବାଲିକୁଦାରେ ହୋଇଥିଲା, ତାହା ଭୁଲିବାର ନୁହେଁ । ଜଣେ ହାକିମର ସ୍ତ୍ରୀ ତଥା ବଡ଼ ଘରର ବୋହୂ, ନିଜର ସବୁକିଛୁ ତ୍ୟାଗ କରି ଘରେ ଘରେ ବୁଲି ଲୋକମାନଙ୍କୁ କିଛି ଶୁଣାଇବାକୁ ଆସିଛି । ତେଣୁ ହଜାର ହଜାର ଲୋକ ଆସି ସଭାସ୍ଥଳରେ ଜୁଟି ହେଲେ । ରମାଦେବୀଙ୍କର ସେଦିନ କଥା ଯିଏ ଶୁଣିଛି, ସେ ଆତ୍ମହରା ହୋଇ ଯାଇଛି । ଘରଦ୍ୱାର, ଆତ୍ମୀୟସ୍ୱଜନ ତାଙ୍କୁ ତୁଚ୍ଛ ଲାଗିଛି । ମୋତେ ମଧ୍ୟ ତାହା ବିହ୍ୱଳ କରିଥିଲା ।

ତହିଁ ଆରଦିନ ପୋଥିରେ ଡୋରି ବନ୍ଧା ହେଲା । ହେଡମାଷ୍ଟରଙ୍କ ତାଡ଼ନା, ବେତମାଡ଼, ଗଧଟୋପି, ମୁରବୀମାନଙ୍କର ଶାସନ ଓ ପରିବାରର ସ୍ନେହ ମମତା ମୋତେ ବାନ୍ଧିରଖି ପାରି ନ ଥିଲା । ଆଗରୁ କେବେ କଟକ ଦେଖି ନ ଥିଲି । ଦିନେ ସାହସ ବାନ୍ଧି ରେଳ ଉପରେ ଚାଲି ଚାଲି ଜଗତ୍‌ସିଂହପୁରର ଅଳକାଶ୍ରମରେ ପହଞ୍ଚିଲି । ବିଶ୍ୱନାଥ ପଣ୍ଡା ଅତି ଆନନ୍ଦ ସହକାରେ ସେଠାରେ ସ୍ଥାନ ଦେଲେ । ସାତ ଆଠ ଦିନ ରହିବାପରେ 'ମାଲତୀ ଦେବୀ' ଆସିଲେ । ମୋତେ ନେଇ କଟକ ଚାଲିଗଲେ । ମୁଁ ସ୍ୱରାଜ ଆଶ୍ରମରେ ଆସି ରହିଲି । ସେତେବେଳେ ସ୍ୱର୍ଗୀୟ ନୀଳମଣି ପ୍ରଧାନ ଆଶ୍ରମର ପରିଚାଳକ ରୂପେ ଥା'ନ୍ତି ଏବଂ ସ୍ୱର୍ଗୀୟ ଗୋଲକ ମହାରଣା ଖାଇବା ଖବର ବୁଝୁଥାନ୍ତି । ଦଳ ଦଳ କରି ସତ୍ୟାଗ୍ରହୀ ଆସି ଦିନେ ଓଳିଏ ରହି ବିଭିନ୍ନ ଲୁଣ ଚଟାଣକୁ ଲୁଣ ମାରିବାକୁ ଚାଲି ଯାଉଥାନ୍ତି ।

ମୋଭଲ୍ଲା ଆବ୍ଦୁଲ ଅନେକ ପିଲା ଆଶ୍ରମରେ ଥାନ୍ତି । ସେମାନଙ୍କୁ ବାନର-ସେନା ଆଖ୍ୟା ଦିଆଯାଇଥାଏ । ଖଦଡ଼ର ନାଲି ହାଫ୍ ପ୍ୟାଣ୍ଟ, ହାଫ୍‌ସାର୍ଟ ଓ ଧଳା ଗାନ୍ଧି ଟୋପି ଥାଏ ଆମର ପରିଧେୟ । ମଦ, ଗଞ୍ଜେଇ, ଅଫିମ ଏବଂ ବିଳାତି ଲୁଗା ଦୋକାନରେ ଆମେ ପିକେଟିଂ କରୁଥିଲୁ । ସୁଧୀର ଘୋଷ ପିକେଟିଂ ପରିଚାଳନା ଦାୟିତ୍ୱ ନେଇଥାନ୍ତି । ଶ୍ରୀ ଗୋପୀନାଥ ରଥ ପ୍ରତିଦିନ ସକାଳେ ଆସି କପରି ଶାନ୍ତ ଶିଷ୍ଟ ଭାବେ ପିକେଟିଂ କରିବ, ବୁଝାଉଥିଲେ । ମଦ ଦୋକାନ ଆଗରେ ପ୍ରଥମେ ପିକେଟିଂ ଆରମ୍ଭ ହେଲା । ମଦ ଖାଇବାକୁ ଆସୁଥିବା ଲୋକମାନଙ୍କୁ ଆମେ ହାତ ଯୋଡ଼ୁ । ଖୋସାମତ କରୁ । ଅନୁରୋଧ ଜଣାଉ । ନାନା କାକୁତି ମିନତି ହେଉ । ନ ମାନିଲେ ଗୋଡ଼ ଧରି ଗଡ଼ିଯାଉ । କେହି କେହି ଆମ କଥା ମାନି ଫେରିଯା'ନ୍ତି । କେହି କେହି ଆମକୁ ଠେଲି ପେଲି ଦୋକାନ ଭିତରକୁ ପଶି ଯାଆନ୍ତି । ଅତି ଚୁଣ୍ଡା ପ୍ରକୃତିର ଲୋକେ ଆମ ଗ୍ରୀତ ଉପରେ ଚଢ଼ି ଯାଉଥିଲେ । ତେବେ ବେଶୀ ଲୋକ ଆମ ଆଗକୁ ନ ଆସି ଦୋକାନ ପଛପଟେ ଖାଉଥିଲେ । ପୋଲିସ୍ ମାଡ଼ ଦେଇ ଆମକୁ ଗିରଫ କରି ନେଉଥିଲେ । ବ୍ଲକ ବ୍ଲକ ଯିବ୍ରୁ ନାହିଁ ବୋଲି କହିବାରୁ ପୋଲିସ୍ ଓଟରି କରୁଥିଲେ । ଶେଷରେ ଘୋଡ଼ାଗାଡ଼ିରେ ବସାଇ ଥାନାକୁ ନେଇ ଯାଉଥିଲେ । ରାତିଟି ଥାନାରେ ରହି ତହିଁ ଆର ଦିନ ଦଶଟାରେ ହାକିମଙ୍କ ଇଜ୍‌ଲାସ୍‌ରେ ହାଜର ହେଉଥିଲୁ । ସେତେବେଳେ ବେଲ୍‌ଗ୍ରାମ୍ ଓ ଆହ୍ମେଦ୍ ସାହେବ୍ ଆମ ମକଦ୍ଦମା ବୁଝୁଥିଲେ । ବେଲଗ୍ରାମ୍ ଟିକିଏ ଦୟାଳୁ । କିନ୍ତୁ ଆହ୍ମେଦ୍ ସାହେବ ଅତି ନିଷ୍ଠୁର । ଆମ ଗ୍ଲେଟ ଗ୍ଲେଟ କଅଁଳ ହାତରେ ପନ୍ଦର ଠାରୁ ପଚିଶି ବେତ ପିଟିବାକୁ ତା'ର ଚପରାସି କବିର ମିଆଁକୁ ଆଦେଶ ଦେଉଥିଲା । କବିର ମିଆଁ ଖୁବ୍ ଜୋର୍‌ରେ ପିଟୁଥିଲା । ଚୋଲା ଫାଟି ଯାଉଥିଲା । କିନ୍ତୁ କେଜାଣି କାହିଁକି କି ଏକ ଉନ୍ମାଦନା ଆମକୁ ମନ୍ତ୍ର ମୁଗ୍ଧ କରି ଦେଉଥିଲା । ଆମେ କାନ୍ତକବି ବୀରକିଶୋରଙ୍କ ରଚିତ ଗୀତ ସେହି ମିସିଲରେ ଗାଉଥିଲୁ ।

'ତୁମେ ମାର କେତେ ବେତ ମାରିବ,
ଦେଶ ଲାଗି ଆମେ ଜୀବନ ଦେଇଛୁ,
ତୁମେ କି ଆମକୁ ପାରିବ ?

ଆମେ ଡରୁ ନାହୁଁ ଘୋର ମରଣେ,
ମନ ରଖିଅଛୁ ବନ୍ଧୁ ଚରଣେ
ତୁମ ଆମ କଥା ତାଙ୍କ ମିସିଲରେ
ଦିନେଟି ବିଚାର ପଡ଼ିବ ।

ପରେ ଅବଶ୍ୟ କଷ୍ଟ ହୁଏ । କିନ୍ତୁ ସେତେବେଳେ ମାଡ଼ର ଯନ୍ତ୍ରଣା ବାଧେ ନାହିଁ । ମାଡ଼ ପରେ କଟକ ସହର ବାସୀଙ୍କର କି ଅସୀମ ଶ୍ରଦ୍ଧା ଆମ ପ୍ରତି ! କିଏ ଫଳ ଖୁଆଉଥିଲେ ତ କିଏ ରସଗୋଲା ଖୁଆଉଥିଲେ । କିଏ ଆଦରରେ ଘରକୁ ଡାକିନେଇ ନାନା ଖାଦ୍ୟ ଦ୍ରବ୍ୟ ପରଷୁଥିଲେ ।

ପୂଜ୍ୟା ରମାଦେବୀ ତାଙ୍କ ମମତା ଭରା ହାତରେ ଆମକୁ ଆଉଁସି ଦେଉଥିଲେ । ସାନ୍ତ୍ୱନା ଦେଉଥିଲେ । ତାଙ୍କର ଆଶୀର୍ବାଦ ଆମ ଶିରରେ ଢାଳୁଥିଲେ । ଦୁଇ ଦିନ ବିଶ୍ରାମ ନେଇ ପୁଣି ବାହାରି ପଡ଼ୁଥିଲୁ । ପୁଣି ପିକେଟିଂ, ପୁଣି ବେତମାଡ଼ ।

ସେତେବେଳେ କବି ବୀର କିଶୋର ଦାସ, କବି ବାଞ୍ଛାନିଧି ମହାନ୍ତି ଓ ରଘୁନାଥ ମହାନ୍ତିଙ୍କର ରଚିତ ଜାତୀୟ ସଙ୍ଗୀତ ପ୍ରତି ପୁର ପଲ୍ଲୀରେ ଅପୂର୍ବ ପ୍ରେରଣା ଆଣି ଦେଇଥିଲା । ଲୋକଙ୍କ ତୁଣ୍ଡେ ତୁଣ୍ଡେ ଜାତୀୟ ସଙ୍ଗୀତ, ହାତେ ହାତେ ଝଣ୍ଡିଏ ତାକୁଡ଼ି, ଯେଉଁଠି ଦେଖିବ, ସେଠି ଖାଲି ସୂତାକାଟି ଚାଲିଥାଏ । ଅରଟର ପ୍ରଚଳନ ଓ ପ୍ରସାର ସର୍ବତ୍ର ।

ମୁଁ ଏଠରୁ କହୁଛି ମାଧବ ମିଶ୍ରଙ୍କ କଥା । ସେହି ମାଧବ ମିଶ୍ର ଡେପୋଟି କୁଜଙ୍ଗ ଯାଉଥିଲେ ଲୁଣମରରେ ଯୋଗ ଦେଇଥିବା ସତ୍ୟାଗ୍ରହୀମାନଙ୍କୁ ଜବତ୍ କରିବାକୁ । ମାଳତୀ ଦେବୀଙ୍କର ନିର୍ଦ୍ଦେଶରେ କୁଜଙ୍ଗ ଅଞ୍ଚଳ କମ୍ପୁଥାଏ । ସବୁଆଡ଼େ ଅପୂର୍ବ ଜନଜାଗରଣ । ତାଙ୍କୁ ସାହାଯ୍ୟ କରୁଥାନ୍ତି ଯଥାକ୍ରମେ (ନାରାୟଣ ବୀରବର ସାମନ୍ତ) ଓ ତାଙ୍କ ସ୍ତ୍ରୀ ଚନ୍ଦ୍ରମାଳୀ ଜେମା, ଦୁର୍ଯୋଧନ ପଟ୍ଟନାୟକ (ମାଟ୍ରେ), ବାବାଜୀ ଶ୍ୟାମସେନ ଦାସ, ଭ୍ରମର ଓ ଅନ୍ୟମାନେ । ମାଧବ ମିଶ୍ର ମୁହଁରେ ଭାରି କଡ଼ା କିନ୍ତୁ ତାଙ୍କ ହୃଦୟଟି କୋମଳ । ସାଙ୍ଗରେ ଦୁଇ ସ୍ୱରଟା କନେଷ୍ଟବଲ୍, ୭।୮ ଜଣ ଚୌକିଦାର, ୨।୩ ଜଣ ଦଫାଦାର । ଗୋଟାଏ ହୁନ୍ଦା ଘୋଡ଼ା ଥାଏ । ତା ଆଗରେ ନ ଦୌଡ଼ିଲେ, ସେ ଯିବନି । ତେଣୁ ପାଞ୍ଚ ଛଅ ଚୌକିଦାର, ଦଫାଦାର ଓ କନେଷ୍ଟବଲ ଘୋଡ଼ା ଆଗରେ ଦୌଡ଼ିବେ । ତେବେ ଯାଇ ମାଧବ ମିଶ୍ର ଘୋଡ଼ାରେ ବସିବେ ।

ଥରେ ଗୋଟିଏ ଛୋଟିଆ ନଈ ପଡ଼ିଲା । ମାଧବ ମିଶ୍ର ଲମ୍ବକାଛ ହୋଇ ଚଢ଼ିଥାନ୍ତି । ଚୌକିଆ, ଦଫାଦାରମାନେ ଡାହେଇ ନଈ ପାର କରୁଥାନ୍ତି । ନବକିଶୋର ପଟ୍ଟନାୟକ ଅଢ଼ ଆର ପାରିକୁ ଚାଲିଲେଣି । ସେ ଗୋଟିଏ କ୍ୟାମେରା ଧରି ବୁଲୁଥାନ୍ତି । ଲୁଣମରା ପୋଲିସ୍ ଜୁଲୁମର ଛବି ନେଉଥାନ୍ତି । ମାଧବ ମିଶ୍ରଙ୍କ

'ଲମ୍ବକାଳ ଫଟୋ ନେଲେ । ମାଧବ ମିଶ୍ର ନଈ ପାଣି ହୋଇ ଦେଖିଲେ ତାଙ୍କ ଫଟୋ କଣେ ନେଉଛି । ପ୍ରତି କଥାରେ ସେ କହୁଥିଲେ 'ଶଳା' । "ଅବେ ଶଳା-ମାନେ । ସେ ଟୋକାକୁ ଧର । ସେ ଶଳାକୁ ଗିରଫ କର । ତା ଯାଇକେଲ ଛଡ଼ାଇ ଆଣ ।" ଚୌକିଆ, ଦଫାଦାର ଓ କନେଷ୍ଟବଲଙ୍କୁ ନିର୍ଦ୍ଦେଶ ଦେଲେ । ସମସ୍ତେ ଦୌଡ଼ିଲେ । ନବ ଭାଇ ମଧ୍ୟ ଦୌଡ଼ିଲେ । ଦେଖିଲେ ଆଗରେ ଗୋଟିଏ ପାଣି ନାଳ । ତେଣୁ ସେ ଅନ୍ୟ ଉପାୟ ନ ଦେଖି ଗୋଟିଏ ମାଟି କୁଦ ଉପରେ ଚଢ଼ିଗଲେ । ଚୌକିଆ, ଦଫାଦାରମାନେ ଧୀରେ ଧୀରେ ଉପରକୁ ଉଠିଲେ । ନବଭାଇଙ୍କ ପାଖରେ କ୍ୟାମେରା ଷ୍ଟାଣ୍ଡ ଥିଲା । ପୂର୍ବେ ସେହିଭଳି କ୍ୟାମେରା ବୋଧ-ହୁଏ ବ୍ୟବହୃତ ହେଉଥିଲା । ଚୌକିଆମାନେ ଆଗରେ, ଦଫାଦାରମାନେ ମଝିରେ ଏବଂ ସବା ପଛରେ କନେଷ୍ଟବଲ୍‌ମାନେ ଥା'ନ୍ତି । ସେମାନେ ଟିକିଏ ଦୂରରେ ଥିଲେ । ନବଭାଇ ଖୁବ୍ ବଡ଼ ପାଟି କରି କହିଲେ—"ତୁମେମାନେ ଭାବିଛ ମୁଁ ସେମିତି ବୁଲୁଛି ? ମୋ ପାଖରେ ବିଜୁଳିଆ ବନ୍ଧୁକ ଅଛି । ମୋ ପାଖକୁ ଆସିଲେ ଗୋଟି ଗୋଟି କରି ସମସ୍ତଙ୍କୁ ଗୁଳି ଲଚ୍ଛ ଦେବ ।" 'ଗୁଳି ଲଚ୍ଛ ଦେବ' ଏ କଥା ଶୁଣି ସେମାନେ ଆଉ ଆଗକୁ ବଢ଼ିଲେ ନାହିଁ । ମାଧ ମିଶ୍ରେ ହସ୍ତାନ୍ତିତ କରି କହୁଥାନ୍ତି—"ଆରେ ହେଇଟା ଡମା, ମିଛ କହୁଚି, କ'ଣ ଶୁଣୁଛ ତା କଥା ? ଧର ସେ ଶଳାକୁ । ଯେଉଁ ଶଳା ଧରି ନ ପାରିବ, ତା ଚାକିରି ଖାଇବି ।" ଚାକିରି ଯିବା ଭୟରେ ସେମାନେ ଉପରକୁ ଉଠିଲେ । ଯେମିତି ପାଖକୁ ଲାଗି ଯାଇଛନ୍ତି, ନବଭାଇ ଷ୍ଟାଣ୍ଡ ବିଜଟାକୁ ଏକାବେଳକେ ଟାଣି ଦେଇ କହିଲେ ଚଳିଲା ଗୁଳି । ଖଟ୍‌-ଖଟ୍‌-ଖଟ୍‌ ହୋଇ ତିନିଟା ଯାକ ଷ୍ଟାଣ୍ଡ ଲମ୍ବିଗଲା । ଆଗରୁ ଏମାନେ ଏପରି ଜିନିଷ ଦେଖି ନ ଥିଲେ । ଗ୍ରେଟିଆ ଷ୍ଟାଣ୍ଡଟା ଲମ୍ବି ଯିବାର ଦେଖି ବଡ଼ ବନ୍ଧୁକ ଭାବି ମାଇଲା ବେ ବୋପା, ମରିଗଲୁ ହୋ ବାବୁ, କହି ଇଏ ତା ଉପରେ ସେ ତା ଉପରେ ପଡ଼ି, ଦୌଡ଼ିଲେ । କାହାର ପଗଡ଼ି ଖସିଲା ତ କାହାର ଅଣ୍ଟା ବେଲ୍‌ଟ ଖୋଲିଗଲା, କାହାର ଲାଠି ହାତରୁ ତଳେ ପଡ଼ିଗଲା । ଦୁଇ ମିନିଟ୍‌ ମଧ୍ୟରେ ନାଗା ଫାଙ୍କା । ହାବା ହୋଇ ମାଧ ମିଶ୍ରେ ଅନାଇଛନ୍ତି ତ ଅନାଇଛନ୍ତି । କରିବେ କ'ଣ ?

ନବ ଭାଇ ତାଙ୍କ ପାଖକୁ ଯାଇ କହିଲେ--

ମାଧିଆ ନନା ହୋ ମାଧିଆ ନନା,
ଲୁଣ ମରି ହେଲା ପଛକୁ ଧନା ।

ମାଧ ମିଶ୍ରେ ଦାନ୍ତ ରଗଡ଼ି ଯେପରି ତାଙ୍କ ଆଡ଼କୁ ମାଡ଼ି ଆସିଛନ୍ତି, ସେ ଯାଇକେଲ ମାରି ଚ୍ଛୁ । ସେହିଦିନଠୁଁ ଆମେ ଚିଡ଼େଇଲୁ--

ପରେ ଅବଶ୍ୟ କଷ୍ଟ ହୁଏ । କିନ୍ତୁ ସେତେବେଳେ ମାଡ଼ର ଯନ୍ତ୍ରଣା ବାଧେ ନାହିଁ । ମାଡ଼ ପରେ କଟକ ସହର ବାସୀଙ୍କର କି ଅସୀମ ଶ୍ରଦ୍ଧା ଆମ ପ୍ରତି ! କିଏ ଫଳ ଖୁଆଉଥିଲା ତ କିଏ ସେଉଁ ଖୁଆଉଥିଲା । କିଏ ଆଦରରେ ଘରକୁ ଡାକିନେଇ ନାନା ଖାଦ୍ୟ ଦ୍ରବ୍ୟ ପରଶୁଥିଲା ।

ପୂଜ୍ୟା ରମାଦେବୀ ତାଙ୍କ ମମତା ଭରା ହାତରେ ଆମକୁ ଆଉଁସି ଦେଉଥିଲେ । ସାନ୍ତ୍ୱନା ଦେଉଥିଲେ । ତାଙ୍କର ଆଶୀର୍ବାଦ ଆମ ଶିରରେ ଢାଳୁଥିଲେ । ଦୁଇ ଦିନ ବିଶ୍ରାମ ନେଇ ପୁଣି ବାହାରି ପଡ଼ୁଥିଲୁ । ପୁଣି ପିକେଟିଂ, ପୁଣି ବେତମାଡ଼ ।

ସେତେବେଳେ କବିବୀର କିଶୋର ଦାସ, କବି ବାଞ୍ଛାନିଧି ମହାନ୍ତି ଓ ରଘୁନାଥ ମହାନ୍ତିଙ୍କର ରଚିତ ଜାତୀୟ ସଙ୍ଗୀତ ପ୍ରତି ପୁର ପଲ୍ଲୀରେ ଅପୂର୍ବ ପ୍ରେରଣା ଆଣି ଦେଇଥିଲା । ଲୋକଙ୍କ ତୁଣ୍ଡେ ତୁଣ୍ଡେ ଜାତୀୟ ସଙ୍ଗୀତ, ହାତେ ହାତେ ଝଣ୍ଡିଏ ତାକୁଡ଼ି, ଯେଉଁଠି ଦେଖିବ, ସେଠି ଖାଲି ସୂତାକାଟି ଚାଲିଥାଏ । ଖଦଡ଼ର ପ୍ରଚାର ଓ ପ୍ରସାର ସ୍ୱନ୍ଦନ ।

ମୁଁ ଅଧରୁ କହୁଛି ମାଧବ ମିଶ୍ରଙ୍କ କଥା । ସେହି ମାଧବ ମିଶ୍ର ଡେପୋଟି କୁଜଙ୍ଗ ଯାଇଥିଲେ ଲୁଣମରରେ ଯୋଗ ଦେଇଥିବା ସତ୍ୟାଗ୍ରହୀମାନଙ୍କୁ ଜବତ କରିବାକୁ । ମାଳତୀ ଦେବୀଙ୍କର ନିର୍ଦ୍ଦେଶରେ କୁଜଙ୍ଗ ଅଞ୍ଚଳ କମ୍ପୁଥାଏ । ଗ୍ରାମେ ଗ୍ରାମେ ଅପୂର୍ବ ଜନଜାଗରଣ । ତାଙ୍କୁ ସାହାଯ୍ୟ କରୁଥାନ୍ତି ଯାଆନ୍ତେ (ନାରାୟଣ ବୀରବର ସାମନ୍ତ) ଓ ତାଙ୍କ ସ୍ତ୍ରୀ ଚନ୍ଦ୍ରମାଳୀ ଜେମା, ଦୁର୍ଯ୍ୟୋଧନ ପଟ୍ଟନାୟକ (ମାଷ୍ଟ୍ରେ), ବାବାଜୀ ଭୀମସେନ ଦାସ, ଭ୍ରମର ଓ ଅନ୍ୟମାନେ । ମାଧବ ମିଶ୍ର ମୁହଁରେ ଭାରି କଡ଼ା କିନ୍ତୁ ତାଙ୍କ ହୃଦୟଟି କୋମଳ । ସାଙ୍ଗରେ ଦୁଇ ସ୍କ୍ୱାଡ଼ କନେଷ୍ଟବଲ୍, ୨୮ ଜଣ ଚୌକିଦାର, ୨୩ ଜଣ ଦଫାଦାର । ଗୋଟାଏ ହୁଡୁଡ଼ା ଘୋଡ଼ା ଥାଏ । ତା ଆଗରେ ନ ଦୌଡ଼ିଲେ, ସେ ଯିବନି । ତେଣୁ ପାଳି କରି ଚୌକିଦାର, ଦଫାଦାର ଓ କନେଷ୍ଟବଲ ଘୋଡ଼ା ଆଗରେ ଦୌଡ଼ିବେ । ତେବେ ଯାଇ ମାଧବ ମିଶ୍ର ଘୋଡ଼ାରେ ବସିବେ ।

ଥରେ ଗୋଟିଏ ସ୍ରୋତିଆ ନଈ ପଡ଼ିଲା । ମାଧବ ମିଶ୍ର ଲମ୍ବଜାଲ ହୋଇ ପଡ଼ିଥାନ୍ତି । ଚୌକିଆ, ଦଫାଦାରମାନେ କାନ୍ଧେଇ ନଈ ପାରି କରୁଥାନ୍ତି । ନବକିଶୋର ପଟ୍ଟନାୟକ ଆଜି ଆର ପାଖକୁ ଗଲେଣି । ସେ ଗୋଟିଏ କ୍ୟାମେରା ଧରି ବୁଲୁଥାନ୍ତି । ଲୁଣମରା ପୋଲିସ୍ ଜୁଲମର ଛବି ନେଉଥାନ୍ତି । ମାଧବ ମିଶ୍ରଙ୍କ

'ଲମ୍ବାଳ ଫଟୋ ନେଲେ । ମାଧବ ମିଶ୍ର ନଈ ପାଖ ହୋଇ ଦେଖିଲେ ତାଙ୍କ ଫଟୋ ଜଣେ ନେଉଛି । ପ୍ରତି କଥାରେ ସେ କହୁଥିଲେ 'ଶଳା' ! "ଅବେ ଶଳା-ମାନେ । ସେ ଟୋକାକୁ ଧର । ସେ ଶଳାକୁ ଗିରଫ କର । ତା ସାଇକେଲ ଛଡ଼ାଇ ଆଣ ।" ଚୌକିଆ, ଦଫାଦାର ଓ କନେଷ୍ଟବଲଙ୍କୁ ନିର୍ଦ୍ଦେଶ ଦେଲେ । ସମସ୍ତେ ଦୌଡ଼ିଲେ । ନବ ଭାଇ ମଧ୍ୟ ଦୌଡ଼ିଲେ । ଦେଖିଲେ ଆଗରେ ଗୋଟିଏ ପାଣି ନାଳ । ତେଣୁ ସେ ଅନ୍ୟ ଉପାୟ ନ ଦେଖି ଗୋଟିଏ ମାଟି କୁଦ ଉପରେ ଚଢ଼ିଗଲେ । ଚୌକିଆ, ଦଫାଦାରମାନେ ଧୀରେ ଧୀରେ ଉପରକୁ ଉଠିଲେ । ନବଭାଇଙ୍କ ପାଖରେ କ୍ୟାମେରା ଷ୍ଟାଣ୍ଡ ଥିଲା । ପୂର୍ବେ ସେହିଭଳି କ୍ୟାମେରା ବୋଧ-ହୁଏ ବ୍ୟବହୃତ ହେଉଥିଲା । ଚୌକିଆମାନେ ଆଗରେ, ଦଫାଦାରମାନେ ମଝିରେ ଏବଂ ସବା ପଛରେ କନେଷ୍ଟବଲ୍‌ମାନେ ଥା'ନ୍ତି । ସେମାନେ ଟିକିଏ ଦୂରରେ ଥିଲେ । ନବଭାଇ ଖୁବ୍ ବଡ଼ ପାଟି କରି କହିଲେ—"ତୁମେମାନେ ଭାବିଛ ମୁଁ ସେମିତି ବୁଲୁଛି ? ମୋ ପାଖରେ ଦୁନାଳିଆ ବନ୍ଧୁକ ଅଛି । ମୋ ପାଖକୁ ଆସିଲେ ଗୋଟି ଗୋଟି କରି ସମସ୍ତଙ୍କୁ ଗୁଳି ଲଛୁ ଦେବି ।" 'ଗୁଳି ଲଛୁ ଦେବି' ଏ କଥା ଶୁଣି ସେମାନେ ଆଉ ଆଗକୁ ବଢ଼ିଲେ ନାହିଁ । ମାଧ ମିଶ୍ରେ ହସ୍ତାହିତ କରି କହୁଥାନ୍ତି—"ଆରେ ସେଇଟା ଡମ୍ଫା, ମିଛ କହୁଚି, କ'ଣ ଶୁଣୁଛ ତା କଥା ? ଧର ସେ ଶଳାକୁ । ଯେଉଁ ଶଳା ଧରି ନ ପାରିବ, ତା ଚାକିରି ଖାଇବି ।" ଚାକିରି ଯିବା ଭୟରେ ସେମାନେ ଉପରକୁ ଉଠିଲେ । ଯେମିତି ପାଖକୁ ଲାଗି ଯାଇଛନ୍ତି, ନବଭାଇ ଷ୍ଟାଣ୍ଡ ଗୋଡଟାକୁ ଏକାବେଳକେ ଟାଣି ଦେଇ କହିଲେ ଚାଲିଲା ଗୁଳି । ଖଟ୍-ଖଟ୍-ଖଟ୍ ହୋଇ ଗୋଡଟା ଯାକ ଷ୍ଟାଣ୍ଡ ଲମ୍ବିଗଲା । ଆଗରୁ ଏମାନେ ଏପରି ଜିନିଷ ଦେଖି ନ ଥିଲେ । ଗୋଟିଆ ଷ୍ଟାଣ୍ଡଟା ଲମ୍ବି ଯିବାର ଦେଖି ବଡ଼ ବନ୍ଧୁକ ଭାବି ମାଇଲେ ଲୋ ବୋପା, ମରିଗଲୁ ହୋ ବାବୁ, କହି ଇଏ ତା ଉପରେ ସେ ତା ଉପରେ ପଡ଼ି, ଦୌଡ଼ିଲେ । କାହାର ପଗଡ଼ି ଖସିଲା ତ କାହାର ଅଣ୍ଟା ବେଲ୍ଟ ଖୋଲିଗଲା, କାହାର ଲଠି ହାତରୁ ତଳେ ପଡ଼ିଗଲା । ଦୁଇ ମିନଟ୍ ମଧ୍ୟରେ ଜାଗା ଫାଙ୍କା । କାବା ହୋଇ ମାଧ ମିଶ୍ରେ ଅନାଇଛନ୍ତି ତ ଅନାଇଛନ୍ତି । କରିବେ କ'ଣ ?

ନବ ଭାଇ ତାଙ୍କ ପାଖକୁ ଯାଇ କହିଲେ--

ମାଧିଆ ନନା ହୋ ମାଧିଆ ନନା,
ଲୁଣ ମରି ହେଲା ପଛକୁ ଅନା ।

ମାଧ ମିଶ୍ରେ ଦାନ୍ତ ରଗଡ଼ି ଯେପରି ତାଙ୍କ ଆଡ଼କୁ ମାଡ଼ି ଆସିଛନ୍ତି, ସେ ସାଇକେଲ ମାରି ଛୁ । ସେହିଦିନଠୁଁ ଆମେ ଚିଡ଼ଉଇଲୁ--

ମାଧିଆ ନନା ହୋ ମାଧିଆ ନନା,
ଲୁଣ ମାରି ହେଲ ପଛକୁ ଅନା ।
ମାଧ ମିଶ୍ରେ କ'ଣ ଆଉ ଚୁପ ହେବେ ? ସେ ଏ କଥା ଶୁଣି ଭାରି ଚଡ଼ନ୍ତି ।

ଆଉ ଥରେ ମାଧ ମିଶ୍ରେ ଘୋଡ଼ାରେ ଯାଉଥିଲେ । ମାଳତୀ ଦେବୀ ଓ ଆଉ କେତେଜଣ ସ୍ୱେଚ୍ଛାସେବକ ଆସୁଥିଲେ । ମାଧ ମିଶ୍ରେ ମାଳତୀ ଦେବୀଙ୍କୁ ଅଶ୍ଳୀଳ ଭାଷାରେ କିଛି ପଦେ କହିଲେ । ମାଳତୀ ଦେବୀ ତା ଘୋଡ଼ା ଲଗାମ ଧରି କହିଲେ, ଆଉ ଥରେ ଯଦି ତୁମେ ଏପରି ଶବ୍ଦ ସ୍ତ୍ରୀ ଲୋକମାନଙ୍କ ପ୍ରତି ବ୍ୟବହାର କର, ଦେଖିବ, ତୁମ ଅବସ୍ଥା କ'ଣ ହେବ । ମାଧ ମିଶ୍ରେ ଅବଶ୍ୟ ମାଳତୀ ଦେବୀଙ୍କୁ ସେଥିଲାଗି କ୍ଷମା ମାଗିଥିଲେ । କିନ୍ତୁ ଏ କଥା ନବ ଭାଇଙ୍କ କାନରେ ପଡ଼ିଲା । ସେ କ ଆଉ ଅସ୍ତ୍ର ଧରି ରହେ ? ଶୁଣିଲି ମାଧ ମିଶ୍ରେ ଗୋଟିଏ ବାଟରେ କୁଜଙ୍ଗ ଫେରିବେ । ଆମ ସମସ୍ତଙ୍କ ହାତରେ ପୂର୍ବରୁ ଗୋଟିଏ ଗୋଟିଏ ପତାକା ଧରାଇ ଦେଲେ । ଗୋଟିଏ ପୋଲ ତଳେ ଆମେ ଲୁଚି ରହିଲୁ । ମୁଁ ଆଗରୁ କହୁଛି ମାଧ ମିଶ୍ରଙ୍କ ଘୋଡ଼ାଟା ଭାରି ଦୁର୍ବୁଡ଼ା । ଚୌକିଆ ୪।୬ଟା ଆଗରେ ଦୌଡ଼ୁଥାନ୍ତି । ଘୋଡ଼ା ପଛରେ ଆସୁଥାଏ । ଯେମିତି ଚୌକିଆମାନେ ଆଗକୁ ଚାଲି ଯାଇଛନ୍ତି, ସେମିତି ଆମେ ହଠାତ୍ ଘୋଡ଼ା ଆଗକୁ ବାହାରି ପଡ଼ି କହିଲୁ—'ବୋଲେ ଭାଇ, ମହାତ୍ମା ଗାନ୍ଧୀ କି ଜୟ, ସ୍ୱାଧୀନ ଭାରତ କି ଜୟ ।' ଯେମିତି କହିଛୁ ଘୋଡ଼ା ଚମକି ଛିଟି ବିଲ ଭିତରକୁ ପଶି ଯାଇ ବିଲ ଭିତରେ ମାଧ ମିଶ୍ରଙ୍କୁ ଛୁଆଁଡ଼ିଦେଲା । ମିଶ୍ରେ ସେହି କାଦୁଆ ଜମି ମଧ୍ୟରେ ନଥ୍ କରି ପଡ଼ିଗଲେ । ଆମେ ଘୋଡ଼ା ପଛରେ 'ଜୟ' ଧ୍ୱନି କରି କରି ଘୋଡ଼ାକୁ ମାଇଲିଏ ବାଟ ପର୍ଯ୍ୟନ୍ତ ନେଇଗଲୁ । ନବ ଭାଇ ସାଇକେଲ ଖଣ୍ଡିକ ଧରି ଠିଆ ହୋଇ ହସୁଥାଏ । ଏତିକିବେଳେ ଚୌକିଆ ଦଫାଦାରମାନେ ବହୁ ସଂଖ୍ୟାରେ ପହଞ୍ଚିବା ଦେଖି ନବଭାଇ ସାଇକେଲ ଧରି ଚମ୍ପଟ୍ । ପରେ ତାଙ୍କ ଅବସ୍ଥା କ'ଣ ହେଲା, କିଏ ଅଛି ଯେ ଦେଖିବ ? ଶିବିରକୁ ଫେରି ଆସି ସମସ୍ତେ ଏ କଥା ଶୁଣି ଠୋ ଠୋ କରି ହସିଲେ । କିନ୍ତୁ ମାଳତୀ ଦେବୀ ଆମ ଉପରେ ଓ ନବଭାଇଙ୍କ ଉପରେ ବଗିଡ଼ିଲେ । କହିଲେ—ଏ ସବୁ କଥା କରିବାକୁ ମୁଁ ତୁମକୁ କହିଥିଲି ? ସେ ସରକାରୀ କର୍ମଚାରୀ । ସେ ତାଙ୍କ କର୍ତ୍ତବ୍ୟ କରୁଛନ୍ତି । ନବଭାଇ କହିଲେ—"ତାଙ୍କ କର୍ତ୍ତବ୍ୟ କ'ଣ ଆପଣଙ୍କୁ ଶୋଧିବା ?" ମାଳତୀ ଦେବୀ କହିଲେ—ସେ ତ ଗାଳି ଦେଇଥିଲା । କ୍ଷମା ମାଗିଲା । ଆମେ ସମସ୍ତେ ନୂଆ'ଙ୍କ କଥା ଶୁଣି ନୀରବ ରହିଲୁ ।

ବାଲେଶ୍ୱର ଜିଲ୍ଲାର ଶ୍ରୀଜଙ୍ଗ ବାସୀଙ୍କର ତ୍ୟାଗ, ବଳିଦାନ, ଦେଶାତ୍ମବୋଧ ଜାତିର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିବ । ବ୍ରିଟିଶ୍ ସରକାରଙ୍କ

ଜନ୍ମଲମ୍ବର ସେମାନେ ଯେପରି ଭାବେ ପ୍ରତିବାଦ ଓ ପ୍ରତିରୋଧ କରିଛନ୍ତି ତା'ର ପଟାନ୍ତର ନାହିଁ । ଇଞ୍ଚୁଡ଼ି ଲୁଣ ଚଟାଣରେ ପ୍ରଥମେ ଲୁଣ ମରା ଆରମ୍ଭ ହେଲା । ତ୍ୟାଗୀବୀର ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଯଦୁମଣି ମଙ୍ଗରାଜ, ବ୍ରଜକୃଷ୍ଣ ବୋଷ, କୃପାସିନ୍ଧୁ ହୋତା ପ୍ରଭୃତି ନେତାଙ୍କୁ ଗିରଫ କରିନେଇ ବିହାରର ହଜାରିବାଗ୍ ଜେଲ୍‌ରେ ରଖା-ଗଲା । ଶ୍ରୀଯୁକ୍ତ ରମାଦେବୀ, ସରଳା ଦେବୀ ପ୍ରଭୃତି ନାରୀ ନେତ୍ରୀମାନଙ୍କୁ ମଧ୍ୟ କାରାବରଣ କରିବାକୁ ପଡ଼ିଲା । ମାଳତୀ ଦେବୀ କଟକ ଜେଲ୍‌ରେ ରହିଲେ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ବହୁ ସତ୍ୟାଗ୍ରହୀ ଗିରଫ ହୋଇଥାନ୍ତି । ପୋଲିସ୍‌ର ଅତ୍ୟାଚାର ଦିନକୁ ଦିନ ବୃଦ୍ଧି ପାଉଥାଏ । ଆନ୍ଦୋଳନର ରୂପ ମଧ୍ୟ ତୀବ୍ରରୁ ତୀବ୍ରତର ହେଉଥାଏ । ବାନର ସେନାମାନଙ୍କ ଉପରେ ମାଡ଼ଦେଇ, ମଦୁଆମାନଙ୍କୁ ଶିଖାଇ, ତାଙ୍କଦ୍ୱାରା ମାଡ଼ ମରେଇ ପୁଲିସ ପୋଲିସ୍ ଶାନ୍ତି ଲଭିଲେ ନାହିଁ । ଅଧିକନ୍ତୁ ରାସ୍ତାରେ ଘୋସାରି ମଧ୍ୟ ବୁଲାଇଲେ । ତଥାପି ଛୋଟ ଛୋଟ ପିଲାମାନେ ଅଟଳ, ଅଚଳ । ଆଣ୍ଠୁ ଗଣ୍ଠି ଛିଣ୍ଡିଯାଇ ରକ୍ତର ଧାର ଛୁଟିଥିଲା । ମାଡ଼ ଖାଇ ପିଠି ଆବୁ ହୋଇ ଯାଇଥିଲା । ଦେଶ ପାଇଁ ଯିଏ ଜୀବନ ପଣ କରିଛି, ତାର ମନ ବଳକୁ କ'ଣ ପୋଲିସ୍ ସହଜରେ ଭାଙ୍ଗି ଦେବାଇ ଦେଇ ପାରିବ ? ବେତମାଡ଼ ନେଇ ଚାରିଆଡ଼େ ଅତି କଠୋର ସମାଲୋଚନା ହେଲା । ଖବର କାଗଜମାନଙ୍କରେ ନାନା କଟୂକ୍ତି ସମ୍ବାଦ ପ୍ରକାଶ ପାଇଲା । ସେତେବେଳେ 'ସମାଜ' ଦୈନିକ ସମ୍ବାଦପତ୍ର ରୂପେ ଆତ୍ମ ପ୍ରକାଶ କରିଥାଏ । 'ବିଦ୍ରୋହୀ' ଓ 'ବିପ୍ଳବୀ' ନାମକ ଦୁଇଟି ପତ୍ରିକା ହାତ ଲେଖା ହୋଇ ଘରେ ଘରେ ବଣ୍ଟା ହେଲା । ଫଳରେ ଆହେଦ୍ ସାହେବ ବାଧ୍ୟ ହୋଇ ବେତମାଡ଼ ବନ୍ଦ୍ କଲେ । ଆମେ ସବୁ ଜେଲ୍ ଗଲୁ । ଦଳେ ବାନର ସେନା କୁଜଙ୍ଗ ଆଡ଼େ, ଆଉ ଦଳେ ଓରଣ୍ଡ ଲୁଣ ଚଟାଣକୁ ଗଲେ ଲୁଣ ମରାରେ ସାହାଯ୍ୟ କରିବା ଲାଗି ।

କଟକ ଜିଲ୍ଲା ଲୁଣ ମରାରେ ନେତୃତ୍ୱ ନେଇଥାନ୍ତି ମାଳତୀ ଦେବୀ, ରମା-ଦେବୀ, ସରଳାଦେବୀ । ତାଙ୍କର ଅପୂର୍ବ ସଙ୍ଗଠନ, ଦକ୍ଷତା ଓ କର୍ମତତ୍ପରତା ହାକିମ ହୁକୁମାଙ୍କୁ ବିଚଳିତ କଲା । ଲୁଣ ମରାର ଅଗ୍ରଗତି ଦେଖି ସେମାନେ ପ୍ରମାଦ ଗଣିଲେ । ଆମ ନାନୀ ମା ଗିରଫ ହେଲେ । ତାଙ୍କ ସହିତ ଡଃ ଅଟଳବିହାରୀ ଆଚାର୍ଯ୍ୟ, ଭାବଗ୍ରାହୀ ପତି, ଡଃ ବ୍ରଜବିହାରୀ ମିଶ୍ର ମଧ୍ୟ ଗିରଫ ହେଲେ । ଏହି ତିନିଜଣ ଆଜି ସ୍ୱର୍ଗରେ । ଶ୍ରୀମତୀ ରମାଦେବୀ ମଧ୍ୟ ଲୁଣ ମରାରେ ଅଗ୍ରଣୀ ଥିଲେ । ଘରେ ଘରେ ବୁଲି ଅର୍ଥ ସଂଗ୍ରହରେ ସେ ସିଦ୍ଧହସ୍ତ । ମୁଁ ଜେଲ୍ ଗଲି । ସେତେବେଳେ କଟକ ଜେଲ୍‌ରେ ସ୍ଥାନ ନ ଥାଏ । ଆମ ଭଳି ପିଲାମାନଙ୍କ ପାଇଁ ୧୪ ନମ୍ବର ଷ୍ଟିର

ହୋଇଥାଏ । ନବକୃଷ୍ଣ ଚୌଧୁରୀ ସେତେବେଳେ କଟକ ଜେଲରେ ଥା'ନ୍ତି । ମାଳତୀ ଦେବୀ ରହୁଥାନ୍ତି ଫିମେଲ୍ ଓ୍ୱାର୍ଡର ୧୨ ନମ୍ବରରେ । ଆମ ପଢ଼ା ପଢ଼ିର ବନ୍ଦୋବସ୍ତ ବ୍ୟବସ୍ଥା ହୋଇଥାଏ । ଡଃ ଚକ୍ରଧର ମିଶ୍ର ଏବଂ ବିନୋଦ କାନୁନ୍‌ଗୋ ତା'ର ଦାୟିତ୍ୱ ନେଇଥା'ନ୍ତି ।

ଜେଲ୍‌ରେ ଯେତେବେଳେ ଖେରୁ ଉଠି ଲାଇନ ହୋଇ ଗୋଡ଼ ଯୋଡ଼ି ସରକାରଙ୍କୁ ବସ୍ ଉଠ୍ ହୋଇ ଡିନଥର ସଲାମ କରିବାକୁ ପଡ଼ୁଥାଏ । ଆମେ ରାଜନୈତିକ ବନ୍ଦୀମାନେ ସେ ନିୟମ ଭଙ୍ଗ କଲୁ । ସେଥିଲାଗି ଜେଲ କର୍ତ୍ତୃପକ୍ଷ ଆମ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କଲେ । ଆମକୁ ନୁହେଁ, ଆମର ନେତାମାନଙ୍କୁ ସେଲ୍‌ରେ ରଖିଲେ । ବେଡ଼ି, ଦଣ୍ଡା ବେଡ଼ି, ଗୋଡ଼ ବେଡ଼ି ପକାଇଲେ । ହାତରେ ହାତ କଡ଼ି ପକାଇବାର ବ୍ୟବସ୍ଥା କଲେ । ବେତ ମାଡ଼ ମଧ୍ୟ କେତେ ଜଣଙ୍କୁ ଦିଆଗଲା । ବିହାରର ବିଭିନ୍ନ ଅଞ୍ଚଳରୁ ବହୁ ରାଜନୈତିକ ବନ୍ଦୀ ଥିବାରୁ ଜେଲ୍‌ବାଲା ବିଶେଷ କିଛି କରିପାରିଲେ ନାହିଁ । ଆମର ପ୍ରତିବାଦ ନିକଟରେ ବାଧ୍ୟ ହୋଇ ମୁଣ୍ଡ ନୁଆଁଇଲେ । ସରକାର ସଲାମ ଉଠିଗଲା । ଜେଲର ଖୋଲା ପଡ଼ିଆରେ ମଝିରେ ମଝିରେ ଡୁଡୁ, ବାଗୁଡ଼ି, ବୋହୂଚୋରି ଆଦି ଖେଳ ହେଉଥିଲା । ନବବାବୁ, ନୀଳମଣି ପ୍ରଧାନ ଯେଉଁ ଦଳରେ ରହୁଥିଲେ, ସେ ଜିତୁଥିଲେ ।

ଛଅ ସପ୍ତାହ ଜେଲ୍ ଭୋଗି ମୁଁ ମୁକ୍ତ ହେଲି । ପୁଣି ପିକେଟିଂ କରି ଚାଲିଲି । ଛଅ ମାସ ଆମ ଓଡ଼ିଶା ଓ ବିହାରର ଦଳେ ରାଜନୈତିକ ବନ୍ଦୀ ପାଟନା କ୍ୟାମ୍ପ୍ ଅଭିମୁଖେ ଚାଲିଲେ ।

କାରାଦଣ୍ଡ ଭୋଗ କରୁଥିବା ସମୟରେ ଗାନ୍ଧୀ ଇର୍‌ଉଇନ୍ ସନ୍ଧି ହେଲା । ସମସ୍ତ ରାଜନୈତିକ ବନ୍ଦୀମାନେ ମୁକ୍ତ ହେଲେ । ହଜାରିବାଗ୍ ଜେଲ୍‌ରୁ ମୁକ୍ତ ପାଇ ନେତାମାନେ ଆସିଲେ । କଟକ ଷ୍ଟେସନରେ ସେମାନଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଗଲା । ଷ୍ଟେସନରୁ ଯେଉଁ ଶୋଭାଯାତ୍ରା ବାହାରିଲା, ମୁଁ ଓଡ଼ିଶାରେ ସେପରି ବିରାଟ ପଟୁଆର କେବେ ଦେଖିନି । ସାରା କଟକ ସହର ତା'ର ତ୍ୟାଗୀ ନେତାମାନଙ୍କୁ ଦେଖିବାକୁ, ଉଚ୍ଛ୍ୱସିତ ଅଭ୍ୟର୍ଥନା କରିବାକୁ ଯେପରି ଉଜାଡ଼ି ହୋଇ ପଡ଼ିଥାଏ, ପଣ୍ଡିତ ନୀଳକଣ୍ଠ ଦାସ, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ୍, ନବକୃଷ୍ଣ ଚୌଧୁରୀ, ରମାଦେବୀ, ମାଳତୀ ଦେବୀ, ସରଳା ଦେବୀ, ଆଚାର୍ଯ୍ୟ ହରିହର ଦାସ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ ଓ ପଣ୍ଡିତ କୃପାସିନ୍ଧୁ ହୋତା ପ୍ରଭୃତି ସେ ଦଳରେ ଥାଆନ୍ତି । ଆହୁରି ଅନେକ କର୍ମୀ ତଥା ବାନର ସେନାମାନଙ୍କର ମଧ୍ୟ ଅଦ୍ଭୁତ ସମାବେଶ ଘଟିଥାଏ । ସେଦିନ କାଠଯୋଡ଼ି ନଈ ବାଲିରେ ଏକ ବିରାଟ

ସାଧାରଣ ସଭା ହେଲା । ସହରରେ ଭଲ ଧରଣର ସ୍ଥାନ ନ ଥାଏ । ପରେ ପରେ ବାଲିକୁଦା ପ୍ରଭୃତି ସ୍ଥାନରେ ବିରାଟ ସାଧାରଣ ସଭା ହେଲା । ଗାନ୍ଧିଜୀ ରୋଲ୍-ଟେବୁଲ୍ ବୈଠକରେ ଯୋଗ ଦେବାକୁ ଗଲେ ।

୧୯୩୧ ମସିହାରେ ସନ୍ଧି ହୋଇ ଯାଇଛି । କର୍ମୀମାନେ ଦୀର୍ଘ କାରାଦଣ୍ଡ ଭୋଗକରି ଘରକୁ ଫେରି ଯାଇଛନ୍ତି । ଅବସର ବିନୋଦନ ଲାଗି କାମ ଶିଥିଳ ହୋଇ ଆସିଛି । ଏହିକବେଳେ ବୀରବାବୁ ରଚନା କଲେ ନିଜ ଲେଖନୀ ପ୍ରସୂତ ଅନେକ ସଙ୍ଗୀତ । ଯାହାକି ପୁରପଲ୍ଲୀ, ସର୍ବତ୍ର ଲୋକ ଗାଉଥିଲେ । ସଭିଙ୍କ ପ୍ରାଣରେ ଅପୂର୍ବ ଉନ୍ମାଦନା ସୃଷ୍ଟି କରିଥିଲା । ବୀରବାବୁ ଓ ବାଞ୍ଛାନିଧି ବାବୁ ସେତେବେଳର ଥିଲେ ଜନପ୍ରିୟ କବି । ବୁଦ୍ଧିଜୀବୀମାନେ ବାଞ୍ଛାନିଧି ବାବୁଙ୍କର ଗୀତକୁ ପସନ୍ଦ କରୁଥିଲେ । ଅଗଣିତ ସାଧାରଣ ଲୋକ ସବୁସ୍ତରର ବୀରବାବୁଙ୍କ ରଚନାକୁ ନିଜର କରି ନେଉଥିଲେ ।

୧୯୩୧ରେ କଟକ ସ୍ୱରାଜ ଆଶ୍ରମରେ ଆମେ ଅନେକ କର୍ମୀ ଥାଉଁ । ଗୋପବାବୁ (ଚୌଧୁରୀ) ତା'ର ପରିଚାଳନା ଦାୟିତ୍ୱରେ ଥାଆନ୍ତି । ରାଜକୃଷ୍ଣ ବୋଷ ତାଙ୍କ ସହାୟ୍ୟ କରୁଥାନ୍ତି । ଆମକୁ ପଢ଼ାପଢ଼ି ଏବଂ ସୂତାକଟା ପ୍ରଭୃତି ଶିକ୍ଷା ଦିଆଯାଉଥାଏ । ଆଶ୍ରମର ନିୟମାନୁସାରେ ଠିକ୍ ସମୟରେ ଉଠିବା, ପ୍ରାର୍ଥନା କରିବା, ଆଶ୍ରମ ସଫା କରିବା, ସାଧା ସିଧା ଖାଇବାରେ ଅଭ୍ୟସ୍ତ କରାଯାଉଥାଏ । ମୋ ନାମ ଥାଏ 'ପାଗଳ ବୈକୁଣ୍ଠ' । ଆଉ ଜଣେ ଥାଏ ମୋଟା ବୈକୁଣ୍ଠ ।

ସେ ବର୍ଷ ଓଡ଼ିଶାରେ ନିଖିଳ ଭାରତ କଂଗ୍ରେସର ସାଧାରଣ ଅଧିବେଶନ ହେବାର ଥାଏ । ବମ୍ବେରୁ ମୁକୁନ୍ଦ ରାଜବଲ ସେଭର ଦଳ ଆସିଥାନ୍ତି ସ୍ୱେଚ୍ଛା-ସେବକମାନଙ୍କୁ ଟ୍ରେନିଂ ଦେବା ଲାଗି । କଟକରେ ତାର ପ୍ରଥମ କ୍ୟାମ୍ପ୍ ହୋଇଥିରେ ଏଠାରେ ଶିକ୍ଷା ପାଇଥିବା ଶିକ୍ଷକମାନେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଶିକ୍ଷା ଶିବିର-ମାନ ଖୋଲିଲେ । ପୁରୀର ସମୁଦ୍ର କୂଳବର୍ତ୍ତୀ ବାଲିଆ ପଣ୍ଡାରେ ଅଧିବେଶନର ସ୍ଥାନ ନିରୂପଣ କରାଯାଇଥାଏ । ଆମ ଭଳି ବାନର ସେନା ମାନଙ୍କର ମଧ୍ୟ ଏକ କ୍ୟାମ୍ପ୍ ସେଠାରେ ଖୋଲାଯାଇଥାଏ । ଆମ କ୍ୟାମ୍ପ୍‌କୁ ଟିକିଏ ଦୂରରେ ମହିଳା ଶିବିର । ଆମ କ୍ୟାମ୍ପର କମାଣ୍ଡର ଥା'ନ୍ତି ମନମୋହନ ଚୌଧୁରୀ, ଓ ମହିଳା କ୍ୟାମ୍ପ୍‌ର ମୁକୁନ୍ଦ ରାଓଙ୍କ ସ୍ତ୍ରୀ ସୁଶୀଳା ବେନ୍ । ତେବେ ଦୁଇଟି ଯାକ ଶିବିରରେ ପରିଚାଳନା ଭାର ପଡ଼ିଥାଏ ମୁକୁନ୍ଦ ରାଓଙ୍କ ଉପରେ । ବହୁଦିନ ପରେ ଓଡ଼ିଶାରେ ଜାତୀୟ ମହାସଭାର ବୈଠକ ହେବ ବୋଲି ଚାରିଆଡ଼େ ପ୍ରବଳ ଉନ୍ମାଦନା । ସର୍ବତ୍ର ଅପୂର୍ବ ଉତ୍ସାହ ଖେଳି ଯାଇଥାଏ । ଲୋକେ ମନ ପ୍ରାଣ ଦେଇ ଦିଏ ଯାହା ପାଇଲେ, ଏହାର

ନରୋତ୍ତମ ଦାସ, କାଶୀନାଥ ଦାସ, ଗୋପବନ୍ଧୁ ଚୌଧୁରୀଙ୍କ ଜନକ ଭଜୋ ଟିମ ବାବୁ ସମସ୍ତେ ଆଜ ସ୍ୱର୍ଗରେ । ନଟି ବାଇ (ଆନନ୍ଦଚନ୍ଦ୍ର କାନୁନ୍‌ଗୋ) ପରେ ବାବା ଆନନ୍ଦ ସ୍ୱରୂପ ହେଲେ । ସେ ମଧ୍ୟ ଏ ସଂସାରରେ ନାହାନ୍ତି । କିନ୍ତୁ ଦେଶ ଲାଗି ସେମାନେ ଯାହା କରିଯାଇଛନ୍ତି; ଇତିହାସ ତା'ର ସାକ୍ଷୀ ହୋଇ ରହିଛି ।

ମୋତେ ଅତି ଭଲ ପାଉଥିଲେ ମୋର ଅତି ଆପଣାର ଉପେନ୍ଦ୍ର ଭାଇନା (ଉପେନ୍ଦ୍ର ମହାପାତ୍ର) । ସେପରି ଜଣେ ଦେଶ ସେବକ ମିଳିବା ବିରଳ । ତାଙ୍କ ସ୍ତ୍ରୀ ଏବଂ ପରିବାର ମୋର ଅତି ଆପଣାର । ଏତେ ସ୍ନେହ, ଏତେ ମମତା ମୁଁ ତାହାଙ୍କଠାରେ ଦେଖିଛି । ଆଉ ଥିଲେ ଶ୍ୟାମ ପ୍ରଧାନ, ଶଙ୍କର ଦାସ, ଅଭୟ ଘୋଷ, ଶିବ ସାହୁ, ଲକ୍ଷ୍ମଣ ସାହୁ, ନିତ୍ୟାନନ୍ଦ ସାହୁ ପ୍ରଭୃତି ।

୧୯୩୨ ମସିହାରେ କଟକ ଜେଲ୍‌ରେ କିଛିଦିନ ରହିବା ପରେ ଆମକୁ ପାଟ୍‌ନା କ୍ୟାମ୍ପ୍ ଜେଲକୁ ବଦଳି କରାଗଲା । ଦଳରେ ଥାଉଁ ଆମେ ଷାଠିଏ ଜଣ । ବିହାରର 'କଇଲ' ଷ୍ଟେସନ୍‌ରେ ଗାଡ଼ି ରହିବ । ପ୍ଲାଟଫର୍ମରେ ଦଳେ ଗୋରାଲୋକ ବସି ମଦ ପିଉଥିଲେ । ଠିକ୍ ଆମ ବଗି ଆଗରେ । ଆମେ କ'ଣ ଆଉ ସମ୍ଭାଳି ହୋଇ ରହିପାରୁ ? ସମସ୍ୱରରେ ଚିତ୍କାର କରି ଉଠିଲୁ "Down Down Union Jack, up, up, National Flag." ସାହେବମାନେ ଏତିକ ଶୁଣି ଆଉ କି ଧୈର୍ଯ୍ୟ ଧରନ୍ତି ? ମଦ ବୋତଲ, ସୋଡ଼ା ବୋତଲ, କାଚ ଗ୍ଲାସ୍ ଆଦି ଆମ ଡବା ଭିତରକୁ ଫିଙ୍ଗିବାକୁ ଲାଗିଲେ । ଆମେ ମଧ୍ୟ ତାହା ପାଇକି ସେମାନଙ୍କ ଉପରକୁ ଫିଙ୍ଗିଲୁ । ଏକ ବେଶ୍ ଯୁଦ୍ଧ ଅବସ୍ଥା ହୋଇଗଲା । ଆମ ସାଙ୍ଗରେ ଯାଉଥିବା ପୋଲିସ୍ ସବ୍ ଇନ୍‌ସପେକ୍ଟର୍ ଗୋକୁଳାନନ୍ଦ ମହାନ୍ତି (ପରେ ସେ ଡେପୁଟି ସାହେବ ହେଲେ) ଏପରି ଧମକ ଦେଲେ ଯେ ସେମାନେ ଲଜ୍ଜାରେ ଶୀଘ୍ର ପର ପ୍ଲାଟ୍‌ଫର୍ମ ତ୍ୟାଗ କଲେ । ଅପୂର୍ବ ଶଙ୍ଖଳା ଦିନ ।

ଘନ ଅନ୍ଧାର ରାତି । ଫୁଲ୍‌ୱାରି ଷ୍ଟେସନ୍‌ରେ ଓହ୍ଲାଇ ଜେଲକୁ ଗଲୁ । ଷ୍ଟେସନ୍‌ର ଅଳ୍ପ ଦୂରରେ ଜେଲ୍‌ଖାନା । ତା'ର ନାମ ପାଟ୍‌ନା କ୍ୟାମ୍ପ୍ ଜେଲ୍ । ଚାରିପାଖ ତା'ର ବାଡ଼ରେ ଘେରା । ତା' ଭିତରେ ତିନି ଚାରି ଟା ଟିଣଘର । ଘୋଡ଼ା ସବାର ବାହାରେ ଜଗିଥାନ୍ତି । ବଡ଼ ବଡ଼ ଯୁମୁଟି ଉପରେ ମଧ୍ୟ ଶସ୍ତ୍ର ଗୁଡସ୍ୱାର । ସିଂହଳ ବାସୀ ଯୁବ ଜେଲର୍ ଏକ ପେନ୍‌ସନ୍ ନେବା ଡାକ୍ତର ଥା'ନ୍ତି, ଜେଲ ସୁପରିଣ୍ଟେଣ୍ଡେଣ୍ଟ୍ । ନାମ ଫାଉସେଟ୍ । ଅତି ମୁଣ୍ଡ ପାଗଳା ଲୋକ ସେ, ଅତି ଅଡ଼୍‌ଡ଼୍ ଖ୍ୟା ।

ପରେ ପରେ ଓଡ଼ିଶାରୁ ଆହୁରି ଅନେକ ବନ୍ଦୀ ଆସିଲେ । ବିହାର ଓ ଓଡ଼ିଶାର ରାଜନୈତିକ ବନ୍ଦୀ ମିଶି ଆମେ ଥାଉଁ ପ୍ରାୟ ଦୁଇ ହଜାର । ହସ, ଖୁସି, ଥିଏଟର ଇତ୍ୟାଦିରେ ଦିନଗୁଡ଼ିକ ଭୁଆଁଡ଼େ କଟି ଯାଉଥାଏ । ପଢ଼ାପଢ଼ି ମଧ୍ୟ ହୁଏ ।

ଛଅମାସ ପରେ ୧୮ ବର୍ଷରୁ ଯେଉଁମାନଙ୍କ ବୟସ କମ୍ ସେମାନଙ୍କୁ ଜେଲ୍‌ରୁ ମୁକ୍ତ କରି ଦିଆଗଲା । ମୁଁ ତା ମଧ୍ୟରେ ଥିଲି । କଟକ ଫେରି ଆସି ପୁଣି ଗିରଫ ହେଲି । ପୁଣି ପାଟନା ଜେଲ୍ ଗଲି । ଏଥର ନଅ ମାସ । ପ୍ରାୟ ପାଞ୍ଚମାସ କାରାଦଣ୍ଡ ଭୋଗିବା ପରେ କେଜାଣି କାହିଁକି ଖଲାସ୍ କରି ଦିଆଗଲା ।

ଏଣିକି ଆରମ୍ଭ ହେଲା ଆମର କରୁଣ କାହାଣୀ । ପୋଲିସ୍ ଆଉ ଗିରଫ୍ କଲେ ନାହିଁ । ରାସ୍ତାରେ ଗଣ୍ଡାଏ ଖୁଆଇ ପିଆଇ ଦେଲେ ନାହିଁ । ଯାହା ଘରକୁ ଗଲୁ, ବା ଯେଉଁଠି ଖାଇଲୁ, କି ରହିଲୁ, ତାହାର ସନ୍ଧାନ ନେଲେ । ଗୃହସ୍ଥଙ୍କୁ ଧମକ ଚମକ ଦେଲେ । ଟାଉନ୍‌ହଲ୍ ବାରଣ୍ଡା ଓ କାଠଯୋଡ଼ି ନଈ ବାଲି ଆମର ବିଶ୍ରାମ ସ୍ଥଳ ହୋଇଥାଏ । ତଥାପି ସାହସ କରି ତେଲେଙ୍ଗା ବଜାର ରାଧାଚରଣ ମହାପାତ୍ର 'ଯାହାଙ୍କ କଥା ମୁଁ ପରେ କହିବି', ଗୌରାଙ୍ଗ ଦଲେଇ, ଚୌଧୁରୀ ବଜାରର, ବନା ପହଲମାନ, କାର୍ତ୍ତିକ ସାହୁ ଖୁଆଇ ପିଆଇ ଘରେ ରଖୁଥିଲେ । ଗୌରାଙ୍ଗ ଭାଇଙ୍କ ଦେଶ ପ୍ରୀତି ଭୁଲିବାର ନୁହେଁ । ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ସହିତ ମୋର ବନ୍ଧୁତା ଥିଲା । ପ୍ରେସ୍ ଡାଲି, ଗୁଡ଼ଲ ଦୋକାନଟିଏ କରି ଏକ ବିରାଟ ପରିବାରକୁ ସେ ଚଳାଉଥିଲେ । ବର୍ତ୍ତମାନ ପିଲାମାନେ ପାରି ଗଲେଣି । ସୁଖ ଶାନ୍ତି ଦେଖି ସେ ଆଖି ବୁଜିଛନ୍ତି ।

ପ୍ରତିଦିନ ୮।୧୦ ଜଣ ବାନର ସେନା ଆମେ ପିକେଟିଂ କରୁ । କମ୍ପା ଶୋଭାଯାତ୍ରାରେ ବାହାରୁ । ପୋଲିସ୍ ବାଡ଼େଇ ବାଡ଼େଇ ନେଇ ଥାନାରେ ପୂରାଏ । ଉପାସ ଭୋକରେ ଦିନଯାକ ରଖି ଚନ୍ଦକା, ଡମପଡ଼ା କମ୍ପା ଖୁଣ୍ଟୁଣୀ ଜଙ୍ଗଲରେ ବସ୍‌ରେ ବସ୍ତା ଭଳି ଲଦି ନେଇ ଛାଡ଼ି ଦେଇ ଆସେ । ହିଂସ୍ରଜନ୍ତୁ ପୂର୍ଣ୍ଣ ଜଙ୍ଗଲରେ ଈଶ୍ୱରଙ୍କ ଡାକି ରାତିଟି କଟେଇ ପୁଣି ସକାଳୁ ଗାଁ ଗାଁରେ ଭିକ୍ଷାକରି ଆସି କଟକରେ ପହଞ୍ଚିଯାଉ । ଯେଉଁ ଗାଁ ବାଟ ଦେଇ ଆସୁ, ସେ ଗ୍ରାମବାସୀଙ୍କର କି ଉତ୍ସାହ, କି ସ୍ନେହ ! ଭିକ୍ଷାରେ ଥାଳ ଭରି ଦିଅନ୍ତି । ପେଟ ପୂରାଇ ଖାଇବାରେ ଟିକିଏ ହେଲେ କାର୍ପଣ୍ୟ କରନ୍ତି ନାହିଁ । ମାଡ଼ର ଯନ୍ତ୍ରଣା, ଅନାହାରର କ୍ଳେଶ ସବୁ ସେମାନେ ଭୁଲାଇ ଦିଅନ୍ତି । କଟକରେ ପହଞ୍ଚୁ । ପୁଣି ଚାଲେ ଧଟୁଆର ଆଉ ପିକେଟିଂ "ବିପ୍ଳବ", "ବିଦ୍ରୋହ" ଧ୍ୱନି ।

ମୋର ସ୍ପଷ୍ଟ ମନେ ଅଛି ଭଗତରାମ୍ ନାମକ ଜଣେ ହିନ୍ଦୁସ୍ଥାନୀ ଜମିଦାର ମୁଁ ଗୋଟିଏ ଗ୍ରେଟ ପଟୁଆରର ନେତୃତ୍ୱ ନେଇଥିବା ବେଳେ ମୋତେ ଯେପରି ଭାବରେ ମାରିଛି, ସେ ମାଡ଼ର ଦାଗ ମୋ ମନରୁ କିମ୍ବା ଦେହରୁ ଏ ପର୍ଯ୍ୟନ୍ତ ଲିଭି ନାହିଁ । ମାଡରେ ବେହୋସ ହୋଇ ପଡ଼ୁଥାଏ । ମୁହଁରେ ପାଣି ଦେଇ ହୋସ୍ ହେଲେ ପୁଣି ମାରୁଥାଏ । ବେହୋସ୍ ଅବସ୍ଥାରେ ମୋତେ ଟାଉନ୍ ଥାନାକୁ ନିଆଗଲା । ବର୍ତ୍ତମାନ ଯାହାର ନାମ ହୋଇଛି ଲାଲବାଗ୍ ପୋଲିସ୍ ଷ୍ଟେସନ୍ । ସେଠାରେ ଗୋଟିଏ କ୍ଷମା ପ୍ରାର୍ଥନା ପତ୍ରରେ ମୋର ଦସ୍ତଖତ ନେବେବୋଲି ସମସ୍ତ ପୋଲିସ୍ କର୍ମଚାରୀ ମୋ ଉପରେ ଜୁଲମ୍ କଲେ । କିନ୍ତୁ ନିରାଶ ହେଲେ । ସେହିଦିନରୁ ମୋର ସମ୍ମୁଖ ଦାନ୍ତ ଅତି ଦୁର୍ବଳ ହୋଇ ପଡ଼ିଲା । ପରେ ଅପ୍ରାପ୍ତ ବୟସରେ ତାହା ପଡ଼ିଗଲା ।

୧୯୩୨ ମସିହାର ପ୍ରାରମ୍ଭରେ ଯେତେବେଳେ ଗୋଲ୍ ଟେବୁଲ୍ ବୈଠକରୁ ନିରାଶରେ ଗାନ୍ଧିଜୀ ଫେରିଲେ, ଗାନ୍ଧି-ଇରଉଇନ୍ ଚୁକ୍ତି ଭାଙ୍ଗିଗଲା । ଆମେ ସମସ୍ତେ ଫେରି ଆସିଲୁ କଟକ । କଟକ ନଇ ବାଲିରେ ଏକ ବିରାଟ ସାଧାରଣ ସଭା ହେଲା । ଉତ୍କଳ ଲୋକାରଣ୍ୟ । ମାକୁଡ୍ ଥାନ୍ କଟକ ଜିଲ୍ଲା କଲେକ୍ଟର । ସେତେବେଳେ ମୋର କଣ୍ଠ ଅତି ମଧୁର ଥିଲା । ଯିଏ ମୋ କଣ୍ଠରୁ ଜାତୀୟସଙ୍ଗୀତ ଶୁଣୁଥାଏ ସେ ମୁଗ୍ଧ ହୋଇ ଯାଉଥାଏ । ବିଶେଷ କରି ବୀର ବାବୁଙ୍କ ଲେଖା ଗୀତ ଗୁଡ଼ିକ ସେଦିନ ଘଣ୍ଟା ଘଣ୍ଟା ଧରି ବୋଲି ଏତେ ବଡ଼ ଜନତାଙ୍କୁ ମୁଁ ମୁଗ୍ଧ କରି ଦେଇଥିଲି । ସେତେବେଳେ ମାଇକ୍‌ର ପ୍ରଚଳନ ନ ଥିଲା । ବୀର ବାବୁ ଲେଖିଥିଲେ—

ଏ ଯେ ଗୁଣ୍ଡା ସରକାର

ଗୁଣ୍ଡାମୀ ସଙ୍ଗେ ହୁଣ୍ଡାମୀ ତାର ନିତ୍ୟ କାରବାର ।
ଆଇନ୍ କାନୁନ୍ ନାହିଁ ତାର କିଛି
ମନ ଖୋଜ ତାର ଗତି ।
ବୁଦ୍ଧି ଦଳ ସବୁ ଚୁଲିକୁ ଗଲାଣି
ଚରଣ ଚାଟିଆ ଜାତି । ୧ ।

ଡହଳ ବିକଳେ ଗୋଲ୍ ଟେବୁଲରେ
ବୁଣିଲୁ ଦୁଇ ଥର ଟଙ୍କା,
ଗୋଲ ଟେବୁଲ ତ ଗୋଲ୍ ନ ହେଲା,
ସ୍ୱରାଜ୍ ହେଲା ବଙ୍କା । ୨ ।

ଚଳିତ ବାଳିଏ ମଣ୍ଡଳ କରନ୍ତୁ
ଆମେ ଗଣି ମରୁ କରୁ,
ଗଉଡ଼ ପୁଅର ଗୁହାଳ ଧୋଇ କି
ମୋଟ ପୁଅ ବାହାଦୁର । ୩ ।

ମାରୁଡ଼ ସଭା ସ୍ଥଳରେ ଉପସ୍ଥିତ ଥିଲେ । ସେ ଆଇର୍‌ଲ୍ୟାଣ୍ଡର ବାସିନ୍ଦା । ଗୀତର ଭାବାର୍ଥ ତାକୁ ବୁଝାଇ ଦିଆଗଲା । ସେ ଜଣେ ମୋ ପାଖକୁ ଟମକ ଆସି ଏପରି ଗୀତ ଗାଇବାକୁ ମନା କଲେ । ମୁଁ ତାଙ୍କ ବାରଣକୁ ନ ମାନି ଆହୁରି ଜୋର୍‌ରେ ବୋଲିଲି । ସେ ସମ୍ଭାଳି ନ ପାରି ତାଙ୍କ ଛଡ଼ିରେ ମୋତେ ଦି'ଥର ପାହାରେ ପିଟିଲେ । ମୁଁ ସେଥିକୁ ଖାତିର ନ କରି ମୋ ବୋଲିବା ଜାରି ରଖିଲି । ପୁଣି ବେତ୍ର ମୋ ପିଠିରେ ପାହାରେ ପଡ଼ିଲା । ମୋ ନୋଳା ଫାଟିଗଲା । ଲୋକେ ବିଚଳିତ ହେଲେ । ମାରୁଡଙ୍କୁ ଗାଳି ଦେଇ ସଭା ସ୍ଥଳକୁ ଠେଲି ଠେଲି ଆସିଲେ । ମାରୁଡ଼ ନିଜକୁ ଅସହାୟ ମନେ କଲେ । ଅନ୍ୟ କୌଣସି ଉପାୟ ନ ଦେଖି ଜନତା ଉପରେ ଲାଠି ଚଳାଇବାର ହୁକୁମ ଦେଲେ । ଲୋକେ ଲାଠି ମାଡ଼ ଖାଇ ଏଣେ ତେଣେ ଖେଳେଇ ହୋଇଗଲେ । ନିର୍ମମ ଲାଠି ପ୍ରହାରରେ ଅନେକ ଲୋକ ଆହତ ହେଲେ । ଆମେ ୫।୭ ଜଣ କର୍ମୀ ନୀରବରେ ଠିଆ ହୋଇ ଥାଉଁ । ଆମ ପିଠିରେ ଧୁଲ୍‌ଧାଲ୍ ଲାଠି ବସୁଥାଏ । ସେ ଦିନର ଅଭିଜ୍ଞତା ଏ ପର୍ଯ୍ୟନ୍ତ ମୋ ମନରେ ଅଭୁଲା ସ୍ମୃତି ହୋଇ ରହିଛି । ମାଡ଼ ଖାଇଛୁ, କିନ୍ତୁ ନିଜର ଦୁର୍ବଳତା ପ୍ରକାଶ କରିନାହୁଁ । ଶୃଙ୍ଖଳିତ ସୈନିକ ପରି ବୀର ଦର୍ପରେ ଠିଆ ହୋଇ ରହିଥିଲୁ । ପୃଷ୍ଠଭଙ୍ଗ ଦେଇ ପଳାୟନ କରିବୁ ଭୀରୁ ଭଳି ରଣାଙ୍ଗନରୁ—ଏ ଚିନ୍ତା ମନରେ ନ ଥାଏ ।

ସୁଧୀର ଘୋଷଙ୍କ ନେତୃତ୍ୱରେ ପ୍ରତ୍ୟହ କଟେଶ୍ୱରେ ଜାତୀୟ ପତାକା ଉଡ଼ିଲା । ଲୋକେ ଦେଖନ୍ତି Union Jack ନାହିଁ । ତ୍ରିରଙ୍ଗା ଝଣ୍ଡା ଉଡ଼ୁଛି । ଏ ସବୁ କିଏ କରୁଛି, ଖୁବ୍ ତନାଘନା ଅନୁସନ୍ଧାନ ହେଲା । ପୋଲିସ୍ ଧମାଧମ ଅନୁସନ୍ଧାନ କଲେ । କିନ୍ତୁ କାହାରିକୁ ପାଇଲେ ନାହିଁ । ପ୍ରାୟ ପନ୍ଦର ଦିନ ପର୍ଯ୍ୟନ୍ତ ଏ କାର୍ଯ୍ୟ ଚାଲିଲା ।

କଟକର ସ୍ୱରାଜ ଆଶ୍ରମ ପୋଲିସ୍ ଦଖଲରେ ଥାଏ । ସ୍ଥିର ହେଲା ଦଳ ଦଳ ହୋଇ ସତ୍ୟାଗ୍ରହୀ ଯାଇ ଆଶ୍ରମ ଦଖଲ କରିବେ । ଆଶ୍ରମ ଉପରେ ଜାତୀୟ ପତାକା ଉଡ଼ିବ । ବାଙ୍କିର ଗୋଲକ ମହାରଣା, ଆଜି ସେ ସ୍ୱର୍ଗରେ । ସେ ଦଳର ନେତୃତ୍ୱ ନେଲେ । ଲେନ୍ (Lain) ନାମକ ଏକ ଦୁର୍ଦ୍ଦାନ୍ତ କଟକର ପୋଲିସ୍ ସାହେବ ଥାଏ । ଦୟାମାୟା ତାର ହୃଦୟରେ ନ ଥିଲା । ସତ୍ୟାଗ୍ରହୀମାନଙ୍କ ଉପରେ

ତା'ର ସ୍ୱାଗତ ଗୀତ । ଆଶ୍ରମ ଦଖଲ ଖବର ପାଇ ଦଳେ ପୋଲିସ୍ ନେଇ ପୋଲିସ୍ ସାହେବ ଲେନ୍ ଜଳେ ଆସି ହାଜର ହେଲେ । ସମସ୍ତଙ୍କ ହାତରେ (Regulation) ଥିଲା ଗୁବ ଲାଠି । ଲେନ୍ ହାତରେ ହଣ୍ଟର । ସତ୍ୟାଗ୍ରହୀମାନଙ୍କ ପ୍ରତି ଦୟାମାୟା ତ୍ୟାଗ କରି ସତ୍ୟାଗ୍ରହୀମାନଙ୍କୁ ନିର୍ମମ ଭାବରେ ପିଟିଲା । କାହାର ତାଳୁ ଫାଟିଗଲା ତ କାହାର ଗୋଡ଼ ହାତ ଭାଙ୍ଗି ଗଲା । କାହାର ପିଠିରୁ ଗୁଳ ଉତୁରିଗଲା । ବେହୋସହୋଇ ସମସ୍ତେ ପଡ଼ିଥାନ୍ତି । ଏଣେ ଅବିଶ୍ରାନ୍ତ ବର୍ଷା ହେଉଥାଏ । ସ୍ୱେଚ୍ଛାସେବୀମାନଙ୍କୁ ପିଟି ପିଟି ରକ୍ତାକ୍ତ ଏବଂ ଅଚେତ ଅବସ୍ଥାରେ ରାସ୍ତା କଡ଼ର ନାଳରେ ଫିଙ୍ଗି ଦେଇ ଲେନ୍ ବିଜୟ ଗର୍ବରେ ଉତ୍ଫୁଲ୍ଲିତ ହୋଇ ଫେରିଲା । ତହିଁ ଆରଦିନ ଆଉ ଦଳେ ଦଖଲକାରୀ ଆସି ପହଞ୍ଚିଲେ । ଏମାନେ ମଧ୍ୟ ଅକ୍ଷତ ଶରୀରରେ ଫେରିଲେ ନାହିଁ । ଆଶ୍ରମ ଫାଟକନିକଟରେ ସେମାନଙ୍କୁ ଅଟକାଇ ଲେନ୍ ଜଳେ ରେଗୁଲେସନ୍ ଲାଠିରେ ପିଟା ଆରମ୍ଭକଲା । ତା ପରେ ତାରି ଆଦେଶରେ ପୋଲିସ୍ ଦଳଙ୍କର ବୃଙ୍ଖଳ ନିର୍ମମ ଅତ୍ୟାଚାର । ସେ ଅମାନୁଷିକ କାଣ୍ଡ ଦେଖି କେହି ଧୈର୍ଯ୍ୟ ଧରି ରହିପାରିବେ ନାହିଁ । ସେତେବେଳେ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସମ୍ପାଦକତ୍ୱରେ ଏକ "ବିପ୍ଳବୀ" ନାମରେ ଲିଥୋ କରା ଖବର କାଗଜ ପ୍ରକାଶ ପାଉଥାଏ । ଆମେ କେତେଜଣ କର୍ମୀ ରାତାରାତି ସେ କାଗଜ ସହରର ପ୍ରତି ଘରେ ଘରେ ବାଣ୍ଟି ଦେଇ ଆସୁ । ସେଥିରେ ଲେନ୍ ସାହେବର ଲୋମହର୍ଷଣକାରୀ ଅତ୍ୟାଚାର ଏବଂ ଅନାଚାରର ବିଶଦ ବିବରଣୀ ଥାଏ । ତାହା ଯେପରି କରୁଣ, ସେପରି ମର୍ମସ୍ପର୍ଶୀ । ସହରବାସୀ ଏ ଖବର ପଢ଼ି ତୃତୀୟ ଦିନ ବହୁ ସଂଖ୍ୟାରେ ଆଶ୍ରମ ସମ୍ମୁଖରେ ସମବେତ ହେଲେ । ସମସ୍ତଙ୍କ ତୁଣ୍ଡରେ ଲେନ୍ ପ୍ରତି ଭର୍ତ୍ସନା ଥାଏ । ଲେନ୍ ଜନଗହଳ ଦେଖି ଟିକିଏ ଶଙ୍କିତ ହୋଇ ପଡ଼ିଲା । ତଥାପି ସତ୍ୟାଗ୍ରହୀମାନେ କେହି ଅକ୍ଷତ ଶରୀରରେ ଫେରିଲେ ନାହିଁ । ଚତୁର୍ଥ ଦିନ ମୋ ପାଳି ପଡ଼ିଲା । ପୋଲିସ୍ ଫୋର୍ସ ଆସିବା ଆଗରୁ ଜଗିଥିବା ଦୁଇଜଣ କନେଷ୍ଟବଲ୍‌ଙ୍କୁ ଆମେ ଫାଙ୍କି ଦେଇ ଆଶ୍ରମ ଉପରେ ଜାତୀୟ ପତାକା ଉଡ଼ାଇ ଦେଲୁ । ଷ୍ଟେଟ ପତାକା ଖଣ୍ଡେ ମୋ ହାତରେ ଥାଏ । ଲେନ୍ ଆସି ତା'ର ରେଗୁଲେସନ୍ ଲାଠିରେ ପିଟା ଆରମ୍ଭ କରିଦେଲା । ଆମ ପିଠି ଫାଟିଗଲା । କ'ଣଟାଏ ମୋ ପିଠିରେ ଭୁଷିଦେଲା କେଜାଣି ସୂଚିକନା ନିଆଁ ଲାଗିଲା ଭଳି ଜଣାଗଲା । ତା ପରେ ଆଉ କଣ ହୋଇଛି, ମୁଁ କିଛି ଜାଣି ନାହିଁ । ହସ୍‌ପିଟାଲରେ ହୋସ୍ ହେଲା, ଅନେକ ସମୟ ପରେ । ଆଖି ଖୋଲି ଦେଖେ ତ ମୋ ହାତରେ ମୋ ଆଦରର ଜାତୀୟ ପତାକା । ଲେନ୍ ମୋ ହାତରୁ ତାହା ଛଡ଼ାଇବାକୁ ଆପ୍ରାଣ ଚେଷ୍ଟା କରିଛି । କିନ୍ତୁ ବିଫଳ ହୋଇଛି । ସେଥିଲାଗି ହଣ୍ଟର୍‌ରେ ପିଟିଛି । ଶେଷରେ ସଙ୍ଗୀନରେ ଭୁଷି ଦେଲା । ହସ୍‌ପିଟାଲରେ

ଚେତା ହେଲା । ଆଶ୍ୱସ୍ତ ହେଲି । ଜଣେ ନିଷ୍ଠୁର ନର ପିଶାଚ ହାତରୁ ମୋର ଜାତୀୟ ପତାକା ଟାଣି ନେଇନ ଥିବ, ସମସ୍ତ ଯନ୍ତ୍ରଣା ଭୁଲିଗଲି । ଗର୍ବରେ ଆନନ୍ଦରେ ମୋ ପ୍ରାଣ ପୂରି ଉଠିଲା । ହସ୍‌ପିଟାଲ୍‌ରେ ଦୁଇ ମାସ ରହିଲି । ଗୃହ ଆଉର ପ୍ରବଳ ଚାପ ଫଳରେ ଆମ ହାତରେ ସ୍ୱରାଜ ଆଶ୍ରମର ଦାୟିତ୍ୱ ଦେଇ ପୋଲିସ ଅପସରି ଗଲେ । ଏଇଥିପାଇଁ ସେତେବେଳର ଜିଲ୍ଲା କଲେକ୍ଟର ମାରୁଡ଼ଙ୍କୁ ପ୍ରଶଂସା କରିବାର କଥା । ଲେନ୍‌ କୁ ସେ ବାଧ୍ୟ କଲେ ଆଶ୍ରମରୁ ପୋଲିସ୍‌ ଉଠାଇ ନେବାକୁ । ଆଶ୍ରମ ଦଖଲକାରୀ, ସେ ବୀର ଯୋଦ୍ଧାମାନଙ୍କ ମଧ୍ୟରୁ ଆଜି ବି କେତେକ ଜୀବିତ ଅଛନ୍ତି । ପରିଣତ ବୟସ, ବାଳ ଧଳା ହୋଇ ଗଲାଣି । ଆଖି ନଇଁ ଆସିଲାଣି । ଦାନ୍ତ ପଡ଼ିଗଲାଣି । ଅନେକ ଅସୁବିଧାରେ ଚଳୁଛନ୍ତି ସତ, କିନ୍ତୁ ଦେଶ ଓ ଜାତି ପାଇଁ ତାଙ୍କର ମହାନ୍‌ ତ୍ୟାଗ, ପ୍ରେମ ଏ ପର୍ଯ୍ୟନ୍ତ ଅତୁଟ ରହିଛି । ସେମାନେ ହେଲେ ସର୍ବଶ୍ରୀ ଗୋଲୋକ୍‌ ମହାରଣା, ଚୌଦ୍ୱାରର ବିନୋଦ, କାଳନ୍ଦୀ ସାହୁ, ବାଳ ସାହୁର ଶଙ୍କର ଦାସ, ଭଗତ ସିଂହ, ପୁରୁଷୋତ୍ତମ ସିଂହ, ନନ୍ଦକାନ୍ତ ମିଶ୍ର, ଗୋଲେଖ୍‌ ମିଶ୍ର, ନରସିଂହ ଚରଣ ମହାନ୍ତି ପ୍ରଭୃତି ।

ସେ ବେଳର ବାନର ସେନା ଆଜି ପ୍ରୌଢ଼ । କିଏ କୁଆଡ଼େ ଖେଳେଇ ହୋଇ ଗଲେଣି । କିଏ କେଉଁ କର୍ମ କ୍ଷେତ୍ରରେ ରହିଛନ୍ତି ଜାଣିବା ମୁସ୍କିଲ । ଆମ ଉପରକୁ ଥିଲେ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବିନୋଦ କାନୁନ୍‌ଗୋ, ସୁରେନ୍ଦ୍ର ନାଥ ପଟ୍ଟନାୟକ ଅଭୁଲାନନ୍ଦ ବେହେରା, ବିପିନ୍‌ ବିହାରୀ ମହାନ୍ତି । ଏମାନେ ବିଭିନ୍ନ କ୍ଷେତ୍ରରେ ବର୍ତ୍ତମାନ ସୁପ୍ରତିଷ୍ଠିତ ।

୧୯୩୩ ମସିହା ପ୍ରାରମ୍ଭରେ କଟକ ଜିଲ୍ଲାର ବଶୁନ୍‌ପୁରରେ କଂଗ୍ରେସ କାର୍ଯ୍ୟ କରିବାକୁ ମୋତେ ପଠାଗଲା । ପଞ୍ଚପଲ୍ଲୀର ବୃନ୍ଦାବନ ମହାନ୍ତି ଏବଂ ବଳରାମପୁରର ମଦନ ଜେନାଙ୍କୁ ନେଇ କାମ ଆରମ୍ଭ କଲୁ । ସେତେବେଳେ ଢିବି ମହାପାତ୍ର ଥାଆନ୍ତି Union President, ଦଫାଦାର ଥା'ନ୍ତି ସେଠାକାର କାଳନ୍ଦୀ ମହାନ୍ତି । ରାତ୍ରି ପ୍ରାୟ ୧୦ଟା ହେବ, ଲୋକ ସହି ନ ପାରି ବୃନ୍ଦାବନ ଭାଇ ଘରେ ଖାଇ ବସିଛୁ । ଭାତ ଦି ଗ୍ରାସ ଗୁଣ୍ଡା ପେଟକୁ ଯାଇଛି କି ନାହିଁ, ନିଷ୍ଠୁର ଦଫାଦାର ଅଣ୍ଟିରେ ଧୂଳି ଅଣି ଝାଡିବା ପତ୍ରରେ ଅଜାଡ଼ି ଦେଲା । ଠିକଏ ହେଲେ ଦୟାମାୟା ନାହିଁ । ସେହି ରାତିରେ ଅଖିଆ ଅପିଆ ଆମେ ଦୁଇଜଣ ଯାକ ଅତି ଅସୁବିଧା ରାସ୍ତାରେ ଦୁଇ ମାଇଲ୍‌ ଚାଲି ମଦନ ଜେନାଙ୍କ ଘରେ ପହଞ୍ଚିଲୁ । ଗରିବ ଲୋକ । ନିକଟରେ ଜେଲରୁ ଖଲାସ୍‌ ହୋଇ ଆସିଥାନ୍ତି । ଘରେ ଚାଉଳ ଚଣ୍ଡାଏ ବ୍ୟତୀତ କିଛି ନ ଥାଏ । ସ୍ତ୍ରୀକୁ ଉଠାଇଲେ । ଚାଉଳ ଭଜା ହେଲା ।

ଗୁଡ଼ଲ ଭଜା ଲୁଣ କି ସ୍ୱାଦୁ ? ପେଟେ ପେଟେ ଖାଇ ପାଣି ପିଇ ଶୋଇ ପଡ଼ିଲୁ । ସକାଳୁ ଉଠି ଦେଖୁ ତ ଜେନାଏ ଛେନା, ମୁଡ଼ି, ଗୁଡ଼ ସବୁ ବ୍ୟବସ୍ଥା କରିଛନ୍ତି । ଗାଧୁଆ ପାଧୁଆ ସାରି ପେଟ ଭରି ଜଳଖିଆ ଖାଇ ଗାଁ ଗାଁରେ କଂଗ୍ରେସ ବାର୍ତ୍ତା ପ୍ରଚାର କଲୁ । ଲୋକେ ଅତି ଆଦରରେ ଆମ କଥା, ଆମ ଗୀତ ଶୁଣନ୍ତି । ପେଟ ଭରି ଖାଇବାକୁ ଦିଅନ୍ତି । ଚୂଡ଼ା, ମୁଡ଼ି, ଶାଗ, ପଖାଳ, ସାରୁ, ଶୁଖୁଆ ଯାହା ଯେତେବେଳେ ମିଳିଲା । ରାତିରେ ଆସି ପଞ୍ଚ ପଲ୍ଲୀରେ ଗୋଟାଏ ଧୋବା ଘରେ ଆଶ୍ରୟ ନେଉଥିଲୁ । ଚାଉଳ, ଡାଲି, ପରିବା, ଚୁଲ୍ହାକାଠି ଆଣି ରାତିରେ ରାନ୍ଧି ଖାଉଥିଲୁ । ପୁଣି ହଂସୁଆରେ ଗାଧୋଇ ବାହାରି ପଡ଼ୁଥିଲୁ । ଗରିବ ମଦନ ଜେନା ତାଙ୍କ ଘରେ ରହିବାକୁ ଜିଦ୍ କରୁଥିଲେ । କିନ୍ତୁ ଆମେ ସବୁ ଦଳକୁ ବିସ୍ତାର କରି ପଞ୍ଚପଲ୍ଲୀକୁ ହିଁ ନିଜର କର୍ମକ୍ଷେତ୍ର ରୂପେ ବାଛି ନେଇଥିଲୁ । ସେ ଧୋବା ଘରେ ମଧ୍ୟ ଆମକୁ ଦଫାଦାର ରଖାଇ ଦେଲା ନାହିଁ । ତାକୁ ଗିରଫ କରିବାକୁ ଧମକ ଦେଲା । ଆମର ହାଣ୍ଡି, ମାଠିଆ ସବୁ ଭାଙ୍ଗି ଦେଲା । ବାଧ୍ୟ ହୋଇ ଜଣଙ୍କର ଢିଙ୍କି ଶାଳରେ ଆଶ୍ରୟ ନେଲୁ । ରାତିରେ ଘୋର ବର୍ଷା ହେଲା । ଅନ୍ଧାରରେ ମୁହଁକୁ ମୁହଁ ଦିଶିଲା ନାହିଁ । କେଉଁଠି ଟିକିଏ ମୁଣ୍ଡ ଗୁଞ୍ଜିବାର ସ୍ଥାନ ନ ପାଇ ନାରାୟଣୀ ଠାକୁରାଣୀଙ୍କ ମେଳା ଘରକୁ ପଶିଗଲୁ । ଆଗରୁ ଦଫାଦାର ସେ କଥା ଜାଣି ସପ୍ତଫେଣୀ ଦଣ୍ଡା ଛାଡ଼ି ଦେଇଥିଲା । ଟପ୍ ଟପ୍ ଗୋଡ଼ରେ ପଶିଗଲା । କି ଯନ୍ତ୍ରଣା !! କି କଷ୍ଟ !! ସେଦିନ ସେ ଅନ୍ଧାର ରାତି ଦଫାଦାରର ଅଦ୍ଭୁତ କାରସାଦି ଆଜି ବି ମୋ ମନରେ ଗଭୀର ଦାଗ ହୋଇ ରହିଛି । ଅନେକ ଦିନ ବିତି ଗଲାଣି । ପାଣି ଏଣ୍ଡୁଲାର ଉଚ୍ଚ ମହାପାତ୍ର, କାଳନ୍ଦୀ ଦଫାଦାର ଅନେକ ଦିନରୁ ସ୍ୱର୍ଗରେ ରହିଲେଣି । ସେ ଦୁହେଁ ଯାହା କରି ଯାଇଛନ୍ତି, ତାହା ଅମ୍ଳାନ ସ୍ମୃତି ହୋଇ ରହିଛି । ସକାଳେ ସବୁଆଡ଼େ ଆମେ ଏ ବିଷୟ ପ୍ରଚାର କଲୁ । ମଦନ ଜେନା ତାଙ୍କ ସରଳ ଗାଉଁଲି ଭାଷାରେ ଗାଁର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ପ୍ରଚାର କରି ଆସିଲେ । ସମସ୍ତେ ଦଫାଦାରଙ୍କୁ ଗାଳି ଗୁଲଜ କଲେ । କେତେକ ମାଡ଼ ଦେବାକୁ ଧମକେଇଲେ । ଉଚ୍ଚ ମହାପାତ୍ର ଭଦ୍ରବଶାଳୀ ହେଲେ ମଧ୍ୟ ତାକୁ ଶୁଣାଇ ଶୁଣାଇ ଅନେକ କଥା କୁହାଗଲା । ମୁଁ ପରିଷ୍କାର କହିଲି—ଆମେ ହେଲୁ ଗାନ୍ଧୀର ଚେଲା । ଆହେବର ବେତ ମାଡ଼, ଲେନ୍ ସାହେବର ସଙ୍ଗୀନ ହଣ୍ଟର, ପୋଲିସ୍‌ର ପିଢ଼ଲ ଗୁଳ ଲାଠି ଆମକୁ ଦବେଇ ପାରି ନାହିଁ । ଜେଲ୍‌କୁ ଆମେ ଶ୍ରୀମନ୍ଦିର କରି ଆସିଛୁ । ଭାବୁଛ ତୁମେ ଆଉ ତୁମ ଦଫାଦାର ଆମକୁ ଦବାଇ ଦେବ ? ଆଜିଠାରୁ ଶହ ଶହ କର୍ମୀ ତୁମ ଦୁଆର ମୁହଁରେ ସତ୍ୟାଗ୍ରହ କରିବୁ । ତମେ ଆଉ ତମ ଦଫାଦାର କ'ଣ କରିବ ଦେଖିବୁ ? ଭିରୁ ଲୋକ ଡରିଗଲା । ଦଫାଦାରକୁ ଏରସମା ଥାନାକୁ

ପଠାଇଲା । ଦିନ ଘଣ୍ଟାରେ ଦୁଇଜଣ କନେଷ୍ଟବଲ୍ ଓ ସ୍ରାଇଟର୍ ଆସି ପହଞ୍ଚି-ଗଲେ । ଉକ୍ତ ମହାପାତ୍ର କୃପଣ ହେଲେ ମଧ୍ୟ ପୋଲିସ୍ ବାଳଙ୍କୁ ଖୁବ୍ ଖାତିର୍ କରେ । ଆମେ ରାତିକୁ ବଡ଼ଭିନ୍ନ ଗ୍ରାମରେ ବୁଲି ଆସି ପହଞ୍ଚିଲୁ । ତ୍ରିଛକ ମୁଣ୍ଡରେ ଦେଖାଦେଖି ହେଲୁ । କନେଷ୍ଟବଲ୍ ଦୁହେଁ ଆସି ବୁଲିଗଲେ । ମଦନ ଜେନାଙ୍କୁ କହିଲେ—ବୁଝିଲ—କାଲି ସକାଳେ ତୁମେ ତିନି ଜଣ ଯାକ ଥାନାକୁ ଯିବ । ମୁନ୍‌ସି ବାବୁ ଡକାଇଛନ୍ତି । ଖାଇପିଇ ଆରାମରେ ରାତିରେ ମହାନ୍ତିଙ୍କ ପିଣ୍ଡାରେ ଶୋଇଲୁ । ସକାଳେ ତାଙ୍କ ପୁତ୍ରର ଜଳଖିଆ ଦେଲେ । ମଦନ ଜେନା ଅସୁସ୍ଥ ଥିବାରୁ ତାଙ୍କୁ ନ ନେବା ପାଇଁ ସେମାନଙ୍କୁ ଅନୁରୋଧ କଲୁ । ସେ ରହିଲେ । ମୁଁ ଓ ବୃନ୍ଦାବନ ଭାଇ 'ଏରସମା' ଥାନାକୁ ଗଲୁ ।

ମୁନ୍‌ସିବାବୁ ଅତି ଭଦ୍ର ଲୋକ । ତାଙ୍କ ଘରେ ଖାଇବା ବ୍ୟବସ୍ଥା କଲେ । ଖାଇସାରି ବାହାର ବାରଣ୍ଡାରେ ଶୋଇଲୁ । ସକାଳେ ବଜାରରୁ ଜଳଖିଆ ଖାଇ ଗଲୁ ତିର୍ତ୍ତୋଲ ଥାନାକୁ । ଆମ ସହିତ ଗ୍ରାମଜଣ ଚୌକିଦାର ଓ ଜଣେ ଦଫାଦାର ଗଲେ । ତିର୍ତ୍ତୋଲ ଥାନାରେ ଇନ୍‌ସପେକ୍ଟର ଥାନ୍ତି ଆମ ପାଣ୍ଡୁଦାଦ । ସ୍ୱର୍ଗୀୟ ପ୍ରାଣକୃଷ୍ଣ ମହାନ୍ତି । ଦୁଇଦିନ ତାଙ୍କ ବସାରେ ରହିଲୁ । ସେ ଆମକୁ ଗ୍ରାମଣ କଲେ ପାଟକୁରାକୁ । ତାଙ୍କ ସ୍ତ୍ରୀ ମୋର ମାଉସୀ ହେବେ । ଟଙ୍କା ପାଞ୍ଚୋଟି ଲୁଗାଇ ଦେଇଥିଲେ । ସେତେବେଳର ୫ ଟଙ୍କା ଆଜିର ୫୦ ଟଙ୍କା ସହ ସମାନ । ଏହି ଯାଗୁ ଦାଦ ୧୯୪୨ ଆନ୍ଦୋଳନ ବେଳେ ମୋତେ ଅନୁଗୁଳରେ ତାଙ୍କ ଘରେ ୧୫ ଦିନ ପର୍ଯ୍ୟନ୍ତ ଲୁଗାଇ ରଖିଥିଲେ । କେନ୍ଦ୍ରାପଡ଼ାର କୋର୍ଟ ସବ୍‌ଇନ୍‌ସପେକ୍ଟର ଥିବା ବେଳେ ମଧ୍ୟ ତାଙ୍କ ବସାରେ ୮ଦିନ ଲୁଚି ରହିଥିଲି ।

ପାଟକୁରା ଥାନାର ମୁନ୍‌ସିବାବୁ ଆମପ୍ରତି ସେତେ ସଦୟ ବ୍ୟବହାର କଲେ ନାହିଁ । ଗାଁରୁ ମାଗି ଖାଇଲୁ । ପାଟକୁରାରୁ ଗଲୁ କଣନନଗର । କଣନନଗରରୁ ସାଲେପୁର । ସାଲେପୁରରୁ ମାହାଙ୍ଗା ଥାନା । ମାହାଙ୍ଗାରୁ ବଡ଼ଚଣା । ବଡ଼ଚଣାରୁ ଧର୍ମଶାଳା । ଧର୍ମଶାଳାରୁ କୋରେଇ । କୋରେଇରୁ ଯାଜପୁର ଥାନା । ବାଟରେ ଆମର କୌଣସି ଅସୁବିଧା ହୋଇନି । ଗାଁ ଲୋକ ପୋଲିସକୁ ନ ଡରି ଯିଏ ଯାହା ପାଇଲି ଖୋଉଥିଲେ । ଶୋଇବାକୁ ଯାଗା ଦେଉଥିଲେ । ୧ ଟଙ୍କା ୨ ଟଙ୍କା ଖର୍ଚ୍ଚ ଲଚି ଅଣ୍ଟାରେ ଗୁଞ୍ଜି ଦେଉଥିଲେ । ବରଂ ଚୌକିଦାର, ଦଫାଦାର ଗୁଡ଼ାକ ଉପାସ ରହୁଥିଲେ । ଆମେ ବରଂ ତାଙ୍କ ଖିଆପିଆର ବ୍ୟବସ୍ଥା କରୁଥିଲୁ ।

ଯାଜପୁର ଥାନାର ଇନ୍‌ସପେକ୍ଟର ମୁସଲମାନ ଭଦ୍ରଲୋକ । ଏଭଳି ହିନ୍ଦୁକୁ ନୈଷ୍ଠିକ ଲୋକ ମୁଁ କମ୍ ଦେଖିଛି । ଆମକୁ ସେ ମୁକ୍ତ କରି ଦେଲେ । ହୋଟେଲ୍‌ରେ ଖୁଆଇ ପିଆଇ ବସ୍‌ରେ ବସାଇ ଦେଲେ, ଯାଜପୁର

ଟ୍ରେନ୍ ପର୍ଯ୍ୟନ୍ତ । ସେଠାରୁ କଟକ ଯିବାଲାଗି ଟ୍ରେନ୍ ଭଡ଼ା ଦେବାକୁ ମଧ୍ୟ ଭୁଲି ନ ଥିଲେ । ତାଙ୍କର ସେତେବେଳେ ପରିଣତ ବୟସ ହୋଇ ଯାଇଥିଲା । ବୋଧହୁଏ ସେ ଆଜି କବରରେ ଚିର ନିଦ୍ରା ଯାଇଥିବେ, ଆନନ୍ଦରେ, ଅଚିନ୍ତାରେ । ତାଙ୍କ ଦୟା ଭୁଲି ହେବନି ।

କଟକରୁ ଆମେ ବୁଝେଁ ଗାଁକୁ ଫେରିଲୁ । ବୃନ୍ଦାବନ ଭାଇ ପଶ୍ଚିମକୁ ଫେରିଗଲେ । ମୁଁ ରହିଲି ବାଲିକୁଦାରେ । କେତେଗୁଡ଼ିଏ କର୍ମୀଙ୍କୁ ଏକଯୁଟ କରି ଶୋଭାଯାତ୍ରା ବାହାରକଲି । ସେତେବେଳେ ବାଲିକୁଦା ଥାନାର ମୁନ୍‌ସି ଥାଏ ଆକବର ଖାଁ, ଜମାଦାର ଥାଏ ନବାବ୍ ଖାଁ । ଶୋଭାଯାତ୍ରା ବାଲିସାହି ବଜାର ଦେଇ ଥାନା ପାଖରେ ପହଞ୍ଚିଲା । ନବାବ୍ ମିଆଁ ନ ଥିଲେ । ଆକବର ମିଆଁ ଦୁଇ ଚାରିଜଣ କନେଷ୍ଟବଲ୍ ନେଇ ଚମକି ଆସିଲା । ଶୋଭାଯାତ୍ରାର ନେତୃତ୍ୱ ମୁଁ ନେଇ-ଥିଲି । କିଛି ନ ବୁଝି ମୋତେ ଦୁଇ ଚାରି ପାହାର ପିଟିଦେଲା ଗୋଟିଏ ବାଡ଼ିରେ । ଆମେ ୭୦।୮୦ ଜଣ ପର୍ଯ୍ୟନ୍ତ କର୍ମୀ ଥାଉଁ । ତା'ର ବାଡ଼ି ଧରି ପକାଇ ମୁଁ କହିଲି "ମନେ ଅଛି, ଲେନ୍ ସାହେବ୍ କପରି ଅତ୍ୟାଚାର କରି ତଡ଼ା ଖାଇ ଗଲା । ଆମେ ଏତେ ଲୋକ ଅଛୁ । ଯଦି ତୁମ ଥାନା ଭିତରେ ପଶି ତୁମକୁ ପିଟୁ ଏବଂ ଥାନାରୁ ସବୁ କାଗଜ ପୋଡ଼ି ଦେଉ, ତୁମେ କରିବ କ'ଣ ? ଆମେ ଗାନ୍ଧୀଙ୍କ ଚେଲା ହେଲେ ମଧ୍ୟ ଆମ ସର୍ଦ୍ଦାର ସୁଭାଷଚନ୍ଦ୍ର ବୋଷ ।" ଏତିକି କହି ଆମେ ସମସ୍ତେ ଥାନା ଭିତରକୁ ପଶିଲୁ । ମହାଭୀରୁ ଲୋକ ଆକବର ଖାଁ । କନେଷ୍ଟବଲ୍ ମାତ୍ର ୩।୭ଜଣ । ସେମାନେ ମଧ୍ୟ ଶଙ୍କିଗଲେ । ଆମ ସଙ୍ଗରେ ସେମାନେ ମଧ୍ୟ ଥାନା ଭିତରକୁ ଗଲେ । ସମସ୍ତଙ୍କ ତୁଣ୍ଡରେ ଜୟନାଦ । ଗାନ୍ଧିଜୀ କି ଜୟ । ଭାରତ ମାତା କୀ ଜୟ । ବନ୍ଦେ ମାତରମ୍ । କନେଷ୍ଟବଲ୍‌ରୁ ଆକବର ଖାଁ ଥାନାଦାର ହୋଇଛି । ହାତଯୋଡ଼ି କ୍ଷମା ପ୍ରାର୍ଥନା କଲା ! ମୋ ମୁଣ୍ଡ ଆଉଁସି ଦେଲା । ନିଜ କୃତ କାର୍ଯ୍ୟ ପାଇଁ ଅନୁତାପ କଲା ।

କଟକ ଫେରି ଆସିଲି । ୧୯୩୩ ମାର୍ଚ୍ଚ ମାସରେ ପୁରୀ ଜେଲ୍ ଗଲି । କଟକ ଜେଲ୍‌ର ଆଠ ନମ୍ବର ୱାର୍ଡ଼ରେ ଆମେ ରହିଲୁ । ଗୋପବାବୁ, ସୁରେନ୍ଦ୍ରନାଥ ପଟ୍ଟନାୟକ ପ୍ରଭୃତି ଆମ ସହିତ ଥିଲେ । ଜେଲ୍‌ରେ ମୁଁ ଭୀଷଣ ବେମାର ପଡ଼ିଲି । ବାଧ୍ୟହୋଇ ସରକାର ମୋତେ କାରାମୁକ୍ତ କଲେ । ଜେଲର ଡାକ୍ତରଙ୍କୁ ଆମେ ସମସ୍ତେ ମିଳି ଏପ୍ରିଲ୍ ଫୁଲ୍ କରିଥିବାରୁ ସେ ମୋ ଉପରେ ଦାଉ ସାଧି ମୋ ବେମାରକୁ ବଢ଼ାଇ ଦେଲା । ଜେଲ୍‌ରୁ ଆସି ରଜନୀବାବୁଙ୍କ ଡାକ୍ତରଖାନାରେ ରହିଲି । ରଜନୀବାବୁ ଆଜି ସ୍ୱର୍ଗରେ । ତାଙ୍କ ସୁଯୋଗ୍ୟ କମ୍ପାଉଣ୍ଡର ଆଜି କେଉଁଠି

ମୁଁ ଜାଣେନା । କିନ୍ତୁ ରଜନୀବାବୁଙ୍କ ଅମାୟିକ ବ୍ୟବହାର, ଚକସ୍ତା, କର୍ମାଧ୍ୟକ୍ଷର ଶଙ୍କର ବାବୁଙ୍କ ସ୍ନେହ ମନରୁ ଭୁଲିଯିବାର ନୁହେଁ । ମୁଁ ରୋଗ ମୁକ୍ତ ହେଲି ।

ବିଶ୍ରାମ ଲାଗି ଘରକୁ ଫେରି ଆସିଲି । ଗାଁରେ ହରିହର କାନୁନ୍‌ଗୋଙ୍କ ସହିତ ଚନ୍ଦନ ହେଲା । ମୋ ନେତୃତ୍ୱରେ ଏବଂ ଚନ୍ଦନଙ୍କ ପ୍ରେରଣାରେ ଏକ ଶାନ୍ତି ସେବା ଦଳ ଗଠନ ହେଲା । ଅଳକା ନଈ କୂଳରେ ଗୋଟିଏ ସ୍ଥାନ ପରିଷ୍କାର କରି-ଯାଇ ଆମ ଗାଁ ପିଲାମାନଙ୍କୁ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଡ୍ରିଲ କରାଏ । ଆସନ ଓ ନମସ୍କାର ଶିଖାଏ । ଧୀରେ ଧୀରେ ତାହା ଏକ ସ୍ୱେଚ୍ଛାସେବକ ବାହିନୀ ହୋଇଗଲା । ଘରପୋଡ଼ି ହେଲେ, ହଇଜା ଲାଗିଲେ, କି ବନ୍ୟା ବିପତ୍ତି ପଡ଼ିଲେ ଆମେମାନେ ସାହାଯ୍ୟ କରୁଥିଲୁ । ଚନ୍ଦନଙ୍କ ଜମିରେ ଆଳକା କ୍ଲବ ମୁଣ୍ଡ ଟେକିଲା । ପିଲାମାନେ ନିଜ ମୁଣ୍ଡରେ ମାଟି ବୋହି କ୍ଲବ ତିଆରି କଲେ । ତାହାରି ଆନୁକୂଲ୍ୟରେ ବିଭିନ୍ନ ନାଟକ ପରିବେଷଣ ହେଲା । ଗ୍ରେଟ ଲାଇବ୍ରେରୀଟିଏ ଖୋଲିଲା । ମୁଁ ସନ୍ନିସ୍ଥ ସ୍ୱାଧୀନତା ଆନ୍ଦୋଳନରୁ ଓହରି ଆସି ଗ୍ରାମୀଣ ପରିବେଶରେ ବାନ୍ଧିହୋଇ ରହିଗଲି ।

ପିଲାଦିନରୁ ମଜା କଥା କହି ସମସ୍ତଙ୍କୁ ହସାଇବା ମୋର ଏକ ପ୍ରବୃତ୍ତି ଥିଲା । ଏଥିଲାଗି ବହୁ କ୍ଷେତ୍ରରେ ଆଦର ଅଭ୍ୟର୍ଥନା ପାଇଛି । ଯେଉଁମାନଙ୍କ କାର୍ଯ୍ୟାବଳୀକୁ ମୋର ସ୍ୱଭାବ ସୁଲଭ ଢଙ୍ଗରେ ଚର୍ଚ୍ଚା କରି ହସର ଖୋରାକ ଯୋଗାଏ, ସେମାନଙ୍କ ମଧ୍ୟରେ ଆମ ଗାଁର ଶଙ୍କର ଭାଇ (ସ୍ୱର୍ଗୀୟ ଶଙ୍କର) ଅନ୍ୟତମ । ଅତି ସରଳ, ନିରୀହ ମଣିଷଟିଏ । ପ୍ରକୃତରେ ଅନେକ କଥା ସେ ବୁଝି ପାରେ ନାହିଁ ।

ଥରେ ଅର୍ଦ୍ଧରାତ୍ରି ବଳୁଆଟାଏ ଶଙ୍କର ଗାଡିରେ ବୋବାଇବାରୁ ଆର ଘରେ ଶୋଇଥିବା ଶଙ୍କରର ବାପା ପାଟିକରି କହିଲା, ଶଙ୍କର ବଳୁଆ ବୋବାଉଛି ମୁଣ୍ଡ ଟେକ ଦେ । ବାସ ଶଙ୍କର ମୁଣ୍ଡ ଟେକିଛନ୍ତି ଯେ ରାତି ପାହିବା ପର୍ଯ୍ୟନ୍ତ । କଷ୍ଟ ହେବାରୁ ବାପାଙ୍କୁ ଡାକି ମୁଣ୍ଡ ପକେଇବାର ଅନୁମତି ଲୋଡ଼ିଲା ।

ବାପାର ଆଉ ରାତି କଥା ମନେ ନାହିଁ । ପରେ ବୁଝି କହିଲା, ଆରେ ତୋ ମୁଣ୍ଡରେ ଟିକିଏ ବୁଦ୍ଧି ନାହିଁ ? ସେ ମୁଣ୍ଡ ଆଉ ଥିବଟି ? ଶଙ୍କର କହିଲା— ବାପା, ମୁଣ୍ଡ ତା' ଜାଗାରେ ଠିକ୍ ଅଛି । ଖାଲି ଟିକିଏ ବିନ୍ଧୁଛି ଯାହା । ବାପା ଆଉ କାହାକୁ କହିବ, ଖାଲି କପାଳକୁ ନିନ୍ଦିବା ସାର ହେଲା ।

ଥରେ ଆମ ଗାଁ ଯାତ୍ରାପାର୍ଟିର ହାରମୋନିୟମ୍ ଆଣିବାକୁ ତାକୁ ଙ୍ଗଡ଼ିନପୁର ପଠାଇଲୁ ଦସ୍ମାନିଧି ବାବୁଙ୍କ ଘରକୁ। ସେ ଖୁବ୍ ଅଭାବୀ ଲୋକ। ଯୋଗକୁ ସେଦିନ ତାଙ୍କ ବାପାଙ୍କର ଶ୍ରାଦ୍ଧ ଯୋଗୁଁ ଗ୍ରାମବାସୀଙ୍କୁ ତାଙ୍କ ଘରେ ଖାଇବାକୁ ନିମନ୍ତ୍ରଣ କରିଥାନ୍ତି। ଶଙ୍କର ଭାଇକୁ ଘରରେ ରଖିଲେ, ଛାଡ଼ିଲେ ନାହିଁ। ଭୂରି ଭୋଜନର ବ୍ୟବସ୍ଥା ହେଲା। ପରଦିନ ହାରମୋନିୟମ ନେଇ ଶଙ୍କର ଭାଇ ଗାଁକୁ ଫେରିଲେ। ବିଳମ୍ବର କାରଣ ପଚାରିବାରୁ ଉତ୍ତର ମିଳିଲା, ଦସ୍ମାନିଧି ବାବୁଙ୍କର କାଲି ଶ୍ରାଦ୍ଧ ଥିଲା। ଛାଡ଼ିଲେ ନାହିଁ। କହିଲୋ ଦସ୍ମାନିଧି ବାବୁ ବଞ୍ଚିଛନ୍ତି, ତାଙ୍କର କ'ଣ ଶ୍ରାଦ୍ଧ ? ତାଙ୍କ ବାପାଙ୍କର ହୋଇଥିବ। ରାଗିଯାଇ ଶଙ୍କର ଭାଇ କହିଲା—କ'ଣ ମୋତେ ବୋକା ଭାବିଛ ? ମୁଁ ନିଜେ ଦେଖିଛି, ଦସ୍ମାନିଧି ବାବୁ ପାଟଯୋଡ଼ ପିନ୍ଧି, ଚନ୍ଦନ ଟୋପି ଲଗାଇ କର୍ମରେ ବସିଥିଲେ। ତାଙ୍କ ବାପାଙ୍କର ଶ୍ରାଦ୍ଧ ହୋଇଥିଲେ, ତାଙ୍କ ବାପାଙ୍କୁ କ'ଣ ସେ ସବୁ ପିନ୍ଧି ବସି ଆସେ ନାହିଁ ? କଣ ଅଉ କହିବୁ ? ହସି ହସି ବେଦମ୍ ହେଲୁ। ପୁଣି ପଚାରିବାରୁ ସେ ଯାହା ହେବାର ହେଲା। କ'ଣ ଖାଇଲ, କ'ଣ ଦେଖିଲ, ସବୁ କହିଲ ? ଶଙ୍କର ଭାଇର ମାନସ-ପଟରେ ଗତକାଲିର ସୁସ୍ୱାଦୁ ଖାଦ୍ୟର ସ୍ମୃତି ଜାଗିଉଠି କପରି ତାକୁ ବିଚଳିତ କରିପକାଇଲା। ମୁହଁରେ ପରିତୃପ୍ତିର ହସ ଖେଳାଇ କହିଲା—ଖୁବ୍ ସରୁ ଅନ୍ନ, ଗୁଆ ଘିଅ ପଡ଼ିଥାଏ। ମୁଗ ଡ଼ାଲି, ୭ଟା ହାରମୋନିୟମ୍, ୫ଟା ବେହେଲା, ମିଶ୍ରଣ ତରକାରୀ। ୨ଟା ବଡ଼ ବଳଦ, ବାଇଗଣ ଭଜା, ପକ୍କା ପିଣ୍ଡା, ଲମ୍ବା ଟର୍ଚ୍ଚ ଲାଇଟ୍, ଶାଗ ଭଜା, ଧାନ ଗଜା, ଗୋଟିଏ ସାଇକେଲ, ଖିରି, ଶଗଡ଼ଗାଡ଼ି, ପାଣି କଖାରୁ ଖଟା ଇତ୍ୟାଦି। ଯାହା ଖାଇଥିଲା, ଆଉ ଯାହା ଦେଖିଥିଲା ସବୁ ଏକାଠି ଖାଇଗଲା। ଆମେ ହସି ହସି ଗଡ଼ୁଥାଉ। କହିଲୁ ଶଙ୍କର ଭାଇ ତୁମଠାରୁ ବୋକା ଏ ଦୁନିଆରେ କିଏ ଅଛି ? ହେଲେ ସେହି ଶଙ୍କର ଭାଇ ଆମଭଳି ତଥାକଥିତ ବୁଦ୍ଧିଆଙ୍କୁ ମଧ୍ୟ ବୋକା ବନାଇ ଦେଲା—ଯେତେବେଳେ ଆମେ ତାକୁ ନେଇ ପୁରୀ ବାହାରିଲୁ ବୁଲିବୁଲି ରଥଯାତ୍ରା ଦେଖିବାକୁ।

ଦଳରେ ଥାଇ ମୁଁ, ଚନ୍ଦନ (୮ ବରଷର କାନୁନ୍‌ଗୋ) ସେତେବେଳେ ଶିକ୍ଷକତା କରୁଥିବା ଓ ବର୍ତ୍ତମାନ ଅବସରପ୍ରାପ୍ତ ହାକିମ ବନ୍ତ ବାବୁ, ବାଲସାସ୍ତ୍ର ବାସୁବାବୁ (ଯେ କି ମୋର ପରମ ବନ୍ଧୁ), ଗୋପାଳ ଚରଣ ସ୍ୱାଇଁ (ଶୁକ), ତା'ର ନାଗପୁର ଭଉଣୀ ଧଡ଼ି, ବୁଢ଼ଲ, ଚୂଡ଼ା, ନଡ଼ିଆ, ମୁଗଡ଼ାଲି ପିଏ ଯାହାର ଘରୁ ଆଣିଲେ। ଦୁଇଟା ଡେକଚି, ଗୋଟାଏ କରେଇ ଓ କଦଳୀ ପତ୍ର ବିଡ଼ାଏ ମଧ୍ୟ ନିଆଗଲା। କଲୁ ଏତେଗୁଡ଼ାଏ ଜିନିଷ ପୁଳାଯାଏ ନେବ କିଏ ଭାଲେଣିରେ ପଡ଼ିଗଲୁ। ଆମେ ଯିଏ ଯାହାର ଲୁଗାପଟା ନେଲୁ। ସମସ୍ୟା ଉପୁଜିଲା ବୋଝଟି

ଲାଗି । ଶଙ୍କର ଭାଇ ସବୁ ଶୁଣୁଥିଲେ । କହିଲେ—'କୁଛ୍ ପରବାହ୍ ନେହିଁ । ହାମ୍ ନେଏଙ୍ଗା । ସେ ଦିନାକେତେ ପୂଜା ମନ୍ଦିରରେ ଚଞ୍ଚଣା କରୁଥିଲେ । କିନ୍ତୁ ଡ୍ୟୁଟି କରୁଥିବାବେଳେ ଗଡ଼ିଇ ଟାଣି ମନ୍ଦିର ମଧ୍ୟରେ ଗୋଡ଼ ଲମ୍ବାଇ ଶୋଇବାରୁ ଚକଣା ଗଲା । ସେଇଠି ହିନ୍ଦୀ ମିଶା ଓଡ଼ିଆ ଜାଣିଥିଲେ । ଶଙ୍କର ଭାଇ ଯିବା କଥା ଶୁଣି ଆମେ ଭାରି ଖୁସି । ଘରେ ଘଣ୍ଟିଏ ଘଣ୍ଟିଏ ଖାଇ ଜଗନ୍ନାଥ କ୍ଷେତ୍ରକୁ ବାହାରି ପଡ଼ିଲୁ । ଶଙ୍କର ଭାଇ ପୂରା ଦମ୍ଭରେ ବୋଡ଼ ମୁଣ୍ଡାଇ ଚାଲୁଥାଏ । ଯେମିତି ଅଲକା ନଦୀ ପାର ହୋଇ ଆମେ ଚଣ୍ଡୀଙ୍କ ପାଖରେ ହୋଇଛୁ, ଶଙ୍କର ଭାଇ ଝିମେଇଲେ । ଆମେ କଥାବାର୍ତ୍ତା ହୋଇ ହସ ଖୁସିରେ ଚାଲିଥିବା ବେଳେ ପଛକୁ ଅନାଇ ତ ଦେଖିଲୁ ଶଙ୍କର ଭାଇ ଗୋଟିଏ ଗଛମୂଳେ ପୁଡ଼ା ଥୋଇଦେଇ ତା ଉପରେ ମୁଣ୍ଡ ରଖି ଗୋଡ଼ ଲମ୍ବାଇ ଶୋଇଛି । ଡାକ ପକାଇବାରୁ ଗୋଟିଏ ଗୋଟିଏ ଚାଲିଲେ । ଉଠିବାରୁ କହିଲେ ଶଙ୍କର ଅଜା ଜଲଦ ଜଲଦ ଚଲ । ଯେମିତି ଦେବୀ ନଈ ପାର ହୋଇ ନୂଆପଲମ ହାଟରେ ବିଶ୍ରାମ ନେବା । ରାତିରେ ଗୋପ ଟପି ନାଗପୁରରେ ରହିବା କୁହିଲ ? ଶଙ୍କର ଭାଇ କହିଲେ—ଏ ପୁଡ଼ାରୁ ନଡ଼ିଆତକ ବାହାର କରି କିଏ ଧର । ଆମର ଟିକିଏ ଶଳା ଭଣେଇ ସମ୍ପର୍କ । ମୁଁ କହିଲି, ହେଇଛେ ଶଳା ? ତୁ ପରା କହିଥିଲୁ—ହାମ୍ ନେଏଙ୍ଗା । ପୁଣି ନଡ଼ିଆ କିଏ ନେବ ? ଶଙ୍କର ଭାଇ କହିଲେ କିଏ ଟିକିଏ ଧରୁନା । ଯାହା ହେଉ ଗୋଟାଏ ଗୋଟାଏ ନଡ଼ିଆ ସମସ୍ତେ ଧରିଲୁ । ପୁଣି କିଛି ବାଟ ଯାଇ ଶଙ୍କର ଭାଇ ଝିମେଇଲେ । କଉ ଶଙ୍କର ଭାଇ କ'ଣ ଆସୁନା ?—ଆଉ କ'ଣ ଧରୁନା—ଗୁହାଳ ତକ ବାଣ୍ଡି ବୁଣ୍ଡି ଗାମୁଛାରେ ବାନ୍ଧିଲୁ । ଦେବୀ ନଦୀ କୂଳରେ ପହଞ୍ଚିଲେ ବେଳକୁ ଆମେ ଯିଏ ଯାହାର କିଛି ପତ୍ର ଧରିଛୁ, ଶଙ୍କର ଭାଇ ଖାଲି କଦଳୀ ପତ୍ର ବିଡ଼ାଟି ଧରି ମହା ଆରାମରେ ଚାଲିଲେ । ଆଚ୍ଛା ଅବୋଲକରାକୁ ଆଣିଲୁ । ସମସ୍ତେ ବିଷ୍ଣୁବାବୁଙ୍କୁ ଦୋଷ ଦେଉଥାନ୍ତି । କାହିଁକି ଶଙ୍କର ଭାଇକୁ ଆଣିଲ ? ଯାହାହେଉ ଦେବୀ ନଦୀ ପାର ହୋଇ ବେତଣ୍ଡା ପାଟ ଦେଇ କଷ୍ଟେ ମଷ୍ଟେ ନୂଆ ପଲମ୍ (ହରେକୃଷ୍ଣପୁର) ହାଟରେ ପହଞ୍ଚିଲୁ । ସ୍କୁଲରେ ଜଳଖିଆ ଖାଇଲୁ । ଆମେ ଟିକେ ବିଶ୍ରାମ ନେଉଛୁ, ଶଙ୍କର ଭାଇ ଆଉ ଖାଇବାଠାରୁ ଉଠୁନି । ଦୁଇ ତିନି ଦିନର ଜଳଖିଆରୁ ସେ ଅଧେ ସାରିଦେଲେଣି । ପୁଣି ତାକୁ ବୋଝ ମୁଣ୍ଡାଇବାକୁ ବାଧ୍ୟ କଲାରୁ ଭାରି ମନ କଷ୍ଟରେ ବୋଝ ମୁଣ୍ଡାଇ ଚାଲିଲେ । ଦିନ ଥାଉଁ ଥାଉଁ ଗୋପ ପାଖରେ ପହଞ୍ଚିଗଲୁ । ଗୋପ ଅଳ୍ପ ବାଟ ଅଛି, ମୁଁ କହିଲି ଇନ୍ସ୍ପେକ୍ସନ ଆମେ କେହି ନେଇନୁ । ପାସ୍ ମଧ୍ୟ ଆଣିନୁ । କ'ଣ କରିବା ? ବାସୁବାବୁ କହିଲେ, ଆମେ କହିବା ଆମ ଘର ପୁରୀଙ୍କ । ଆମେ ଜଗନ୍ନାଥ-ସିଂହଦ୍ୱାରରେ ଇନ୍ସ୍ପେକ୍ସନ ନେଇଛୁ । ମୁଁ କହିଲି ଶଙ୍କର ଭାଇ ଶୁଣିଲ ତ !

ଶଙ୍କର ଭାଇ କହିଲା—ହଁ ବା ଚାଲୁନା । ସିଏ କ'ଣ ମୋତେ ବଳେଇ ଯାଉଛନ୍ତି ? ସମସ୍ତେ ପଛରେ ଚାଲିଥାନ୍ତି । ଶଙ୍କର ଭାଇ ଆଗେ ଆଗେ ଚାଲିଥାଏ । ମୁଁ ଟିକିଏ ଆଗକୁ ଯାଇ ଗୋଟିଏ ଛେମୂଳେ ଲୁଚିଥିଲି । ଶଙ୍କର ଭାଇ ଯେମିତି ମୋ ପାଖରେ ହୋଇଛି, ଠେକାଟା ଭିଡ଼ି ବାହାର ଆସି କହିଲି ଆବେ ଏ ଶଳା ? ତୋ ଘର କେଉଁଠ ? ଗୋଟାଯାକ ଥର ଥର ଶଙ୍କର ଭାଇ ଖନେଇ ଖନେଇ କହିଲା—କ—କ—କ— କଣିଆ । ଇନ୍ସେକ୍‌ସନ ନେଇଛି । ଥାନା ବାଲିକୁଦା । ବାପା ନା ଗ୍ରାମ ମହାନ୍ତି । ମୋ ନାମ ଶଙ୍କର । ମୁଁ ଠେକା ଖୋଲିବାରୁ ଶଙ୍କର ଭାଇ ମୋତେ କହିଲା—ଆରେ ବଇଟି ତମେ । ମୁଁ କହିଲି ଆଉ କିଏ ?

ଯେମିତି ଇନ୍‌ସେକ୍‌ସନ୍ ଯାଗା ପାଖରେ ହୋଇଛି, ମୁଁ ତାକୁ ଠେଲିଦେଇ ଗେଟ୍ ପାର କରାଇ ଦେଲି । ସ୍ୱାସ୍ଥ୍ୟ ବିଭାଗର 'ପିଅନ୍ କହୁଛି ବାବୁ ଏ କ'ଣ ? ଆମେ ତ ରହିଲୁ । ପାଣି ପାଣି ହୋଇ ତା ପ୍ରାଣ ଯିବା ଉପରେ । ପେଟେ ପାଣି ପିଇ ସାରୁ ଯାହା ପାର କରିବ । ଭାର ପାଣି ପିଇବା ବାଲା । ଟିକେ ଡେରି ହେଲେ ଯାହା ନାହିଁ ତାହା କରିଦେବ । ପିଅନ୍ ଡରଯାଇ କହିଲା ଯାଉ ଯାଉ ବାବୁ ଯାଉ । ଏମିତିଆ ଲୋକକୁ କାହିଁକି ସାଙ୍ଗରେ ଆଣିଛ ? ଗରିବ, ବିଚରା ତାକୁ ପୁରୀ ନେଉଛୁ କଣେ ବାବୁଙ୍କ ନିକଟକୁ ସିଏ କି ତାକୁ ଔଷଧ ଦେଉଛନ୍ତି—ତାଙ୍କୁ ଦେଖାଇବାକୁ । ଏହି ସମୟରେ ବାସୁବାବୁ କହିଲେ—ହୋ ବଇ ଭାଇ କୁଆଡ଼େ ଶଙ୍କରକୁ ନେଉଛ ? କ'ଣ ବୋଲି କ'ଣ କରିଦେବ । ତାକୁ ଧର । ଏମିତି ଶଙ୍କର ଭାଇ ନାମରେ ପାଟିତୁଣ୍ଡ କରି ଠେଲା ପେଲା ହୋଇ ଆମେ ଚାଲିଗଲୁ । ଇନ୍ସେକ୍‌ସନ୍ ବାଲା କାବା ହୋଇ ଅନେଇଛନ୍ତି ।

ନାଗପୁର ବଜାରରେ ରାତି ହେଲା । ଗୋଟିଏ ଗୁଡ଼ିଆ ଦୋକାନରେ ରୋଷେଇବାସର ବ୍ୟବସ୍ଥା କରି ମୁହଁ ହାତ ଧୋଇବାକୁ ନିକଟରେ ଥିବା ଏକ ପୋଖରୀକୁ ଗଲୁ । ଆମେ ପୋଖରୀରୁ ଫେରିଲା ବେଳକୁ ଶଙ୍କରଭାଇ ଗୋଟିଏ ପାଇଖାନା ପାଖରେ ଲମ୍ବଳାଲି ହୋଇ ପଡ଼ି କହୁଛି—ମାଆଲୋ ! ସମସ୍ତେ ପଛକେ ହଇଜାରେ ମରନ୍ତୁ । ମୁଁ ମୋ ବାପ ମା'ର ଗୋଟିଏ ବୋଲି ପୁଅ । ମୋତେ ରକ୍ଷା କର । ମା ମା ଅଉ ସମସ୍ତଙ୍କୁ ଖା । ଶୁକ ତା ପିଠିକୁ ଦୁଇ ବିଧା ପକାଇ କହିଲା—ସମସ୍ତଙ୍କୁ ଖା । ମୋତେ ରଖି ଥା । ହେଇରେ । ଏ ପାଇଖାନାରେ ମୁଣ୍ଡିଆ ମାରି କାହାକୁ ଡାକୁଛୁ ? ଶଙ୍କର ଭାଇ କହିଲା—ଏଁ ଏଇଟା ଠାକୁରାଣୀଙ୍କ ମନ୍ଦିର ଥିଲା ! କେଉଁଦିନ ପାଇଖାନା ହୋଇ ଗଲାଣି ? ମୁଁ କହିଲି—ଅବେ ମନ୍ଦିରଟି ତେଣେ । ଏଇଟା ପାଇଖାନା । କାହାଠାରୁ ହଇଜା କଥା ଶୁଣି

ତୁ ଏଇଠି ପଡ଼ିଛୁ ? ଆମର ଶୁଭ ମନାସୁଛୁ ? ବୁଲି ବୁଲି ଥକ ଯାଇଥିଲୁ । ଗଣ୍ଡିଏ ଚଣ୍ଡିଏ ଖାଇକରି ଶୋଇ ପଡ଼ିଲୁ । ଶଙ୍କର ଭାଇ ବଳିଥିବା ଭାତ ଡାଲମା ଖାଇ ପୁଣି ଦୋକାନୀଠୁଁ ୪ପଇ ବେଟି ଆଣି ଖାଇଲେ । ସକାଳେ ଆମେ ପଇସା ଦେଲୁ । ପୁରୀରେ ଠିକ୍ ସମୟରେ ପହଞ୍ଚିଲୁ ।

ତହିଁ ଆର ଦିନ ପ୍ରସିଦ୍ଧ ରଥଯାତ୍ରା । ଜଗନ୍ନାଥଙ୍କୁ ନନ୍ଦିଘୋଷ ରଥରେ ଦେଖି ଓ ରଥ ଦଉଡ଼ି ଧରି ଏ ଜୀବନ ଧନ୍ୟ ହେଲା । ଦିନଟିଏ ରହି ବୁଲିଆଡ଼େ ବୁଲାବୁଲି କଲୁ । ଯେଉଁଦିନ ପୁରୀ ଛାଡ଼ିବୁ, ସେଦିନ ସମସ୍ତେ ମିଶି ରନ୍ଧାବଢ଼ା କଲୁ । ଭାତ, ଡାଲମା, ଆଳୁଭରତା, ଶଙ୍କର ଭାଇକୁ ଜଗାଇ ସମୁଦ୍ରକୁ ଗାଧୋଇବାକୁ ଚାଲି ଗଲୁ । ଶଙ୍କର ଭାଇ ଜଗିବ କ'ଣ ? ବଡ଼ ଗଞ୍ଜେଇ କଲିଟିଏ ଟାଣିଦେଇ, ଭାଙ୍ଗ ଅଧଲୋଟାଏ ପିଇଦେଇ ଭାତ ଡାଲମା ଆଳୁ ଭରତାରୁ ଅଧେ ଖାଇ ଅଗଣାରେ ହାଣ୍ଡି ଖୋଲି ଦେଇ ନାଚି ନାଚି ପାତିମାଙ୍କଡ଼ମାନଙ୍କୁ କହୁଛି —ଭାତ ଖାଓ । ଡାଲମା ଖାଓ । ଭରତା ଖାଓ । ଆମେ ଆସି ପହଞ୍ଚିଲା ବେଳକୁ ଆମ ପାଇଁ ଆଉ କ'ଣ କିଛି ଅଛି ? ସବୁ ସାବାଡ଼ କରିଦେଇଛନ୍ତି ପାତିମାଙ୍କଡ଼-ମାନେ । ଭୋକରେ ପେଟ ଜଳିଲାଣି । ଆମେ ପଚାରିଲୁ କିଓ ଶଙ୍କର ଭାଇ ! ଏ କ'ଣ ପାତିମାଙ୍କଡ଼ମାନଙ୍କୁ ଖୁଆଉଛ ? ଆମେ ଖାଇବୁ କ'ଣ ? ଶଙ୍କର ଭାଇ ତ ଗଞ୍ଜେଇ ଓ ଭାଙ୍ଗ ନିଶାରେ ଚୂର ! କହିଲା—ଏମାନେ ରାମଦୂତ । ରାମଚନ୍ଦ୍ରଙ୍କ ସାଙ୍ଗରେ କାଠଯୋଡ଼ି ପଥର ବନ୍ଧ ବାନ୍ଧିଥିଲେ ! ଖାଆନ୍ତୁ । ମୁଁ କହିଲି—ଆବେ ଶଳା । କାଠଯୋଡ଼ି ବନ୍ଧ ନା ସେତୁ ବନ୍ଧ ? ସେ କହିଲା—କାଠଯୋଡ଼ି ବନ୍ଧ ଯିଏ, ସେତୁ ବନ୍ଧ ସିଏ । ତୁମେ ସବୁ ହୋଟେଲରେ ଖାଇ ଆସ । କ'ଣ ଆଉ କରିବୁ ? ମନ କଥା ମନରେ ମାରି ହୋଟେଲରେ ଖାଇ ଶଙ୍କର ଭାଇକୁ ସାଙ୍ଗରେ ନ ନେଇ ତାକୁ ଟ୍ରେନ୍ ଓ ବସ୍ ଭଡ଼ା ଦେଇ ଆମେ ଭୁବନେଶ୍ୱର ଅଭିମୁଖେ ବୁଲିଲୁ ।

୧୯୩୩ର ମଧ୍ୟ ଭାଗରେ କଂଗ୍ରେସ ଆନ୍ଦୋଳନ ଧିମେଇ ଆସିଲା । ଗାନ୍ଧିଜୀ ସତ୍ୟାଗ୍ରହ ପ୍ରତି ଧ୍ୟାନ ନ ଦେଇ ଅଗଣିତ ଦଳିତ, ଉପେକ୍ଷିତ, ହରିଜନମାନଙ୍କ ଉନ୍ନତି ପ୍ରତି ବିଶେଷ ଧ୍ୟାନ ଦେଲେ । ମନ ପ୍ରାଣ ଦେଇ ତାଙ୍କର କେତେକ ବିଶିଷ୍ଟ ସହକର୍ମୀଙ୍କୁ ନେଇ ସେହି କାମରେ ଲାଗିପଡ଼ିଲେ । ମୋତେ କିନ୍ତୁ ଘରେ ରହିବାକୁ ଭଲ ଲାଗୁ ନ ଥାଏ । ଯେଉଁ ସ୍ୱାଧୀନତା ଲାଗି ମୁଁ ଏତେ କଷ୍ଟ ସହିଲି, ମାଡ଼ ଖାଇଲି, କାରାଗାରର ଯାତନା ସହିଲି, ପୋଥିରେ ଡୋରି ବାନ୍ଧିଲି, ସେ ସ୍ୱପ୍ନ କ'ଣ ଅପୂର୍ଣ୍ଣ ରହିଯିବ ? ତାହା କ'ଣ ସଫଳ ହେବ ନାହିଁ ? ଇଂରେଜମାନଙ୍କ ପେଷଣ, ଶୋଷଣ, ଦମନ କ'ଣ ଏପରି ଚାଲିଥିବ ? ଗାନ୍ଧିଜୀଙ୍କ ତ୍ୟାଗ, ସାଧନା,

ନେତାମାନଙ୍କର ଅଦ୍ଭୁତ ସଙ୍ଗଠନ ଶକ୍ତି, ଅଗଣିତ କର୍ମୀମାନଙ୍କର ଅପୂର୍ବ ବଳିଦାନ, ସବୁ କ'ଣ ବିଫଳ ହେବ ? ଏ ପ୍ରାଣ ଖାଲି ଛଟପଟ ହେଉଥାଏ ।

୧୯୩୭ର ବର୍ଷା ଦିନେ କାଠଯୋଡ଼ି କୂଳରେ ଖଣ୍ଡିଆଇତା ଘାଇ ଭାଙ୍ଗିଲା । ତା ପରେ ପରେ ବଛାଲ ଘାଇ, ଏବଂ ତାବର ଘାଇ ଭାଙ୍ଗି ହର୍ଷପୁର, ବସନ୍ତପୁର ଏବଂ ମାଛଗାଁର ଏକ ବିସ୍ତୃତ ଅଞ୍ଚଳ ଜଳମଗ୍ନ ହେଲା । ଆମ ଗାଁର ଯୁବକମାନେ ଘର ଘର ବୁଲି ମୁଷ୍ଟି ଭିକ୍ଷା କରି ବିପନ୍ନ ଅଞ୍ଚଳରେ ସାହାଯ୍ୟ ପଠାଇଲେ । ରାମକୃଷ୍ଣ ମିଶନ୍ ଦୁଃସ୍ଥ ଲୋକମାନଙ୍କ ସହାୟତା ଲାଗି ଉପସ୍ଥିତ ହେଲେ । ସ୍ୱାମୀ ଗଦାଧର ନନ୍ଦଙ୍କ ସହିତ ସମସ୍ତ ଅଞ୍ଚଳ ବୁଲି ମୋତେ ସର୍ଭେ କରିବାକୁ ପଡ଼ିଲା । ଧୂଳିବାବୁ (ଖିରକିଶୋର ଦାସଙ୍କ ବାପା)ଙ୍କ ଖମାର ଘରେ ରିଲିଫ କେନ୍ଦ୍ର ଖୋଲିଲା । ସେହିଠାରୁ ଚାଉଳ, ଚୂଡ଼ା, ଲୁଗା ଇତ୍ୟାଦି ବିତରଣ କରାଯାଉଥାଏ । ଶ୍ରୀ ହରେକୃଷ୍ଣ ବିଶ୍ୱାଳ, ଗୋବିନ୍ଦଚନ୍ଦ୍ର ଦାସ, ଖିରବର ଦାସ, କ୍ଷେତ୍ରମୋହନ କାନୁନ୍‌ଗୋ, ଶ୍ୟାମ ପ୍ରଧାନ, ଅନ୍ନପୂର୍ଣ୍ଣା 'A' ଗ୍ରୁପ୍‌ର ପ୍ରଦକ୍ଷ ମ୍ୟାନେଜର ଖୋରଧର ବାଉରିବନ୍ଧୁ ମହାନ୍ତି, ଉପେନ୍ଦ୍ର ମହାପାତ୍ର ପ୍ରଭୃତି ଏ ସେବାକାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ସ୍ୱର୍ଗୀୟ ଖିରକିଶୋର ଦାସଙ୍କ ପରିଚାଳନାରେ ସମସ୍ତ ଚାଲିଥାଏ । ଏହିମାନଙ୍କ ନେତୃତ୍ୱରେ ଓରଣ୍ଡ ଲୁଣ ଚଟାଣରେ ବାଲିକୁଦା ଅଭୂତପୂର୍ବ ସାହସ, ଧୈର୍ଯ୍ୟ ଦେଖାଇଥିଲା, ଯାହାକି ଏ ଅଞ୍ଚଳର ଜାତୀୟ ଇତିହାସକୁ ସ୍ୱର୍ଣ୍ଣାକ୍ଷରରେ ରଞ୍ଜିତ କରି ରଖିଥିବ ।

ବନ୍ୟାର ଖବର ଗାନ୍ଧିଜୀଙ୍କ କାନକୁ ଗଲା । ସେ ଠକ୍କର ବାପାଙ୍କୁ ପଠାଇଲେ ବନ୍ୟା ବିଧ୍ୱସ୍ତ ଅଞ୍ଚଳ ବୁଲି ଦେଖିବାକୁ । ସେତେବେଳେ ଅଟଳ ବିହାରୀ ଆଚାର୍ଯ୍ୟ, ସତ୍ୟନାରାୟଣ ସେନଗୁପ୍ତ ଓ ଗୋପବାବୁ ରିଲିଫ ପରିଚାଳନାର ଦାୟିତ୍ୱ ନେଲେ । ଝାରପଡ଼ା, ଏରଡ଼ା, ଅତିରିପୁର, ତିର୍ତ୍ତିକଣାରେ ସାହାଯ୍ୟ କେନ୍ଦ୍ରମାନ ଖୋଲାଗଲା । ଝାରପଡ଼ା କେନ୍ଦ୍ରଟି ସୁଧୀର ଘୋଷଙ୍କ ଅଧୀନରେ ଚାଲିଥାଏ । ସତ୍ୟନାରାୟଣ ସେନ୍‌ଙ୍କ ପୁତୁରା ନୃପେନ୍ ସେନ୍ ଥିଲେ ଡାକ୍ତର । ସୁଧୀର ବାବୁ ଚିଠି ଲେଖି ମୋତେ ତାଙ୍କ ପାଖକୁ ଡାକି ନେଲେ । ଆଗରୁ ବାର୍କିର ସନାତନ ଦାସ ମଧ୍ୟ ସେଠାରେ ଥାଏ । ରିଲିଫ୍ କାର୍ଯ୍ୟ ଦେଖୁ ଓ ଡାକ୍ତରଖାନାରେ ରୋଗୀମାନଙ୍କ ସେବା କରୁ । ଧୀରେ ଧୀରେ କମ୍ପାଉଣ୍ଡରି ଶିଖିଗଲି । ଝାରପଡ଼ାରେ କେତେ ମାସ ରହିବା ପରେ ଆରମ୍ଭ ହେଲା ଗାନ୍ଧିଜୀଙ୍କର ଐତିହାସିକ ହରିଜନ ପଦଯାତ୍ରା । ଗାନ୍ଧିଜୀ ପୁରୀ ଶ୍ରୀ ମନ୍ଦିରରେ ହରିଜନମାନେ ଦିଅଁ ଦର୍ଶନ କରନ୍ତୁ ବୋଲି ଅନେକ ଅନୁରୋଧ କଲେ । କିନ୍ତୁ ହରିଜନମାନଙ୍କୁ ନେଇ ଜଗନ୍ନାଥଙ୍କୁ

ଦର୍ଶନ କରିବାକୁ କହିବାରୁ ପୁରୀର ପଣ୍ଡାମାନେ ତାହା କରିବାକୁ ଦେଲେ ନାହିଁ । ଅଧିକନ୍ତୁ ଗାନ୍ଧିଜୀ ମନ୍ଦିରରୁ ଅପମାନିତ ହୋଇ ଫେରିଲେ । ବନାରସ୍‌ରୁ ଆସିଥିବା ତଥାକଥିତ ସନାତନୀ ବୋଲାଉଥିବା ଦଳେ ଗେରୁ ବସ୍ତ୍ରଧାରୀ ଗାନ୍ଧିଜୀଙ୍କ ହରିଜନ ଆନ୍ଦୋଳନର ଘୋର ବିରୋଧ କଲେ । କଟକର ପଣ୍ଡିତ ଶର୍ମା ବିଭିନ୍ନ ସ୍ଥାନରେ ସଭାକରି ପୁରୀ ମନ୍ଦିରରେ ହରିଜନ ପ୍ରବେଶର ତୀବ୍ର ନିନ୍ଦାକଲେ । ତେଣୁ ଗାନ୍ଧିଜୀ ହରିଜନମାନଙ୍କ ଉନ୍ନତି କଲେ ପାଣ୍ଠି ସଂଗ୍ରହ ଲାଗି ଅସ୍ପୃଶ୍ୟତାରୂପୀ କଳଙ୍କ ଏ ସମାଜରୁ ଦୂର କରିବା ଲାଗି ପବିତ୍ର ନୀଳାଚଳ ଧାମରୁ ତାଙ୍କର ପଦଯାତ୍ରା ଆରମ୍ଭ କଲେ । ପ୍ରତି ୫।୬ ମାଇଲ୍ ଦୂରତ୍ୱରେ ଶିବିର ପଡ଼ୁଥାଏ । ଦିନରେ ପାଣ୍ଠି ସଂଗ୍ରହ ହୁଏ । ସନ୍ଧ୍ୟାରେ ସାଧାରଣ ସଭାମାନ ହୁଏ । ଗାନ୍ଧିଜୀ ସରଳ ହିନ୍ଦୀରେ କୁହନ୍ତି । ରାଜକୃଷ୍ଣ ବୋଷ ତାକୁ ଓଡ଼ିଆରେ ଲୋକମାନଙ୍କୁ ବୁଝାଇ ଦିଅନ୍ତି । ମୋର ଯେତେ ଦୂର ମନେ ପଡ଼େ ଗାନ୍ଧିଜୀଙ୍କ ଗହଣରେ ଠକ୍କର ବାପା, ମହାଦେବ ଦେଶାଇ, ପ୍ୟାରେଲାଲ୍, ରାଜେନ୍ଦ୍ର ପ୍ରସାଦଙ୍କ ଭଉଣୀ, ମୀରାବେନ୍ ଏବଂ ଜର୍ମାନର ଜଣେ ନାରୀ, (ତା'ର ନାମ ବୁଟୋ) ଥାଆନ୍ତି । ଆମ ଓଡ଼ିଶାରୁ ଅନେକ ବହୁତେ ସମସ୍ତ ନେତା ଓ କର୍ମୀ ରହୁଥିଲେ । ବିଶେଷ କରି ରମାଦେବୀ (ମା), ଲୁମା, ଚୁନି ଅପା, ମଙ୍ଗଳା ଅପା ଓ ଆହୁରି ଅନେକ ନାରୀକର୍ମୀ ଥିଲେ । ଗାନ୍ଧିଜୀ ସେମାନଙ୍କ କାନ୍ଧରେ ହାତ ରଖି ଆଗଉଥିଲେ । ସୁଧୀର ବାବୁ, ଗୋପବାବୁଙ୍କଠାରୁ ଖବର ପାଇ ମୋତେ ନେଇ ଆସି ଦାଣ୍ଡ ମୁକୁନ୍ଦପୁରରେ ପହଞ୍ଚିଲେ । ଆମେ ଆଗୁଆ ଦଳରେ ରହିଲୁ । ସୁଧୀର ବାବୁ ଆମର ନେତା । ଆମର କାମ ହେଲା ରହିବାର ସ୍ଥାନ ସ୍ଥିର କରିବା । ପାଇଖାନାଇତ୍ୟାଦି ତିଆରି କରିବା । କିଏ କ'ଣ ଖାଇବ, ତା'ର ବ୍ୟବସ୍ଥା କରିବା । ବଡ଼ିରେ ମଧ୍ୟ ଗାନ୍ଧିଜୀଙ୍କ କ୍ୟାମ୍ପ୍ ପହରାଦେବା । ସଭାର ବ୍ୟବସ୍ଥା କରିବା । ଦରକାର ପଡ଼ିଲେ ବୋଲହାକଟାଏ କରି ଏ ଜନ୍ମ ସାର୍ଥକ କରିଛୁ । ଏତେ ପାଖରୁ ସେ ବିରାଟ ବ୍ୟକ୍ତିତ୍ୱ ଦେଖି ଏ ଜୀବନ ଧନ୍ୟ ହୋଇଛି । ତାଙ୍କ ପରି ମହାପୁରୁଷର ସେବା ଭାଗ୍ୟରେ ଥିଲେ ମିଳେ ।

ଉତ୍କଳ ଖାମ ପଦ୍ମଚରଣ ଗାନ୍ଧିଜୀଙ୍କ ବାରଣ ସତ୍ତ୍ୱେ ତାଙ୍କ ପାଦରେ ତେଲ ମାଲିସ୍ କରିଦେଲେ । ଗାନ୍ଧିଜୀ ତାଙ୍କୁ ଖୁବ୍ ଆଶୀର୍ବାଦ କଲେ । ମୁଁ ଗାନ୍ଧିଜୀଙ୍କ ଶିବିର ପହରା ଦେଉଥାଏ । ପ୍ରଚଣ୍ଡ ଗ୍ରୀଷ୍ମରେ ଗାନ୍ଧିଜୀ ରହୁଥାନ୍ତି । କଟକ ଜିଲ୍ଲାର ତେଲଙ୍ଗା ପେଣ୍ଠ ଏବଂ ବାଜପାଟଣାରେ ରହଣି ହେଲା । ସେଦିନ ସନ୍ଧ୍ୟାରେ କାଠଯୋଡ଼ି ନଦୀ ବାଲିର ସ୍ନାନଘାଟଠାରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହେଲା । ଗାନ୍ଧିଜୀଙ୍କ ହିନ୍ଦୀ ଭାଷଣକୁ ରାଜକୃଷ୍ଣ ବୋଷ ଓଡ଼ିଆରେ ଅନୁବାଦ କରି ବୁଝାଉଥିଲେ । ଗାନ୍ଧିଜୀଙ୍କ ଦର୍ଶନ ଓ ଭାଷଣ ଶୁଣିବାକୁ ଦୂର ଦୂରାନ୍ତରୁ ବହୁ

ଲୋକଙ୍କର ସମାବେଶ ହୋଇଥିଲା । ପଣ୍ଡିତ ଶର୍ମାଙ୍କ ନେତୃତ୍ୱରେ ସନାତନୀମାନେ ସେ ସଭା ଭାଙ୍ଗିବାକୁ ଆପ୍ରାଣ ଚେଷ୍ଟା କଲେ । କିନ୍ତୁ ଲୋକେ ତାହା କାନ ଦେଲେ ନାହିଁ । ଜନତାର ସେ ପ୍ରବଳ ସ୍ରୋତରେ ମୁଷ୍ଟିମେୟ କେତେ ଜଣ ବିରୋଧୀ ସନାତନୀ କେଉଁଆଡ଼େ ଲୁଚିଗଲେ । କିନ୍ତୁ ପରମ ଅହିଂସାବାଦୀ ଗାନ୍ଧିଜୀ ସେମାନଙ୍କୁ ସଭା ସ୍ଥଳକୁ ଡକାଇ ନିଜ ମତ ବ୍ୟକ୍ତ କରିବାର ସୁଯୋଗ ଦେଲେ । ଗାନ୍ଧିଜୀ ସେଦିନ ଗାଡ଼ିରେ ବିଶେଷ କାରଣ ଯୋଗେ ପାଟନା ଗଲେ । ସେଦିନ ସଭାରେ ହରିଜନ ପାଣ୍ଠି ଲାଗି ଯଥାଶକ୍ତି ଦାନ କରିବା ପାଇଁ ଗାନ୍ଧିଜୀଙ୍କ ତୁଣ୍ଡରୁ ବାହାରିଛି କି ନାହିଁ, ଯିଏ ଯାହା ପାଇଲେ ସ୍ୱେଚ୍ଛାସେବକମାନଙ୍କ ଅଞ୍ଜଳିରେ ଭରି ଦେଲେ । ମହିଳାମାନେ ନିଜ ଗଳାରୁ, ହାତରୁ ଅଳଙ୍କାର ଖୋଲି ମୁକ୍ତ ହସ୍ତରେ ଦାନ କଲେ । ଗାନ୍ଧିଜୀ କଟକ ଛାଡ଼ିଲେ । ମୁଁ ଆଉ ଘରକୁ ଲମ୍ବା ଝାରପଡ଼ା ଗଲିନାହିଁ ।

ହେଲେ ବି ସେହି ଏକ ଅଜଣା ମୁହୂର୍ତ୍ତରେ ମୋର ବୈଚିତ୍ର୍ୟମୟୀ ଜନ୍ମଭୂମି ଭାରତର ଅପୂର୍ବ, ଅପାରୋଶ୍ୱ ଶୋଭାଶ୍ରୀ ଦର୍ଶନର ବାସନା ବଳବତ୍ତର ହେଲା । ଯାନବାହାନ, ରେଳ ମଟରରେ ନୁହେଁ—ଚାଲି ଚାଲି ଏ ବିଶାଳ ଦେଶର ପ୍ରତିଟି ଧୂଳିକଣା ସହ ପରିଚିତ ହେବାର ଦୁର୍ବାର ଶପଥ ନେଲି । ପାଦରେ ସମ୍ବଳ ନାହିଁ । କିନ୍ତୁ କୈଶୋର ପ୍ରାଣ ଦୁର୍ବଳ ନ ଥିଲା । ସାଥୀ ଗଣେଶ ପ୍ରସାଦ ମହାନ୍ତି, ସୀତାନାଥ ଦାସଙ୍କ ସାଙ୍ଗରେ ଧରି ୧୯୩୪ ମସିହାର ନଭେମ୍ବର ମହ୍ଲର ଏକ କାକରଧୂଆ ସକାଳରେ ଏହି ପାଞ୍ଚ ବର୍ଷବ୍ୟାପୀ ଦୁଃସାହସିକ ଯାତ୍ରାର ଶୁଭାରମ୍ଭ କଲୁ । କାଠଯୋଡ଼ି ନଈକୂଳର ମନ୍ଦିରମାନଙ୍କର ମଙ୍ଗଳ ଆରତୀ ବାଜଣା ସତେ ଯେପରି ବିଦାୟ ସଙ୍ଗୀତର ମୂର୍ଚ୍ଛନା ତୋଳୁଥାଏ ।

ଚାଲି ଚାଲି ସେବେଳର ଅଖଣ୍ଡ ଭାରତ—ଖାଇବର ଗିରି ସଙ୍କଟ ଏବଂ ହିମାଳୟଠାରୁ ଦକ୍ଷିଣରେ କନ୍ୟାକୁମାରୀ ବୁଲିବା ଯେ କେତେ କଷ୍ଟକର ତା କେବଳ ଅନୁଭୂତ ହିଁ ଜାଣେ । ଏଇ ପାଦ ଦୁଇଟିରେ କେତେ ପାହାଡ଼ ପର୍ବତ ଟପିଛୁ, କେତେ ନଈନାଳ ପାରି ହୋଇଛୁ, ଆଉ ମା ବାହାଣୀର କାହିଁର ଅଣ୍ଟ ନାହିଁ କି ଚଢ଼େଇର ବେଣ୍ଟ ନାହିଁ ଏହିପରି କେତେ ଯେ ଅଗନା ଅଗମ୍ୟ ବନାନୀ ପାରି ହୋଇଛୁ । କେତେ ସହର, ନଗର, ଜନପଦ, ପଲ୍ଲୀକାନ୍ତାର ଓ ତୀର୍ଥସ୍ଥାନ ଦେଖି ଏ ଜୀବନ ଧନ୍ୟ ହୋଇଛି । ଆଜି ସେ ସ୍ମୃତି ରୋମନ୍ଥନ କଲେ ପୁଲକ ସଞ୍ଚାର ହୁଏ । ପ୍ରୌଢ଼ ପ୍ରାଣକୁ ସରସ ଓ ସତେଜ କରେ ।

ଓଡ଼ିଶାର ଭୂମିଜ, ଜୁଆଙ୍ଗ, କୋଲ୍ହ, କନ୍ଧ, ସାନ୍ତାଳ, ସଅର, ବାଥୁଡ଼ି, ମାହାଲି, ମୁଣ୍ଡ ଓ ଗାଦବା, ପରଜା, କୋୟା, ବୋଣ୍ଡା, ଗୋଣ୍ଡ ଓ ଶବର,

ଆସାମର ଖାସିଆ, ଗାରୋ, ମିଖର, ମିସିମି, ଆବର, ନାଗା, ସିକିମର ଲେପଚ୍ଚ, ଭୂଟାନର ଭୂଟିଆ, ରାଜସ୍ଥାନର ଭିଲ୍, ଦକ୍ଷିଣରେ ଟୋଡ଼ା, ପାନିଆ ପଭୃତି ରହୁଥିବା ଆଦିବାସୀ ବହୁଳ ସ୍ଥାନମାନଙ୍କରେ ବୁଲି ସେମାନଙ୍କର ସୁଖ ଦୁଃଖ, ହସ କାନ୍ଦ, ଭଲମନ୍ଦରେ ନିଜକୁ ମିଶେଇ ଦେଇଥିଲୁ । ଅତି ନିଜର ବୋଲି ଭାବ ନେଇ-ଥିଲୁ । ସେମାନେ ଡରିଛନ୍ତି, ପୁଣି ଡରେଇଛନ୍ତି । ଆମଠାରୁ ଖାଇଛନ୍ତି, ପୁଣି ଖୁଆଇଛନ୍ତି । ଦଳ ବାନ୍ଧି ତୀର, ଧନୁ, ବର୍ଛା, ଖଣ୍ଡା ଧରି ଜୀବନ ନେବାକୁ ଆଗେଇ ଆସିଛନ୍ତି । ପୁଣି ସ୍ନେହ ମମତାରେ ଆତିଥ୍ୟ ଦେଇ ଧନ୍ୟ କରିଛନ୍ତି । ପ୍ରାଣଦାନ କରିଛନ୍ତି । ଓଡ଼ିଶାର ସ୍ଥାନର ଆଦିବାସୀମାନେ ଆମ ଚଲା ବାଟରେ ବାଧ ସାଧିଛନ୍ତି । ବ୍ରିଟିଶମାନଙ୍କର ଗୋଇନ୍ଦା ଭାବି ତନ ଦିନ ଧରି ତାଙ୍କ ବସ୍ତିରେ ବାନ୍ଧି ରଖିଛନ୍ତି । ଇପିର ଫକିରଙ୍କ ସାକ୍ଷାତ ମିଳିଛି । ହିମାଳୟ କୁଳୁଦେଶରେ ନିର୍ଜନ ଗୁମ୍ଫାମାନଙ୍କରେ କେତେ ସାଧୁ ସନ୍ଥମାନଙ୍କର ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଛୁ । ଦକ୍ଷିଣରେ ପକ୍ଷୀ ତୀର୍ଥଠାରୁ, ଉତ୍ତରରେ କାଶ୍ମୀରର ତୁଷାରଲିଙ୍ଗ ଅମରନାଥ ଯାଏ କେତେ ଯେ ଦର୍ଶନୀୟ ତୀର୍ଥ ଦେଖିଛୁ, ତାର କଳନା ନାହିଁ ।

ଧୋଲପୁରଠାରେ ଚମ୍ବଲ ଉପତ୍ୟକାର ଦୁର୍ଦ୍ଧର୍ଷ ଡକାୟତଙ୍କ ହାତୁଡ଼ରେ ପଡ଼ି କୌଣସିମତେ ଖସି ଯାଇଛୁ । ବଙ୍ଗଳାର ଭାଲୁ, ଆସାମର ଚିତାବାଘଙ୍କ କବଳରୁ ଭଗବାନ ବଞ୍ଚେଇ ଦେଇଛନ୍ତି । କେଉଁଠି ଜଗନ୍ନାଥଙ୍କ ପୂଜକ ସାଜି, ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଖାଇ ଦକ୍ଷିଣା ନେଇଛୁ ଓ ପ୍ରୟାଗର ସଙ୍ଗମରେ ବ୍ରାହ୍ମଣମାନଙ୍କୁ ଭୂରି ଭୋଜନ ଦେଇ ଦାନ ଦେବାର କାର୍ପଣ୍ୟ କରିନାହୁଁ । କେଉଁଠି ଖାଇ ଖାଇ ବଦହଜମି ହୋଇଛି ତ କେଉଁଠି ଦୁଇଦିନ କ୍ରମାନ୍ୱୟରେ ଖାଇବାକୁ ମିଳିନି । କେତେକ ସ୍ଥାନରେ ପିଇବାକୁ ଭଲ ପାଣି ଟୋପେ ପାଇ ନାହୁଁ । ପାଞ୍ଚ ବର୍ଷର ବିସ୍ତୃତ ଅନୁଭୂତି ଆଜି ଇତିହାସ ପାଲଟିଛି ।

ତେବେ ସବୁ ପ୍ରଦେଶର କିଛି କିଛି ଭିନ୍ନ ଅନୁଭୂତି, ଐତିହାସିକ ତଥ୍ୟ ଓ ଅଦ୍ଭୁତ ବ୍ୟବହାର ଏଠାରେ ଉଲ୍ଲେଖ କରୁଛୁ ।

ଦକ୍ଷିଣଅଞ୍ଚଳ ଅର୍ଥାତ୍ ସେ ବେଳର ମାଡ୍ରାସ୍ ପ୍ରେସିଡେନ୍ସି ଯାହା ଆଜି ଅନ୍ଧ୍ର ଓ ତାମିଲନାଡ଼ୁରେ ପରିଣତ ହୋଇଛି, ସେ ବେଳର ରାଜନ୍ୟ ଅଞ୍ଚଳ ଟ୍ରାଭାଙ୍କୋର ଆଉ କୋଚିନ୍, ଯାହା ଆଜି କେରଳ ରାଜ୍ୟ ନାମରେ ପରିଣତ ହୋଇଛି, ତତ୍କାଳୀନ ମହୀଶୂର ରାଜ୍ୟ, ଯାହା ଆଜି କର୍ଣ୍ଣାଟକର ରୂପ ନେଇଛି— ଦେଖିବାର ବାସନା ଥିଲା । କିନ୍ତୁ ଭାଷା, ଖାଦ୍ୟ ଏବଂ ଚଳଣି ଆଉ ଟିକିଏ ଅଟେଇବାକୁ ଦେଲାନି । ପ୍ରଥମରୁ ଗତିପଥ ରୁଦ୍ଧ ହେଲା । ଅନ୍ଧ୍ର ପ୍ରଦେଶ ଆମର

ପଡ଼ୋଶୀ ରାଜ୍ୟ ଓଡ଼ିଶାର ବ୍ରହ୍ମପୁର ଜିଲ୍ଲାରେ ବହୁ ତେଲୁଗୁଭାଷୀ ଲୋକବସତି ଅଛନ୍ତି । କଟକ, ଭୁବନେଶ୍ୱର, ପୁରୀ ଇତ୍ୟାଦି ଅଞ୍ଚଳରେ ତନ୍ତ୍ର, ଲକ୍ଷ୍ମୀବାଜାର, ମୁନ୍ସିପାଲିଟିରେ ତେଲ ପକାଇବାବାଲା ସବୁ ଆନ୍ଧ୍ର ପ୍ରଦେଶର । South Indian Hotel ବର୍ତ୍ତମାନ ସବୁ ରାଜ୍ୟରେ । ଇଡ୍ଲି, ଉପମା, ଦୋସା ଓଡ଼ିଆ ଦୋକାନରେ ମଧ୍ୟ ମିଳିଲାଣି । କିନ୍ତୁ ଆଜକୁ ପ୍ରାୟ ଚାଳିଶ ବର୍ଷ ତଳେ ଏ ସବୁ ନ ଥିଲା । ଗୋଟିଏ ଦୁଇଟି ଘଟଣା ଯାହି ଆମର ଯାତ୍ରାପଥ ବଦଳାଇବାରେ କିପରି ବାଧ୍ୟ କଲା ତାହା ମୁଁ ଉଲ୍ଲେଖ କରୁଛି ! ସନ୍ଧ୍ୟା ହେବା ଉପରେ । ରାସ୍ତାରେ ଜଣେ ଭଦ୍ରଲୋକ ସାଇକେଲରେ ଆସୁଥିଲେ । ଇଂରେଜୀରେ ପଚାରିଲେ—"ଆପଣ କ'ଣ ଓଡ଼ିଶାରୁ ଆସିଛନ୍ତି ? ବୁଲିବୁଲି ଭାରତ ବୁଲୁଛନ୍ତି ?" ଆମେ କହିଲୁ—ହଁ । ସେ କହିଲେ ସନ୍ଧ୍ୟା ହୋଇ ଆସିଲାଣି । ବେଶୀ ଦୂର ନ ଯାଇ ଆଗ ଡାକ ବଙ୍ଗଳାରେ ରହିଯିବେ । ସେଠାକାର ତେଲୁଗୁ ଓଭରସିଅର ଅତି ଭଦ୍ରଲୋକ । କିଛି ଅସୁବିଧା ହେବନି । ଆମେ ପଚାରିଲୁ—କାହିଁକି ? ସେ କହିଲେ ଡକାୟତଙ୍କ ଉତ୍ପାତ । ଏତିକି କହି ଖୁବ୍ ଜୋର୍‌ରେ ସାଇକେଲ ଚଲାଇ ରାସ୍ତା ମୋଡ଼ରେ ଅଦୃଶ୍ୟ ହୋଇଗଲେ । ତାଙ୍କଠାରୁ ଏସବୁ ଶୁଣି ଆଉ କ'ଣ ଗୋଡ଼ ଆଗକୁ ଚଳେ ? ତଣ୍ଡି ଶୁଖିଗଲା । ଦେହରୁ ଗମ୍‌ଗମ୍ ଝାଳ ବୋହିବାକୁ ଲାଗିଲା । ପୁଣି ଭାବିଲୁ ଆମେ ତ ଭ୍ରମଣକାରୀ, ପୁଣି ପଦବ୍ରଜରେ । କ'ଣ ଆମର ଅଛି ?

ଖୁବ୍ ହେଲେ ଆଠ ଦଶଟା ଟଙ୍କା ଓ ଦୁଇ ଚାରିଖଣ୍ଡ ଲୁଗା । ଆଗକୁ ତ କେତେ ବିପତ୍ତିର ସାମନା କରିବାକୁ ପଡ଼ିବ । ଏବେଠୁଁ ଡରିଲେ ଚଳିବ ? ତଥାପି ରାତିଟା ଡାକବଙ୍ଗଳାରେ ରହିବାର ସ୍ଥିର କରି ଜୋର୍‌ରେ ପାଦ ବଢ଼ାଇଲୁ । ଡାକବଙ୍ଗଳା ମୁଖ୍ୟ ଫାଟକ ପାଖରେ ପହଞ୍ଚି ଦମ୍ ନେଲୁ । ଠିକହେଁ ଗୋଟିଏ ପଥର ଉପରେ ବସି ବିଚାର କଲୁ ଓଭରସିଅର ତ ତେଲୁଗୁ ଭଦ୍ରଲୋକ । ସେ ଓଡ଼ିଆ ଜାଣି ନଥିବେ । ଆମେ କିନ୍ତୁ ତେଲୁଗୁ ଜାଣୁନା । ବାକି ରହିଲା ଇଂରେଜୀ । କିମିତି କଥା ହେବା ? ଆମର ତ ଇଂରେଜୀ ଜ୍ଞାନ ସୀମିତ । ଜେଲ୍‌ରେ ଯେତିକି ପଢ଼ିଛୁ, ସେତିକି । ଟିକିଏ ଟିକିଏ ବୁଝିବା ସିନା । କହିବା କେମିତି ? ତେଣୁ ବଧୀର ବନ୍ଧୁର ଉପାଖ୍ୟାନ ମନେ ପଡ଼ିଲା । ସ୍ଥିର ହେଲା ଜଣେ ଛାତିରେ ହାତ ବାଡ଼େଇ କହିବ "ସାର୍ ଟୁରିଷ୍ଟ ।" ଆଉ ଜଣେ ମୁଣ୍ଡରେ ହାତ ବୁଲେଇ କହିବ 'All India' । ଆଉ ଜଣେ ଗୋଡ଼ ଦେଖାଇ କହିବ 'on foot' । ଶସ୍ତ୍ରସାଲ ହେଲା । ସାହସ ସଞ୍ଚୟ କରି ଗଲୁ । ଭଦ୍ରଲୋକ ବାହାର ବାରଣ୍ଡାରେ ବସିଥାନ୍ତି । ଆମ ବେଶ ପୋଷାକ ଦେଖି କ'ଣ ଭାବି ପ୍ରଶ୍ନବାଚକ ଦୃଷ୍ଟିରେ ଚାହିଁଲେ । ଆମେ ଶସ୍ତ୍ରସାଲ କରିଥିବା ମାଫିକ୍ କହିଲୁ । ସେ ଆମ

ଇଂରେଜୀ କହିବାର କ୍ଷମତା ଏବଂ ଏକା ସଙ୍ଗରେ ତିନି ଜଣଙ୍କର ଅପୂର୍ବ ଅଭିନୟ ଦକ୍ଷତା ଦେଖି ହସିଲେ ଏବଂ ଇଂରାଜୀରେ ପଚାରିଲେ—ମୋ ଠାରୁ କ'ଣ ଚାହାନ୍ତି ? ଆମେ ଭଙ୍ଗା ଭଙ୍ଗା ଇଂରାଜୀରେ କହିଲୁ ନାଇଟ୍ କମ୍ । ଓ୍ୱାଣ୍ଟ୍, ଟୁ ଷ୍ଟେ ବାଙ୍ଗ୍ଲୋ ଫର୍ ନାଇଟ୍ । ଅର୍ଥାତ୍ ରାତି ଆସିଲାଣି । ଆଜି ଏଠାରେ ବଙ୍ଗଳାରେ ରହିବୁ । ଅତି ସଜ୍ଜନ ବ୍ୟକ୍ତି । ଡାକବଙ୍ଗଳାରେ ଆମର ସମସ୍ତ ବ୍ୟବସ୍ଥା କରିଦେଲେ । ମୁହଁ ହାତ ଧୋଇ ସାରିବାର ଅଧଘଣ୍ଟା ପରେ ତାଙ୍କ ବସାକୁ ଡାକି ନେଇ ପେଟ ଭରି ଗରମ ଗରମ ଉପମା, ଦୋସା ଓ କଫି ଖୁଆଇଲେ । ଇଂରାଜୀରେ ଅନର୍ଗଳ କହି ଚାଲିଥାନ୍ତି । କିଛି କିଛି ବୁଝି ପାରୁଥାଉ, ପୁଣି କିଛି କିଛି ବୁଝି ପାରୁ ନ ଥାଉଁ । ଯେଉଁଠି ଆମର ନିନ୍ଦା ଥାଏ, ସେଠି ହଁ ହଁ କରୁଥାଉ, ଯେଉଁଠି ଆମର ପ୍ରଶଂସା ଥାଏ, ସେଠି ନାହିଁ ନାହିଁ କହୁଥାଉ । ଯାହାହେଉ ଅନେକ ସମୟ ପରେ ସେ ଆମକୁ ବିଦାୟ ଦେଲେ । ପ୍ରଭୁଙ୍କୁ ଗାଳି ଡାକୁଥାଉଁ । ଆଉ ନ ଡାକନ୍ତେକି ! ଯାହା ଉପମା ଓ ଦୋସା ଖିଆ ଯାଇଛି, ରାତିଟି ନିଶ୍ଚିନ୍ତରେ କଟିଯିବ । ପୁଣି ଯଦି ଡାକନ୍ତି ଖାଇବାଟା ଯେତେ ନୁହେଁ ଇଂରେଜୀ କହିବାକୁ ପଡ଼ିବ । ହସି ହସି ଆଖିକୁ ନିଦ ଆସିଗଲା । କେତେବେଳ ଯାଏ ଶୋଇଥିଲୁ କେଜାଣି ହଠାତ୍ ଭଦ୍ରଲୋକଙ୍କ ଡାକରେ ନିଦ ଭାଙ୍ଗିଗଲା । 'ଚାଲନ୍ତୁ ଖାଇବେ' । ସାଦର ନିମନ୍ତ୍ରଣ । ତାଙ୍କ ଘରଣୀ ବହୁତ କେତେ ଯତ୍ନରେ ଆମ ତିନିଜଣଙ୍କ ଲାଗି ରାନ୍ଧିଛନ୍ତି । ଯିବାକୁ ବାଧ୍ୟ ହେଲୁ । ସର୍ତ୍ତାନାଥବାବୁ ଖାଇବା କଥା ପଡ଼ିଲେ ଦି ପାଦ ଆଗେଇ ଯାଆନ୍ତି ବରଂ ପଛେଇବା ଆମେ ଦେଖି ନାହୁଁ । ଯେ କୌଣସି ଖାଦ୍ୟ ହେଉ ପଛେ ସେ ଗପାଗପ୍ ଚଳେଇ ଦେବେ ।

ପହଞ୍ଚିଲୁ, ମୁହଁ ହାତ ଧୋଇ ଖାଇ ବସିଲୁ । ଖାଇବୁ କ'ଣ ? ସବୁ ସୁସ୍ୱାଦୁ । କିନ୍ତୁ ସବୁଥିରେ ବହୁତ ଲଙ୍କା ଦିଆ ହୋଇଛି । ଗୁଣ୍ଡାଏ ଖାଉଁ ତ ଢୋକ ପାଣି ପିଉଥାଉ । ପୁଣି ସୁଁ ସାଁ ହେଉଥାଉଁ । କଦଳୀ ପତ୍ରରେ ଗୋଟିଏ ଯାଗାରେ ଘୁନାଏ ଚଟଣୀ ଥୁଆ ଯାଇଥାଏ । ଧନିଆଁ ପତ୍ର ଭଳି ଯେମିତି ଗୁଣ୍ଡରେ ଦେଇଛି, ଗିଳି ହି ପାରୁ ନାହିଁ—ବାହାର କରି ବି ପାରୁନି । ଗିଳିଲେ ମଲି । ବାହାର କଲେ ସବୁ ମାଟି ହେଲା । କ'ଣ କରିବି ? ତ୍ରିଶଙ୍କୁ ଅବସ୍ଥାରେ ପଡ଼ି ଡହଳ ବିକଳ ହେଉଥାଏ । ମୋର ବନ୍ଧୁ ଦୁହେଁ ସୁଁ ସାଁ କରି ପେଟ ଭିତରକୁ ଠେଲିଦେଲେ । ଯେକୌଣସିମତେ ମୁଁ ସେ ମେଣ୍ଟାଟା ପଦାକୁ ବାହାର କରିଦେଲି । ତାହା ବିଶୁଦ୍ଧ ଲଙ୍କାଲଙ୍କା ବଟା । ତରକାରୀରେ ଲଙ୍କା କମ୍ ହୋଇଥିଲେ ତାହା ଗୋଳେଇ ଖାଇବାକୁ ହୁଏ । ମୁଁ ଅଳୁଆ ଭାତ, ଅଳ୍ପ ଲଙ୍କା ଦିଅ ଦହି ଖାଇ ଥିବାରୁ ବର୍ତ୍ତିଗଲି । କିନ୍ତୁ ମୋର ବନ୍ଧୁ ଦୁହେଁ—ବିଶେଷ କରି ଖାଇବାରେ ଯିଏ ପେଟୁ,

ଶୋଇବାରେ କୁମ୍ଭକର୍ଣ୍ଣ, ଚାଲିବାରେ ଏଚୁ, ରାଗିବାରେ ଦୁର୍ବାସା, ରାତି ବାରଟାରୁ ଚାଲିଛନ୍ତି ପାଇଖାନା । ଆଉ ବନ୍ଧୁଟି ସେତେଥର ଯାଇ ନାହାନ୍ତି । କିନ୍ତୁ ମେଉଁ କେତେଥର ବିରାଜମାନ କରିଛନ୍ତି ତାଙ୍କ ଅବସ୍ଥା ଘାଏଲ । ବାକି ରହିଲି ମୁଁ । ଏମାନଙ୍କର ଏପରି ଅବସ୍ଥା ଦେଖି ମୁଁ କ'ଣ ସମ୍ଭାଳି ରୁହେ ? ମୋତେ ବି ବିଜେ କରିବାକୁ ପଡ଼ିଲା ଦୁଇଚାରିଥର । ଗୋଟିଏ ବୋଲି ପାଇଖାନା । କିଏ ଆଗରେ ଯିବ, କିଏ ପଛରେ ଯିବ, ତାର ପ୍ରତିଯୋଗିତା ଚାଲିଲା । ସକାଳୁ ଦେଖିଲା ବେଳକୁ ସୀତାବାବୁଙ୍କ ଗାଲ ପଶି ଯାଇଛି । ଦାନ୍ତ ଆଗକୁ ବାହାରି ପଡ଼ିଛି । ଏତେବଡ଼ ଚୋଲଟାରେ ବିଚିତ୍ର ପରିବର୍ତ୍ତନ । ଗଣେଶ ବାବୁ ଖଟରେ ଲମ୍ବ ହୋଇ ପଡ଼ିଛନ୍ତି । ଉଠିବାକୁ ଶକ୍ତି ନାହିଁ । ଡିସେଣ୍ଟ୍ରି ବୋଲି ରକ୍ଷା ହେଲା । ଡାଇରିଆ ହୋଇଥିଲେ ଆଉ ବଞ୍ଚିବାର ଆଶା ନଥିଲା । ଆମର ଏ ଅବସ୍ଥା ଦେଖି ଚୌକିଦାର କେଉଁଠି ଯାଇ ଲୁଚିଲା । ବଡ଼ କଷ୍ଟରେ ଯାଇ ଓଭରସିୟରଙ୍କ ସ୍ତ୍ରୀଙ୍କୁ କହିଲୁ । ଅତି ଦୟାମୟୀ ନାରୀ ସେ । ସଙ୍ଗେ ସଙ୍ଗେ ପ୍ରଚୁର ଘୋଲଦହିର ବ୍ୟବସ୍ଥା କଲେ । ଔଷଧ ଆଣି ଖୋଇଲେ । ଦେହ ଟିକିଏ ସୁସ୍ଥ ହେଲା । କୌଣସିମତେ ରାତିଟି ରହି ଅତି ଭୋରରୁ ବାହାରି ପଡ଼ିଲୁ । ଦୁଇ ଦିନର ଅସୁସ୍ଥତା ଦେହ ଓ ମନକୁ ଅବଶ କରି ଦେଇଥାଏ । କଷ୍ଟେମଷ୍ଟେ ଚାଲି ଗୋଟିଏ ଗ୍ରେଟ ବଜାରରେ ପହଞ୍ଚିଲୁ । ଭୋକ ଲାଗିଲାଣି । ଗୋଟିଏ ହୋଟେଲକୁ ଯେମିତି ପଶିଛୁ ହୋଟେଲ-ବାଲା କହିଲା, "ରଣ୍ଡି ରଣ୍ଡି କୁର୍‌ଚଣ୍ଡି" । କଥାଟା କ'ଣ ଭଲଭାବେ ନ ବୁଝି ସୀତାନାଥ ବାବୁ ହାତାହାତି କରିବାର ଉପକ୍ରମ । ସେ ବିଚାରା ତେଲୁଗୁ ଲୋକ ଭଦ୍ର ଭାଷାରେ କହି ଚାଲିଥାଏ । ଏ ଓଡ଼ିଆରେ ଦୁଇ ଅକ୍ଷର ଲଗାଇ ବେଜ୍ଜତ କରୁଥାନ୍ତି । ଆଉ ଟିକିଏ ଡେରି ହୋଇଥିଲେ ଏବଂ ଆମ ବନ୍ଧୁଙ୍କର ଦି ଅକ୍ଷର ଗାଳିର ଓଡ଼ିଆ ଭାବାର୍ଥ ବୁଝିଥିଲେ, ମାଡ଼ ଭରଣ ପାହୁଲାଏ ହୋଇଥାନ୍ତା । କିନ୍ତୁ ଠିକ୍ ଏହି ସମୟରେ ଓଡ଼ିଆ ଜାଣିଥିବା ଜଣେ ତେଲୁଗୁ ଭଦ୍ରଲୋକ ଆସି ଏ ସମସ୍ୟାର ସମାଧାନ କଲେ । ସେ କହିଲେ ରଣ୍ଡି ରଣ୍ଡି ଅର୍ଥ ଆସନ୍ତୁ । ଏବଂ କୁରଚଣ୍ଡୀ ଅର୍ଥ ବସନ୍ତୁ । ଭାଷା ବୁଝି ନ ଥିବା ଯୋଗୁଁ ଏ ବିଡ଼ମ୍ବନା ସୃଷ୍ଟି ହେବାକୁ ଯାଉଥିଲା । ଉଭୟ ଭାଷା ବୁଝିଗଲୁ ।

ହୋଟେଲର ମାଲିକ ଆମେ ଭ୍ରମଣକାରୀ ଜାଣି ଆଉ କିଛି ନ ଖୋଇ ବିଶୁଦ୍ଧ ଗୁଆ ଦହି ଓ ଅରୁଆ ଭାତ ପେଟ ଭରି ଖୋଇଲେ । ପଇସା ଯାଚିଲୁ ନେଲେ ନାହିଁ । ସେ ମଧ୍ୟ ଔଷଧର ବ୍ୟବସ୍ଥା କରିଦେଲେ । ଓଡ଼ିଆ ଜାଣିଥିବା ତେଲୁଗୁ ଭଦ୍ରଲୋକ ଜଣଙ୍କ ପରାମର୍ଶ ଦେଇ କହିଲେ ଯେ "ଆପଣମାନେ କଟକର ଲୋକ । ଲଙ୍କା ଖାଇବାରେ ଅଭ୍ୟସ୍ତ ନୁହଁନ୍ତି । ତେଣୁ ଯେତେ ପାରିବେ ଦହିଭାତ ଓ ବଡ଼-ଗୁଣ୍ଡ ଖାଇବେ ।"

ଦୁଇଦିନ ସେଠାରେ ରହି ଆଗେଇଲୁ । ସନ୍ଧ୍ୟା ହୋଇ ଆସିଲାଣି । ବର୍ଷା ଟିକିଏ ପଡ଼ିଲାଣି । ଗୋଟିଏ ବଡ଼ ଗାଁରେ ରାତିଟି ରହିବାପାଇଁ ଆଶ୍ରୟ ଖୋଜିଲୁ । ଆମର ଏ ବହୁରୂପୀ ପୋଷାକ ଦେଖି ଗ୍ରାମବାସୀଙ୍କ ମନରେ ସନ୍ଦେହ ଜାତ ହେଲା । ଇଂରେଜୀରେ ସମବେତ କୌତୂହଳ ଦୃଷ୍ଟିରେ ଚାହିଁଥିବା ଲୋକଙ୍କୁ ବୁଝାଇ ଦେଲୁ ଯେ ଆମେ ଟୁରିଷ୍ଟ । ଜଣେ ଦରପାଠୁଆ ଅଳ୍ପ ଇଂରେଜୀ ଜାଣିଥିବା ବ୍ୟକ୍ତି, ସମବେତ ଜନତାଙ୍କୁ ବୁଝାଇଦେଲା—ଏ ଏଟେରଏରିଷ୍ଟ ? ଅର୍ଥାତ୍ ସନ୍ତ୍ରାସ-ବାଦୀ, ବିପ୍ଳବୀ । ସେତେବେଳେ ଇଂରେଜଙ୍କର ରାଜତ୍ୱ । ସେ ବୁଝାଇଦେଲା ଏ ଲୋକଙ୍କୁ ଏଠାରେ ରଖିଲେ କାଲି ପୋଲିସ୍ ଆସି ଗାଁ ଲୋକଙ୍କୁ ବାନ୍ଧେଇବ, ଜେଲ ଜୋରିମାନା କରିବ । ତେଣୁ ଏଠୁ ଏମାନଙ୍କୁ ତଡ଼ିଦିଅ । ଏତିକି କଥା ଶୁଣି ଗ୍ରାମବାସୀ କିଏ ଆମକୁ ରଖନ୍ତି ? ଲାଠି, ଠେଙ୍ଗା, ଯିଏ ଯାହା ପାଇଲା ଧରି, ଅଶ୍ଳୀଳ ଭାଷାରେ ଗାଳି ଦେଇ ସେହି ବର୍ଷା ଅନ୍ଧାର ରାତିରେ ଗାଁରୁ ତଡ଼ି ଦେଲେ । ଭାଗ୍ୟକୁ ଆଦରି, ପଡ଼ି ଉଠି ତିନି ମାଇଲ୍ ବାଟ ଚାଲି ଗୋଟିଏ ଷ୍ଟେଟ ଷ୍ଟେସନରେ ପହଞ୍ଚିଲୁ । କ୍ଳାନ୍ତ ହୋଇ ପଡ଼ିଥାଉ । ପାଟିରୁ କଥା ବାହାରୁ ନ ଥାଏ । ଷ୍ଟେସନ୍ ମାଷ୍ଟରଙ୍କୁ ରାତିଟି ସେହି ଷ୍ଟେସନ୍ ମୁସାଫିର୍ ଖାନାରେ ରହିବାକୁ ଏବଂ କିଛି ଖାଇବାକୁ ଦେବା ଲାଗି ଅନୁରୋଧ କଲୁ । ସେ ମାଳତୀପାଟପୁର ଷ୍ଟେସନରେ ଅନେକ ଦିନ ଥିଲେ ଓଡ଼ିଆ ଜାଣନ୍ତି । ଅତି ଆଦରରେ ତିନୋଟି ଦଉଡ଼ିଆ ଖଟ ପକେଇ ଶୋଇବାର ବ୍ୟବସ୍ଥା ଓ ଖାଇବାର ଆୟୋଜନ କରିଥିଲେ ପ୍ରଚୁର । ମୁସ୍ତାପାଟମ୍ ଗାଁରେ ଘଟିଥିବା ଆମର ଦୁଃଖ ଘଟଣା ବର୍ଣ୍ଣନା କଲୁ । ସେ କହିଲେ ଆପଣମାନେ ଚିନ୍ତା କରନ୍ତୁ ନାହିଁ । କାଲି ସବୁ ଠିକ୍ ହୋଇଯିବ । ସତକୁ ସତ ସେହି ଷ୍ଟେସନ୍ ପାଖରେ ହାଟ ବସେ । ଗ୍ରାମର ମୁଖିଆଙ୍କୁ ଷ୍ଟେସନ୍ ମାଷ୍ଟର ଡକାଇ ଏମିତି କହିଲେ ଯେ ସେମାନେ ବିସ୍ମିତ ଓ ବିବ୍ରତ ହୋଇ ପଡ଼ିଲେ । ସେ କହିଲେ —ଏମାନେ ଭ୍ରମଣକାରୀ । ବିପ୍ଳବୀ କିଏ କହିଲା ? ତାକୁ ଡାକ । ସେ ଦରପାଠୁଆ ଲୋକ ଆସିଲା । ଏ ବାବୁମାନେ ଭାରତ ଭ୍ରମଣକାରୀ । ଚାଲି ଚାଲି ସମଗ୍ର ଭାରତ ବର୍ଷ ଭ୍ରମଣ କରୁଛନ୍ତି । ବିଭିନ୍ନ ଦେଶର କଥା ଲେଖୁଛନ୍ତି । ତୁମ ଗାଁ ବିଷୟରେ କ'ଣ ଲେଖିବେ ? ଏତେବଡ଼ ଗାଁ ଅଶିକ୍ଷିତ । ଅତିଥି କ'ଣ ଜାଣନ୍ତି ନାହିଁ । ଘୋର ବର୍ଷା ଅନ୍ଧାର ରାତିରେ ଅତିଥିଙ୍କୁ ଧରି ମାରି ତଡ଼ିଦିଅନ୍ତି ? ସେ ଗ୍ରାମର ଆହୁରି ଅନେକ ଲୋକ ଆସି ପହଞ୍ଚିଗଲେ । ବଳଦ ଗାଡ଼ି କରି ଗାଁକୁ ନେଲେ । ନିଜର ଭୁଲ୍ ସ୍ୱୀକାର କଲେ । ସଭା ଓ ଭୋଜିର ଆୟୋଜନ ହେଲା । ଷ୍ଟେସନ୍ ମାଷ୍ଟର ବାବୁ ତେଲଗୁରେ ଆମର ଓଡ଼ିଆ ଭାଷାକୁ ବୁଝାଉଥାନ୍ତି । ପୁଣି ସେମାନଙ୍କର ତେଲୁଗୁ କଥାକୁ ଆମକୁ ବୁଝାଉଥାନ୍ତି । ଗ୍ରାମବାସୀମାନେ ଛାଡ଼ିଲେ ନାହିଁ । ଦୁଇ-ଦିନ ରଖିଲେ । ନିଜ ଭିତରେ କିଛି ଅର୍ଥ ସଂଗ୍ରହ କରିଦେଲେ । ଆନ୍ଧ୍ରକୁ ମୁଣ୍ଡିଆ

ମାରି ଫେରିଲି ବାଟରେ ଆସିବୁ ବୋଲି ସ୍ଥିରକରି ଓଡ଼ିଶା ଆଡ଼େ ଗନ୍ତବ୍ୟପଥ ବଦଳାଇଲୁ । ପ୍ରଥମେ ପଡ଼ିଲା କୋରାପୁଟ । ଜୟପୁର ଆସିଲୁ । ମହାରାଜା ବିକ୍ରମ ଦେବବର୍ମା ଏବଂ ତାଙ୍କର ଜାମାତା···ଶ୍ରୀ ବିଦ୍ୟାଧର ଦେବ ଆମକୁ ଅତି ଆଦରର ସହ ସ୍ୱାଗତ କଲେ । ରହଣି, ପାଥେୟ ଏବଂ ଦର୍ଶନୀୟ ସ୍ଥାନ ଦେଖିବାର ସୁବ୍ୟବସ୍ଥା କରିଦେଲେ । ତତ୍‌କାଳୀନ ଗଡ଼ଜାତରେ ଯେ କୌଣସି ଅଞ୍ଚଳକୁ ଯାଇଛୁ, ସେଠାରେ ରାଜା ଏବଂ ସେଠାକାର ଲୋକମାନେ ଆମକୁ ଆତିଥ୍ୟ ଦେବାରେ ଆଦୌ ତ୍ରୁଟି କରି ନାହାନ୍ତି । ବରଂ ଆମକୁ ଅତ୍ୟଧିକ ସ୍ନେହ ଶ୍ରଦ୍ଧାରେ ବାନ୍ଧି ରଖିଛନ୍ତି । × × ଏଇଠି ଗୋଟିଏ ବିଷୟ ଉଲ୍ଲେଖ କରୁଛୁ —

ମୟୂରଭଞ୍ଜ ଓ କେନ୍ଦୁଝର ଗଡ଼ ଦେଇ ଚମ୍ପୁଆ ଠାରେ ସୁବର୍ଣ୍ଣରେଖା ନଦୀ ପାର ହେଲୁ । ଏପଟେ ଓଡ଼ିଶା, ସେପଟେ ବିହାରର ସିଂହଭୂମିଜିଲ୍ଲା । ଖରସୁଆଁ ସରାଇକଲା ରାଜାଙ୍କଠୁଁ ଯଥୋଯୋଗ୍ୟ ସମ୍ମାନ ପାଇ ସିନି, ଗୁଣ୍ଡିଲ ଦେଇ ନିମଡିହ ଆସିଲୁ । ଏଠାରୁ ପୁରୁଲିଆ ରାସ୍ତା ଆରମ୍ଭ ହେଲା । ରେଲଲାଇନ୍ ଗୁଡ଼ ଗାଁ ବାଟ ଧରିଲୁ ।

ସନ୍ଧ୍ୟା ହୋଇ ଆସିଲାଣି । ଆଗରେ ଜଙ୍ଗଲ । ଖୁବ୍ ଜୋର୍‌ରେ ବର୍ଷା ଆସୁଛି । ଉପାୟ ନ ଦେଖି ନିମଡ଼ିହ ଗାଁ ଭିତରକୁ ପଶିଲୁ । ଗାଁରେ ରାତିଟି କଟାଇବା ଲାଗି ଟିକିଏ ସ୍ଥାନ ଖୋଜିଲୁ । ଗାଁ ଲୋକମାନେ ଜାଗା ଦେବା ଦୂରର କଥା ଓଲଟି ଗାଳିଗୁଲଜ କରି ଠେଙ୍ଗା ବାଡ଼ି ଧରି ଗାଁରୁ ତଡ଼ି ଦେଲେ । ଏ ଗାଁଟି ମାନଭୂମଜିଲ୍ଲା ଅଧୀନରେ । ଆମେ ଓଡ଼ିଶାରୁ ଆସିଛୁ । ଭଲ ବଙ୍ଗଳା କହିଜାଣୁନା । ଖଣ୍ଡିଆ ଖଣ୍ଡିଆ ବଙ୍ଗଳା ଶୁଣି ସେମାନେ ସନ୍ଦେହ କରି ଏ ଭଳି ବ୍ୟବହାର କଲେ ।

ସେହି ମେଘ ଅନ୍ଧାର, ବୃଦ୍ଧ ବୃଦ୍ଧକିଆ ଜଙ୍ଗଲ ଅଜଣା ଅଶୁଣା ଜାଗା ଖାଲ ଢିପ ବାଟରେ ଧାଇଁଲୁ । ପ୍ରାୟ ୩ ମାଇଲ ବାଟ ଗିବାପରେ ଜୋର୍‌ରେ ପବନ ବହିଲା । ଗଛଡାଳ ଗୁଡ଼ିକ ଯେମିତ ମାଟି ସଙ୍ଗରେ ମିଶି ଯାଉଥାନ୍ତି । ସେତେବେଳେ ଆଉ ବଞ୍ଚିବାର ଆଶା ନ ଥାଏ । ଏତିକବେଳେ ଦୂରରେ କୁକୁର ଭୁକିବାର ଶବ୍ଦ ଶୁଭିଲା । ଅନ୍ଧାର ରାତିରେ ଅନୁମାନ କଲୁ କୌଣସି ଗାଁ ନିକଟରେ ପହଞ୍ଚିଛୁ । ପବନ ଟିକିଏ କମିଗଲା । ଆହୁରି ବେଗରେ ପାଦବଢ଼ାଇଲୁ । ରାସ୍ତା କଡ଼ରେ ଗୋଟିଏ ଉଚ୍ଚ ପ୍ରାଥମିକ ସ୍କୁଲଥାଏ । ରାତିରେ ୫।୬ ଜଣ ଛାତ୍ରଙ୍କ ସହ ଶିକ୍ଷକ ଜଣକ ନୂଆ ଅଗ୍ନାରେ ଶୋଇ ପଡ଼ିଥାନ୍ତି । ସେହିଠାରେ ଟିକିଏ ରହିଯିବୁ ବୋଲି ଖୁବ ବହୁତ ଡାକିଲୁ । ଅନେକ ସମୟ ପରେ ଶିକ୍ଷକ ଜଣକ କବାଟ

ଖୋଲିଲେ । ଆମ ମନରେ ଟିକିଏ ସାହସ ହେଲା । କିନ୍ତୁ ସେ ଯେମିତି ଆମକୁ ଦେଖି, ପକେଇଛନ୍ତି, 'ଓରେ ବାପ୍‌ରେ' କହି ଧଡ଼୍‌କରି କବାଟ ବନ୍ଦ୍ କରି ଦେଲେ । ପିଲାମାନଙ୍କ ନିଦ ଭାଙ୍ଗି ଗଲା । ସେମାନେ କହୁଥାନ୍ତି—ସାର—କ—କ—କ, ମାଷ୍ଟର କହୁଥାନ୍ତି ଗ୍ୱେ—ଗ୍ୱେ—ଗ୍ୱେ । ଘର ଭିତରେ ଏମିତି ଅନେକ ସମସ୍ତ ଧରି ଚାଲିଲା । ସେମାନଙ୍କର ଏ ଅବସ୍ଥା ଦେଖି ଆମେ ନିଜର ଦୁଃଖ ଭୁଲି ଗଲୁ । ସେତେବେଳେ ଅମେ ହସି ହସି ଗଡ଼ି ପଡ଼ିବା ଉପରେ ।

ଅନେକ ସମୟପରେ ଜଣେ ଛାତ୍ର ଆମେ ଅଛୁ କି ନାହିଁ ଦେଖିବା ପାଇଁ ଅତି ସାହସରେ କବାଟ ଅଳ୍ପ ଖୋଲି ସେହି ଫାଙ୍କରେ ଯେମିତି ଚାହିଁ ଦେଇଛି, ମୁଁ କବାଟ ଫାଙ୍କରେ ଲଠିଟା ଗଳାଇଦେଲି । ପିଲାଟା ଭୟରେ କବାଟ ଖୋଲି ଦେଇ ଆମାକେ ମେରେ ଫେଲେଲ୍ (ମୋତେ ମାରି ପକାଇଲା) କହି ତଳେ ପଡ଼ିଗଲା । ସୁଯୋଗ ଦେଖି ଆମେ ଜବରଦସ୍ତ ଘର ଭିତରକୁ ପଶିଗଲୁ । ତେଣିକି ଦେଖ ମଜା । ମାଷ୍ଟର ଓ ଛାତ୍ର ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଭୟରେ କୁଣ୍ଢେଇ ଧରି ଗଡ଼ୁଥାନ୍ତି । ଆମ୍ଭେମାନେ ଏ ଦୃଶ୍ୟ ଦେଖି ନୀରବରେ ଠିଆ ହୋଇ ଥାଉ । ସେମାନେ ଦେଖିଲେ, ଆମେ ତାଙ୍କର କିଛି କରୁ ନାହୁଁ । ହଠାତ୍ ମାଷ୍ଟରଟି ଆମର ଗୋଡ଼ତଳେ ପଡ଼ିଯାଇ କହିଲା—ଆମରା ନିତାନ୍ତ ଗରିବ । ଆମାଦେର୍ କାଛେ କିଛୁ ନେଇ । ହାତ ଯୋଡ଼ି ପ୍ରଣାମ କରି କହୁଥାଏ ।

ଆମେ ସେମାନଙ୍କୁ ଆଶ୍ୱାସନା ଦେଇ ଗୋଟି ଗୋଟି କରି ସବୁକଥା ବୁଝାଇ ଆମର ପରିଚୟ ଦେଲୁ । ତେଣିକି ସେମାନେ ଅତି ଆନନ୍ଦରେ ଯାହା ଚୂଡ଼ା ମୁଢ଼ି ରଖିଥିଲେ, ଅତି ଆଦରରେ ଖୋଇଲେ ।

ଏଠାରେ ଗୋଟିଏ କଥା ଲେଖିବାର ଇଚ୍ଛା ନ ଥିଲେ ମଧ୍ୟ ବାଧ୍ୟ ହେଉଛି । ପୁରୁଲିଆରେ ଜଣେ ଓଡ଼ିଆ ଅବକାଶ ଅଫିସର୍ ଥିଲେ । ତାଙ୍କ ନାମ ମୁରଲୀ ଧର ସେନା । କିଛି ଆର୍ଥିକ ସାହାଯ୍ୟ ଲାଗି ଏବଂ ଦୁଇଦିନ ତାଙ୍କ ଘରେ ରହିବା ଲାଗି କହିଲୁ । କିନ୍ତୁ ଭଦ୍ରଲୋକ ତାଙ୍କର ଚାକର ରହିବା ଘରେ ସ୍ଥାନ ଦେଇ ଝାଲପଣରେ ମୋଟା ବଗଡ଼ା ଭାତ, ଖଲପଣ ଠୁଙ୍ଗାରେ ପାଣିଆ ମୁଗଡ଼ାଲି ଏବଂ କୁନ୍ଦୁରି ଭଜାଦେଇ ଚାକର ହାତରେ କହିଥିଲେ—କାଲି ସକାଳୁ ଯେପରି ସେମାନେ ଏ ସ୍ଥାନ ତ୍ୟାଗ କରନ୍ତି । ଓଡ଼ିଆ ଚାକର ଅତି ଦୁଃଖରେ ଆମକୁ ବିଦାୟ ଦେଇଥିଲା । ସେ ବେଳର ତାର ସଞ୍ଚିତ ଗୋଟିଏ ଟଙ୍କା ଦେଇଥିଲା । ଯାହାର ବର୍ତ୍ତମାନ ମୂଲ୍ୟ ୨୦ ଟଙ୍କା ହେବ । ପରେ ଶୁଣିଲୁ ସେ ଅବକାଶ କମିଶନର୍

ହୋଇଗଲେ । ସେ ଭଦ୍ରଲୋକ ଯଥେଷ୍ଟ ଉପାର୍ଜ୍ଜନ କରି ବର୍ତ୍ତମାନ ପେନ୍‌ସନ୍ ନେଇ ବେଶ୍ ଆରାମରେ ଅଛନ୍ତି । ଅଥଚ୍ ସେହି ପ୍ରତୁଲ୍ଆରେ ବଙ୍ଗାଳୀମାନେ ଆମକୁ ନିଜର କ୍ଲବ୍, ଲାଇବ୍ରେରୀ, ସ୍କୁଲ ଘରେ ରଖି ଏପରି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଇଛନ୍ତି, ଓଡ଼ିଆ ବଙ୍ଗାଳୀଙ୍କର ପାର୍ଥକ୍ୟ ଭୁଲି ଯାଇଥିଲୁ, ସେମାନଙ୍କ ସୁମଧୁର ବ୍ୟବହାରରେ ।

ବଙ୍ଗପ୍ରଦେଶରେ ଯେଉଁଠାକୁ ଯାଇଛୁ, ସେଠାରେ ଆମେ ଉପଯୁକ୍ତ ସମ୍ମାନ ପାଇଛୁ, ସ୍ନେହ, ଶ୍ରଦ୍ଧା, ସହାନୁଭୂତି ଦେଖାଇବାରେ ସେମାନେ ଟିକିଏ ହେଲେ ଊଣା କରିନାହାନ୍ତି । ବିଶେଷ କରି ପୂର୍ବବଙ୍ଗ (ବଙ୍ଗଳା ଦେଶ)ରେ ସେଠାର ଲୋକମାନେ ଖୁବ୍ ଅତିଥିପରାୟଣ । ଯେତେବେଳେ ଢାକା ୟୁନିଭର୍‌ସିଟିର କୁଳପତି ଥାଆନ୍ତି ବିଖ୍ୟାତ ଐତିହାସିକ ରମେଶ ଚନ୍ଦ୍ର ମଜୁମଦାର । ତାଙ୍କ ଦ୍ୱାରା ଏକ ଅଭ୍ୟର୍ଥନା ସଭାରେ ଆମେ ଉଚ୍ଛ୍ୱସିତ ପ୍ରଶଂସା ପାଇଥିଲୁ ।

ପୂର୍ବ ବଙ୍ଗରେ ବୁଲିଲାବେଳେ ବହୁ ସନ୍ତ୍ରାସବାଦୀ ବିପ୍ଳବୀ ଯୁବକମାନଙ୍କ ସହ ସାକ୍ଷାତ ହୋଇଛି । ସେମାନେ ସାଧାରଣତଃ ଥାନାମାନଙ୍କରେ ଆନ୍ତରୀଣ ବନ୍ଦୀ ରୂପେ ଥାଆନ୍ତି । ଏମିତି ତ ଅନେକ ମିଳିଛନ୍ତି; କିନ୍ତୁ ଆଜି ଜଣକ ଜୀବନ କଥା ଆପଣମାନଙ୍କୁ ଶୁଣାଉଛି ।

ପଚ୍ଚିରୁ ପଚ୍ଚିରୁ ଆମେ ସ୍ୱାଧୀନତା ସଂଗ୍ରାମୀ ଜାଣି କହି ବସିଲେ ଯୁବକ ଜଣକ । ନିଜ କଥା । ଯାହାଙ୍କ ମୁଣ୍ଡ ଉପରେ ମୃତ୍ୟୁର ଖଣ୍ଡା ସର୍ବଦା ଝୁଲୁଛି ।

ଶଙ୍କର, ପ୍ରତାପ, ଅମର ଓ ଚିତ୍ତରଞ୍ଜନ ଏହି ଚାରିଜଣଙ୍କ ଦଳଟି ଜଲାଲ-ବାଦ ପାହାଡ଼ରୁ ଅଲଗା ହୋଇଗଲେ । ଦଳର ନେତା ଶଙ୍କର । ନେତାମାନେ ଏକବାର୍ ମିଳିଟାରୀ ନେତା । ଶଙ୍କର କଥା ମାନି ତିନିଜଣଙ୍କୁ କାର୍ଯ୍ୟ କରିବାକୁ ହେବ । ଏ ନେଇ କୌଣସି ତର୍କ କିମ୍ବା ଆଲୋଚନା ହେବ ନାହିଁ, ମୃତ୍ୟୁର ମୁଖାମୁଖୀ ହୋଇ ମଧ୍ୟ ।

ପାହାଡ଼ ପର୍ବତ ଡେଇଁ ସେମାନେ ବାଟଚାଲି ଆରମ୍ଭ କଲେ । କୁଆଡ଼େ ଯିବେ କେଉଁ ଦଗକୁ ଯିବେ ତାର ଠିକଣା ନାହିଁ । ଜଲାଲବାଦ ପାହାଡ଼ ଦୂରରେ । ଅନ୍ୟ କୁଆଡ଼େ ପଳାଇଯିବା ସେମାନଙ୍କ ଉଦ୍ଦେଶ୍ୟ । ଭୋର ହେବା ଆଗରୁ ସେମାନେ ଚାଲିବା ଆରମ୍ଭ କରିଛନ୍ତି । ସମସ୍ତ ବାଡ଼ି ଚାଲିଛି । ଦ୍ୱିପ୍ରହର ଗଡ଼ିଯାଇ ଅପରାହ୍ଣ ଆସି ହେଲା । ତଥାପି ସେମାନଙ୍କର ପଥ ଚାଲିବାର ଶେଷ ନାହିଁ । ଶ୍ରାନ୍ତ, କ୍ଳାନ୍ତ ହୋଇ କୌଣସିମତେ ନିଜକୁ ଯେପରି ଟାଣି ଘୋଷାରି ନେଇ ଚାଲିଛନ୍ତି ।

ସାମାନ୍ୟ ଖାଦ୍ୟ ଆଉ ବିଶ୍ରାମ ଟିକିଏ ନ ପାଇଲେ ସେମାନେ ଆଉ ବାଟ ଚାଲି ପାରିବେ ନାହିଁ । ସନ୍ଧ୍ୟା ହୋଇ ଆସିଲା । କେଉଁଠି ରାତିଟି କଟାଇବେ ସେମାନେ ? ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ କଥା ଲୋକଙ୍କ ମୁହଁରେ ମୁହଁରେ ପ୍ରଚାରିତ ହୋଇ ଯାଇଛି । ବାଟେଘାଟେ ଗ୍ରାମେ ଗ୍ରାମେ ଏବଂ ସହରମାନଙ୍କରେ ସମସ୍ତେ ସନ୍ତ୍ରସ୍ତ, ଆତଙ୍କିତ, ପୋଲିସର ଗୁପ୍ତଚରମାନେ ସାଧା ପୋଷାକରେ ଘୂରି ବୁଲୁଛନ୍ତି ବିପ୍ଳବୀମାନଙ୍କୁ ଧରିବା ଲାଗି ।

ଗୋଟିଏ ଲୋକ ତାଙ୍କ ଆଡ଼କୁ ଆସୁଥିବାର ଦେଖି ଶଙ୍କର ତିନିଜଣଙ୍କୁ ବୁଦାମଧ୍ୟରେ ଲୁଚିଯିବାକୁ କହି ନିଜେ ତାର ମୁକାବିଲା ଲାଗି ଆଗେଇଗଲା । ଶଙ୍କର ଦେଖିଲା ଲୋକଟି ଜଣେ ସାଧାରଣ କୃଷି । ଲଙ୍ଗଳ କାନ୍ଧେଇ ଘରକୁ ଫେରୁଛି ।

ଆତ୍ମପରିଚୟ ଗୋପନ କରି ଲାଭ ବା କ'ଣ ? ବରଂ କ୍ଷତି ହେବ । କୃଷୀକୁ ସମସ୍ତ କଥା ଖୋଲି କହିଲା ଶଙ୍କର । ଗତ ପାଞ୍ଚ ଛଅଦିନ କିପରି ତାଙ୍କର କଟିଛି ତା ମଧ୍ୟ ପ୍ରକାଶ କଲା । ପରେ ନିବେଦନ କଲା ସେହି ସାମାନ୍ୟ ଗ୍ରାମ୍ୟ କୃଷୀଟିର ନିକଟରେ, ଆମ୍ଭମାନଙ୍କ ଲାଗି ସମସ୍ତ ଭାରତବାସୀଙ୍କ ଲାଗି, ଭାରତ ମାତାର ମୁକ୍ତି ଲାଗି, ଅତ୍ୟାଚାରୀ ଇଂରେଜ ସରକାର ବିରୁଦ୍ଧରେ ଆମେ ବିଦ୍ରୋହ କରୁଛୁ ମାନେ ଯୁଦ୍ଧ ଆରମ୍ଭ କରିଛୁ । ସେମାନଙ୍କୁ ଏ ଦେଶରୁ ତଡ଼ିବୁ ଏ ଆମର ପଣ, ପ୍ରତିଜ୍ଞା । କିନ୍ତୁ ଦୁଇ ଦିନ ଦିନ ମଧ୍ୟରେ ଏ କଠିନ କାର୍ଯ୍ୟ ସମ୍ଭବ ନୁହେଁ । ଆମେ ମାତ୍ର ଏ ଯାତ୍ରା ଆରମ୍ଭ କରିଛୁ । ହୁଏତ ପାରିବୁନି । ଆମ ମୃତ୍ୟୁ ପରେ ଆହୁରି ଅନେକ ଆଗେଇ ଆସିବେ । ଆହୁରି ଅନେକ ଏ ସଂଗ୍ରାମକୁ ଚଳେଇନେବେ । ଏ ସଂଗ୍ରାମରେ ଆମ୍ଭର ଜୟ ଅବଶ୍ୟମ୍ଭାବୀ । ନ୍ୟାୟ ଯେଉଁଠି, ଜୟ ସେଇଠି । ଏପରି ନଖାଇ ନପିଇ ନିଦ୍ରାସ୍ୱପ୍ନରେ ବୁଲୁଛୁ । ଆଜି ରାତିକ ତୁମ ପାଖରେ ଟିକିଏ ଆଶ୍ରୟ ଚାହୁଁଛୁ, କେବଳ ଏ ରାତିଟି ପାଇଁ । ସକାଳ ହେଲେ ଚାଲିଯିବୁ । କୃଷୀଟି ଶଙ୍କରର କଥା ଅଧେ ବୁଝିଲା, ଅଧେ ବୁଝିଲା ନାହିଁ । ଶଙ୍କରର ହାତ ଧରି ନିଜ ଘର ଆଡ଼େ ଚାଲିଲା । କହିଲା ମୋର ଯେତିକି ସାଧ୍ୟ ମୋ ଅତିଥି ସେବାରେ ତ୍ରୁଟି କରିବି ନାହିଁ । ମୋତେ ବିଶ୍ୱାସ କର । ମୋ କୁଡ଼ିଆରେ ରାତି କଟେଇ ନେବ । ତୁମେ ଦେଶ ପାଇଁ ଏତେ ବିପଦ ମଥାରେ ନେଇ ବୁଲୁଛ, ମୁଁ ତୁମ ପାଇଁ ଏତିକି କରିପାରିବିନି । ସାହସ ସଞ୍ଚୟ କରି ଶଙ୍କର କହିଲା ମୁଁ ଏକା ନୁହେଁ, ମୋର ଆଉ ତିନିଜଣ ସାଥୀ ତିନିଦିନ ହେଲା ଉପାସ ଭୋକରେ ସେ ଗଛ ତଳେ ପଡ଼ିଛନ୍ତି । କୃଷୀ ଉତ୍ସାହିତ ହୋଇ କହିଲା, କିଛି ଭୟ ନାହିଁ । ଗୋଟାଏ ରାତି ତ ! ଘରେ ଯାହା ଥିବ ସମସ୍ତେ ବାଣ୍ଟିକୁଣ୍ଟି ଖାଇ ରାତିଟି କଟେଇ ନେବା । କିଛି ସମୟରେ, ନୀରବରେ ଚାରିଜଣ ଯାଇ ଉଠିଲେ କୃଷୀ ଘରେ । କୃଷୀର ସ୍ତ୍ରୀ ଅତି ଆନନ୍ଦରେ ଅତିଥି ସତ୍କାର କଲା ।

ଚଟ୍ଟଗ୍ରାମ ପୋଲିସ ତାଙ୍କ ପଶ୍ଚାଦ୍ଧାବନ କରିବା ପରେ ଆଜି ପରମ ତୃପ୍ତି ସହକାରେ ଭାତ, ଡାଲି, ସନ୍ତୁଳା ଖାଇ ନିଶ୍ଚିନ୍ତରେ ସେମାନେ ଶୋଇ ପଡ଼ିଲେ ।

ତହିଁଆରଦିନ ସକାଳେ ଚାଷୀ ଏବଂ ତାର ସ୍ତ୍ରୀକୁ ଅନେକ ଧନ୍ୟବାଦ ଜଣାଇ ବିଦାୟ ନେଲେ ଚାରିଜଣ ।

ପୁଣି ପଥଚଲା ଆରମ୍ଭ ହେଲା ତାଙ୍କର । ଜନବିରଳ ପଥଧରି ଚାଲିଛନ୍ତି ତ ଚାଲିଛନ୍ତି, ମାଇଲ ପରେ ମାଇଲ୍ । ବାଟ ଚାଲିବା ଯେପରି ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ହୋଇଛି ।

ଚନ୍ଦ୍ରନାଥ ପାହାଡ଼ ନିକଟରେ ସେମାନେ ଆସି ପହଞ୍ଚିଲେ । ସେଠାରେ ଗାଁର ଏକ ଦୋକାନରୁ ଖାଇବା ସରହନ୍ଦ କରି ରାତିଟି ରହିବାର ବ୍ୟବସ୍ଥା କଲେ । ଦୋକାନୀର ଏକ ଭଙ୍ଗା ଚାଳଘରେ । ଦୋକାନଦାର ସମସ୍ତ ବ୍ୟବସ୍ଥା କରି-ଦେଲା ।

ପୂର୍ବ ଆକାଶ ଫରଚା ହୋଇ ଆସୁଛି । କ୍ଳାନ୍ତରେ ଚାରିଜଣ ନିଦ୍ରାରେ ଅଚୈତନ୍ୟ । ହଠାତ୍ ଚିତ୍ତରଞ୍ଜନଙ୍କୁ ଧକ୍କା ଦେଇ ଜଗେଇ ଦେଲା ଗୋଟିଏ ଝିଅ । ଚିତ୍ତରଞ୍ଜନର ସମବୟସୀ ହେବ ଗାଁର ସରଳା, ସ୍ୱାସ୍ଥ୍ୟବତୀ ଝିଅଟିଏ । ଚିତ୍ତରଞ୍ଜନ କାନ ପାଖରେ ମୁହଁ ରଖି ଫୁସ୍‌ଫୁସ୍ କରି କହିଲା—ବାପା ପୋଲିସକୁ ଖବର ଦେଇଛି । ପୋଲିସ ଆସିଗଲାଣି, ପଳାଅ । କୁଡ଼ିଆ ପଛପଟ ବାଟ ଜଙ୍ଗଲ ଭିତରକୁ ପଡ଼ିଛି । କୌଣସି କଥା ପଚାରିବା ପୂର୍ବରୁ ସେ ଅଦୃଶ୍ୟ ହୋଇଗଲା । ଦେଶବନ୍ଧୁ ଚିହ୍ନିପାରିଲା । ଏହି ଝିଅଟି ହିଁ କାଲି ଖାଇବା ଶୋଇବାରେ ତାଙ୍କର ଢେର ଯତ୍ନ ନେଇଥିଲା । ଦୋକାନୀ ଝିଅ । ବାପ ଆଉ ଝିଅ ମଧ୍ୟରେ କେତେ ତଫାତ୍ ।

ମୁହୂର୍ତ୍ତେ ମାତ୍ର ଅପେକ୍ଷା ନ କରି ତିନିଜଣଙ୍କୁ ଚିତ୍ତରଞ୍ଜନ ଉଠେଇ ଦେଲା । ଚିତ୍ତରଞ୍ଜନର ନିର୍ଦ୍ଦେଶରେ ଚାରିଜଣଯାକ କୁଡ଼ିଆ ପଛପଟ ଜଙ୍ଗଲ ପଥ ଧରି ଦୌଡ଼ିଲେ । ସେହି ଜଙ୍ଗଲରେ ପୁଲିସ ମଧ୍ୟ ତାଙ୍କ ପିଛା ନେଲେ ।

ଧରା ବର୍ତ୍ତମାନ ପଡ଼ିବା କଥା । ପଳେଇବାର କୌଣସି ପଥ ନାହିଁ । ଶ୍ରାନ୍ତ କ୍ଳାନ୍ତ ଏମାନେ । କ୍ରମେ ପୋଲିସ ଫୌଜ ଆଗେଇ ଆସୁଛି । ଆତ୍ମ ସମର୍ପଣ ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ । ମୁହାଁମୁହିଁ ମୁକାବିଲା କରିବା ଉଚିତ୍ । କିନ୍ତୁ ଚାରୋଟା ରିଭଲଭର୍ ଏବଂ ସାମାନ୍ୟ କେଇଟା ଗୁଳି ନେଇ ଏମାନେ କେତେବେଳ ଯାଏ ତିଷ୍ଠି ପାରିବେ ?

ସ୍ୱରଜଯୋଗ ଦୌଡ଼ିଲେ ଜଙ୍ଗଲ ଆଡ଼େ । ଦୌଡ଼ି ଦୌଡ଼ି ଶଙ୍କର ଦେଖିଲା ଆଗରେ ଗୋଟିଏ ଛୋଟିଆ ପାହାଡ଼ । ଶଙ୍କର ଭାବିଲା ପାହାଡ଼ ଉପରକୁ ଉପରକୁ ଉଠିଲେ ପୋଲିସ୍ ବାହିନୀ ସ୍ୱଭାବତଃ ଘେରିଯିବେ । କିନ୍ତୁ ପଛରୁ ମାଡ଼ି ଆସୁଥିବା ପୋଲିସବାହିନୀ ବିରୁଦ୍ଧରେ କେତେ ସମୟ ଲଢ଼ି ପାରିବେ ? କିମ୍ବା କେତେ ବାଟ ବା ଦୌଡ଼ି ପାରିବେ ? ଧରା ନିଶ୍ଚୟ ପଡ଼ିବେ । ତା ମାନେ ଯୁଦ୍ଧ ଅନିବାର୍ଯ୍ୟ । ଶଙ୍କର ମନ ସ୍ଥିର କରି ନେଲା । ଲଢ଼ିବାକୁ ଯେବେ ପଡ଼ିବ ତେବେ ପାହାଡ଼ ଉପରଟା ହେବ ଉପଯୁକ୍ତ ସ୍ଥାନ । ତରବର ହୋଇ ଲତା ବୁଦା ଗଛ ଅନ୍ତରାଳରେ ଶଙ୍କର ଏବଂ ତାର ତିନିଜଣ ବନ୍ଧୁ ପାହାଡ଼ ଉପରକୁ ଉଠି ଗଲେ । ପୋଲିସବାହିନୀ ବୋଧହୁଏ ଏହି ସୁଯୋଗର ଅପେକ୍ଷାରେ ଥିଲେ । ପୁଲିସ ବାହିନୀର ଇନ୍‌ଚାର୍ଜ ଜଣେ ଗୋରା ଦୁର୍ଦ୍ଦାନ୍ତ ଲୋକ । ଆଉ ସେମାନଙ୍କୁ ଅନୁଧାବନ ନକରି ପୋଲିସ ବାହିନୀ ଘେରେଇ ନେଲା ପାହାଡର ଚାରିପଟେ । ଛୋଟ ପାହାଡର ଜଙ୍ଗଲ ଏତେ ଘନ ଯେ ବିପ୍ଳବୀମାନେ ଜଙ୍ଗଲର ଅନ୍ତରାଳରେ ନିରାପଦରେ ଉପରକୁ ଉଠି ଗଲେ ।

ବହୁବାର ତଳୁ ପ୍ରସ୍ତାବ ଗଲା ଆତ୍ମସମର୍ପଣ କର । ତା ନ ହେଲେ ମୃତ୍ୟୁ ତୁମର ସୁନିଶ୍ଚିତ । ଆତ୍ମସମର୍ପଣ କରିବ କି ନା ? । ଉତ୍ତର ଘନ ଜଙ୍ଗଲ ମଧ୍ୟରୁ ପ୍ରତିଧ୍ୱନିତ ହେଲା ନା—ନା—ନା ।

ମଝିରେ ମଝିରେ ଗୁଳି ବର୍ଷଣ ହେଉଥାଏ । ପାହାଡ଼ ଉପରର ପଥର ଅନ୍ତରାଳରେ ଥିବାରୁ ବିପ୍ଳବୀମାନଙ୍କର କିଛି ହେଲା ନାହିଁ । ପୋଲିସ ବାହିନୀର ଦୁଇଜଣ ଆହତ ହେଲେ ଏବଂ ଜଣେ ନିହତ ହେଲା । ଏମିତି କରି ସମସ୍ତ ଦିନଟି କଟିଗଲା । କଟିଗଲା ସାରା ରାତି । ଏହାମଧ୍ୟରେ ପୋଲିସ ବାହିନୀ ଦ୍ୱିଗୁଣିତ ହେଲେ । ତହିଁ ଆରଦିନ ସକାଳେ ପୋଲିସ ବାହିନୀ କମାଣ୍ଡରର ଶେଷ ନିର୍ଦ୍ଦେଶ ଆସିଲା—ଆତ୍ମସମର୍ପଣ କରିବ କି ନା । ଶଙ୍କର ରିଭଲଭରର ଗୁଳିରେ ଜଣେ ସଶସ୍ତ୍ର ପୋଲିସକୁ ଆହତ କରି କହିଲା—ନା । ପରେ ପରେ ସମସ୍ତେ ଚିତ୍କାର କରି ଉଠିଲେ—"ବନ୍ଦେ ମା'ତରମ୍ ।"

"ଭଲ ଭଲ ଉଚିତ୍ ଶିକ୍ଷା ଦେଉଛୁ ତୁମମାନଙ୍କୁ" ପୋଲିସ ଇନ୍‌ଚାର୍ଜ ଗର୍ଜି ଉଠି ଆଦେଶ ଦେଲା :"Charge them from all sides till we go". ବହୁଳ ସଶସ୍ତ୍ର ବାହିନୀ ପାହାଡ଼ ଉପରକୁ ଉଠିଲେ । ଉପରୁ ଦୁଇଟି ରିଭଲଭର କ୍ରମାଗତ ଗର୍ଜି ଉଠିଲା । ଅନେକ ପୋଲିସ ତଳକୁ ଗଳି ପଡ଼ିଲେ, କେହି ଆହତ ହୋଇ ବା କେହି ଆହତର ଛଳନା କରି । କିନ୍ତୁ ପୋଲିସ ବାହିନୀ

ଆଗେଇ ଚାଲିଲେ । ତାଙ୍କଠାରୁ ଦୂରତ୍ୱ କ୍ରମେ କମି ଆସିଲା । ପୁଲିସ୍ ଇନ୍‌ସ୍ପି ବିଭିନ୍ନ ଅର୍ଡ଼ର ଦେବା ସଙ୍ଗେ ସଙ୍ଗେ ତଳକୁ ଗଡ଼ି ଗଡ଼ି ଚାଲିଲା । ଏହି ସମୟରେ ତା ମୁଣ୍ଡରେ ଗୋଟିଏ ଗୁଳି ଲାଗିଛି । ଫାୟାର୍ କରି କରି ପୁଲିସ୍ ବାହିନୀ ତଥାପି ଉପରକୁ ଉଠି ଆସିଲେ । ହଠାତ୍ ସେମାନେ ଲକ୍ଷ୍ୟ କଲେ ପାହାଡ଼ ଉପରୁ ଗୁଳି ଚଳାଇବା ବନ୍ଦ ହୋଇଯାଇଛି । ତେବେ କି'ଣ ବିପ୍ଳବୀମାନେ ଆହତ ହୋଇଛନ୍ତି ! କିନ୍ତୁ ଚାରିଜଣ ଏକାସାଙ୍ଗରେ ? ସେ କି'ଣ ସମ୍ଭବ ? ଏମିତି ହୋଇପାରେ ସେମାନଙ୍କର କାର୍ତ୍ତୁଜ ବୋଧହୁଏ ସରିଯାଇଛି ।

ଚାରି ଦିଗରୁ ବିରାଟ ପୋଲିସ୍ ବାହିନୀ ଅତ୍ୟନ୍ତ କ୍ରୋଧରେ ଛୋଟ ପାହାଡ଼ଟି ଉପରେ ପାଟି କରି କରି ଉଠିଲେ । କିନ୍ତୁ ବିପ୍ଳବୀ ଚାରିଜଣ ଗଲେ କୁଆଡ଼େ ? ପାହାଡ଼ ଉପରେ ଜଣଙ୍କର ଦେଖା ମଧ୍ୟ ମିଳିଲା ନାହିଁ । ସେମାନେ ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ । ସେ କିଣ କୁଆଡ଼େ ଉଭେଇ ଗଲେ, ସେମାନେ କିଣ ଯାଦୁ ଜାଣନ୍ତି ? କିଂକର୍ତ୍ତବ୍ୟବିମୂଢ଼ ହୋଇ ପୋଲିସ ବାହିନୀ ବଣ ଜଙ୍ଗଲ ଚାରିଆଡ଼େ ଖୋଜିବାରେ ଲାଗିଲେ । କିନ୍ତୁ କାହାରି ସନ୍ଧାନ ପାଇଲେ ନାହିଁ । ଆଖପାଖରେ କାର୍ତ୍ତୁଜ ଖୋଳ ପଡ଼ିଥିବାର ଦେଖିଲେ । ବିପ୍ଳବୀମାନେ ଯେ ଏଠାରେ ଥିଲେ ଏହାର ଯଥେଷ୍ଟ ପ୍ରମାଣ ରହିଛି । ତନ୍ନତନ୍ନ କରି ଅନ୍ଧାର ଖୋଜିଲେ । ବହୁ ଅନୁସନ୍ଧାନ ପରେ ଜଣଙ୍କର ମଧ୍ୟ ଚିହ୍ନବର୍ଣ୍ଣ ମିଳିଲା ନାହିଁ । ବିଫଳ ମନୋରଥ ହୋଇ ସେମାନେ ପାହାଡ଼ ଉପରୁ ତଳକୁ ଓହ୍ଲାଇଯିବାକୁ ସ୍ଥିର କଲେ । ଅନେକ ମନେ କଲେ ପ୍ରକୃତରେ ବିପ୍ଳବୀମାନେ ଯାଦୁ ଜାଣନ୍ତି । ମା କାଳୀଙ୍କୁ ଉପାସନା କରନ୍ତି । ତାଙ୍କର ମାଷ୍ଟର ଦାଦା (ସୂର୍ଯ୍ୟସେନ) ସତରେ ଗୋଟିଏ ରହସ୍ୟମୟ ଚରିତ୍ର । ପୋଲିସ ହାତରେ ବହୁବାର ଧରାପଡ଼ି ମଧ୍ୟ ଧରା ଦେଇ ନାହାନ୍ତି । ଏପରି ହଠାତ୍ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି ।

ପୋଲିସ୍ ବାହିନୀ ତଳକୁ ଓହ୍ଲାଇବାକୁ ବସିଛନ୍ତି ହଠାତ୍ ଜଣେ ଚିତ୍କାର କରିଉଠିଲା ତାଜା ରକ୍ତ । ଏଠି ରକ୍ତ କୁଆଡ଼ୁ ଆସିଲା ?

ସମସ୍ତେ ଦଉଡ଼ି ଯାଇ ଦେଖିଲେ ବାସ୍ତବିକ ରକ୍ତ ମାଟିରେ ପଡ଼ି ମାଟିକୁ ଲାଲ କରି ଦେଇଛି ।

କମାଣ୍ଡରର ମୃତ୍ୟୁ ପରେ ବାହିନୀର ଯିଏ ଚାଳନାର୍ଥୀ ଥିଲେ ସେ ମନ୍ତବ୍ୟ କଲେ ତାଜା ରକ୍ତ ଯେତେବେଳେ ରହିଛି ନିଶ୍ଚୟ ଜଣେ ଆହତ ହୋଇ ପାଖରେ କେଉଁଠି ପଡ଼ିଛି ।

ଏଣେତେଣେ ଖୋଜିବା ଆରମ୍ଭ ହୋଇଗଲା । ଆଉ କିଛି ଦୂରରେ ଦ'ଟୋପା ରକ୍ତ । ରକ୍ତବିନ୍ଦୁ ଦେଖି ଶିକାରୀ ଯେମିତି ଆହତ ଜନ୍ତୁର ସନ୍ଧାନରେ ଆଗେଇଯାଏ, ପୋଲିସ ଇନ୍‌ସ୍ପେକ୍ଟର ସେମିତି ଆହତ ବିପ୍ଳବୀର ସନ୍ଧାନରେ ମାଡ଼ିଗଲେ । ଗୋଟାଏ ପଥର ଉପରେ ଦ'ଟୋପା ରକ୍ତ ଲାଗିଥିବାର ଦେଖିଲେ । ଶୁଖିନି ଏପର୍ଯ୍ୟନ୍ତ । ଆଖପାଖରେ ଆଉ କୌଣସି ରକ୍ତବିନ୍ଦୁ ଦେଖାଗଲାନି । ରକ୍ତ ଟୋପାକୁ ଅନେକ କ୍ଷଣ ପର୍ଯ୍ୟନ୍ତ ପରୀକ୍ଷା କରି ଇନ୍‌ସ୍ପେକ୍ଟର ଅଫିସର୍ କହିଲେ ଏ ପଥରଟାକୁ ଏଠାରୁ ଘୁଞ୍ଚାଇ ଦେବାକୁ ପଡ଼ିବ ।

ତିନି ଚାରିଜଣ ପୋଲିସ ମିଶି ପଥରଟାକୁ ଘୁଞ୍ଚାଇ ଦେବାମାତ୍ରେ ଚମକି ପଡ଼ିଲେ । ଏ କ'ଣ ! ଗୋଟାଏ ସୁଡ଼ଙ୍ଗ ତଳକୁ ଲମ୍ବି ଯାଇଛି । ଘନ ଅନ୍ଧକାର ଯେପରି ଘୋଟିଯାଇଛି ସୁଡ଼ଙ୍ଗ ଭିତରେ ।

ଏହାରି ମଧ୍ୟରେ ଚାଲିଯାଇଛନ୍ତି ଚାରିଜଣ । ତା ମଧ୍ୟରେ ଜଣେ ଆହତ । ଧରାପଡ଼ିଗଲେ ବାପଧନ ବର୍ତ୍ତିମାନ ଯିବ କୁଆଡ଼େ ? ମନ୍ତବ୍ୟ କଲେ ପୋଲିସ୍ ଇନ୍‌ସ୍ପେକ୍ଟର ।

"ସ୍ୱେଚ୍ଛାରେ ନିଜ କବରରେ ନିଜେ ପଶିଛନ୍ତି" ମନ୍ତବ୍ୟ କଲେ ଜଣେ ମୁସଲମାନ ସୈନିକ ।

ଦୁଇଜଣ ପୋଲିସକୁ ଇନ୍‌ସ୍ପେକ୍ଟର ଅର୍ଡ଼ର ଦେଲେ ଅଣ୍ଟାରେ ଦଉଡ଼ି ବାନ୍ଧି, ବନ୍ଧୁକରେ ସଙ୍ଗୀନ୍ ଲଗେଇ ତଳକୁ ଖସି ଯାଅ ।

ଧୀର ପଦକ୍ଷେପ ପରେ ଦୁଇଜଣ ଧୀରେ ଧୀରେ ତଳକୁ ଚାଲିଗଲେ । ଦଶଫୁଟ ପର୍ଯ୍ୟନ୍ତ ସେମାନେ ଓହ୍ଲାଇଛନ୍ତି କି ନାହିଁ ହଠାତ୍ ରିଭଲ୍‌ଭରର ଶବ୍ଦ ଶୁଣାଗଲା ସୁଡ଼ଙ୍ଗ ଭିତରୁ । ଦଉଡ଼ି ଟାଣିବାକୁ ଇଙ୍ଗିତ ଆସିଲା । ଦଉଡ଼ି ଟାଣି ପୋଲିସ୍ ଦୁଇଜଣଙ୍କୁ ଉପରକୁ ଉଠାଇ ଦେଖିଲେ ଦୁଇଜଣଯାକ ଗୁଳି ମାଡ଼ରେ ଆହତ । ଜଣକର ଟର୍ଚ୍ଚ ପଡ଼ିଯାଇଛି ସୁଡ଼ଙ୍ଗ ତଳେ ।

ପୋଲିସ କମାଣ୍ଡର ଯେପରି ମାରେ ନ ମାରେ । ଦାନ୍ତରେ ଓଠ ଚପି କହିଲେ ଏ ଗରଳ ବାହିନୀକୁ ଯେ କୌଣସି ମତେ ଧ୍ୱଂସ କରି ଦେବାକୁ ହେବ । ଏତିକି କହି ଘନ ଘନ ନିଶ୍ୱାସ ଛାଡ଼ି କିଛି ସମୟ ନୀରବରେ ଠିଆ ହୋଇ ରହିଲେ ।

ହଠାତ୍ ଚିତ୍କାର କରି ଉଠିଲି—"ଜୀବନ୍ତ ସମାଧି ଦେବ ଏଇ ଶଇତାନ ଗୁଡ଼ାକୁ"। ତାପରେ କମାଣ୍ଡର ନିର୍ମମ ସ୍ୱରରେ ଆଦେଶ ଦେଲେ "ସୁଡ଼ଙ୍ଗର ମୁହଁ ବନ୍ଦ କରିଦିଅ"।

ତିନି ଚାରିଜଣ ସୈନିକ ଘୁଞ୍ଚାଇଥିବା ପଥରଟିକୁ ପୁଣି ସୁଡ଼ଙ୍ଗ ମୁହଁରେ ରଖିବାକୁ ଚେଷ୍ଟା କରିବାରୁ କମାଣ୍ଡର ଚିତ୍କାର କଲା "ନା—ନା—ସେଇଟା ନୁହେଁ। ୨୦।୨୫ ଜଣ ଯାଅ; ସେ ବଡ଼ ପଥର ଖଣ୍ଡିକ ଆଣ। ଯେପରି ଶତ ଚେଷ୍ଟା କରି ସେମାନେ ଘୁଞ୍ଚାଇ ପାରିବେ ନାହିଁ"। ୧୦।୨୦ଜଣ ଲୋକ ସେ ବିରାଟ ପଥର ଖଣ୍ଡିକ ବଡ଼ କଷ୍ଟରେ ଆଣି ଗୁମ୍ଫା ମୁହଁ ବନ୍ଦ କରିଦେଲେ।

ସୁଡ଼ଙ୍ଗର ମୁହଁ ନିକଟରେ ଠିଆ ହୋଇ ଉଚ୍ଚ କଣ୍ଠରେ ପୋଲିସ୍ ଇନସ୍ପେକ୍ଟର ବିପ୍ଳବୀମାନଙ୍କୁ ଲକ୍ଷ୍ୟକରି କହିଲା, "Rest with peace" ଶାନ୍ତିରେ ବିଶ୍ରାମ ନିଅ।"

ସୁଡ଼ଙ୍ଗ ମୁଖ ବନ୍ଦ ହୋଇଗଲା। ବିରାଟ ପଥର ପାଖରେ ଆହୁରି ଛୋଟ ଛୋଟ ପଥର ଥୁଆଗଲା। ତାଲପତ୍ର ଘୋଡ଼େଇ ଦେଇ ପୋଲିସ୍ ବାହିନୀ ବିଜୟ ଗର୍ବରେ ଫେରିଗଲେ।

ତାପରେ କଣ ହେଲା କୁହନ୍ତୁ ଦେଖି? ଆପଣ କଣ ଭାବୁଛନ୍ତି ସେହି ଆତ୍ମତ୍ୟାଗୀ, ଦେଶପ୍ରେମୀ, ଜାତିଲାଗି ଉତ୍ସର୍ଗୀକୃତ ଆତ୍ମା ସେଠାରେ ଅନାହାରରେ ତିଳ ତିଳ ହୋଇ ପ୍ରାଣତ୍ୟାଗ କଲେ? ତାଙ୍କର ଅତୃପ୍ତ ଆତ୍ମା କଣ ସେ ଅନ୍ଧକାର ଗହ୍ୱରରେ ଘୂରିବୁଲିଲା? ତା ନୁହେଁ। ପୁଲିସ୍‌ବାଲାଙ୍କ ହାତରୁ ଖସି ପଡ଼ିଥିବା ଗୋଟି ସେଲ୍ ଟର୍ଚ୍ଚ ଲାଇଟ୍‌ଟି ତାଙ୍କର ଅଭିଶାପ ନ ହୋଇ ହେଲା ବରଦାନ। ପୁଲିସ୍‌-ବାଲା ଭାବିଥିଲେ ନ ଖାଇ ନପିଇ ଶ୍ୱାସରୁଦ୍ଧ ହୋଇ ଶୁଖି ଶୁଖି ମରିବେ ସେମାନେ। କିନ୍ତୁ ବିଧାତାର ବିଧାନ ଅନୁକୂଳ ହେଲା। ଯେ ଗହ୍ୱର କିଏ ଗଢ଼ିଥିଲା କେଜାଣି ସେ ମୂର୍ଖ ନ ଥିଲା। ଅତି ବୁଦ୍ଧିକ୍। ସେହି ଟର୍ଚ୍ଚ ଲାଇଟ୍ ଆଲୋକପଥ କଢ଼େଇ ନେଲା। କିଛି ଦୂର ଯିବାପରେ ଆଲୋକର କ୍ଷୀଣରେଖା ଦେଖାଗଲା। ସମସ୍ତ ଶକ୍ତି ସଞ୍ଚୟ କରି ଆଗେଇଲେ ସ୍ୱରଜଣ ସ୍ୱାଧୀନତାଲାଗି ପଣ କରିଥିବା ଅଗ୍ନି ପଥର ଯାତ୍ରୀ। ବାଟଟି ଯାଇ ଗୋଟିଏ ନଈ କୂଳରେ ପଡ଼ିଛି। ସେ କଥା ପୋଲିସ୍‌କୁ ଜଣାନାହିଁ। ଆକାଶରେ ପରିଷ୍କାର ଜ୍ୟୋତ୍ସ୍ନା। ମାଛ ଧରାଳୀଙ୍କ ଡଙ୍ଗାଟିଏ ବନ୍ଧା ହୋଇଥିଲା। ସେହି ଖଣ୍ଡିକ ଖୋଲି ତାହା ଚଳେଇ ଆରପାରିକୁ ଗଲେ। ସେ-ପାରିରେ ଆଉ ଏକାଠି ନ ଯାଇ ଗାଉଁଲି ଲୋକ ବେଶରେ କିଏ କୁଆଡ଼େ

ଫେରାର ହୋଇଗଲେ । ତାପରେ କଣ ହେଲା ସେମାନଙ୍କ ଖବର ମୁଁ ରଖିନି । କିନ୍ତୁ ମୁଁ ତାଙ୍କ ମଧ୍ୟରୁ ଜଣେ ଯିଏ ଏ ପର୍ଯ୍ୟନ୍ତ ଯେ କପରି ବଞ୍ଚିଛି ତାହା ହିଁ ଆଶ୍ଚର୍ଯ୍ୟ ।

କନେଷ୍ଟବଲ୍ ଆସୁଛି । ଆମ କଥା ଶୁଣିବ । ଦୟାକରି ଏତକ ଆପଣଙ୍କ ଦୈନିକ କପିରେ ଲେଖି ରଖିବେ । ମୋର ଦଶା କେତେବେଳେ କଣ ହେବ କହି ପାରିବନି । ଅ.କ୍ରା ଅନ୍ତ୍ରଶସ୍ତ୍ରବାଗ, ଡାଲହୌସି ଥାନାରେ, ତାପର ଦିନ ଦେଖିବେ କଳାପାଣି ଅଥବା ଫାଶୀରେ ଝୁଲୁଥିବ । ଆପଣ ଗୁଇନ୍ଦା ନୁହନ୍ତି । ସ୍ୱାଧୀନତା ସଂଗ୍ରାମୀ । ମୋର ବିଶ୍ୱାସ ଏ କଥା ନିଜ ମଧ୍ୟରେ ଗୋପନ କରି ରଖିବେ । ଜୟ ଭାରତ—ଜୟ ହିନ୍ଦ । ଧୀର ପଦକ୍ଷେପରେ ଚାଲିଗଲେ ଥାନାରେ ନିର୍ଦ୍ଦିଷ୍ଟ ଥିବା ତାଙ୍କ ଘରମଧ୍ୟକୁ ଚଣ୍ଡରଞ୍ଜନବାବୁ (ମୁଖର୍ଜୀ) । ମୃତ୍ୟୁକୁ ଯେ ନିଜ ମଥାରେ ବହି-ବୁଲିଛନ୍ତି ଶିବ ଅନ୍ତରାଳ ବିହ୍ୱଳଭାବ । ଭକ୍ତିପୂତ ପ୍ରଣତି ସେହି ମହାନ୍ ବିପ୍ଳବୀଙ୍କ ଉଦ୍ଦେଶ୍ୟରେ ଜଣାଇ ଥାନାବାବୁଙ୍କୁ ନମସ୍କାର କରି ଆସିଗଲି ।

ପୂର୍ବ ବଙ୍ଗରେ ବହୁ ଖ୍ୟାତନାମା ବ୍ୟକ୍ତି ଜନ୍ମ ଗ୍ରହଣ କରିଛନ୍ତି । ପ୍ରଫୁଲ୍ଲ ଚନ୍ଦ୍ର ରାୟ, ଜଗଦୀଶ ଚନ୍ଦ୍ର ବୋଷଙ୍କ ପରି ବିଶିଷ୍ଟ ବୈଜ୍ଞାନିକ, ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ, ସୂର୍ଯ୍ୟସେନ୍ ଏବଂ ବହୁ ବିପ୍ଳବୀ ଇଂରେଜମାନଙ୍କ ବିତାଡ଼ନ ପାଇଁ ଯେଉଁ ଆନ୍ଦୋଳନ ପର୍ବ ଆରମ୍ଭ କରିଥିଲେ ତାର ଉତ୍ସ ଥିଲା ପୂର୍ବ ବଙ୍ଗ । ଯେଉଁଠାକୁ ଯାଇଛି ନଦୀ ବହୁଳ, ପୂର୍ବ ବଙ୍ଗର ବିଖ୍ୟାତ ମାଛ, ଦହି, କ୍ଷୀର ଓ ମିଠା ପ୍ରଚୁର ଖାଇଛି । ×

ଢାକାରେ ଥିବା ସମୟରେ ବିଖ୍ୟାତ ଭାଓ୍ୱାଲ ସନ୍ନ୍ୟାସୀ ମକଦ୍ଦମା କଚେରୀରେ ଶୁଣିବାର ସୁଯୋଗ ପାଇଥିଲି । ଭାଓ୍ୱାଲ୍ ସନ୍ନ୍ୟାସୀଙ୍କୁ ସେଠାରେ ଦେଖିବାକୁ ପାଇଲି । ୪ ଦିନ ପର୍ଯ୍ୟନ୍ତ କଚେରୀକୁ ଯାଇଥିଲି । ଭାଓ୍ୱାଲ ସନ୍ନ୍ୟାସୀଙ୍କ ବିଷୟରେ ଊଣା ଅଧିକେ ପ୍ରତ୍ୟେକ ଭାରତୀୟଙ୍କୁ ଜଣା । ବର୍ଷ ବର୍ଷ ଧରି ସେ ମକଦ୍ଦମା ଚାଲିଛି । କେତେ ଓକିଲ, ବାରିଷ୍ଟର ମୁକଦ୍ଦମାରେ ନିଯୁକ୍ତ ହୋଇଛନ୍ତି । କଲିକତାରୁ ସାକ୍ଷ୍ୟ ଦେବାପାଇଁ ଲୋକେ ଆସିଛନ୍ତି । ଲକ୍ଷ ଲକ୍ଷ ଟଙ୍କା ପାଣି ସୁଅ ପରି ଖର୍ଚ୍ଚ ହୋଇଛି । ଭାଓ୍ୱାଲ ସନ୍ନ୍ୟାସୀଙ୍କ ପାଇଁ ସର୍ବସାଧାରଣ ଟଙ୍କା ଖର୍ଚ୍ଚ କରୁଥିଲେ । ଭାଓ୍ୱାଲ୍ ସନ୍ନ୍ୟାସୀ ମକଦ୍ଦମା ମନରେ କୌତୁହଳ ସୃଷ୍ଟି କରେ । ଭାଓ୍ୱାଲ୍‌କୁ ଦୁଃଶୀଳା ରାଣୀ ନିଜ ସ୍ୱାମୀଙ୍କ ଭୁଲ ଷ୍ଟେଟ୍‌ର ମ୍ୟାନେଜରଙ୍କ ସଙ୍ଗେ ପାପ ଷଡ଼ଯନ୍ତ୍ରରେ ଲିପ୍ତ ରହି ଡାକ୍ତରଙ୍କ ପରାମର୍ଶ ଅନୁସାରେ ସ୍ୱାମୀର ଖାଦ୍ୟ ସଙ୍ଗେ

ଯକ୍ଷ୍ମାର ବୀଜାଣୁ ପ୍ରବେଶ କରିଗଲା। ଅଳ୍ପ ଦିନରେ ସ୍ୱାମୀ ପୀଡ଼ିତ ହୋଇ ପଡ଼ିଲେ। ସ୍ୱାସ୍ଥ୍ୟ ପରିବର୍ତ୍ତନ ଲାଗି ତାଙ୍କୁ ଦାର୍ଜିଲିଂ ଅଣାଗଲା। ସାଙ୍ଗରେ ରାଣୀର ଭାଇ, ମ୍ୟାନେଜର ଓ ଡାକ୍ତର ଆସିଲେ। ସୁବିଧା ଦେଖି ଦିନେ ରାଣୀ ସହ ପରାମର୍ଶ କରି ଡାକ୍ତର ରାଜାଙ୍କୁ ବିଷ ଖୁଆଇ ଦେଲା। କିନ୍ତୁ ଭଗବାନଙ୍କ ବରଦରୁ ସେ ବିଷ ସେତେ ମାରାତ୍ମକ ନ ଥିଲା। ରାଜା କିଛି କ୍ଷଣ ଲାଗି ମୂର୍ଚ୍ଛା ଯାଇଥିଲେ। ରାଜା ମରିଗଲେ ବୋଲି କହି ରାତାରାତି ତାଙ୍କ ଶବକୁ ଶ୍ମଶାନକୁ ନିଆଗଲା। ଶବ ବାହକମାନେ ଶ୍ମଶାନରେ ଶବକୁ ରଖି ବିଶ୍ରାମ କରୁଛନ୍ତି। ଏଥି ସଙ୍ଗେ ସଙ୍ଗେ ପ୍ରବଳ ଝଡ଼ ସହ ବର୍ଷା ଓ ତୁଷାର ପାତ ହେଲା। ଶବ ବାହକମାନେ ଶବକୁ ଛାଡ଼ି ଯିଏ ଯୁଆଡ଼େ ପଳେଇଗଲେ। କିଛି ସମୟ ପରେ ମେଘ ଛାଡ଼ି ଯାଇ ଆକାଶ ପରିଷ୍କାର ହୋଇଗଲା। ସାଧୁ ଧର୍ମଦାସ ସେହି ଶ୍ମଶାନରେ ରହି ସବୁ ଦେଖୁଥିଲେ। ବର୍ଷା ପରେ ଶବ ନିକଟକୁ ସେ ଆସି ପରୀକ୍ଷା କରି ଦେଖିଲେ ନିଃଶ୍ୱାସ ଚାଲୁଛି। ତାଙ୍କ ପାଖରେ ଥିବା କିଛି ଔଷଧ ଖୁଆଇ ରାଜାଙ୍କୁ ବଞ୍ଚାଇ ତାଙ୍କ କୁଟୀରକୁ ନେଲେ। ପନ୍ଦର ବର୍ଷ ପର୍ଯ୍ୟନ୍ତ ତାଙ୍କର କିଛି ସନ୍ଧାନ ମିଳିଲା ନାହିଁ। ବର୍ତ୍ତମାନ ଷ୍ଟେଟ୍‌କୁ ଫେରି ଆସି ପରିଚୟ ଦେଇ ନିଜର ସମ୍ପତ୍ତି ଦାବୀ କରୁଛନ୍ତି।

ଆସାମରେ ଭ୍ରମଣ କରୁଥିବା ବେଳେ ଶୁଣିଲି ଯେ ସେ ପ୍ରକୃତ ରାଜକୁମାର ଏବଂ ତାଙ୍କ ସମ୍ପତ୍ତି ଓ ରାଜ୍ୟ ସେ ଫେରି ପାଇଥିଲେ। ରାଣୀ, ଡାକ୍ତର, ମ୍ୟାନେଜର ଓ ରାଣୀଙ୍କ ସାନ ଭାଇକୁ ଉପଯୁକ୍ତ ଶାସ୍ତି ମିଳିଲା।

ତାପରେ ଆମେ ଗଲୁ ଆସାମ। ଆସାମର ପ୍ରଥମ ଜିଲ୍ଲା ସିଲ୍‌ଟ ଦେଇ ଚେରାପୁଞ୍ଜିକୁ ଆସିଲୁ। ଚେରାପୁଞ୍ଜିର ଆଦିମଅଧିବାସୀଙ୍କ ମଧ୍ୟରେ ଖାସିଆମାନେ ପ୍ରଧାନ ଅଟନ୍ତି। ପୃଥିବୀର ସବୁଠାରୁ ଅଧିକ ବାର୍ଷିକ ବୃଷ୍ଟିପାତ ଅଞ୍ଚଳ ରୂପେ ଚେରାପୁଞ୍ଜି ପ୍ରସିଦ୍ଧିଲାଭ କରିଛି। ଏଠାରେ ବାର୍ଷିକ ବୃଷ୍ଟିପାତ ହେଉଛି ୪୨୬ ଇଞ୍ଚ। ଚେରାପୁଞ୍ଜିକୁ ଏଠାର ଖାସିଆମାନେ ଚେରା ବୋଲି ଡାକନ୍ତି।

ଚେରାପୁଞ୍ଜିରେ ଜଣେ ରାଜା ମଧ୍ୟ ଅଛନ୍ତି। ଏଠାକାର ରାଜା ମରିଯିବା ପରେ ତାଙ୍କ ଶ୍ରେଷ୍ଠ ଭାଇ, ଭଣଜା, କମ୍ବା ଭଣଜାର ଜ୍ୱାଇଁ ରାଜା ହେବେ। ରାଜାଙ୍କ ମୃତ୍ୟୁ ପରେ ତାଙ୍କର ପୁଅର ରାଜା ହେବାର ଅଧିକାର ନାହିଁ। ଯିଏ ରାଜା ହେବ, ତାକୁ ନିଜେ ରାଜା ମନୋନୀତ କରିପାରିବେ ନାହିଁ। ରାଜଦରବାରରେ ଥିବା ୧୨ ଜଣ ମନ୍ତ୍ରୀ ଯାହାକୁ ଭୋଟ ଦେବେ ସେହି କେବଳ ରାଜା ହେବେ। ଆମର ଭ୍ରମଣ ସମୟରେ ଯିଏ ରାଜା ଥିଲେ ତାଙ୍କ ନାମ ହେଲା ସିମ୍। ତାଙ୍କ ସାନ

ଭାଇର ନାମ ସିମ୍‌ଖୋନା । ଏମାନଙ୍କର ବିବାହ ପ୍ରଥା ଆମର ବିବାହ ପ୍ରଥା ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଯୁବକ ଯୁବତୀଙ୍କର ମନ ଯଦି ମିଳେ, ତେବେ ଅଳ୍ପକ୍ଷଣରେ ବିବାହ ହୋଇପାରେ । ଏଥିରେ ପିତାମାତାଙ୍କର ଆପତ୍ତିର କୌଣସି କାରଣ ରହିବ ନାହିଁ । ଆମମାନଙ୍କ ଘରେ ବିବାହ ପରେ କନ୍ୟା ଆସି ଶଶୁର ଘରେ ରହିବ, କିନ୍ତୁ ଖାସିଆମାନଙ୍କ ଘରେ ଜ୍ୱାଇଁ ଯାଏ ଶଶୁର ଘରକୁ । ଏମାନଙ୍କର ଯେଉଁମାନେ ଖୁବ୍‌ ଧନୀ, ସେମାନେ ବୋଝ ବୋହିବାକୁ ମଧ୍ୟ ଦ୍ୱିଧାବୋଧ କରନ୍ତି ନାହିଁ । ବଡ ଲୋକର ଝିଅମାନେ ସାମାନ୍ୟ ଜଣେ ସ୍ତ୍ରୀଲୋକ ପରି ପାହାଡ଼ ତଳୁ ପାଣି ବୋହି ଆଣୁଥିବେ, ବଜାରରୁ ସଉଦା ନିଜ ମୁଣ୍ଡରେ ଆଣୁଥିବେ, ମନରେ ଟିକିଏ ହେଲେ କଷ୍ଟ ସ୍ୱୀକାର ନ କରି । କିନ୍ତୁ ବାପା ଓ ମାଆ ଲକ୍ଷାଧିକ ଟଙ୍କା ଗଣି ଦେଇ ପାରୁଥିବେ । ଶିଲଂର ଜଣେ ପ୍ରଫେସର ମେ କି ଚେରାପୁଞ୍ଜିର ଜଣେ ବାସିନ୍ଦା, ବସ୍ତାଏ ଚାଉଳ ବୋହି ନେବାର ଦେଖି ଆମେ ତାଙ୍କୁ ପଚାରିଲୁ ସାର୍‌ ଆପଣ କାହିଁକି ବୋହି ନେଇ ଯାଉଛନ୍ତି ? ସେ କହିଲେ—ଆମେ ଏଥିପାଇଁ କିଛି ଭାବୁନାହୁଁ । ଆମ ଖାସିଆମାନଙ୍କର ପ୍ରଥା ନିଜ କାମ ନିଜେ କରିବା । ଅଥଚ ସେତେବେଳେ ସେ ୪୫୦ ଟଙ୍କା ଦରମା ପାଉଥିଲେ ।

ଖାସିଆ ଜାତି ଏକ ପ୍ରକାର ହିନ୍ଦୁ କହିଲେ ଚଳେ । କିନ୍ତୁ ସେମାନେ ଗୋରୁମାଂସ ଓ ଘୁଷୁରି ମାଂସ ଖୁବମଜା ଖାଆନ୍ତି । ପାହାଡ଼ର ନିମ୍ନରେ ଯେଉଁମାନେ ବାସ କରନ୍ତି, ସେମାନେ ନୀଚ ଜାତି ଏବଂ ପାହାଡ଼ ଉପରେ ଯେଉଁମାନେ ବାସ କରନ୍ତି ସେମାନେ ଉଚ୍ଚ ଜାତି ।

ପାହାଡ଼ର ଉଚ୍ଚତା ନୀଚତା ସଙ୍ଗେ ଖାସିଆଙ୍କର ଉଚ୍ଚତା ଓ ନୀଚତା ଜଣାପଡ଼େ । ଆମଆଡ଼େ ଜଣେ ମଲେ ୧୧ ଦିନରେ ଶୁଦ୍ଧି କ୍ରିୟା ହୁଏ । କିନ୍ତୁ ଖାସିଆମାନଙ୍କର ଯେଉଁଦିନ ଟଙ୍କା ଯୁଟିବ, ସେହିଦିନ ଶୁଦ୍ଧି କ୍ରିୟା ସମ୍ପନ୍ନ ହେବ । ମାସେ ହେଉ ଦୁଇମାସ ହେଉ । ଗୋଟିଏ ପଦାର୍ଥର ରସ ବୋଳି ଶବକୁ ଗୋଟିଏ ଅଲଗା ଘରେ ରଖି ଦେଇଥିବେ । ଲୋକ ଯେଉଁଦିନ ମଲା, ଯଦି ସେଦିନ ଟଙ୍କା ଯୁଟେ, ତେବେ ଘୁଷୁରି ଦୁଇ ତିନିଟା ମାରି ମାଂସକୁ ପୋଡ଼ିବେ । ସେହି ପୋଡ଼ା ମାଂସକୁ ଖାଇ ବାଜା ବଜାଇ, ଶବକୁ ଶ୍ମଶାନକୁ ନେଇ ଦାହ କରିବେ । ଦାହ ପରେ ଚିତା ଉପରେ ତା ଉପରେ ଗୋଟିଏ ପଥର ପୋତି ଦେଇ ଆସିବେ । ବଡ଼ଲୋକ ଯଦି ମରିଥାଏ, ତେବେ ତା ଉପରେ ଏକ ସ୍ମୃତି ସ୍ତମ୍ଭ କରିଦେବେ । ବର୍ତ୍ତମାନ ରାଜାଙ୍କ ପୂର୍ବବର୍ତ୍ତୀ ରାଜା ୩୭ବର୍ଷ ହେଲା ମଲେଣି । ଅଥଚ ତାଙ୍କ ଶବ ଏପର୍ଯ୍ୟନ୍ତ ଅଛି । ଟଙ୍କା ଯୁଟୁ ନାହିଁ ବୋଲି ସତ୍କାର ହୋଇ ପାରୁନାହିଁ । ତାକୁ ବଣର

ପନିରସ, ମହୁ ଓ ଆଉ କିଛି ଜିନିଷ ଦେଇ ଶୁଖାଇ ରଖିଛନ୍ତି । କିନ୍ତୁ ଶିବଟା ସଡ଼ି ପଚି ଯାଇନାହିଁ । ଏଇଟା ବଡ଼ ଆଶ୍ଚର୍ଯ୍ୟର ବିଷୟ । ଏମାନଙ୍କର ସ୍ତ୍ରୀ ସ୍ୱାଧୀନତା ଖୁବ୍ ବେଶୀ । ସ୍ତ୍ରୀ ଆଗରେ କୌଣସି ପୁରୁଷ ଖୁବ୍ ଜୋର୍‌ରେ କଥା କହି ପାରିବ ନାହିଁ । ଏମାନଙ୍କ ହାଟରେ ରନ୍ଧା ଭାତ, ଶୁଖୁଆ ଭଜା, ଘୁଷୁରି ଓ ବେଙ୍ଗ ମାଂସର ତରକାରି ବିକି ହୁଏ । ଭାତ ଶୁଖୁଆ ଭଜା ଏମାନଙ୍କର ପ୍ରିୟ ଖାଦ୍ୟ । ଝିଅ, ପୁଅ ଉପରେ ବାପାର କୌଣସି ଅଧିକାର ନାହିଁ । ଅଧିକାର ଥାଏ ମା'ର । ଆମର ଗୋଟିଏ ପିଲାକୁ ତା'ର ବାପା ନାମ ପଚାରିଲେ ଯେତେଶୀଘ୍ର କହି ଦିଏ, ମା ନାମ କହିବାକୁ ସେତେ ଲାଜ କରେ, କିନ୍ତୁ ଖାସିଆମାନଙ୍କର ସମ୍ପୂର୍ଣ୍ଣ ଓଲଟା । ମା' ହେଉଛି ସମ୍ପତ୍ତିର ଅଧିକାରିଣୀ । ବାପର କୌଣସି ଅଧିକାର ନାହିଁ । ମା ଅନ୍ତେ ତା'ର ସବୁଠାରୁ ସାନଝିଅ ସମ୍ପତ୍ତିର ଅଧିକାରିଣୀ ହେବ । ଅନ୍ୟ ପିଲାମାନେ କେବଳ ନାମକୁ ମାତ୍ର ସାକ୍ଷୀ ହେଉଥିବେ । ବାପା ମା ଥିବା ପର୍ଯ୍ୟନ୍ତ ସେମାନେ ଘରେ ଖାଉଥିବେ । ବାପା ମା ମରିଗଲେ ଅନ୍ୟ ପିଲାମାନେ ନିଜର ଅନ୍ନ ନିଜେ ରୋଜଗାର କରିବେ । ଏମାନଙ୍କର ଅନେକଗୁଡ଼ିଏ ଜାତି ଅଛି, ଯଥା ଝିଙ୍କତ୍ତା, ଜୟନ୍ତୀଖିଲ, ନଙ୍ଗରୁମ୍ ଉସଙ୍ଗତଲ , ଆସଙ୍ଗ୍ । କିନ୍ତୁ ସମସ୍ତେ ସମସ୍ତଙ୍କ ଘରେ ଖାଇ ପାରିବେ । କୌଣସି ଜାତିଆଣ ଭେଦଭାବ ନାହିଁ । ବିବାହର ମଧ୍ୟ ଜାତି ବର୍ଣ୍ଣ ନିର୍ବିଶେଷରେ ହେବ । ଖାସିଆମାନଙ୍କର ଦୁଇଟି ଗୋଷ୍ଠୀ ଅଛନ୍ତି—ହିନ୍ଦୁ ଓ ଖ୍ରୀଷ୍ଟିୟାନ । ଏ ଦୁଇ ଜାତିଙ୍କ ମଧ୍ୟରେ ବିଭେଦ ହେଉଛି, ହିନ୍ଦୁମାନଙ୍କର ବିଭାଘର ହେଉଥିବା ବେଳେ ଖ୍ରୀଷ୍ଟିୟାନ୍‌ଙ୍କର ଚର୍ଚ୍ଚରେ ବିଭାଘର ହୁଏ । ହିନ୍ଦୁଙ୍କର ମୃତ୍ୟୁପରେ ପୋଡ଼ା ହେଉଥିବାବେଳେ ତାଙ୍କର କବର ଦିଆଯାଏ ।

ଖାସିଆମାନଙ୍କର ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନେ ଅଧିକ ସୁନ୍ଦରୀ, ପରିଶ୍ରମୀ ଓ ବୁଦ୍ଧିମତୀ । ଏମାନଙ୍କ ପାରିବାରିକ ଜୀବନ ଖୁବ୍ ସୁଖମୟ । ଗ୍ରାମ୍ୟ ଜୀବନ ମଧ୍ୟ ଅତି ଆନନ୍ଦମୟ । ବାଦବିବାଦ ମଧ୍ୟ କରନ୍ତି ନାହିଁ । ସେମାନେ ଭଗବାନ ଅଛନ୍ତି ବୋଲି ବିଶ୍ୱାସ କଲେ ମଧ୍ୟ ଭୌତିକ ଶକ୍ତିକୁ ଖୁବ୍ ବେଶୀ ବିଶ୍ୱାସ କରନ୍ତି । କୌଣସି ପ୍ରସ୍ତର ନିର୍ମିତ ଦେବତାଙ୍କୁ ପୂଜା ନକରି ସାପ, ନଦୀ, ବୃକ୍ଷ, ଅଣ୍ଡା ଇତ୍ୟାଦିକୁ ପୂଜା କରନ୍ତି । ନିଜର ଯାତ୍ରା ସଫଳ ହେବ କି ନାହିଁ ସେମାନେ ଡିମ୍ବ ଭାଙ୍ଗି ପରୀକ୍ଷା କରନ୍ତି ।

ପାହାଡ଼ ଉପରେ ପାହାଡ଼ ଅତିକ୍ରମ କରି ୮ ମାଇଲ୍ ଯିବା ପରେ ସୁମ୍‌ମାଇ ବୋଲି ଗୋଟିଏ ଗ୍ରାମ ପଡ଼ିଲା । ସେଠାରେ ଗୋଟିଏ ଦୋକାନରେ ଦୁଇଜଣ ସ୍ତ୍ରୀଲୋକ ବସି କଦଳୀ ବିକ୍ରୀ କରୁଥିଲେ । ଆମେ ବଙ୍ଗଳା, ହିନ୍ଦୀ ଓ ଇଂରାଜୀରେ

କୌଣସି ଏକ ହାଇସ୍କୁଲର କର୍ମକର୍ତ୍ତା ଦୟା ପରବଶ ହୋଇ ତାଙ୍କୁ ମୁଣ୍ଡ ଗୁଞ୍ଜିବାର ସ୍ଥାନ ଦେଇଛନ୍ତି । ଜଣେ ସ୍ୱାଧୀନତା ସଂଗ୍ରାମୀ ହିସାବରେ ୩୦୦ ଟଙ୍କା ପେନ୍‌ସନ୍‌ ହିଁ ତାଙ୍କର ସମ୍ବଳ । ସଂସାରରେ ନିଜର ବୋଲି କେହି ନାହାନ୍ତି । ଅତି ସ୍ନେହୀ, ଅତି ବନ୍ଧୁ ବତ୍ସଳ, ଜଣେ ଦେଶ ପ୍ରେମୀ ଆଜି ସର୍ବହରା । ଜଣଙ୍କର ଆଶ୍ରୟ ନ ନେଲେ ତାଙ୍କର ଗୋଟିଏ ପାଦ ଆଗକୁ ଯିବାର ଶକ୍ତି କିମ୍ବା ସାମର୍ଥ୍ୟ ନାହିଁ । ଯାଜପୁରର ସେହି ହାଇସ୍କୁଲର ଶିକ୍ଷକ ଏବଂ ଛାତ୍ରମାନେ ଚିରଦିନ ସମସ୍ତଙ୍କର ଧନ୍ୟବାଦର ପାତ୍ର ହୋଇ ରହିବେ । ସବୁଥାଇ ଗଣେଶ୍ବର ମହାନ୍ତି ଆଜି ନିଃସ୍ୱ । ଜଗତ୍‌ସିଂହପୁରର କଣ୍ଡାବନ୍ଧଭପୁରର ଏକ ସମ୍ଭ୍ରାନ୍ତ କରଣ ପରିବାରରେ ତାଙ୍କ ଜନ୍ମ । ବାପା ଅନୁଗୁଳରେ ବ୍ୟବସାୟ କରି କିଛି ଜମିବାଡ଼ି କରିଥିଲେ । କିନ୍ତୁ ଏକ ରକ୍ଷିତା ତାଙ୍କର ସର୍ବନାଶ କଲା । ସ୍ତ୍ରୀ ତାଙ୍କୁ ପରିତ୍ୟାଗ କଲେ । ପୁତ୍ର କନ୍ୟା ଦୁଇଟିଙ୍କୁ ସଙ୍ଗରେ ଆଣି ପୁଅ ହେଲେ ଦେଶସେବୀ । ଜେଲ୍‌ ଗଲେ । ମାଡ଼ ଖାଇଲେ । ତାପରେ ସ୍ୱରାଜର ପଦଯାତ୍ରୀ । ଭଉଣୀର ଶ୍ୱଶୁରଘର ହେଲା ଗୋଟିଏ ସ୍ଥାନରେ ଏକ ବୃକ୍ଷ ସଦୃଶ । ଫଳରେ ଯାହା ହେବାର ହେଲା । ସେଠି ସେ ବେଶୀ ଦିନ ରହି ପାରିଲେ ନାହିଁ । ଅନ୍ୟଜଣକ ସାଥିରେ କୁଆଡ଼େ ଯେ ସେ ଗଲେ ତାର ସନ୍ଧାନ ମିଳିଲା ନାହିଁ । ପୁଅର ପଥକୁ ଚାତକ ପକ୍ଷୀ ପରି ଚାହିଁ ଚାହିଁ ମା ଶେଷ ନିଶ୍ୱାସ ତ୍ୟାଗ କଲେ, ଦୁଃଖ ମର୍ମ ବେଦନାରେ । ଇତିହାସର ଗୋଟିଏ ପୃଷ୍ଠା ଓଲଟିଗଲା । ଜୀବନ ରୂପକ ନାଟକରେ ସେ ଏକ ଅପୂର୍ବ ଡ୍ରପ୍‌ସିନ୍‌ ପକାଇଲା । ଆଜି ବି ଦେଖିବେ, ଗୋଟିଏ ପକ୍ୱକେଶ ଧାର୍ମିକ ପ୍ରୌଢ଼ ଜଣକ କାହା କାନ୍ଧ ଉପରେ ହାତ ଦେଇ କଟକ ଚୌଦେବେଗ୍ ଅସନ୍ତି । ବସି ବସି ନିଜ ପାଳି ଯେତେବେଳେ ପଡ଼ୁଛି ବଲ୍‌ଟି ନେଇ ଷ୍ଟେଟବ୍ୟାଙ୍କ୍‌କୁ ଯାଉଛି । ଟଙ୍କା ଉଠାଇ ପୁଣି ଆପଣା ସ୍ଥାନକୁ ଫେରି ଯାଉଛି ଏକ କ୍ଷତବିକ୍ଷତ ପକ୍ଷୀ ଭଳି । ବନ୍ଧୁ ହିସାବରେ ତାଙ୍କ ପ୍ରତି ମୋର ଯାହା କର୍ତ୍ତବ୍ୟ ମୁଁ କରିନି । ମୁଁ ଯାହା ତାଙ୍କୁ ଦେବାର କଥା ଦେଇନି । କିନ୍ତୁ ମୁଁ ତାଙ୍କଠୁଁ ପାଇଛି ଅନେକ ।

ଗଣେଶବାବୁଙ୍କ କଥା ଭାବି ମୁଁ ଆଜି ୪୫ ବର୍ଷ ତଳକୁ ଫେରି ଯାଉଛି । ଆସାମର ଡିବ୍ରୁଗଡ଼ ଜିଲ୍ଲାରେ ୧୯୩୫ ମସିହାରେ ବୁଲୁଥାଏଁ । ଡିବ୍ରୁଗଡ଼ ସହରରେ ମୋତେ ହେଲା ଭୀଷଣ ଜ୍ୱର । ଆସାମର ଜଳବାୟୁ ଆର୍ଦ୍ର । ଅବିରାମ ବର୍ଷା । ଖାଦ୍ୟପେୟର ଅସୁବିଧା ଆମ ଦେହରେ ଗଲାନି । ଗୋଟିଏ ହୋଟେଲରେ ଥିଲୁ । ଗଣେଶବାବୁ ଆହାର ଓ ନିଦ୍ରା ଭୁଲି ମୋର ସେବା କରି ସେ ରୋଗରୁ ମୋତେ ବଞ୍ଚାଇ ଦେଇ ନିଜେ ପୁଣି ପଡ଼ିଲେ । ଏକରକମ ବେହୋସ ଅବସ୍ଥା । ମୁଁ ସଦ୍ୟ ବେମାରରୁ ଉଠିଛି । ଶକ୍ତି ପାଇନି । ଶୀର୍ଣ୍ଣ ଅବସନ୍ନ ଶରୀର । ହୋଟେଲରେ

ଅନେକ ଟଙ୍କା ବାକି । ଏଇ ଅବସ୍ଥାରେ କେତେବେଳେ ଯେ ଆମର ବନ୍ଧୁ ସୀତାନାଥ ଦାସ ସଞ୍ଚିତ ଅର୍ଥ, କ୍ୟାମେରା, ସାର୍ଟିଫିକେଟ ଏବଂ ଅନ୍ୟ ଆବଶ୍ୟକୀୟ କାଗଜପତ୍ର ନେଇ ନିରୁଦ୍ଦିଷ୍ଟ ହେଲେ ଆମେ ଜାଣୁନା । ବହୁ ଦିନରୁ ତାଙ୍କ ଚରିତ୍ରର ଏ ରୂପଟା ପ୍ରଚ୍ଛନ୍ନ ଭାବରେ ପ୍ରକାଶ ପାଇଥିଲା । କିନ୍ତୁ ସେଦିନ ତାର ନଗ୍ନରୂପ ସ୍ୱାର୍ଥପରତାର ଚୂଡ଼ାନ୍ତ ନିଦର୍ଶନ ପରିସ୍ଫୁଟ ହୋଇଗଲା । ବନ୍ଧୁ ନାହିଁ । ଆତ୍ମୀୟସ୍ୱଜନ ବୋଲି କେହି ନାହାନ୍ତି । ଆସାମର ଜନାକୀର୍ଣ୍ଣ ସହର । ନିଜ ଜନ୍ମ-ଭୂମିର ବହୁଦୂରରେ, ନିଃସହାୟ ଅବସ୍ଥାରେ ପଡ଼ିଥାଉଁ । ଆଗକୁ ଯିବାର ରାସ୍ତା ନାହିଁ । ପଛକୁ ପଥରୁଦ୍ଧ । ହୋଟେଲବାଲାର ବାରମ୍ବାର ତାଗିଦା ମୋ ଟଙ୍କା ଶୁଝି ଦିଅ, ମନରେ ଆଲୋଡ଼ନ ସୃଷ୍ଟି କରୁଥାଏ । କପର୍ଦ୍ଦକ ଶୂନ୍ୟ ଅବସ୍ଥାରେ ପାଖରେ ଥିବା କାଳିଆ ଠାକୁରଙ୍କ ଛବି ନିକଟରେ ମୁଣ୍ଡ ପୋତି ଆଖିରୁ ଅଶ୍ରୁର ଧାର ଗଡ଼ାଇ ନିଜର ଦୁଃଖ ଜଣାଇଲି । ଏହି ସମୟରେ ଗଣେଶବାବୁଙ୍କର ଜ୍ୱର ବଢି ବଢି ଚାଲିଥାଏ । ମୁଁ ବି ସମ୍ପୂର୍ଣ୍ଣ ରୂପେ ସୁସ୍ଥ ହୋଇ ଭାତ ଗଣ୍ଡିଏ ଖାଇ ନ ଥାଏ । ଦୁଃଖ ନିଜ ପାଇଁ ନୁହେଁ । ବେଦନା ଗଣେଶବାବୁଙ୍କ ପାଇଁ ନୁହେଁ । ଏ ଦୂର ବିଦେଶରେ ଏପରି ଅବସ୍ଥାରେ ଛାଡ଼ି ଯିବାର ମର୍ମବ୍ୟଥା ବେଶୀ ବାଧୁଥାଏ । ସୀତାନାଥବାବୁଙ୍କ ଅମାନୁଷିକ ଆଚରଣ ବେଶୀ ପ୍ରାଣକୁ ବ୍ୟଥିତ କରୁଥାଏ । ସନ୍ଧ୍ୟାକୁ ଗଣେଶବାବୁଙ୍କର ପ୍ରଳାପ ଆରମ୍ଭ ହେଲା । ମୁଁ ପ୍ରମାଦ ଗଣିଲି । ପୁଣିଥରେ କାତର କଣ୍ଠରେ ଜଗନ୍ନାଥଙ୍କୁ ଡାକିଲି । ଯେପରି କିଏ ନିର୍ଦ୍ଦେଶ ଦେଲା—"ତୁ ମ୍ୟାନେଜରଙ୍କୁ କହ ।" ମ୍ୟାନେଜର ପଇସା ମାଗିଲେ ମଧ୍ୟ ଜଣେ ହୃଦୟବାନ୍ ତଥା ଦୟାଳୁ ବ୍ୟକ୍ତି । ତାଛଡ଼ା ଆମେ ଜଗନ୍ନାଥ ଦେଶର ଲୋକ ବୋଲି ତାଙ୍କର ଆମ ପ୍ରତି ଅତ୍ୟନ୍ତ ସ୍ନେହ ଓ ପ୍ରଗାଢ ମମତା ଥାଏ ।

ମ୍ୟାନେଜରର ଦୁଇଟି ଚରିତ୍ର ଆମ ଆଖି ଆଗରେ ଉଦ୍‌ଭାସିତ ହେଲା । ମ୍ୟାନେଜର ହିସାବରେ ପଇସା ଆଦାୟ କରିବା ଓ ମଣିଷ ହିସାବରେ ବିପନ୍ନଙ୍କୁ ସାହାଯ୍ୟ କରିବା । ତାଙ୍କ ପାଖରେ ଜଣେ ଭଦ୍ରଲୋକ ବସିଥିଲେ । ଅତି ସହାନୁଭୂତି ଦେଖାଇ ଗଣେଶ ବାବୁଙ୍କ ନିକଟକୁ ଆସିଲେ । ତାଙ୍କର ଏପରି ଦୈନ୍ୟ ଅବସ୍ଥା ଦେଖି ମନି ବ୍ୟାଗ୍‌ରୁ ଦଶଟି ଟଙ୍କା ଦେଲେ ଏବଂ କହିଲେ ଆପଣ ଡାକ୍ତର ବାନାର୍ଜୀଙ୍କ ନିକଟକୁ ଯାଆନ୍ତୁ । ସେ ଅତି ସଦାଶୟ ଭଦ୍ରଲୋକ । ରୋଗୀଙ୍କଠାରୁ ପଇସା ନିଅନ୍ତି ସତ କିନ୍ତୁ ଦୀନ ଦୁଃଖୀଙ୍କ ପ୍ରତି ଯେ ଅସୀମ ଦୟା ଓ କରୁଣାର କାର୍ପଣ୍ୟ କରନ୍ତି ନାହିଁ । ଆପଣ ଥରେ ଚେଷ୍ଟା କରନ୍ତୁ । ଜଗନ୍ନାଥଙ୍କ ନିକଟରେ ମୋର ବନ୍ଧୁଙ୍କୁ ସମର୍ପି ଦେଇ ସେହି ଭଗ୍ନ ସ୍ୱାସ୍ଥ୍ୟରେ ପ୍ରଭୁଙ୍କ ନାମ ସ୍ମରଣ କରି କରି ଚାଲିଲି ଡାକ୍ତର ବାନାର୍ଜୀଙ୍କ ନିକଟକୁ । ତାଙ୍କ ଘର ହୋଟେଲଠାରୁ ଅଳ୍ପ

ବାଟ । ତଥାପି ସେଠୁଁ ପଥ ଅତିକ୍ରମ କରିବାକୁ ମୋତେ ଅନେକ ସମୟ ଲାଗିଗଲା । ପାଦ ଘୋଷାଡ଼ି ଘୋଷାଡ଼ି ଚାଲୁଥାଏ । ଘରକୁ ଲାଗି ବରଫ ସ୍ତୂପ । ଲୋକ ଗହଳି ଦେଖି କାବା ହୋଇଗଲି । ସ୍ତ୍ରୀ, ପୁରୁଷ, ବୃଦ୍ଧ, ବୃଦ୍ଧା, ଶିଶୁ ବହୁତ ଲୋକ । ଜଣକ ପରେ ଜଣେ ଯାଉଛନ୍ତି ଆସୁଛନ୍ତି । ମୋ ପାଇଁ ବୋଧହୁଏ ଆଜି ପଡ଼ିବନି । ଅଙ୍କ ଏ ବିଷୟ ଲେଖିବାକୁ ବସି ମୋ କଲମ ଚଳୁନାହିଁ । ଧୈର୍ଯ୍ୟଚ୍ୟୁତି ଘଟୁଛି । ସବୁଲି ବୋଧହୁଏ ଗଣେଶବାବୁଙ୍କ ସ୍ମୃତି ପ୍ରକୃତ ହେବ ନାହିଁ । ଖଣ୍ଡିଏ କାଗଜରେ ଲେଖିଦେଲି—B. N Mohanty. All India Tourist on foot from Orissa, the holy land of Lord Jagannath. କାଗଜ ଖଣ୍ଡିକ ପଠାଇ ଦେଇ କୌଣସିମତେ ବେଞ୍ଚରେ ଗୋଟିଏ କୋଣରେ ବସିଲି । ଆଖି ବୁଜି ବୁଜି ଆସୁଥାଏ । ମନ ହଜି ହଜି ଯାଉଥାଏ । ବହୁ ଦିନର ତନ୍ଦ୍ରା ସେପରି ଘୋଟି ଯାଉଛି । ଦେହ ଓ ମନ ଅବଶ ।

କିଛି ସମୟ ପରେ ଜଣେ ସେପରି ଗମ୍ଭୀର କଣ୍ଠରେ କହିଲେ—ଆପଣ ଓଡ଼ିଶା ଥେକେ ଏସେଛେନ୍ । ପାଏ ହେଣ୍ଟେବେଡ଼ାଚ୍ଛେନ୍ ! ଆଖି ଖୋଲି ଦେଖିଲି ସମ୍ମୁଖରେ ଏକ ବୟସ୍କ ପୁରୁଷ ଛିଡ଼ା ହୋଇଛନ୍ତି । ମୁହଁ ସାରାକୁ ଧଳା ଝଲକ ଦେଇ ମାରୁଥାଏ । ପଞ୍ଚେତେ ବୟସ ହେଲେ ମଧ୍ୟ ସ୍ୱାସ୍ଥ୍ୟ ଅଟୁଟ ରହିଛି । ଗୋରା ତକ୍ ତକ୍ ଚେହେରା । ପ୍ରଥମ ମହାଯୁଦ୍ଧରେ ମେସୋପଟାମିଆରେ ଡାକ୍ତର ଥିଲେ । କଥାବାର୍ତ୍ତାରେ ଗାମ୍ଭୀର୍ଯ୍ୟ ଓ ଦର୍ପଣ । କିନ୍ତୁ ସେଥିରେ ବୁଢ଼ାପଣର ଛାପ ନଥିଲା । କହିଲେ—ମୁଁ ସବୁଠୁ ବେଶୀ ବୟସ ହୋଇଥିବ । କିନ୍ତୁ ଏତେ କମ୍ ବୟସରେ ଏ ଦୁଃସାହସିକ ପଦକ୍ଷେପ ନେଇଛନ୍ତି, ବାସ୍ତବିକ ଆପଣମାନେ ପ୍ରଶଂସା ଓ ଧନ୍ୟବାଦର ପାତ୍ର । କୁମୁଦକୁ ଡାକି ନେଲେ । ଆମୂଳଚୂଳ ମୋଠାରୁ ସବୁ କଥା ଶୁଣି ଚକିତ ହୋଇଗଲେ । ଦର୍ଶନ ବଚନରେ ଲାଳିତ୍ୟ ପ୍ରକାଶ ପାଇଲା, ସ୍ନେହର ଉତ୍ସ ଦେଖାଗଲା । ଧନ ଗାଡ଼ି ପଠେଇ ଗଣେଶ ବାବୁଙ୍କୁ ନେଇ ଆସିଲେ । ଆମ ଲୁଗାପଟା ମଧ୍ୟ ଆସିଲା । ହୋଟେଲର ସମସ୍ତ ବିଲ୍ ସେ ପରିଶୋଧ କଲେ ।

ସୁସ୍ଥ ହେବା ପର୍ଯ୍ୟନ୍ତ ତାଙ୍କର ଅତିଥି ହୋଇ ରହିଲୁ । ଔଷଧ, ଖାଦ୍ୟ-ପେୟ, ପଥ୍ୟ, ଆଦର ଆପ୍ୟାୟନରେ କୌଣସି ତ୍ରୁଟି ହେଲା ନାହିଁ । ଦୃଷ୍ଟି ଯେତେବେଳେ ସକ୍ଷମ ହେଲୁ ସେ କେବଳ ଯେ ଅନୁମତି ଦେଲେ ତା ନୁହେଁ, ଆମର ଭୁକ ସୁବିଧା ପାଇଁ ସେ ବିଭିନ୍ନ ସ୍ଥାନକୁ ପତ୍ର ଲେଖିଦେଲେ । ଏବଂ ପାଥେୟରେ ସଜେଇ କରିଦେଲେ ।

ଆଜି ଡାକ୍ତର ବାନାର୍ଜି ଏ ପୁରରେ କି ସେ ପୁରରେ ମୁଁ ଜାଣେନା । ଯେଉଁଠି ଥାଆନ୍ତୁ ପଛେ ତାଙ୍କ ପାଦତଳେ ଏ ଶିର ଲୋଟିଯାଉ । ତାଙ୍କ ଚରଣ ରେଣୁ ଶିରରେ ନେଇ ଦର୍‌ବଲସ୍ତ ଅଡ଼େ ଚାଲିଲୁ, ଆସାମ ଅଞ୍ଚଳ କମ୍ପାନୀର ରେଳ ଲୁପ ଯେଉଁଠି, ଲୁଡ୍‌ଠାରୁ ବର୍ମା ସୀମାନ୍ତ ପର୍ଯ୍ୟନ୍ତ ଲମ୍ବି ଯାଇଛି । ସାହେବ କମ୍ପାନୀ । ଜେନେରାଲ ମ୍ୟାନେଜର ହିଚିଙ୍ଗ୍‌ସନ୍‌ (Hitchingson) ଯେଉଁପରି ଭାବରେ ଆମକୁ ସ୍ୱାଗତ କଲେ, ତାହା ଏବେ ବି ମୋର ଅଭୁଲା ସ୍ମୃତି ହୋଇ ରହିଛି । ଡାକ୍ତର ବାନାର୍ଜି ତାଙ୍କ ପାଖକୁ ଖଣ୍ଡେ ଚିଠି ଲେଖି ଦେଇଥିଲେ । ଦୁହେଁ ଅତି ଘନିଷ୍ଠ ବନ୍ଧୁ । ଡଃ ବାନାର୍ଜି ତାଙ୍କର ଗୃହ ଚିକିତ୍ସକ । ସେ ଚିଠି ଖଣ୍ଡିକ ପଢ଼ି ଯେଉଁ ଅତିଥିଶାଳା ଶ୍ୱେତାଙ୍ଗମାନଙ୍କ ଲାଗି ସମ୍ପୂର୍ଣ୍ଣ ନିର୍ଦ୍ଦିଷ୍ଟ, କୃଷ୍ଣାଙ୍ଗମାନଙ୍କ ପାଦ ପଡ଼ିଲେ ଯାହା ସମ୍ପୂର୍ଣ୍ଣ ଅପବିତ୍ର ହେବ, ନିଜ ଉପରେ ସମସ୍ତ ଦାୟିତ୍ୱ ନେଇ ସେ ଆମପାଇଁ ଗୋଟିଏ ଶ୍ରେଷ୍ଠ ଘର ଖୋଲିବାକୁ Guest house caretakerଙ୍କୁ କହିଲେ । ରହୁ ରହୁ ରହିଲୁ ୧୫ ଦିନ । ସେଠାକାର ମୁଖ୍ୟ ଖାନ୍‌ସାମା ଆମ କଟକ ଜିଲ୍ଲାର ପଦ୍ମପୁରରେ ଘର । ଆମେ ଓଡ଼ିଶାରୁ ଆସିଛୁ ଜାଣି କୁକୁଡ଼ା ଝୁରୁଆ, କଟ୍‌ଲେଟ୍‌, ପାଉଁରୁଟି, ଜ୍ୟାମ୍‌, ଜେଲି, ବଟର ଆଦି ଭକ୍ଷଣ କରି ଆନନ୍ଦରେ ଖୁଆଇଲେ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ସ୍ୱାସ୍ଥ୍ୟର ପୁନରୁଦ୍ଧାର ଲାଗି ସେ ରମ୍ ସହିତ ପାଣି ମିଶାଇ ପିଇବାକୁ ଦିଅନ୍ତି ।

ସ୍ୱାସ୍ଥ୍ୟ ଧୀରେ ଧୀରେ ଉନ୍ନତ ହେବାକୁ ଲାଗିଲା । ହିଚିଙ୍ଗ୍‌ସନ୍‌ ସୁନ୍ଦର ହିନ୍ଦୀ କହନ୍ତି । ତାଙ୍କ ଇଂରାଜୀ ଆମେ ଭଲ ବୁଝିପାରୁ ନାହିଁ ଜାଣି ସେ ହିନ୍ଦୀରେ ହିଁ କହନ୍ତି । ମୁଁ କହିଲି ମିଃ ହିଚିଙ୍ଗ୍‌ସନ୍‌ ! ଆପଣ ପିତା ଭଳି ଏଠାରେ ଆମକୁ ଯେପରି ସ୍ନେହ, ଶ୍ରଦ୍ଧା ଓ ମମତା ଦେଖାଇଲେ ତା'ର ପଟାନ୍ତର ନାହିଁ । ଆପଣମାନେ ଶାସକ । ଆମେ ଶାସିତ ଶ୍ୱେତାଙ୍ଗମାନଙ୍କ ଲାଗି ନିର୍ଦ୍ଦିଷ୍ଟ ଥିବା ଅତିଥି ଭବନରେ ଅନ୍ୟମାନଙ୍କ ନାସିକା କୁଞ୍ଚନକୁ ଭ୍ରୂକ୍ଷେପ ନ କରି ଆମକୁ ଆଶ୍ରୟ ଦେଇ ଯେଉଁ ମହାନୁଭବତାର ପରିଚୟ ଦେଲେ ତା ଲାଗି କୃତଜ୍ଞତା ଜଣାଇବାକୁ ବା ଧନ୍ୟବାଦ ଦେବାକୁ ଆମ ନିକଟରେ ଭାଷା ନାହିଁ । ଆପଣ କେବଳ ଭକ୍ତିପୂର୍ଣ୍ଣ ପ୍ରଣାମ ଆମଠାରୁ ଗ୍ରହଣ କରନ୍ତୁ ।

ଜଣେ ବନ୍ଧୁଙ୍କ ବିଶ୍ୱାସଘାତକତା ଯୋଗେ ଆମେ ସବୁ ହରାଇ ବସିଛୁ । କ୍ୟାମେରା ଥିଲେ ଆପଣଙ୍କ ଛବିଟିଏ ନେଇ ଅତି ଯତ୍ନରେ ସାଇତି ରଖିଥାନ୍ତୁ ।

ଯେଉଁଠିକୁ ଯାଇଛୁ କେବଳ ଗୋରା ଜିଲ୍ଲା ମାଜିଷ୍ଟ୍ରେଟ୍‌ ପୁଲିସ୍‌ ସାହେବ । କିନ୍ତୁ ଆପଣଙ୍କ ପରି ମାନବିକତା କାହାରିଠାରେ ଦେଖିନୁ । ଆପଣ ଏବଂ ମୈମନ

ସିଂହଭୂମ କମିଶନର ମିଃ 'ବ୍ରେଭର' ମନୁଷ୍ୟ ନୁହନ୍ତି ଅତି-ମନୁଷ୍ୟ । ଏହା ବିଶ୍ୱାସରେ ଏତିକି କହି ମୁଁ ଅଳ୍ପ ପଡ଼ିଲି । ଆଉ ଉତ୍ତରକୁ କଥା ବାହାରିଲା ନାହିଁ । ମୁଣ୍ଡରେ ଅତି ସ୍ନେହରେ ହାତ ବୁଲାଇ ହଚିଂସନ୍ କହିଲେ—My boy ! Don't be sentimental, ସ୍ୱଭାବସୁଲଭଭାବରେ ହସିଯାଆନ୍ତି । ତୁମେ ବାଇବେଲ ପଢ଼ିଛ ? ପଢ଼ିଥିଲେ ଜାଣିଥା'ନ୍ତ ପ୍ରଭୁ ଯୀଶୁ କପରି ସ୍ନେହ, ପ୍ରୀତି, ମମତା ଓ ଆଦରରେ ହାତ ବଢ଼ାଇଛନ୍ତି । କେହି ଗୋଟିଏ ଗାଲରେ ଚାପୁଡ଼ାଏ ମାରିଲେ ସେ ଅନ୍ୟ ଗାଲ ଦେଖାଇ ଦେବା ଲାଗି ନିର୍ଦ୍ଦେଶ ଦେଇଛନ୍ତି । ତା ନ ହୋଇଥିଲେ ଆଜି ଯେଉଁମାନେ ତାଙ୍କୁ କ୍ରୁଶବିଦ୍ଧ କଲେ, ସେମାନଙ୍କ ଲାଗି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ "ହେ ପ୍ରଭୁ ତୁମେ ତାଙ୍କୁ କ୍ଷମା ଦିଅ । କାରଣ ସେମାନେ କ'ଣ କରୁଛନ୍ତି ଜାଣନ୍ତିନି ।"

ଯେଉଁ ଉଦ୍ଦେଶ୍ୟ ନେଇ ଯାତ୍ରା ଆରମ୍ଭ କରିଛ, ତା ସଫଳ ହେଉ ଏତିକି ମୋର ଆଶୀର୍ବାଦ । ଖ୍ରୀଷ୍ଟଙ୍କ ପରି ଚିରକୁମାର ହଚିଂସନ୍‌ଙ୍କ ପାଖରେ ମଥା ନଇଁ ଗଲା । ଅର୍ଥ ଦେଲେ । କ୍ୟାମେରା ଦେଲେ । ଯୋତା, ମୋଜା, ପ୍ୟାଣ୍ଟ, ସାର୍ଟ ସବୁର ବ୍ୟବସ୍ଥା କଲେ । ଆଜି ବି ତାଙ୍କ ନାମ ସ୍ମରଣ କଲେ ମନ ଆନନ୍ଦ, ପବିତ୍ରତା ଏବଂ କୃତଜ୍ଞତାରେ ପୂର୍ଣ୍ଣ ହୁଏ । 'ହେ ହଚିଂସନ୍ ତୁମେ ଯେଉଁଠି ଥାଅ ଆମର କୃତଜ୍ଞତା ଏବଂ ସଭକ୍ତି ପ୍ରଣତି ଗ୍ରହଣ କର ।'

ପଶ୍ଚିମବଙ୍ଗ ଜିଲ୍ଲା ଜଳପାଇଗୁଡ଼ିର ଡୁଆରସ ନାମ ଅନେକ ପାଠକ ଜାଣିଥିବେ । କି ସନ୍ତସନ୍ତିଆ, କର୍ଦ୍ଦମାକ୍ତ, ଜୋକ, ମଶା ଏବଂ ମଣିଷଖିଆ ବାଘର ସ୍ଥାନ ସେ । ସନ୍ଧ୍ୟା ହୋଇ ଆସିଲାଣି । ବାଟଭୁଲି ଗୋଟିଏ ମୁସଲମାନ ଗ୍ରାମରେ ପହଞ୍ଚିଲୁ । ହିନ୍ଦୁ ଜାଣି କେହି ଟିକିଏ ଦୟା, ମାୟା ପ୍ରକାଶ କରି ସେଠାରେ ସ୍ଥାନ ଦେଲେ ନାହିଁ । ବର୍ଷା ଆରମ୍ଭ ହୋଇଗଲାଣି । ଥରେ ବର୍ଷା ଆରମ୍ଭ ହୋଇଗଲେ ନା ଅଛି ବନ୍ଦ ହେବାର ଏ ଅଞ୍ଚଳରେ । ମଝିରେ ଗାଁ ନାହିଁ । ମଝିରେ ଗୁଡ-ଗୁଡକିଆ ବଣ ଲମ୍ବି ଯାଇଛି ଜଙ୍ଗଲ ପାଟକୁ । ପିଠିରେ ବୋଝ, ମୁଣ୍ଡରେ ଟୋପି, ଗୋଡ଼ରେ ଜୋତା, ପାଣିରେ ଫୁଲି ଗଲେଣି । ଏତେ କାଦୁଅ ରାସ୍ତା ଯେ ଗୋଡ ପଶି ଯାଉଥାଏ ଭିତରକୁ ଭିତରକୁ । ଆଗରେ ଫରେଷ୍ଟ ଅଫିସ । ସେହି ବର୍ଷା ଅନ୍ଧାରରେ ଆଗକୁ ବଢି ଚାଲିଥାଉଁ । ହଠାତ୍ ଏକ ଉତ୍କଟ ଗନ୍ଧ ଆସିଥିଲା । ବାଟରେ କୌଣସି ଜନ୍ତୁର ଶବ ପଡ଼ିଥିବ ଭାବି ତା ପ୍ରତି ଦୃଷ୍ଟି ନ ଦେଇ ଚାଲିଥାଉ । କିନ୍ତୁ ସେ ଗନ୍ଧ ଉତ୍କଟରୁ ଉତ୍କଟତର ହେଲା । ଯେପରି ଆମ ସହିତ ସମାନ୍ତରାଳରେ ତାଳ ଦେଇ ପବନ ସହିତ ଆସି ଚାଲିଛି । ବଲୁଆ, ବଣ କୁକୁଡ଼ା, ଝିଙ୍କାରିଙ୍କ ଡାକ

ଶୁଭିଲା । ଗଣେଶବାବୁ କହିଲେ—"ବୈକୁଣ୍ଠ ବାବୁ । ଚିତା ବାଘ ଆମ ପଛରେ ଲାଗିଛି । ତାର ଦୃଷ୍ଟି କାହା ଉପରେ କୁଦ ପଡ଼ିବ କେଜାଣି ଈଶ୍ୱର ଜାଣନ୍ତି । ଟର୍ଚ୍ଚଟା ଡାହାଣ ହାତେ ଧର ।" ଚିତାବାଘର ନାମ ଶୁଣି ସେହି ଘୋର ବର୍ଷାରେ ମଧ୍ୟ ମୋ ଦେହରୁ ଧାର ଧାର ହୋଇ ଝାଳ ବୋହି ଚାଲିଲା । ଗତି ଶିଥିଳ ହେଲା । ଭୟରୁ କଥା ବାହାରିଲା ନାହିଁ । ଡୁଆର୍ସ୍ ଅଞ୍ଚଳରେ ଚିତାବାଘଗୁଡ଼ାକ ଅତି କ୍ରୂର, ଅତି ନିଷ୍ଠୁର । ଏକଥା ଆମେ ଆଗରୁ ଜାଣିଥିଲୁ ।

କିନ୍ତୁ ଆମେ ଯେ ସେ ଯମଦୂତର ମୁକାବିଲା ନିଜେ କରିବୁ, ଏହା ସ୍ୱପ୍ନର ଅଗୋଚର ଥିଲା । ମୃତ୍ୟୁ ଲାଗି ପ୍ରସ୍ତୁତ ହେଲୁ । ଅସ୍ତୀସ୍ୱଜନ, ପରିବାରର ମାୟା ମମତା ମନେ ପଡ଼ି ପ୍ରାଣକୁ ବିକଳ କରି ପକାଇଲା । ଏତେ ଦୂର ସ୍ଥାନରେ କେହି ଆମର ମୃତ୍ୟୁ ସମ୍ବାଦ ଜାଣିବେନି । ଆମେ କିଏ ? ଆମର ପରିଚୟ କ'ଣ ? ଲୋକଙ୍କ ନିକଟରେ ତାହା ସମ୍ପୂର୍ଣ୍ଣ ଅଜ୍ଞାତ ରହିଯିବ । ଗଣେଶବାବୁଙ୍କର ଜଙ୍ଗଲ ବିଷୟରେ ଅଭିଜ୍ଞତା ଅଛି । ମୋର ଏପରି ଦୟନୀୟ ଅବସ୍ଥା ଦେଖି ସେ ଆଶ୍ୱାସନା ଦେଲେ । ଦମ୍ଭ ବାନ୍ଧିବା ଲାଗି ପରାମର୍ଶ ଦେଲେ । ଆହୁ ଗତିର ବେଗ ଶିଥିଳ ନ କରି ଶୀଘ୍ର ଚାଲୁ । ଯେତେ ଜୋର ଅଛି ସମସ୍ତ ପ୍ରୟୋଗ କରି ଆଗେଇଲୁ ।

ଅନ୍ଧକାରରେ ଆଲୋକର ରେଖା ମନରେ ଆଶାର ସଞ୍ଚାର କଲା । ଫରେଷ୍ଟ ଅଫିସ କ୍ରମେ ନିକଟ ହୋଇ ଆସିଲା । ଗଣେଶବାବୁ ମୋତେ ଆଢୁଆଳ କରି ଚିତାବାଘର ଆକ୍ରମଣକୁ ପ୍ରତିହତ କରିବାର ଚେଷ୍ଟା କରୁଥାନ୍ତି । ପାଖରେ ଅତି ତୀକ୍ଷ୍ଣଧାରର ଭୁଜାଲି ଥାଏ । ତାକୁ ଖୋଲି ଧରିଥାନ୍ତି । ଫୋର୍ ସେଲ୍ ବ୍ୟାଟେରୀର ଲମ୍ବା ଟର୍ଚ୍ଚର ଆଲୁଅ ବରାବର ଚିତାବାଘର ମୁହଁରେ ପଡ଼ୁଥାଏ । ସେ ଆମ ପଛରେ ଲୁଚକାଲି ଖେଳୁଥାଏ । ଫରେଷ୍ଟ ଅଫିସ୍ ଗେଟ୍ ପାଖରେ ଆମେ ଜୋର୍‌ରେ ଚିତ୍କାର କଲୁ । ବନ୍ଧୁକ ନେଇ ବାହାରି ଆସିଲେ ଫରେଷ୍ଟ ଅଫିସର୍ ସୌମେନ୍ ଚକ୍ରବର୍ତ୍ତୀ, ଆମର ଶାଣକର୍ତ୍ତା ।

ଚିତାବାଘ ଆମର ଅସାବଧାନତାର ସୁଯୋଗ ନେଇ ଯେମିତି ଲମ୍ଫ ଦେଇଛି, ସେମିତି ସିଦ୍ଧହସ୍ତ ଶିକାରୀ ଚକ୍ରବର୍ତ୍ତୀ ବାବୁଙ୍କ ଗୁଳି ତାର ବକ୍ଷ ଭେଦ କଲା । ୭।୮ ହାତ ଦୂରରେ ଗର୍ଜ୍ଜନ କରି ଚିତାବାଘ ଛଟିକି ପଡ଼ିଲା । ମୁଁ ସେଇଠି ଅଚେତ ହୋଇ ପଡ଼ିଲି । ଯେତେବେଳେ ଚେତା ଆସିଲା ଦେଖିଲି ମୁଁ ଫରେଷ୍ଟ ଅଫିସ୍‌ର ଅତିଥି ଭବନରେ ଶୋଇଛି ।

ମୋ ନିକଟରେ ଜଣେ କରୁଣାମୟୀ ନାରୀ ବସି ମୁଣ୍ଡରେ ହାତ ବୁଲାଉଛନ୍ତି । ନିଜର ସ୍ଥିତି ବୁଝିବାକୁ ଟିକିଏ ସମୟ ଲାଗିଲା । ଗଣେଶବାବୁ ଅକ୍ଷତ

ଶରୀରରେ ଅଛନ୍ତି ଜାଣି ଆଶ୍ୱସ୍ତ ହେଲି । କି ବିପତ୍ତି ଆମ ଉପରେ ଘଟିଯାଇଛି ଧୀରେ ଧୀରେ ଚକ୍ଷୁ ସମ୍ମୁଖରେ ଭାସି ଉଠିଲା ।

''କେମନ୍ ଆଛୋ ବାବା ? ଏକଟୁ ଭାଲ ଲାଗଛେ ?

ଏ ଦୁଇ ପଦ ବାକ୍ୟ ଏ ହୃଦୟକୁ ଚହଲାଇ ଦେଲା । ସୁଦୂର ଜଳପାଇ ଗୁଡ଼ିରେ ଏକ ନିର୍ଜନ ସ୍ଥାନରେ ଯେଉଁ ମହିୟସୀ ମହିଳା ଏତେ ସ୍ନେହ, ଏତେ ମମତା ଦେଇ 'ବାବା' ବୋଲି ସମ୍ବୋଧନ କଲେ, ମୋର ହୃତଚେତନାକୁ ଫେରାଇ ଆଣିଲେ, କି ଭାଷାରେ ମୁଁ ତାଙ୍କୁ ସମ୍ବୋଧନ କରିବି ? କ'ଣ ଦେଇ ତାଙ୍କ ଋଣ ପରିଶୋଧ କରିବି ? ଆଖିର ଅଶ୍ରୁରେ ମୁଁ ତାଙ୍କର ଦୁଇ ହାତକୁ ଧରି କହିଲି 'ମା' ଆତ୍ମୀୟସ୍ୱଜନ ଆପନ୍‌ଜନ୍ ! ଆମାଦେରେ ଏଖାନେ ନେଇଁ, ଆପନି ନିଜେର ସ୍ନେହ, ଶ୍ରଦ୍ଧା ଏବଂ ମମତା ଦିଏ ଆମର ଯା କର୍‌ଲେନ୍ ତାର ପର୍ଯ୍ୟନ୍ତର ନେଇଁ । ଆମି ଏକଜନ୍ ଭ୍ରମଣକାରୀ । ଆମାର କାଛେ ଏମନ୍ କିଛୁ ନେଇଁ ଯା ଦିଏ ଆମି ଏ ଅମୂଲ୍ୟ ଋଣେର ଶୋଧ ଦିବ ।''

ଚକ୍ରବର୍ତ୍ତୀ ବାବୁଙ୍କର ମା' ସ୍ନେହମୟୀ, କଲ୍ୟାଣମୟୀ, ସନ୍ତାନମୟୀ ଏବଂ ମମତାମୟୀରୂପୀ ଏକ ହିନ୍ଦୁ ନାରୀ । ଯାହାଙ୍କର ଆଦର୍ଶ ଅପରକୁ ସେବା କରିବା, ଆଦର ଯତ୍ନରେ ଅନ୍ୟର ପ୍ରାଣ ଭରିଦେବା, ନିରାଶ୍ରୟକୁ ପରମ ମମତାରେ ଆଶ୍ରୟ ଦେବା । ଗୃହେଟି ଦିନ ରହିଲୁ । ସମସ୍ତ ପରିବାରଟି ଯେମିତି ଆମକୁ ଆତିଥ୍ୟ ଦେବା ଲାଗି ଅନେକ ଦିନୁ ଅପେକ୍ଷା କରିଥିଲେ । ଦେହ ଓ ମନରେ ସତେଜ ଓ ସୁସ୍ଥ ହୋଇ ଚକ୍ରବର୍ତ୍ତୀବାବୁ ଏବଂ ତାଙ୍କର ସ୍ତ୍ରୀଙ୍କୁ ଗଭୀର କୃତଜ୍ଞତା ଜଣାଇ, ପିଲାମାନଙ୍କୁ ଶୁଭାଶିଷ ଦେଇ ତାଙ୍କ ପୂଜନୀୟା ଜନନୀଙ୍କ ଚରଣ ରେଣୁକୁ ପାଥେୟ କରି ପୁଣି ନିଜ ବାଟ ଧରିଲୁ । ସେଦିନ ଚକ୍ରବର୍ତ୍ତୀବାବୁ ଥିଲେ ଜଗନ୍ନାଥଙ୍କ ପ୍ରେରିତ ଏକ ଦେବଦୂତ, ଜୀବନଦାତା । ଆଜି ଏ ବିଷୟ ଲେଖି ଯେ ମୋର ଲେଖନୀକୁ ସାର୍ଥକ କରୁଛି, ତା ନୁହେଁ, ସେହି ଅତିଥିବତ୍ସଳ ପରିବାରକୁ ସ୍ମରଣ କରି ମୋର ଚିତ୍ତ ଆନନ୍ଦରେ ପ୍ଲାବିତ ହୋଇ ଉଠୁଛି । ଏଠି ମୁଁ ଆଉ ଜଣକ କଥା ଉଲ୍ଲେଖ କରିବି ।

ଆମର ଅତି ପ୍ରିୟ, ଅତି ଆପଣାର ବନ୍ଧୁ ସୁବ୍ରତ ସେନ୍ । ମୁର୍ଶିଦାବାଦରେ ଜନ୍ମ ସ୍ଥାନ । ଲାଳିତ ପାଳିତ ହେଲେ ନବଦ୍ୱୀପରେ । ପଢ଼ିଲେ କଲିକତାରେ, ଉଦ୍ଭିଦ ବିଜ୍ଞାନରେ 1st class 1st. କର୍ମ ସ୍ଥାନ ବାଛି ନେଲେ ବିହାରର ଏକ ଏପରି ସ୍ଥାନରେ ଯେଉଁଠି ଆତ୍ମୀୟ ସ୍ୱଜନ କିମ୍ବା ବନ୍ଧୁ ବାନ୍ଧବଙ୍କ ପାଦ ପଡ଼ିବା

ଦୁଷ୍କର । ସବୁ ଆଉ କେହି ନାହିଁ । ନିଜର ନୀଡ଼କୁ ପକ୍ଷୀମାନେ ସେତେବେଳେ ଗୋଟି ଗୋଟି କରି ଫେରିବାକୁ ଲାଗିଲେଣି । ଆକାଶଟା ଦିଗନ୍ତର ସେ ପାଖରେ ଯେପରି ଧନୁରେଖା ଭଳି ନଇଁ ଆସୁଛି । ଅଳ୍ପ ସମୟ ହେଲା ସୂର୍ଯ୍ୟ ସେଠି ଅସ୍ତ ଯାଇଛନ୍ତି । ରୌଦ୍ର ନାହିଁ । ତେବେ ଅଷ୍ଟଧାତୁରେ ଗଢ଼ା ଦିନାନ୍ତର ବିଲମ୍ବିତ ରଙ୍ଗ ଟିକକ ଯେମିତି ପଶ୍ଚିମ ଆକାଶରେ ଭାସମାନ ମେଘରେ ଖେଳେଇ ହୋଇ ଯାଇଛି । ପାହାଡ଼ ଶ୍ରେଣୀ ଲମ୍ବି ଯାଇଛି ହିମାଳୟର ପାଦ ଦେଶଯାଏ । ଗୋଟିଏ ଦିଗରେ ଶାଳ, ପିଆଶାଳ, ମହୁଲର ବଣ, ଅନ୍ୟ ଦିଗରେ ଯୋଜନ ଯୋଜନ ବ୍ୟାପୀ ବନ୍ଧ୍ୟା ପ୍ରାନ୍ତର ଆଉ ମଇଁଷି ପିଠି ଭଳି ଧୂସର ରଙ୍ଗର ବଡ଼ ବଡ଼ ପ୍ରସ୍ତରର ସମାବେଶ ।

ବିହାରର ଝୁମ୍ରିତିଆ ନାମଟି ହୁଏତ ଭାରତର ମାନଚିତ୍ରରେ ନ ଥିବ, କିନ୍ତୁ ଆମ ସ୍ମୃତିର ମାନଚିତ୍ରରେ ତାହା ସ୍ୱର୍ଣ୍ଣ ତୂଳିରେ ଅଙ୍କା ହୋଇ ରହିଛି । ଇଷ୍ଟ୍ ବେଙ୍ଗଲ୍ କମ୍ପାନୀର ଗ୍ରେଟ ଷ୍ଟେସନ୍‌ଟିଏ ଝୁମ୍ରିତିଆ । ଦିନ ଭିତରେ ଏ ବାଟ ଦେଇ ଦୁଇଟି ପ୍ୟାସେଞ୍ଜର ଟ୍ରେନ୍ ଯାଏ । ଅପ୍‌ଗାଡ଼ି ସକାଳ ଘ ୭.୩୦ ମି.ରେ ଡାଉନ୍ ଗାଡ଼ି ଦିନ ୪ଟାରେ । ଶିଲିଗୁଡ଼ି ଓ ପାଟନାର ଅନ୍ୟ ଗାଡ଼ିଗୁଡ଼ିକ ଝୁମ୍ରିତିଆର ଦିଗନ୍ତ କମ୍ପାଇ ତା'ର ବୁକୁ ଉପରେ ଚାଲିଯା'ନ୍ତି ସତ, କିନ୍ତୁ ଟିକିଏ ଛିଡ଼ା ହୋଇ ସେ ମର୍ଯ୍ୟାଦା ଦେବେ, ଏପରି ଇଚ୍ଛା ବା ଉଦାରତା ସେମାନଙ୍କର ନ ଥିଲା । ଷ୍ଟେସନ୍‌ଟିକୁ ଲାଗିଥିବା ଗ୍ରେଟ ବଜାରଟି । ଗୋଟିଏ ତେଜରାତି ଦୋକାନ, ଦୁଇ ଷ୍ଟେଟି ଜଳଖିଆ ଦୋକାନ, ଗୋଟିଏ ହୋଟେଲ ଓ ଗୋଟିଏ ମନୋହାରୀ ଦୋକାନକୁ ନେଇ ଗଠିତ । ଅଳ୍ପ ଦୂରରେ ଫରେଷ୍ଟ ଅଫିସ । ଏବେ ନୂଆ ହୋଇ ଜଙ୍ଗଲ ଜାତ ଦ୍ରବ୍ୟର ଉପଯୋଗ ଲାଗି ଜଣେ ସାହେବ କମ୍ପାନୀ ତରଫରୁ ଗୋଟିଏ ଔଷଧ ପ୍ଲାଣ୍ଟ ତିଆରି ହୋଇଛି । ଅଫିସ୍‌ର କ୍ୱାର୍ଟର ନିର୍ମାଣ ସରିଲାଣି । ତେଣୁ ଦୋକାନ ବଜାର ବଢ଼ି ଚାଲିଛି ।

ଶ୍ରାନ୍ତ, କ୍ଳାନ୍ତ ହୋଇ କେଉଁଠି ରାତିଟି କଟାଇବୁ ଭାବି ବଜାର ତମାମ ବୁଲିଗଲୁ । ଟିକିଏ ହେଲେ ସ୍ଥାନ ମିଳିଲା ନାହିଁ । ହୋଟେଲ୍ ମାଲିକ ଜାଗା ନ ଦେବା ପାଇଁ ପରିଷ୍କାର ମନା କରିଦେଲା । ଅଜଣା, ଅଶୁଣା ଏ ଅନ୍ଧକାର ରାତିରେ କେଉଁଠି ବା ଏ ଘୋର ରାତିରେ ବିଶ୍ରାମ ନେବୁ ? ଗଛ ମୂଳେ ରହିବା ନିରାପଦ ନୁହେଁ । ପାଖରେ ଗୋଟିଏ ନିମ୍ନ ପ୍ରାଥମିକ ସ୍କୁଲ୍ ଥିଲା । ସେଠି ଶିକ୍ଷକ ରୁହନ୍ତି । ସେ ମଧ୍ୟ ସ୍କୁଲ ବାରଣ୍ଡାରେ ସ୍ଥାନ ଦେଲେ ନାହିଁ । ଅଧିକନ୍ତୁ ଧମକାଇଲେ ଯଦି ତୁମେ ଜିଦ୍ କର ତେବେ ତୁମକୁ ଚଉକିଆ ଜମାଦେବ ।

ହତାଶା ଓ ନିରାଶାରେ ମନ ଭାଙ୍ଗି ପଡ଼ିଲାଣି । ରାସ୍ତା ଉପରେ ଛିଡ଼ା ହୋଇଛୁ 'ନ ଯଯୌ ନ ତସ୍ଥୌ,' ଏତିକିବେଳେ ଜଣେ ଭଦ୍ରଲୋକ ଟର୍ଚ୍ଚ ମାରି ମାରି ଆମ ଆଡ଼େ ଆସିଲେ । ଆମ ବ୍ୟାଗ୍ ଦେଖି ଥମି ଠିଆ ହୋଇଗଲେ ଏବଂ ଏଆଡ଼େ ଯେ ଭ୍ରମଣକାରୀ ଆସିପାରନ୍ତି, ଭାବି ଅତି ଆଶ୍ଚର୍ଯ୍ୟ ହେଲେ । ଇଂରାଜୀରେ ଆମର ପରିଚୟ ପଚାରିଲେ । ଆମେ ପାଦରେ ଭାରତ ଭ୍ରମଣ କରୁଛୁ ଏ ପରିଚୟ ପାଇଁ ସେ ଏତେ ଖୁସି ହେଲେ ଯେ କାହାକୁ କିଛି ନ କହି ନିଜ କ୍ୱାର୍ଟରକୁ ନେଇଗଲେ । ଚାକର ଆଣି ପାଣି ଦେଲା । ମୁହଁ ହାତ ଧୋଇଲୁ । ଅଳ୍ପ ସମୟ ମଧ୍ୟରେ ଗରମ ଲୁଚି, ଆଳୁଭଜା ଏବଂ ପାମ୍ପଡ଼ ଅତି ଉପାଦେୟ ଖାଦ୍ୟ ମିଳିଲା । ସେତେବେଳେ ଡାଲ୍ଡା ଘିଅ ନ ଥିଲା । ବିଶୁଦ୍ଧ ମଇଁଷି ଘିଅ ମିଳୁଥିଲା । ପରେ ଭଦ୍ରଲୋକ ଅବଶ୍ୟ ଆମ ପାଇଁ ରାନ୍ଧିଥିଲେ । କିନ୍ତୁ ଅତି ବିନୟ ସହକାରେ ମନା କରିଦେଲୁ ।

ରେଲ୍ ପଟରୀ ଉପରେ ଡେଇଁ ଡେଇଁ ଏତେ ଥକି ପଡ଼ିଥିଲୁ ଯେ ଆଖିରେ ନିଦ୍ରା ଦେବୀ ସଙ୍ଗେ ସଙ୍ଗେ ବିରାଜମାନେ ହେଲେ । ଉଠିଲୁ ତହିଁ ଆର ଦିନ ୯ଟାରେ (9 A. M.) । ତା ପୁଣି ସୁବ୍ରତ ବାବୁଙ୍କ ଡାକରେ । ରାତିରେ ଲଣ୍ଠନ ଆଲୁଅରେ ତାଙ୍କୁ ଭଲଭାବେ ଦେଖି ନ ଥିଲୁ । ଦିବାଲୋକରେ ଦେଖିବାର ସୁଯୋଗ ଜୁଟିଲା । ବୟସ ୩୦ ବର୍ଷରୁ ଅଧିକ । ମାତ୍ର ୪୦ ବର୍ଷରୁ ଅନେକ କମ୍ । ବଚନ ଭଙ୍ଗୀରେ ମନ କିଣି ନେବାର ପଟୁତା । କହିଲେ, "ଟିକିଏ କମ୍ପାନୀ କାର୍ଯ୍ୟରେ ମୁଁ ବାହାରକୁ ଯାଉଛି । ଦିନ ୧୨ଟାରେ ଫେରିବି । ଏକାଠି ମିଶି ଖାଇବା । ବୁଟା ସିଂ ରହିଲା । ସେ ଆପଣଙ୍କ ଲାଗି ସମସ୍ତ ବ୍ୟବସ୍ଥା କରିଦେବ । ୪ଟାରେ ଶିକାର କରିଯିବା । ରାତିରେ ଖାଇ ପିଇ କଥା ହେବା । ଆପଣ ମୋ ଜୀବନ କାହାଣୀ ଶୁଣିବେ । ମୁଁ ଆପଣଙ୍କ ଭ୍ରମଣ କାହାଣୀ ଶୁଣିବି ।" ଚାଲିଗଲେ ସୁବ୍ରତ ସେନ୍ । ପୂର୍ଣ୍ଣନାମ ସୁବ୍ରତ କୁମାର ସେନ୍‌ଗୁପ୍ତ ଉଦ୍ଭିଦ ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ । ଯେପରି ଅନ୍ତରରେ ଏକ ଆଗ୍ନେୟଗିରି ବହନ କରି ବୁଲୁଛନ୍ତି । ନିର୍ଲୋଭ, ନିର୍ଲିପ୍ତ ତୃପ୍ତ । କେତେବେଳେ ସେ ଆଗ୍ନେୟ ଗିରିରୁ ଲାଭା ଉଦ୍‌ଗୀରଣ ହେବ, ତାହା କେହି କହିପାରିବେ ନାହିଁ । କିଛି ଅସୁବିଧା ହେଲା ନାହିଁ ।

ବୁଟା ସିଂହର ସମସ୍ତ ସୁବ୍ୟବସ୍ଥା ଆମକୁ ଆନନ୍ଦିତ କଲା । ଜଳ ଯୋଗର ପ୍ରଚୁର ଆୟୋଜନ । ଠିକ୍ ୧୨ଟାରେ ପହଞ୍ଚିଲେ ସୁବ୍ରତ ବାବୁ । ମିଳିମିଶି ଖାଉ ଖାଉ ଦିନ ୨ଟା ବାଜିଗଲା । ଘରୋଇ ପରିବେଶ । ଦୁଇ ଘଣ୍ଟା ବିଶ୍ରାମ ନେଇ ଶିକାର କରି ବାହାରିଲୁ । ବସ୍ତିର ବନ କୁକୁଟ ଏଠି ମିଳନ୍ତି । ସୁବ୍ରତ ବାବୁ ଜଣେ

ସୁଦକ୍ଷ ଶିକାରୀ । ବେଶୀ ଦୂରକୁ ଯିବାକୁ ହେଲାନି । ଅଳ୍ପ ସମୟ ମଧ୍ୟରେ ୪ଟା କୁକୁଡ଼ା ମାରି ଫେରିଲୁ ବଜାର୍ଯ୍ୟ ଗଙ୍ଗରେ । ମୋଗ୍‌ଲାଇ ପରଟା, ମାଂସ ଦହି ଓ ଟମାଟୋ ପିଆଜର ସାଲାଡ଼ ଅତି ସୁସ୍ୱାଦୁ । ଅତି ଉପାଦେୟ । ରନ୍ଧଣାରେ ସିଦ୍ଧହସ୍ତ ବୁଟା ସିଂହ । ଅଳ୍ପ ସମୟ ମଧ୍ୟରେ ସବୁ କରିଦେଲା । ଖାଇ ବାହାର ଲନ୍‌ରେ ଚଉକିଟି ଆରାମ୍ ଚେୟାର ପକାଇ ବସିଲୁ । କାହାରି ଆଖିରେ ନିଦ୍ରାନାହିଁ । ପ୍ରଥମେ ତାଙ୍କ କାହାଣୀ କହିବାକୁ ସୁବ୍ରତ ବାବୁଙ୍କୁ ଅନୁରୋଧ କଲୁ ।

ସେ କହିଲେ ୯ୁମ୍ଁ ୁରିଆର ଘରୀ ଫେରିବା ଦିନଠାରୁ ମୁଁ ଅଛି । ଏଠାରେ ଗୋଟିଏ ବିଦେଶୀ କମ୍ପାନୀ ଆନୁକୂଲ୍ୟରେ ଏକ ବିରାଟ ଔଷଧ ପ୍ଲାଣ୍ଟ୍ ଗଢ଼ି ହେଉଛି । ଜଣେ ସାହେବ୍ ବୈଜ୍ଞାନିକ ତା'ର ଉଦ୍ୟୋକ୍ତା । ହିମାଳୟ ଏବଂ ତା'ର ପାଦ ଦେଶରେ ଅନେକ ଦୁଷ୍ପ୍ରାପ୍ୟ ମୂଳ ମୂଳିକା ମିଳେ । ଯାହା ସଂଗ୍ରହ କରିପାରିଲେ ଏକ ବିରାଟ ଅନୁଷ୍ଠାନ ଏଠି ଗଢ଼ି ଉଠିବ । ଦୁଇବର୍ଷ ତଳେ ଜଙ୍ଗଲ କାଟି ଉଚ୍ଚ ନୀଚ ପ୍ରାନ୍ତରକୁ ସମତଳ କରି ଯେଉଁଦିନ ଏଠାରେ ଭିତ୍ତି ପ୍ରସ୍ତର ସ୍ଥାପନ କରାଗଲା, କାରଖାନାର ସେହି ଜନ୍ମ ମୁହୂର୍ତ୍ତରେ ମୁଁ ଏଠାକୁ ଆସିଲି । ଆସିଥିଲି Junior Administrative Officer ହୋଇ । ତା'ର ବର୍ଷକ ପରେ ଆସେ ପ୍ରଶାନ୍ତ । ସେ ଜଣେ କେମିଷ୍ଟ । ମୁଁ ଆସିଥିଲି କଲିକତାରୁ । ପ୍ରଶାନ୍ତ ଦୁଇ ଯୁଗ ଧରି ପାଟନାର ପ୍ରବାସୀ । ସେ ସେଠାରୁ ଆସିଥିଲା । ପ୍ରଥମ ଦିନ ହିଁ ପ୍ରଶାନ୍ତ ସହ ମୋର ଆଳାପ ହୋଇଥିଲା । Appointment Letter ନେଇ ସେ ମୋ ମୋ ସହିତ ଦେଖା କରିବାକୁ ଆସିଥିଲା । କାରଣ ସେଇଟା ହିଁ ନିୟମ । ମୋ କ୍ୟାମ୍ବରେ ପ୍ରଶାନ୍ତ ପହଞ୍ଚି କହିଲା—'ନେମ୍ ପ୍ଲେଟ୍‌ରୁ ଆପଣଙ୍କ ନାମଟି ପଢ଼ି କେତେ ଯେ ଖୁସି ହୋଇଛି, କ'ଣ ଆଉ କହିବ ?' ଭାବିଥିଲି ଦୁନିଆ ଛଡ଼ା ଜାଗାରେ ମୁଁ ଏକମାତ୍ର ବଙ୍ଗ ସନ୍ତାନ । ମୁଁ କିନ୍ତୁ ଆପଣଙ୍କୁ ଦେଖି ମୋର ସେ ଦୁଶ୍ଚିନ୍ତା ଦୂର ହୋଇଛି । ମୁଁ ବର୍ତ୍ତମାନ ନିଶ୍ଚିନ୍ତ ।'' ଗୌର କାନ୍ତ ବଳିଷ୍ଠ ଯୁବକ । ମୋର ସମବୟସୀ ହେବ । ଟିକଏ ବିସ୍ମିତ ହୋଇ ପଚାରିଲି ଆପଣଙ୍କ ନାମ ? ସେ ତା'ର Appointment Letter ଅନ୍ୟମନସ୍କ ଭାବେ ମୋ ଆଡ଼କୁ ଆଗେଇ ଦେଇଥିଲା । ପ୍ରଶାନ୍ତ ମୋ ପାଖରେ ରହିଗଲା । ସପ୍ତାହକ ମଧ୍ୟରେ ଆମେ ଅତି ଅନ୍ତରଙ୍ଗ ହୋଇ ଉଠିଲୁ । ଦ୍ୱିତୀୟ ସପ୍ତାହ ଶେଷ ନ ହେଉଣୁ 'ଆପଣ' ବର୍ଜ୍ଜନ କରି ତୁମେରୁ 'ତୁ' କୁ ଆସିଲୁ । ଦୁହେଁ ହେଲୁ ଦୁହିଁଙ୍କର ନିତ୍ୟ ସହଚର ।

ବଙ୍ଗାଳୀ ବୋଲି ନୁହେଁ । ପ୍ରଶାନ୍ତର ସ୍ୱଭାବରେ ଆକର୍ଷଣର ଯଥେଷ୍ଟ ଉପାଦାନ ଥିଲା । ଭଲ ଶିକାରୀ ସେ । ଲକ୍ଷ୍ୟ ଭେଦର କ୍ଷମତା ଅପରିସୀମ । ସବୁ-

ରକମ ବାଦ୍ୟ ବଜାଇବାରେ ସେ ଅସାଧାରଣ । ତା ଛଡ଼ା ପଣ୍ଡିତଙ୍କ ତରଳ ଅତି ଚମତ୍କାର ମନଟିଏ ତାର ।

ଚତୁର୍ଥ ସପ୍ତାହ ମଧ୍ୟରେ ହିଁ ପ୍ରଶାନ୍ତର ଏ ଗୁଣ ଗୁଡ଼ିକୁ ମୁଁ ଆବିଷ୍କାର କରିଥିଲି । କହିବାକୁ ଗଲେ ଏଗୁଡ଼ିକ ସମାହାର କରିବାର ମନ ମୋର ଥିଲା । ଯାହା ହେଉ ପଞ୍ଚମ ସପ୍ତାହରେ ଅଫିସ୍ ଛୁଟି ପରେ ଦୁହେଁ ଙ୍କୁମ୍ଭୁରିଆର ଶାଳ ବଣ ଭିତରେ ଥିବା ଗୋଟିଏ ଝରଣା ପାଖକୁ ବୁଲିଗଲୁ । ସ୍ଥାନଟି ଅତି ସୁନ୍ଦର । ଅତି ମନୋରମ । କାରଣ ଏପରି ବୁଲିବାଟା ଥିଲା ମୋ ପ୍ରତିଦିନର ଅଭ୍ୟାସ । ସମୟଟା ଥିଲା ଆଶ୍ୱିନର ମଝିଆ ମଝି । ଆଉ କେଇଟା ଦିନରେ ଦୁର୍ଗାପୂଜା । ବୁଲୁ ବୁଲୁ ପ୍ରଶାନ୍ତ ପଚାରିଲା 'ପୂଜାରେ କଣ କରିବ ? କଲିକତା ଯିବ କି ?' ନା ମୁଁ ମୁଣ୍ଡ ହଲାଇ କହିଲି । ସେଠି ମୋର କେହି ନାହାନ୍ତି । ମୋର ଗଳାର ସ୍ୱରରେ ଅଦ୍ଭୁତ ଏକ ବିଷାଦ । ଠିକ୍ ଏ ଯେମିତି ଚମକି ପଡ଼ିଲା ପ୍ରଶାନ୍ତ । କେହି ନାହିଁ । ବାପା, ମା' କମ୍ବା ଅନ୍ୟ କେହି ? ନା' ଏକ ମାତ୍ର କକା ଡିବ୍ରୁଗଡ଼ରେ ଅଛନ୍ତି । ଆସାମ ଅଏଲ୍ କମ୍ପାନୀର ମସ୍ତବଡ଼ ଅଫିସର୍ । ସେଠି ଖୁଡ଼ି ଓ ପିଲାପିଲି ସବୁ ସେ ଅଛନ୍ତି ।

ବାହା ହୋଇ ନ ?

ହୋଇଥିଲି ।

ସ୍ତ୍ରୀ !

ନାହିଁ ।

ତେବେ କଅଣ ? ? ? କହୁ କହୁ ଅଟକିଗଲା ପ୍ରଶାନ୍ତ । ତାର ଇଙ୍ଗିତଟା ବୁଝିପାରିଲି । ଅସ୍ପଷ୍ଟ ସ୍ୱରରେ କହିଲି ତୁମେ ଯାହା ଭାବୁଛ, ତାହା ନୁହେଁ । ମରିନ ।

ତା' ହେଲେ ? ଅତି ବିସ୍ମୟରେ ମୋ ଅଡ଼କୁ ଚାହିଁଲା ପ୍ରଶାନ୍ତ । "ଯଦି କିଛି ମନେ ନ କର ତେବେ ତୁମ ସ୍ତ୍ରୀଙ୍କ କଥା ମୋତେ କୁହ ।

ଏହା ପୂର୍ବର ଆମର ପାରିବାରିକ ବା ବ୍ୟକ୍ତିଗତ ବ୍ୟାପାରରେ କେହି କୌଣସି ଦିନ କୌତୂହଳୀ ହୋଇନୁ । ଅକପଟରେ ସମସ୍ତ କଥା ମୁଁ କହିଲି । ପୋଷ୍ଟ ଗ୍ରାଜୁଏଟ୍ କ୍ଲାସ୍‌ରେ ମୋର ସହପାଠିନୀ ଥିଲା ରେଖା । ସେମାନେ ରହୁଥାନ୍ତି ମାଣିକ ତାଲା ଷ୍ଟ୍ରିଟ୍‌ର ଅଜୟ ଦାସ ରୋଡ଼୍‌ରେ । ମୁଁ ଥାଏ ମୀର୍ଜାପୁରର

ଗୋଟିଏ ମେସ୍‌ରେ । Universityର ଏକ ବକ୍ତୃତା ପ୍ରତିଯୋଗିତାରେ ରେଖା ସହିତ ମୋର ପରିଚୟ । ପରିଚୟଟା ମୌଖିକ ଆଳାପରେ ସୀମାବଦ୍ଧ ହୋଇନ । ଅଚିରେ ହୃଦୟ ନାମକ ରାଜ୍ୟରେ ଦୁହିଁଙ୍କର ଅପୂର୍ବ ଆନ୍ଦୋଳନ ସୃଷ୍ଟି ହେଲା । ବକ୍ତୃତା ପ୍ରତିଯୋଗିତାରେ ଯାହାର ଆରମ୍ଭ ତାର ପରିସମାପ୍ତି ହେଲା ମ୍ୟାରେଜ ରେଜିଷ୍ଟ୍ରେସନ୍ ଅଫିସରେ । M. Sc. ପାସ୍ କରିବାର ଦୁଇବର୍ଷ ପରେ ଆମର ବିବାହ ହୋଇଗଲା । ବିବାହ ପରେ ଆମର ହୃଦୟ, ଆତ୍ମା, ଅସ୍ତିତ୍ୱ, ସବୁ ଏକ ହେବ । ଯେପର୍ଯ୍ୟନ୍ତ ମୃତ୍ୟୁ ନ ହୋଇଛି ସେପର୍ଯ୍ୟନ୍ତ ଅଭିନ୍ନ ରହିବା ଏହି ସର୍ତ୍ତ ଆମର ଥିଲା । କିନ୍ତୁ ମୃତ୍ୟୁ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେଲାନି । ବିବାହିତ ଜୀବନର ପାଞ୍ଚୋଟି ବର୍ଷ ପୂରଣ ନ ହେଉଣୁ, ସାମାନ୍ୟ ଗୋଟିଏ ଭୁଲ୍ ପାହାଡ଼ ପ୍ରମାଣ ସ୍ଫୀତ ହୋଇ ଆମ ଦୁହିଁଙ୍କ ମଝିରେ ମୁଣ୍ଡ ଟେକି ଠିଆ ହେଲା । ତା'ର ପରିଣତି ହେଲା ଆମ ସମ୍ପର୍କ ଉପରେ ଯବନିକା ପାତ । ତୁମେ ବିଶ୍ୱାସ କର ଭୁଲ୍ ମୋର ଆଦୌ ନ ଥିଲା । ମ୍ୟାରେଜ୍ କଣ୍ଟ୍ରାକ୍ଟ ଅଫିସ୍‌ରୁ ପାଞ୍ଚ ବର୍ଷ ପୂର୍ବରୁ ଯେତେବେଳେ ବାହାରି ଥିଲୁ, ସେତେବେଳେ ଆମ ହାତରେ ଥିଲା ସ୍ୱର୍ଗ । ପାଞ୍ଚବର୍ଷ ପରେ ଅଦାଲତରୁ ଯେତେବେଳେ ବାହାରି ଆସିଲି ଶୂନ୍ୟତା ଛଡ଼ା ମୋ ପାଖରେ ଆଉ କିଛି ନ ଥିଲା । ଘରଆଡ଼େ ହା-ହା-କାର ।

ଡାଇଭର୍‌ସ୍ ପରଦିନ ହିଁ କଲିକତା ଛାଡ଼ିଲି । ପ୍ରଥମେ ଦିଲ୍ଲୀ, ପରେ ଭୋପାଳ । କିଛି ଦିନ ଦାକ୍ଷିଣାତ୍ୟ ଓ ପରେ ଓଡ଼ିଶା । ପୁରୀରେ ରହିଲି କିଛି ଦିନ । ସମୁଦ୍ରର ଉଚ୍ଛଳ ତରଙ୍ଗ, ବେଳାଭୂମି, ଜଗନ୍ନାଥଙ୍କ ଚକାଡ଼ୋଳା ମୋତେ ସବୁ ଭୁଲେଇ ଦେଲା । କିନ୍ତୁ କେତେ ଦିନ ? ବୁଲି ବୁଲି ଶେଷରେ ଏହି ହିମାଳୟ-ଶିଖରେ ଆସି ଆଶ୍ରୟ ନେଇଛି । ନିର୍ଜନ ବାସ୍‌ବାସ ।

ସବୁ ଶୁଣି ଯେପରି ସ୍ତବ୍ଧ ହୋଇ ଯାଇଥିଲି ପ୍ରଶାନ୍ତ । ତାପରେ ନୀରବରେ ଆମେ ଅନେକ ଦୂର ପର୍ଯ୍ୟନ୍ତ ଚାଲି ଯାଇଥିଲୁ । ପଦେ ହେଲେ କଥା ସେ କହିନି । ଶାଳ ବଣରେ ପହଞ୍ଚି ପ୍ରଥମେ ମୁଁ ନୀରବତାକୁ ଭାଙ୍ଗିଲି । ବିମର୍ଷ ହସି କହିଲି—'ମୋ କଥା ତ ଶୁଣିଲ, ଏଥରକ ତୁମ କଥା କୁହ ।' ପାଟନାର ଲୋକ ତୁମେ । ସେଠି କିଏ କିଏ ତୁମର ଅଛନ୍ତି ?

ସବୁ ସମୟର ସପ୍ରତିଭ କୌତୁକ ପ୍ରବଣ ପ୍ରଶାନ୍ତ ମୋର ପ୍ରଶ୍ନରେ ଯେପରି ବିଚଳିତ ହୋଇ ଉଠିଲା । ବିବ୍ରତ ବୋଧ କଲା ମଧ୍ୟ । କହିଲା ଦୁଇ ଭାଇ, ଦୁଇ ଭଉଜ, ସେମାନଙ୍କର ପିଲାମାନେ ଏବଂ ମୋର ସ୍ତ୍ରୀ । 'ଦେଖୁଛ ତୁମେ ବି ଲଙ୍ଗୁଡ଼ କଟା ଦଳରେ ବି ବିବାହ କରିଛ । ଏ କୌତୁକରେ କୌଣସି ଅଭାବ

ଦେଇନାହିଁ ପ୍ରଶାନ୍ତ । ଚୁପ୍ ରହିଲା । ଭାବିଥିଲି ମୋ ବୈବାହିକ ଜୀବନର ମର୍ମାନ୍ତିକ ଇତିହାସ ତାଙ୍କୁ ଅଜ୍ଞାତ ଏବଂ ଅଭିଭୂତ କରିଛି । ତଥାପି ଦ୍ୱିତୀୟ ଥର ପ୍ରଶ୍ନ କଲି ।

"ତମ ବିବାହିତା କ'ଣ ପ୍ରେମ ଜନିତ ।"

ଏଥରକ ମଧ୍ୟ ପ୍ରଶାନ୍ତ ପୁଣି ନୀରବ । ବୁଝିଲି ନିଜର ବିବାହିତ ଜୀବନ ସମ୍ପର୍କରେ କିଛି କହିବାକୁ ପ୍ରଶାନ୍ତ ଅନିଚ୍ଛୁକ । ତେଣୁ ମୁଁ କିଛି ପ୍ରଶ୍ନ କରିନି । ଲକ୍ଷ୍ୟ କରିଛି, ସେଦିନ କେବଳ ନୁହେଁ, ଯେତେବେଳେ ତା'ର ସ୍ତ୍ରୀ ସମ୍ପର୍କରେ କିଛି ପଚାରିଛି, କେମିତି ସେପରି ସଙ୍କୁଚିତ ହୋଇଯାଇଛି ସେ । ସେ ପ୍ରସଙ୍ଗରେ ପଦେ ହେଲେ କଥା ବି କୁହେନି । ଜୀବନର ସବୁ ଦିଗ ଦେଇ ସେ ଅନର୍ଗଳ । କିନ୍ତୁ ଏ ଦିଗଟାରେ ସେ ନିଜକୁ ଉନ୍ମୁକ୍ତ କରିପାରେ ନା । ଜାଣେନା କେଉଁଠି ତାର ବାଧା ।

ଯାହା ହେଉ ଏମିତି ଗୋଟାଏ ବର୍ଷ କଟିଗଲା । ଏଥିମଧ୍ୟରେ ଛୁଟି ନେଇ ପାଟନା ଦୁଇଥର ବୁଲିଆସିଛି ପ୍ରଶାନ୍ତ । ଏକା ଯାଇଛି । ଆଶା ଥିଲା ମୋତେ ବି ସାଙ୍ଗରେ ନେବ । ମୁଁ ମଧ୍ୟ ଯିବାଲାଗି ବ୍ୟଗ୍ର ଥିଲି । କିନ୍ତୁ ମୋ ପ୍ରାଣର ସେ ଦିଗଟାକୁ ପ୍ରଶାନ୍ତ ଫେରି ଚାହେଁନି । ମନେ ମନେ ସେଥିପାଇଁ ମୁଁ ଆହତ ହୋଇଛି । ଭୀଷଣ ଅଭିମାନ କରିଛି, ତା ଉପରେ ।

ଯାହା ହେଉ ଦିନ ଏକ ରକମ କଟି ଯାଉଥିଲା । ଯାଇଥାନ୍ତା ମଧ୍ୟ । କିନ୍ତୁ ଦିନେ ଦ୍ୱିପ୍ରହର ସମୟରେ ପ୍ରଶାନ୍ତ ଆସି ମୋ ଅଫିସ୍‌ରେ ହାଜର୍ । କହିଲା— ଭାଇ ଭାରି ମୁସ୍କିଲ୍‌ରେ ପଡ଼ି ଯାଇଛି । ତୁମକୁ ଉଦ୍ଧାର କରିବାକୁ ପଡ଼ିବ ।

ଘଟଣା କ'ଣ ? ଜିଜ୍ଞାସୁ ଦୃଷ୍ଟିରେ ମୁଁ ଚାହିଁଲି । ଏଇ ମାତ୍ର ଚିଠି ପାଇଲି । ମୋ ସ୍ତ୍ରୀ ପାଟଣାରୁ ଝୁମ୍ପୁରିଆ ଆସୁଛି । ଭଉଜମାନଙ୍କ ସହିତ କ'ଣ ଟିକିଏ କଳି ହୋଇଛି । ସେଥିଲାଗି ମୋତେ ଚିଠିଦେଇ ଟ୍ରେନ୍‌ରେ ଉଠିଛି । ଆଜି ଉପର ବେଳା ଦିଲ୍ଲୀ ମେଲ୍ ଏଠାରେ ପହଞ୍ଚିବ । କିନ୍ତୁ ମୁଁ ଷ୍ଟେସନକୁ ଯାଇ ପାରୁ ନାହିଁ । ଲାଇବ୍ରେରୀରେ ମୋର ବିଶେଷ କାମ ଅଛି । ରାତି ୯ଟା ପର୍ଯ୍ୟନ୍ତ । ମୋତେ ରହିବାକୁ ହିଁ ପଡ଼ିବ । ତୁମେ ଭାଇ ଟିକିଏ କଷ୍ଟକରି ଷ୍ଟେସନରୁ ତାଙ୍କୁ ନେଇ ଆସିବ ।

ଗତ କେଇ ମାସ ହେବ ଝୁମ୍ପୁରିଆରେ ଦିଲ୍ଲୀ ମେଲ୍ ରହୁଛି । ଅଳ୍ପ ସମୟ ପରେ ଦିଗନ୍ତ କମ୍ପାଇ ଆସି ଷ୍ଟେସନ୍‌ରେ ଦମ୍ ନେଲା । ପ୍ଲାଟଫର୍ମର ଗୋଟିଏ

କୋଣରେ ଠିଆ ହୋଇ ମୁଁ ଯାତ୍ରୀମାନଙ୍କୁ ଲକ୍ଷ୍ୟ କରିବାକୁ ଲାଗିଲି । ଯାତ୍ରୀ ବୋଇଲେ ଜଣେ ଦୁଇ ଜଣ ଏଠାକାର ଦେହାତି ମଣିଷ । ସରକାରୀ ଏବଂ ବେସରକାରୀ ଅଫିସର୍ କେତେ ଜଣ । କର୍ମଚାରୀ ଦୁଇ ଚାରି ଜଣ ରେଲବାବୁ । ତା ଛଡ଼ା ଉଲ୍ଲେଖଯୋଗ୍ୟ ଆଉ କାହାରିକୁ ଦେଖିନି ।

ଅସହାୟ ଭଳି ଚାରି ଆଡ଼କୁ ଅନାଉଥାଏ । ଗୋଟିଏ ବ୍ୟଗ୍ର ଉତ୍କଣ୍ଠା ବୁକୁର କେଉଁ ଅତଳ ସ୍ଥାନରେ ଯେପରି ସ୍ତବ୍ଧ ହୋଇ ରହିଛି । ସେଇଟା ଅହେତୁକ ନୁହେଁ । ପ୍ରଶାନ୍ତର ସ୍ତ୍ରୀ ବିଷୟରେ ମୋର କୌତୁହଳଟା ଅପ୍ରତିରୋଧ । ସେ ଆସିଲେ ତାକୁ ଦେଖିବି । ତା ସହିତ ପରିଚିତ ହେବି । ଆଳାପ କରିବି । ଯଦି କିଛି ରହସ୍ୟ ଥାଏ, ତାକୁ ଉନ୍ମୋଚନ କରିବି । ସେଥିପାଇଁ ପ୍ରଶାନ୍ତ ଯେତେବେଳେ ଷ୍ଟେସନକୁ ଆସିବା କଥା କହିଲା, ସେଥିରେ ମୁଁ ଆପତ୍ତି କଲିନାହିଁ କିନ୍ତୁ ଏ ଟ୍ରେନ୍‌ରେ ଯଦି ତା'ର ସ୍ତ୍ରୀ ନ ଆସେ ? ? ? ତେବେ ?

ଅନାଇ ଅନାଇ ହଠାତ୍ ମୋର ଦୃଷ୍ଟି ପ୍ଲାଟ୍‌ଫର୍ମର ଶେଷ ପ୍ରାନ୍ତରେ ନିବଦ୍ଧ ହେଲା । ଗୋଟିଏ ଭଦ୍ର ମହିଳା । ମହିଳା ବୋଧହୁଏ ତାକୁ କୁହାଯାଇ ପାରିବ ନାହିଁ । ତରୁଣୀ କହିବା ସଙ୍ଗତ । ହାତରେ ମଧ୍ୟମ ଧରଣର ସୁଟ୍‌କେସ୍‌ଟିଏ ନେଇ ମନ୍ଥର ପଦରେ ଆଗେଇ ଆସୁଛି । ଆଉ ସେଇଥିରେ ପାହାଡ଼ ଆଉ ପ୍ରାନ୍ତର ଘେରା ଏହି ଷ୍ଟେସନରେ ଯେପରି ଦୃଶ୍ୟର ପରିବର୍ତ୍ତନ ହୋଇଯାଇଛି । ଅନେଇଥିଲି, କିନ୍ତୁ ଏତେ ଦୂରରୁ ମୁଁ ବି ଚକ୍ଷୁ ଭ୍ରୂ ସ୍ପଷ୍ଟ କିଛି ଦେଖିପାରୁ ନ ଥିଲି । ତଥାପି ମନେ ହେଉଥିଲା ସେ ସୁଗଠନା । ସରୁ କମର ତଳେ ବିଶାଳ ନିମ୍ନଦେଶ ଏବଂ ଉପର ଦିଗର ଅଜସ୍ର ଔଦ୍ଧତ୍ୟ ତାକୁ ସୁଦେହିନୀର ମର୍ଯ୍ୟାଦା ଦେଇଛି । ମନ୍ଥର ଗାମିନୀ ହେଲେ ମଧ୍ୟ ଅନେକ ଆଗେଇ ଆସିଛି ସେ । ନିକଟକୁ ଆସିବାରୁ ବୁକୁର ଶ୍ୱାସ ଯେପରି ମୋର ରୁଦ୍ଧ ହୋଇ ଆସିଲା । ହୃତ୍ପିଣ୍ଡର ଉତ୍‌ଥାନ ପତନ ଯେପରି ମୁଁ ବୁଝି ପାରୁନି—ଯେପରି ଜଣାପଡ଼ିଲା । ମୋତେ ବେଷ୍ଟନ କରି ସମସ୍ତ ପୃଥିବୀ ଯେପରି ଘୂରୁଛି । ଯିଏ ଆସିଛି ସେ 'ରେଖା' ।

ଏଣେ ରେଖାର ଆଖି ମଧ୍ୟ ମୋ ଆଖି ସହ ମିଳିଯାଇଛି । ଜାଣେ ନା କେତେବେଳେ ସେ ସ୍ଥିର ହୋଇ ଠିଆ ହୋଇ ଯାଇଛି, ଶିକାରୀର ଫାନ୍ଦରେ ପଡ଼ିଥିବା ଦୁଇଟି ଜନ୍ତୁ ଭଳି ଆମେ ଛଟପଟ କରି ଉଠିଲୁ ଭିତରେ ଭିତରେ । କିନ୍ତୁ ବାହାରେ ଟିକିଏ ସେ ଶକ୍ତି ମୋର ନଥିଲା । କେହି ଯେପରି ମନ୍ତ୍ର ପଢ଼ି ମୋତେ ଅଟଳ ଓ ନିଶ୍ଚଳ କରିଦେଇଛି ।

କେତେ ସମୟ କହି ପାରିବିନି । ମନେ ହେଲା ଯେପରି ଗୋଟିଏ ଯୁଗର ପରିସମାପ୍ତି ହେଲା । ତାପରେ ଭଙ୍ଗା ଅସ୍ପୁଟ ଗଳାରେ ମୁଁ ପ୍ରଶ୍ନ କଲି । ତୁମେ ଏଠି ?

ରେଖା କହିଲା—ମୋର ସେଇ ପ୍ରଶ୍ନ ।

କହିଲି—"ମୁଁ ଏଠାରେ ଚାକିରି କରେ ।"

ଏଇ ଟ୍ରେନ୍‌ରେ ମୋର ଜଣେ ବନ୍ଧୁର ସ୍ତ୍ରୀ ଆସିବା କଥା । ତାଙ୍କୁ ନେବାକୁ ଆସିଛି । ଛାଡ଼ ସେ କଥା ।

କିନ୍ତୁ ତୁମେ ?

ମୋ ସ୍ୱାମୀଙ୍କ ସଙ୍ଗରେ ଦେଖା କରିବାକୁ ଆସିଛି ।

ନିଜର ଅଲକ୍ଷ୍ୟରେ କଥାଗୁଡ଼ିକ ଅତି ଅନାୟାସରେ କହିପକାଇଲା ରେଖା । ଆଉ କହି ଯେପରି ଝୁଣ୍ଟି ପଡ଼ିଲା । ଆଉ ସେହି ମୁହୂର୍ତ୍ତରେ ମୋର ଦୃଷ୍ଟି ପଡ଼ିଲା ସୀମନ୍ତରେ ।

ଆଶ୍ଚର୍ଯ୍ୟ ! ଏତେବେଳଯାଏ ଲକ୍ଷ୍ୟ କରିନି । ତାର ସୀମନ୍ତରେ ସିନ୍ଦୂରର ଆରକ୍ତ ରେଖା । ବୁକୁର ଅଦୃଶ୍ୟ ଅନ୍ଧକାରରେ ଯେପରି କିଏ ଗୋଟିଏ ହାତୁଡ଼ିରେ ପାହାରେ ଦେଲା । ଗୋଟିଏ ଶିରା ଛିଣ୍ଡି ଯେପରି ବିନ୍ଦୁ ବିନ୍ଦୁ ହୋଇ ରକ୍ତ ଝରିବାରେ ଲାଗିଲା । ଅପ୍ରସ୍ତୁତ ହୋଇ ଚତ୍କାର କରି ଉଠିଲି—

କିଏ ତୁମର ସ୍ୱାମୀ ?

ମଥାଟା ଯେପରି ରେଖାର ନଇଁ ପଡ଼ିଲା । ଅତି ଅସ୍ପଷ୍ଟ କଣ୍ଠରେ କହିଲା—ପ୍ରଶାନ୍ତ ଘୋଷ । ଏଠାକାର ମେଡ଼ିସିନ୍ ପ୍ଲାଣ୍ଟର କେମିଷ୍ଟ ।

ରେଖାକୁ ଦେଖିବା ମାତ୍ରେ ହୃଦୟ ଭିତରେ ମନ୍ଥନ ସୁରୁ ହୋଇଯାଇ ଥିଲା । ଏତେ କାଳ ପରେ ଏପରି ଏକ ସ୍ଥାନ ଝୁମ୍‌ରିଆରେ ପ୍ରଶାନ୍ତର ସ୍ତ୍ରୀ ଭାବରେ ରେଖାକୁ ଆବିଷ୍କାର କରିବି, ଏ କଥା ଥିଲା ମୋ ପକ୍ଷରେ ଅତି ଅଭାବନୀୟ ।

ଅନେକ ସମୟ ପର୍ଯ୍ୟନ୍ତ ରହିଲି । ତାପରେ କୌଣସିମତେ କହିଲି—ଚାଲ କୁଆଡ଼େ ଯିବା ?

ପ୍ରଶାନ୍ତ ମୋର ବନ୍ଧୁ । ତୁମକୁ ନେଇଯିବା ଲାଗି ସେ ମୋତେ ପଠାଇଛି । ବିଦ୍ୟୁତ୍ ସ୍ଫୁରଣ ଭଳି ମୁହଁ ଉଠେଇ ସେ କହିଲା—ତୁମେ ତା ହେଲେ ସେହି ବନ୍ଧୁ !

ସେ କ'ଣ କହିବାକୁ ଚାହେଁ ବୁଝି ନ ପାରି କହିଲି, ମାନେ ? ତୁମ କଥା ପ୍ରାୟ ଚିଠିରେ ଲେଖନ୍ତି ପ୍ରଶାନ୍ତ । ଏଭଳି ବନ୍ଧୁ କୁଆଡ଼େ ମିଳେନା । ଏଠାରେ ଚାକିରି କରିବା ପରେ ଦୁଇଥର ପାଟନା ଯାଇଛନ୍ତି । ସେଠି ଦିନସାରା କେବଳ ତୁମରି ଗପ କରନ୍ତି । କିନ୍ତୁ—

କ'ଣ ?

କୌଣସି ଦିନ ସେ ତୁମର ନାଁ କହି ନାହାନ୍ତି । ତୁମର ନାମ ପଚାରିଲେ ଅଦ୍ଭୁତ ଗଳାରେ କୁହନ୍ତି ତୁମେ ବୁଝିନା ! ମୁଁ ଅବାକ୍ ହୁଏ । କୁହେ ମୁଁ କ'ଣ କହିବି ? ସେ କୁହନ୍ତି—

ତେବେ ସୁବ୍ରତଙ୍କ ବନ୍ଧୁ ତୁମେ ?

ଦିନେ ବନ୍ଧୁଙ୍କ ଉପସ୍ଥିତିରେ ତୁମକୁ Surprise କରିଦେବି । ସେହି Surprise ଟା ଏପରି ହେବ ବୋଲି କିଏ ଜାଣିଥିଲା ?

ରେଖା କହିଲା—କିନ୍ତୁ ଗୋଟିଏ କଥା ମୁଁ ବୁଝି ପାରୁନି ।

—କ'ଣ ?

'ପ୍ରଶାନ୍ତ କେମିତି ଜାଣିଲେ ତୁମର ମୋର କଥା । "ଦିନେ ଭୁଲ୍ ଭୁଲ୍ ଆମର ବିବାହିତ ଜୀବନର କଥା ଉଠିଥିଲା ?"

"ପ୍ରଥମେ ମୁଁ କହିଥିଲି ମୋ କଥା, ତୁମ କଥା, ମୁଁ କେଉଁଠି ରହୁଥିଲି । ତୁମେ କେଉଁଠି ରହୁଥିଲ । କିପରି ଆମର ବିବାହ ହେଲା । ଟିକ୍ ନିଖ୍ କଥା, ଟିକିଏ ବାଦ୍ ଦେଇନି । ମୋ କଥାରୁ ସବୁ ଜାଣି ପାରିଥିଲେ ପ୍ରଶାନ୍ତ । ଟିକିଏ ରହି ପୁଣି କହିଲି ମୋ କଥାହିଁ ଶୁଣିଥିଲେ ପ୍ରଶାନ୍ତ । ନିଜ କଥା କିଛି କହିନ୍ତିନି କିନ୍ତୁ କାହିଁକି କହିନ୍ତିନି ଏବେ ମୁଁ ବୁଝିପାରୁଛି ।

ରେଖାକୁ ନେଇ ଷ୍ଟେସନ ବାହାରକୁ ଆସିଲି । ପ୍ରଶାନ୍ତ ତାର ନୂଆ କ୍ୱାଟର ପାଇଥିଲେ । ମୋ କ୍ୱାର୍ଟରଠାରୁ ଦୁଇ ମାଇଲ୍ ଦୂରରେ । ଟାଙ୍ଗାରେ ଦୁଇ ଜଣ ଉଠିଲୁ ବାଧ୍ୟ ହୋଇ । ଟ୍ୟୁମ୍ବୁଲିଅର ଏ ଅଦବାହନ । ସକାଳେ ଯେତେବେଳେ

କୌତୂହଳ ସ୍ରୋତରେ ଭାସି ଆସିଥିଲି । କିନ୍ତୁ ସବୁ ଜାଣିଶୁଣି ମଧ୍ୟ ଏ କେଉଁ ଅଗ୍ନିରେ ମୋତେ ନିକ୍ଷେପ କଲି ପ୍ରଶାନ୍ତ ?

ଟାଙ୍ଗାର ସ୍ୱଳ୍ପ ପରିସର ମଧ୍ୟରେ ପ୍ରାୟ ଲଗାଲଗି ହୋଇ ବସିଲୁ । ଟାଙ୍ଗାର ଦୋଳାୟମାନ ଅବସ୍ଥା ଏକ ବିଚିତ୍ର ଧରଣର । ତା ତାଳେ ତାଳେ ରେଖା ମୋ ଉପରେ ବାରମ୍ବାର ଢ଼ଳି ପଡ଼ୁଥାଏ । କେତେକାଳ ପରେ ରେଖାର ସ୍ପର୍ଶ ପାଉଛି । ଏଇ ସ୍ପର୍ଶର ସ୍ୱାଦ ଯେ ମୋର ଅଜଣା, ତା ନୁହେଁ । କିନ୍ତୁ ଦୁଃସହ ଅପରିଚିତ ମନେ ହେଉଥାଏ । ତଥାପି ଜଣାପଡୁଥାଏ, ଯେପରି ଆମେ ଦୁହେଁ ପୃଥିବୀର ଦୁଇ ପ୍ରାନ୍ତରେ ମେରୁରେ ରହିଛୁ । ମଝିରେ ଅନ୍ତହୀନ, ସୀମାହୀନ ବ୍ୟବଧାନ ।

ଟିକିଏ ଆଗରୁ ପଶ୍ଚିମର ମେଘରେ ମଧ୍ୟାହ୍ନର ବିଳମ୍ବିତ ରଙ୍ଗ ଟିକିଟ ଲାଗିଥିଲା । ବର୍ତ୍ତମାନ ସେଇଟା ବିଲୀନ ହୋଇଯାଇଛି । ଚାରିଆଡ଼ୁ ବେଷ୍ଟନ କରି ଅର୍ଯ୍ୟାବର୍ତ୍ତର ଧୂସର ଅନ୍ଧକାର ମାଡ଼ିଆଇ ଆସୁଛି ।

ରାସ୍ତା ପାଖହେଲେ ପ୍ରାନ୍ତର । ପ୍ରାନ୍ତର ପାର ହେଲେ ଯେଉଁ ଆକାଶ ତେଣିକି ଅନାଇଥିଲି ମୁଁ । ରେଖାର ଦୃଷ୍ଟି ଥିଲା ଅନ୍ୟଆଡ଼େ ।

ଅନେକ ଦୂର ଚାଲି ଆସିବା ପରେ ରେଖା ହଠାତ୍ ଡାକିଲା, 'ସୁବ୍ରତ' ! ମୁହଁ ନ ବୁଲେଇ କହିଲି କ'ଣ ? ତୁମ ସଙ୍ଗରେ·········ରେଖାର ଗଳା ଯେପରି କମ୍ପି ଉଠିଲା । ''ଏପରି ଭାବେ ଯେ ପୁଣି ଦେଖା ହେବ ସେକଥା ମୁଁ କେବେହେଲେ ଚିନ୍ତା କରି ନ ଥିଲି ।''

''ମୁଁ ଚୁପ୍ ରହିଲି'' ।

ଜାଣ, ଜାଣ, ହଠାତ୍ ଯେପରି ବିସ୍ମିତ ହେଲା ରେଖା । କୋର୍ଟରୁ ବାହାରି ଆସି ସବୁସାରା ମୁଁ କାନ୍ଦିଛି । ଗୋଟାଏ ସାମାନ୍ୟ ଭୁଲ୍ ଆମ ଜୀବନଟାକୁ କ'ଣ ଯେ କରିଦେଲା । ତହିଁ ଆରଦିନ ଭାବିଲି—ପୁଣି ତୁମ ନିକଟକୁ ଫେରିଯିବି ବୋଲି । ପାରିନି । କେଜାଣି କାହିଁକି ଲଜ୍ଜା, ସଂକୋଚ, ଦ୍ୱିଧା ମୋର ପାଦ ଦୁଇଟାକୁ ଯେମିତି ବାନ୍ଧି ପକାଇଲା । ଦୁଇ ଚାରି ଦିନ ପରେ ସବୁ ବାଧା ନ ମାନିବାର ଶକ୍ତି ଯେତେବେଳେ ଫେରି ପାଇଲି, ତୁମ ନିକଟକୁ ଛୁଟିଗଲି । ଯାଇ ଦେଖିଲି—ତୁମେ ନାହଁ । କାହାକୁ କିଛି ନ କହି ନ ଜଣାଇ କୁଆଡେ ଚାଲି ଯାଇଛ । ତାପରେ ଯେତେ ଦିନ କଲିକତାରେ ରହିଛି, ଖାଲି ତୁମକୁ ହିଁ ଖୋଜିଛି ।

ଏସବୁ କଥା ମୁଁ ଶୁଣିବାକୁ ଚାହୁଁ ନଥିଲି । ଜାଣିବାକୁ ଚାହୁଁ ନଥିଲି । ତଥାପି ରେଖାକୁ ବନ୍ଦ କରିବାକୁ କହିବ ସେ ଶକ୍ତି ମୋର ନ ଥିଲା, ଯେପରି ଗୋଟିଏ ଜଟିଳ ଦୁର୍ଯୋଗ ଅସହାୟତା ମୋର ଶ୍ୱାସ ନଳୀଟାକୁ ଦି ହାତରେ ଚାପି ଧରିଥିଲା ।

ରେଖା ତାର କଥା କହି ଚାଲିଛି । ତୁମେ ତ ଜାଣ "ବାପାଙ୍କର ବଦଳି ଚାକରି । ଦିନେ ତାଙ୍କ ସାଙ୍ଗରେ ପାଟନା ଚାଲିଆସିଲି । ସେଇଠି ପ୍ରଶାନ୍ତ ସହିତ ପରିଚୟ ହେଲା । କୋର୍ଟରୁ ବାହାରିବା ପରଠାରୁ ମୁଁ ହସିବା ଭୁଲି ଯାଇଥିଲି ।

ଦିନ ରାତି ଘରେ ବସି ବସି ବାନ୍ଧୁଥିଲି । ପ୍ରଶାନ୍ତ ହିଁ ମୋତେ ଘରୁ ଟାଣି ବାହାର କଲା । କହୁଥିଲା—ଏମିତି ମନମାରି ସବୁବେଳେ କାହିଁକି ବସୁଛ ? ପରେ ଦିନେ ଅକପଟରେ ତାକୁ ମୋର ସବୁକଥା କହିଲି । ଶୁଣି ସେ ହସିଥିଲା । କହିଥିଲା —ଘଟଣାଟା ହୃଦୟ ଘଟିତ । ସେଇଟା ଅନ୍ଦାଜ କରିଥିଲି କିନ୍ତୁ ଏତେ ଟ୍ରାଜେଡ଼ି ବୋଲି ବୁଝି ପାରୁ ନ ଥିଲି । ଯାହା ହେଉ ତୁମକୁ ସେହି ପୁରାତନ ସ୍ମୃତି ହାତରୁ ଫେରାଇବାକୁ ପଡ଼ିବ ।

—'ମୁଁ ତୁମକୁ ବିବାହ କରିବାକୁ ଚାହେଁ ।'

ମୁଁ ଶିହରି ଉଠିଥିଲି ।

ନା—ନା-ବିବାହ ଆଉ ନୁହେଁ ।

କିନ୍ତୁ ପ୍ରଶାନ୍ତ କିଛି ଶୁଣିଲାନି । ଆଶ୍ଚର୍ଯ୍ୟ, ପ୍ରବଳ ମଣିଷ ସେ । ତାକୁ ଦୂରେଇ ରଖିବାର ଶକ୍ତି ମୋର ନଥିଲା । ତା'ଛଡ଼ା ନିଜ ସହିତ ଲଢ଼ି ଲଢ଼ି ମୁଁ କ୍ଷତବିକ୍ଷତ ହୋଇ ପଡ଼ିଥିଲି । ସହିବାର ଶକ୍ତି ମୋର ନଥିଲା । ମନ ଭିତରେ ଯେପରି ଗୋଟିଏ ଆଶ୍ରୟ ଖୋଜି ବୁଲୁଥିଲି । ସେଥିଲାଗି ନିଜର ଅଜ୍ଞାତରେ ଦିନେ ପ୍ରଶାନ୍ତ ନିକଟରେ ଆତ୍ମସମର୍ପଣ କରିଦେଲି । କିନ୍ତୁ ସେତେବେଳେ କ'ଣ ଜାଣିଥିଲି ତୁମ ସହିତ ଏଠି ଏପରି ଭାବେ ଦେଖା ହେବ ?

କହୁ କହୁ ହଠାତ୍ ଥମିଗଲା । ହଠାତ୍ ଯେପରି ସଚେତନ ହୋଇଉଠିଲା । କିନ୍ତୁ ପରମୁହୂର୍ତ୍ତରେ ବସ୍ତୁତର ଭାବ ଯେପରି ତାର ଆଖିରେ ଆଉ ମୁହଁରେ ଆସି ଲାଗିଲା, ମୋର ଗୋଟିଏ ହାତ ଦୃଢ଼ ମୁଠିରେ ସେ ଧରି ପକାଇଲା । ରେଖାର ସମସ୍ତ ସ୍ନାୟୁ ମଧ୍ୟରେ ଯେପରି ମୋର ଏକ ବିଚିତ୍ର ଶିହରଣ ଖେଳିଗଲା । ଯେପରି ମୁଁ ଅଥର୍ବ ଓ ପଙ୍ଗୁ ହୋଇଗଲି । ମୋର ଚୈତନ୍ୟ ଲୋପ ହୋଇଗଲା । ହାତଟା କୌଣସିମତେ ମୁଁ ଟାଣି ନେଇ ପାରି ନ ଥିଲି ।

ଦୀର୍ଘ ୯ ବର୍ଷ ପରେ ତୁମ ସହିତ ହଠାତ୍ ଦେଖାହେଲା । ଏ କି ଚେହେରା ତୁମର ହୋଇଛି ? ସବଳ, ସୁନ୍ଦର, ସତେଜ ସ୍ୱାସ୍ଥ୍ୟକୁ କ'ଣ କରି ରଖିଛ ? ଗାଲ ଭାଙ୍ଗିଛି, ଆଖିରେ କାଳିମା—

ମୁଁ ଯେପରି କିଛି ଶୁଣିପାରୁନି କି ବୁଝି ପାରୁନି । ଅନ୍ଧ ଏବଂ ବଧିର ପାଲଟି ଯାଇଛି । ରେଖା ପୁଣି କହି ଚାଲିଲା—

'ଆଉ କ'ଣ' ? ଏଥର ମୁଁ କଥା କହିଲି । କିଛି ନୁହେଁ କିଛି ନୁହେଁ ସେ ମୁଣ୍ଡ ହଲେଇଲା । ତାପରେ ମୋ ହାତଟା ତା ଗାଲ ଉପରେ ରଖି ଉଚ୍ଛ୍ୱସିତ ଭାବରେ କାନ୍ଦି ଉଠିଲା । ପ୍ରଶାନ୍ତ କୁଟୀର ନିକଟରେ ଟାଙ୍ଗା ନ ପହଞ୍ଚିବା ପର୍ଯ୍ୟନ୍ତ ରେଖା କଇଁ କଇଁ ହୋଇ କାନ୍ଦୁଥିଲା । ତା କାନ୍ଦ ଦେଖି ମୋ ଆଖିର ଅଶ୍ରୁ ବାଧା ମାନିଲା ନାହିଁ । କିଛି ବୁଝି ପାରୁ ନଥାଏ । ମନଟା ଯେପରି ଅନୁଭୂତି ଶୂନ୍ୟ ହୋଇ ଯାଇଥାଏ ।

କ୍ୱାର୍ଟର ପାଖରେ ଆସି ଆଖି ପୋଛିଲି । ଗଲା ମୋର ଧରି ଆସିଥିଲା । କହିଲି— ଆଖି ପୋଛି ଦିଅ ।

ରେଖା ଆଖିରୁ ଲୁହ ପୋଛି ଟାଙ୍ଗାରୁ ଓହ୍ଲାଇ ଗଲା । ଟାଙ୍ଗାବାଲାର ଭଡ଼ା ଦେଇ ପ୍ରଶାନ୍ତର କ୍ୱାର୍ଟରରେ ପହଞ୍ଚିଲି । ରେଖା ମୋତେ ଅନୁସରଣ କଲା ।

ଭିତରକୁ ଯାଇ ଚମକି ଉଠିଲି । ଗୋଟିଏ ସୋଫା ଉପରେ ଚୁପ୍‌ଚାପ୍ ହୋଇ ବସିଛି ପ୍ରଶାନ୍ତ । ଏପର୍ଯ୍ୟନ୍ତ ସାଢ଼େ୭ଟା ବାଜିନି । ଅଥଚ ତାର ଫେରିବାର କଥା ଥିଲା ରାତି ୯ଟାରେ । ବିସ୍ମିତ କଣ୍ଠରେ ପଚାରିଲି—

—ଯିବାବେଳେ କହିଲ ରାତି ୯ଟା ପର୍ଯ୍ୟନ୍ତ ଲାଇବ୍ରେରୀରେ ରହିବ ବୋଲି— ପ୍ରଶାନ୍ତ ଉତ୍ତରଶୂନ୍ୟ । କେବଳ ହସିଲା । ତାର ହସର ଅର୍ଥ ବୁଝିବା ମୁସ୍କିଲ । ଯାହାହେଉ ସ୍ଥିର ଅପଲକ ନେତ୍ରରେ ସେ ମୋ ଆଡ଼େ ଚାହିଁ ରହିଲା । ଛୁଡି ଭିତର ମୋର କ'ଣ ହୋଇଗଲା । ପ୍ରଶାନ୍ତ ମୁହଁ ଆଡ଼େ ମୁଁ ଚାହିଁପାରୁ ନ ଥିଲି । ଆସ୍ତେ ଅନ୍ୟଆଡ଼େ ମୁହଁ ଫେରାଇନେଲି ।

ଏଥରକି ପ୍ରଶାନ୍ତର ଦୃଷ୍ଟି ଯାଇ ପଡ଼ିଲା ରେଖାର ମୁହଁ ଉପରେ । ନ ଦେଖିଲେ ସେ କେହି କହିପାରେ କାନ୍ଦି କାନ୍ଦି ତାର ମୁହଁ ଫୁଲି ଯାଇଛି । ତାର ଗାଲରେ ଅଶ୍ରୁର ଧାର ଏପର୍ଯ୍ୟନ୍ତ ବି ଲାଗି ରହିଛି ।

ମୋ ଆଡ଼େ ଅନେକ ସମୟ ପର୍ଯ୍ୟନ୍ତ ଚାହିଁ ରହିଲା ପ୍ରଶାନ୍ତ । ତା'ର ଦୃଷ୍ଟି ମୋ ଅନ୍ତରର ଏକ ଗହନ କୋଣରେ ଶିହରଣ ଆଣିଲା । ଏ ପରିବେଶ ଅସହନୀୟ ମନେ ହେଲା ।

—"ମୁଁ ବର୍ତ୍ତମାନ ଯାଉଛି । ସ୍ୱଳ୍ପ ମୁଣ୍ଡବ୍ୟଥା ହେଉଛି ।"

"—ଆଚ୍ଛା ! ସଂକ୍ଷିପ୍ତ ଶବ୍ଦଟିଏ କହି ଉତ୍ତର ଦେଲା ପ୍ରଶାନ୍ତ ।"

ସେଦିନ ଗୀତ ଏବଂ ଚନ୍ଦ୍ରିଆଲୋକିତ ଜ୍ୟୋସ୍ନା କିଛି ଖାଇବାକୁ ମନ ହେଲା ନାହିଁ । ହଜି ଯାଇଥିବା ରେଖାର ସ୍ମୃତି ପୁଣି ମୋ ମନରେ ହେଜି ଉଠିଲା । ଅଯଥା ମୋ ଉପରେ ଦୋଷ ଲଦି ମୋଠାରୁ ଛାଡ଼ପତ୍ର ନେଇ ସେ ଆଜି ପ୍ରଶାନ୍ତର ସ୍ତ୍ରୀ । ସୁଖିନୀ ହେଉ । ଭଲରେ ରହୁ । ମନ ସହିତ ଲଢ଼େଇକରି ଶେଷରେ କ୍ଷତବିକ୍ଷତ ହୋଇ ଏ ଦୁଇଟି ଶବ୍ଦ ମୋ ତୁଣ୍ଡରୁ ବାହାରିଲା । ପ୍ରଶାନ୍ତ କାଟିହାର ଯାଇଥାଏ । ଚନ୍ଦ୍ରି ଆରବନ ସକାଳେ ଫେରିବ ନାଣି ରେଖା ମୋ ବସାକୁ ଆସିଥିଲା ଘନ ଅନ୍ଧକାର ରାତ୍ରିରେ । ମୋର ହାତ ଦୁଇଟିକୁ ଧରି ନିଜର ଅପରାଧ ସ୍ୱୀକାର କରି କ୍ଷମା ଚାହିଁଥିଲା । ତା'ର ଉଦ୍‌ଗତ ଅଶ୍ରୁ ମୋର ପଦସିକ୍ତ କରୁଥିଲା । ଏବଂ ମୋର ଲୋତକ ଧାରକୁଧାର କୁନ୍ତଳରେ ବିନ୍ଦୁ ବିନ୍ଦୁ ହୋଇ ଝରି ପଡ଼ୁଥିଲା । ଏମିତି କେତେ ସମୟ ଥିଲୁ କେଜାଣି ହଠାତ୍ ମୋର ମୋହ ତୁଟିଗଲା । ଶୋଇବା ଘରକୁ ଯାଇ ଆମର ଅତୀତର ଯେତେ ଚିଠିପତ୍ର ଓ ଫଟୋ ଥିଲା, ଯାହାକୁ ମୋ ଜୀବନର ସର୍ବଶ୍ରେଷ୍ଠ ଧନ ବୋଲି ମନେ କରି ସାଇତି ରଖିଥିଲି, ଅତି ଯତ୍ନରେ ତା' ଆଗରେ ପୋଡି ପାଉଁଶ କରିଦେଲି ।

—"ତୁମେ ଫେରିଯାଅ ରେଖା । ପ୍ରଶାନ୍ତ ହୁଏତ ତୁମ ମନର ଅବସ୍ଥା ଜାଣିବା ଲାଗି କାଟିହାର ଯିବା କଥା ମିଛରେ କହିଯାଇଥାଏ । ସେଦିନ ଗୋଟି ମୋର ସାନିଧ ଲାଗି ବ୍ୟାକୁଳ ହୋଇ ଉଠିଥିଲା ରେଖା । କିନ୍ତୁ ମୁଁ ତା କରିନାହିଁ । ତା'ର ସମ୍ମାନ, ତାର ମର୍ଯ୍ୟାଦା ମୁଁ ରକ୍ଷା କରିଥିଲି । ଭୁଲ ବୁଝାମଣା ତୁମ ଭିତରେ ହେବା ଠିକ୍ ନୁହେଁ । ଯ'ହା ଯାଇଛି ତାକୁ ମୁଁ ପାଇବନି ଜାଣେ । ଯାହା ମୁଁ ହଜାଇଛି, ତାହା ମୁଁ ଖୋଜିବିନି । ପ୍ରଶାନ୍ତର ତୁମେ ସ୍ତ୍ରୀ । ତାକୁ ନେଇ ତୁମେ ସୁଖରେ ଘରସଂସାର କର । ମୁଁ ତୁମକୁ ମୁକ୍ତ ହୃଦୟରେ କ୍ଷମା ଦେଉଛି । ତୁମେ ସୁଖିନୀ ହୁଅ । ସୌଭାଗ୍ୟଶାଳିନୀ ହୁଅ । ମୋର ଜୀବନର ଲାଳସା ସରିଯାଇଛି । ମୁଁ ଆଜି ନିର୍ଜ୍ଜନ ଦ୍ୱୀପରେ ନିର୍ବାସିତ ଭଳି ବିଳାପ କରୁଛି ।

—ଯାଅ ତୁମେ ଚାଲିଯାଅ ।

ଧୀର ମନ୍ଥର ଗତିରେ ଚାଲିଗଲା ରେଖା । ଚାଲିଗଲା ମୋ ହୃଦୟ ଅନ୍ତ-ସ୍ଥଳରୁ । ଚାଲିଗଲା ମୋ ମନ ଆକାଶରୁ । ମୋ ଭଙ୍ଗୁରା ମନରୁ ।

ତହିଁ ଆରଦିନ ସେ ପାଟଣା ଚାଲିଗଲେ । ମୋତେ ଖୋଜୁଥିଲେ । କିନ୍ତୁ ମୁଁ ଜାଣିଶୁଣି ଅନ୍ୟତ୍ର ଚାଲିଯାଇଥିଲି ଆଉ ରେଖାର ସ୍ମୃତିକୁ ମନରେ ଧରି ରଖିବି ନାହିଁ ବୋଲି । ଦୁଇଦିନ ପରେ ପ୍ରଶାନ୍ତଠାରୁ ଚିଠି ପାଇଲି । ନିତାନ୍ତ ସଂକ୍ଷିପ୍ତ ।

ଭାଇ ସୁବ୍ରତ,

ଆଉ ଝୁମ୍ପୁରିଆ ଯିବ ନାହିଁ । ସେ ସଙ୍କଟରୁ ମୁଁ ଇସ୍ତଫା ଦେଉଛୁ । ଓଡ଼ିଶାରେ ନୂଆ ହୋଇ ଗଢି ଉଠୁଥିବା ଗୋଟିଏ Projectରେ ଚେଷ୍ଟା କରୁଛୁ । ତୁମେ ଦେବତା ସଦୃଶ । ତୁମ ତ୍ୟାଗ, ତୁମ ପ୍ରେମ, ତୁମ ମହନୀୟତାର ପଟାନ୍ତର ନାହିଁ ।

ମୋର ଏବଂ ରେଖାର ଶତ ସହସ୍ର ପ୍ରଣାମ ସହ ରହିଲି । ଇତି ।

ତୁମର
ପ୍ରଶାନ୍ତ

ରେଖା ସହିତ ମୋର ଆଉ ସାକ୍ଷାତ ହୋଇନି ।

ସୁବ୍ରତ ସେନ୍‌ଙ୍କ କଥା ଶୁଣୁ ଶୁଣୁ କେତେବେଳେ ଯେ ରାତି ପାହିଗଲାଣି, ଜାଣି ପାରିଲୁନି । ବଣ ପକ୍ଷୀମାନଙ୍କର ବିଚିତ୍ର କଳରବରେ ଆମ ତନ୍ଦ୍ରାଚ୍ଛନ୍ନ ମନ ଚେଇଁ ଉଠିଲା । ଦେଖିଲୁ ପୂର୍ବ ଦିଗରେ ଉଷାର ଅରୁଣିମା । ସୁବ୍ରତ ବାବୁଙ୍କ ଜୀବନ କାହାଣୀ ଆମକୁ ଏତେ ଅଭିଭୂତ କରି ରଖିଥିଲା ଯେ, ପ୍ରତ୍ୟୁଷର ସୁବାସିତ ପ୍ରାପ୍ୟ ବିସ୍ମୃତ ହୋଇଥିଲୁ ।

ଦେଖିଲୁ ସୁବ୍ରତ ସେନ୍‌ଙ୍କ ଆଖିରେ ଶ୍ରାବଣର ଧାରା । ଆମ ଚକ୍ଷୁ ମଧ୍ୟ ଲୋତକାପ୍ଲୁତ । ବାଟର ବାଟୋଇ ଆମେ । ନିଜ ପଥ ଅନୁସରିବାକୁ ପ୍ରସ୍ତୁତହେଲୁ । କିନ୍ତୁ ସୁବ୍ରତବାବୁ ମନା କଲେ—କହିଲେ—"ମୁଁ ଏକ ଭାରବାହୀ ପଶୁ । ମାଲ-ଗୋଦାମର ବଳଦ । ଆପଣମାନେ ଯେଉଁ ଦୁଇଦିନ ରହିଲେ ମୁଁ ନିଜକୁ ଅତି ସହଜ କରି ନେଇଥିଲି । ମୋ କାନ୍ଧରୁ ବୋଝ ଉତ୍ତାରି ଦେଇଥିଲି । ଆପଣମାନେ ଚାଲିଗଲେ ଏ ଜୀବନ ଅତି ଦୁର୍ବିସହ ହୋଇଯିବ । ଆପଣମାନଙ୍କ ଆଗରେ ମୋ ହୃଦୟ ଖୋଲି ମୁଁ ଏତେ ଆନନ୍ଦିତ ଯେ ଭାଷାରେ ତାହା ପ୍ରକାଶ କରି ପାରୁନାହିଁ ।

ଆଉ ଦୁଇ ଦିନ ଦିନ ରହି ଅତି ଖିନ୍ନମନା ହୃଦୟରେ ଜଣେ ବାର୍ଥପ୍ରେମୀ ଠାରୁ ବିଦାୟ ନେଇ ଆଗକୁ ବଢ଼ିଲୁ । ବିଦାୟ ବେଳର ଦୃଶ୍ୟ ଅତି ମର୍ମସ୍ପର୍ଶୀ । ଆମ ହାତ ଧରି ଝୋ ଝୋ ହୋଇ କାନ୍ଦଲେ ସୁବ୍ରତବାବୁ । ମନା କରିବା ସତ୍ତ୍ୱେ ଯାହା ପାଥେୟ ଦେଇଥିଲେ, ତାହା ଅନେକ ଦିନ ଆମକୁ ଚଳେଇ ନେଲା ।

ହାୟରେ ପୃଥିବୀ ! ହାୟରେ ମଣିଷ ! ଦୁନିଆରେ ସୁବ୍ରତ ବାବୁଙ୍କ ଭଳି ମଣିଷ ଥାଇପାରନ୍ତି ଭାବି ଆଶ୍ଚର୍ଯ୍ୟ ଯେତିକି ହେଲୁ, ଦୁଃଖିତ ଏବଂ ବ୍ୟଥିତ ହେଲୁ ତାଠାରୁ ଆହୁରି ଅନେକ । ପିବା ପୂର୍ବରୁ ରେଖାର ସ୍ମୃତିକୁ ମନରୁ ପୋଛି ଦେଇ ଏତେବଡ଼ ଅମୂଲ୍ୟ ଜୀବନକୁ ନଷ୍ଟ ନ କରି ପୁଣି ଥରେ ବିବାହ ଲାଗି ଅନୁରୋଧ କରିଥିଲୁ ।

କିନ୍ତୁ ସୁବ୍ରତବାବୁ ଅତି ବିନମ୍ର ସ୍ୱରରେ କହିଥିଲେ—ତା ହୁଏ ନା ।

ଏଠାରୁ ଅଳ୍ପ ଦୂରରେ ଜଣେ କଣ୍ଟ୍ରାକ୍ଟର ରହନ୍ତି । ଆମ ଜାତିର । ଅତି ଅମାୟିକ ଓ ଭଦ୍ର । ତାଙ୍କ କନ୍ୟା ସହିତ ପ୍ରସ୍ତାବ ଆଣିଥିଲେ ହାତକୁ ଦି ହାତ ହେବା ଲାଗି । ପିଲାଟି ମଧ୍ୟ ବିଦୁଷୀ । ସୁନ୍ଦରୀ । ଦୁହେଁ ଦୁହିଁଙ୍କୁ ଥରେ ଦୁଇଥର ମଧ୍ୟ ଦେଖିଥିଲୁ । ତାର ବ୍ୟବହାରରେ ଏ ମନ ଚହଲି ଯାଇଥିଲା । ରେଖାକୁ ଚିର ଦିନ ଲାଗି ଏ ମନ ଆକାଶରୁ ପୋଛି ଦେଇ ବନିତା (କନ୍ୟାଟିର ନାମ)କୁ ଗୃହିଣୀ କରିବାକୁ ପ୍ରସ୍ତୁତ ଥିଲି । ଏ ମନକୁ ଅଦୃଷ୍ଟ ଓ ସଜାଡ଼ି କଲି । କିନ୍ତୁ ଏଥି ମଧ୍ୟରେ ଦେଖା ପହଞ୍ଚି ଯାଇ ସବୁ ଓଲଟପାଲଟ କରିଦେଲା । ମୋର ହୃଦ୍ ବୀଣାର ତାରଟି ଛିଣ୍ଡି ଗଲା । ଜୀବନର ସୁର ହେଲା ବେସୁରା । ବନିତାକୁ ଭୁଲିଗଲି । ନିଜକୁ ଭୁଲିଲି । ଆଜି ମୁଁ ନିଃସ୍ୱ, ନିଃସହାୟ । ସବୁଥାଇ କିଛି ନାହିଁ ।"

ତାଙ୍କର ଆଖି ଛଳ ଛଳ । ଆମ ଚକ୍ଷୁ ମଧ୍ୟ ସଜଳ । ବଡ଼ କଷ୍ଟରେ ବିଦାୟ ନେଲୁ । ଆମେ ଆମର ପଥ ଧରିଲୁ । କିଛି ଦିନ ପୂର୍ବରୁ ଭୟାବହ ଭୂମିକମ୍ପ ହୋଇ ଏ ଅଞ୍ଚଳକୁ ଛାରଖାର କରି ଦେଇଥିଲା । ଗ୍ରେଟ ଗ୍ରେଟ ପଲ୍ଲୀ ଅଞ୍ଚଳ ଦେଇ ଆମେ ଚାଲିଛୁ । କାନ୍ଧରେ ଡାର୍ଗା, ଖୁଣ୍ଟିର ଝୁଲୁଛି ଅଣ୍ଟାରେ ।

ଠିକ୍ ସନ୍ଧ୍ୟାବେଳେ । ପିଲାଙ୍କର ଭାବି ଗୋଟିଏ ଗାଁରେ ଲୋକ ଆମକୁ ଘେରିଗଲେ । ଧକ୍କା ଉପରେ ଧକ୍କା, ଆପଡ଼ ଉପରେ ଆପଡ଼ । ଜଣେ ଦୁଇ ଜଣ ଧସେଇ ଆସିଲେ । ମାରି ପକେଇଥାନ୍ତେ । ହଠାତ୍ ଜଣେ ଭଦ୍ରଲୋକ ସାଇ-କେଲରେ ଆସି ପହଞ୍ଚିଗଲେ । ସେତେବେଳକୁ ଆମ ଉପରେ ମାଡ଼ ଚାଲିଛି । ଆମ କଥାକୁ କେହି ବିଶ୍ୱାସ କରୁ ନ ଥାନ୍ତି । ସେ ବିଚରା ସାହସ କରି ସେଇ ଭିଡ଼କୁ

ପଣି ଆସି ଆମ ଦୁହିଁଙ୍କୁ ଟାଣି ଆଣିଲେ । ଆମେ ଭାରତ ଭ୍ରମଣକାରୀ । ଜଗନ୍ନାଥଙ୍କ ଦେଶରୁ ଆସିଛୁ । ଗୁଲ ଗୁଲ ବୁଲୁଛୁ ଜାଣି ଅତ୍ୟଧିକ ଆନନ୍ଦିତ ହେଲେ । ଗାଁ ଲୋକଙ୍କୁ ବୁଝାଇ ଦେଲେ । ସମସ୍ତେ ଯେପରି ନିଜର ଆଚରଣରେ ଲଜ୍ଜିତ ଓ ଦୁଃଖିତ ହେଲେ । କେହି କେହି ପାଦତଳେ ପଡ଼ିଗଲେ । ହାତଧରି ଅନେକ କ୍ଷମା ମାଗିଲେ ।

କିନ୍ତୁ ମାଡ଼ର ଯନ୍ତ୍ରଣା······

ଯେଉଁ ଭଦ୍ର ବ୍ୟକ୍ତି ଜଣକ ଆମର ଜୀବନ ରକ୍ଷା କଲେ ସେ ଜଣେ ରିଲିଫ ଶିବିରର ପରିଚାଳକ । ସେଠାକାର ବିଷ୍ଣୁପୁର କଂଗ୍ରେସ କର୍ମୀ । ଲୋକଙ୍କର ତାଙ୍କ ଉପରେ ଅଟଳ ବିଶ୍ୱାସ, ଅଗାଧ ଆସ୍ଥା । କେଦାର ପାଣ୍ଡେ ତାଙ୍କ ନାମ । ଅତି ଆଗ୍ରହ ସହକାରେ ରିଲିଫ୍ କ୍ୟାମ୍ପକୁ ଡାକନେଲେ । ଲୋକମାନଙ୍କ ବ୍ୟବହାର ଲାଗି ସେ ବଡ଼ ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଅତି ଅନୁତପ୍ତ ହେଲେ । ବାସ୍ତବିକ ଦୁଇଦିନ ପୂର୍ବରୁ ଜଣେ ୧୦/୧୨ ବର୍ଷର ପିଲାଟିଏ କୁଆଡ଼େ ଚାଲି ଯାଇ ଥିଲା । ନିକଟରେ ଭୂମିକମ୍ପରେ ଭାଙ୍ଗି ଯାଇଥିବା ଗୋଟିଏ ନଦୀବନ୍ଧ ମରାମତି ହୋଇଥିଲା । ଲୋକଙ୍କ ଧାରଣା, ସେ ପିଲାଟିକୁ ଧରିନେଇ ସେଠାରେ ବଳି ଦିଆ ଯାଇଛି ।

ଆମେ ସେହି ଅଞ୍ଚଳରେ ବୁଲୁଥିବା ବେଳେ ସେ ପିଲାଟିର ମାମୁଁ ମୁଙ୍ଗେର ନେଇ ଯାଇଥିଲା । ଫେରିଲାବେଳେ ଭଣଜାକୁ ସ୍କୁଲରୁ ତାଙ୍କ ଘରକୁ ନେଇ ଯାଇ ଥିଲା । ତିନି ଚାରିଦିନ ପରହସ୍ତ କୋଶ । ଏମିତି ଜନରବ ରଟିଗଲା ଯେ ତାର ଦାଉ ଆମକୁ ସହିବାକୁ ପଡ଼ିଲା । ବିହାରୀମାନେ ଏମିତି ଶାନ୍ତ । କିନ୍ତୁ କୌଣସି ଭୁଲ ଧାରଣା ନେଇ ଥରେ ରାଗିଗଲେ ଆଉ ଜୀବନ ରଖିବେ ନାହିଁ । ଆମ ଜୀବନ ମଧ୍ୟ ଯାଇଥାନ୍ତା । ଜଗନ୍ନାଥ ସହାୟ ହେଲେ ।

ମୁଙ୍ଗେରରେ ପହଞ୍ଚିଲୁ । ଧ୍ୱସ୍ତ ବିଧ୍ୱସ୍ତ ମୁଙ୍ଗେର ସହର ପୁଣି ମୁଣ୍ଡ ଟେକୁଛି । ପୁଣି ନବ ନିର୍ମାଣ ପଥରେ ଆଗେଇ ଚାଲିଛି । ଲୋକେ ଅତୀତକୁ ଭୁଲି ଭବିଷ୍ୟତକୁ ଗଢ଼ିବାରେ ଲାଗିଛନ୍ତି । ଠାଏ ଠାଏ ରିଲିଫ୍ କ୍ୟାମ୍ପ୍ । କର୍ଣ୍ଣଧାର ରାଜେନ୍ଦ୍ର ପ୍ରସାଦ, ଜୟପ୍ରକାଶ ନାରାୟଣ, ବିନୋଦ ଝା, ରାମକୃଷ୍ଣ ବେଣୀପୁରୀ ଆଦି ।

ଖାଦ୍ୟ ବଦଳରେ କାମ ଚାଲିଛି । ଧର୍ମଶାଳାରେ ରହିଲୁ । ଦଶହରା ବେଳ । ବଙ୍ଗଳା ଓ ଓଡ଼ିଶାରେ ଯେପରି ଦଶହରାକୁ ଉପଭୋଗ କରାଯାଏ, ବିହାରରେ ସେପରି ନାହିଁ । ତଥାପି ବଙ୍ଗାଳୀମାନେ ଯେଉଁଠି ଥାନ୍ତି, ଅତି ଜାକ-ଜମକରେ ଦୁର୍ଗାପୂଜା ହୁଏ ।

ମୁଙ୍ଗେର କାଳୀବାଡ଼ିରେ ପୂଜା ଚାଲିଛି । ବଙ୍ଗଳାରୁ ଗୋଟିଏ ଅପେରା ଦଳ ଆସି ଅଭିନୟ କରୁଥାନ୍ତି । ଆଗେ ବଙ୍ଗଳା ଅପେରାରେ ପୁଅମାନେ ଝିଅ ଭୂମିକାରେ ଅଂଶ ଗ୍ରହଣ କରୁଥିଲେ । ଓଡ଼ିଶାରେ ମଧ୍ୟ ସେହି ରୀତି ଏପର୍ଯ୍ୟନ୍ତ ପ୍ରଚଳିତ ଅଛି । କିନ୍ତୁ ବର୍ତ୍ତମାନ ବଙ୍ଗଳା ଅପେରାର ଢାଞ୍ଚା ବଦଳି ଗଲାଣି । ବଙ୍ଗଳା ଅପେରା ବର୍ତ୍ତମାନ ବ୍ୟବସାୟୀ ରଙ୍ଗମଞ୍ଚ ଏବଂ ସିନେମାକୁ ଟପି ଗଲାଣି । ଭଲ ଭଲ ଅଭିନେତ୍ରୀମାନେ ଆସି ନାରୀ ଭୂମିକାରେ ଅଭିନୟ କଲେଣି । ଚଳଚ୍ଚିତ୍ରଜଗତର ଅନେକ ସ୍ୱନାମଧନ୍ୟ ଶିଳ୍ପୀଙ୍କ ପୃଷ୍ଠପୋଷକତାରେ ବଙ୍ଗଳା ଅପେରା ଅନେକ ଦୂର ଆଗେଇ ଗଲାଣି । ଏହା ଅଶୁଭ ନୁହେଁ, ଶୁଭ ।

ମୁଙ୍ଗେରରେ ଅଭିନୟ କରୁଥିବା ଦଳର ବ୍ୟଙ୍ଗଶିଳ୍ପୀ ହଠାତ୍ ଭୀଷଣ ଅସୁସ୍ଥ ହୋଇ ପଡ଼ିଲେ । ସେଦିନ ସେମାନେ ଯେଉଁ ଅଭିନୟ କରିବେ, ସେ ଅଭିନୟ ଭଲ ହେବନି । ଅଥଚ ତାଙ୍କର ସ୍ଥାନ ପୂରଣ ଲାଗି ଅନ୍ୟ କେହି ନାହିଁ । ପ୍ରମାଦ ଗଣିଲେ ଦଳର ସମସ୍ତେ । ତାଙ୍କ ଯଦିଓ ଜ୍ୱର ହୋଇ ଯାଇଥିଲା । ସମସ୍ତେ ବିଷଣ୍ଣ ଏବଂ ବିବ୍ରତ ହୋଇ ବସିଛନ୍ତି । କ'ଣ କରାଯିବ ରାତିକୁ ? ହାଣ୍ଡବିଲ୍ ବଣ୍ଟା ସରିଲାଣି । ପୋଷ୍ଟର ମରା ସରିଲାଣି । ମୁଁ ଆଗେଇ ଗଲି । କହିଲି—ଦେଖନ୍ତୁ, ଏତେ ଅଳ୍ପ ସମୟ ମଧ୍ୟରେ ତ ପାର୍ଟ ମୁଖସ୍ତ କରିପାରିବିନି ମୁଁ । ଆପଣ ପଢ଼ି ଯାଆନ୍ତୁ, ମୁଁ ଶୁଣି ଯାଉଛି । କେଉଁ କେଉଁ ସିନ୍‌ରେ ଆସିବାକୁ ପଡ଼ିବ, କହିଯାନ୍ତୁ । ମୁଁ ମୋ ମନକୁ ଅନେକ କଥା ପୂରାଇ କହିଯିବି । ଆପଣଙ୍କ ସହ ଶିଳ୍ପୀ ମାନେ ଯେପରି ଧରିନେଇ ଆଗେଇ ଯିବେ । ମୋତେ ଅପେକ୍ଷା କରିବେନି ।

'ମୁଁ ଓଡ଼ିଆ ହେଲେ ମଧ୍ୟ ବଙ୍ଗଳାରେ ପ୍ରାୟ ଏକ ବର୍ଷ ସ୍କୁଲ ବଙ୍ଗଳା ପଢ଼ିଛି ଏବଂ କହି ଜାଣିଛି, ଯାହା ଆପଣମାନେ ଅନୁମାନ କରୁଥିବେ । ମନରେ ଅନେକ ସନ୍ଦେହ ରଖି ପ୍ରଯୋଜକ ଓ ପରିଚାଳକ ଦୁହେଁ ହଁ ମାରିଲେ । ରିହର୍ସାଲ୍ ହେଲା । ଲୋକ ହସାଇବାରେ ମୋର ଅସମ୍ଭବ ଦକ୍ଷତା ଦେଖି ଦଳର ପ୍ରତ୍ୟେକ ପୁଲକିତ ହୋଇ ଉଠିଲେ । ପ୍ରତ୍ୟେକ ଦୃଶ୍ୟରେ ମୁଁ ବିଭିନ୍ନ ପ୍ରକାରର ହାସ୍ୟରସ ପରିବେଷଣ କଲି । ଗୋଟିଏ ଦଳକୁ ବିପଦ ମୁଖରୁ ବଞ୍ଚାଇ ଏବଂ ନିଜର ପ୍ରତିଭା ପ୍ରତିପାଦିତ କରିବାର ଏକ ସଙ୍କଳ୍ପ ମୁଁ ନେଲି । କୃତକାର୍ଯ୍ୟରେ ଭୂରି ଭୂରି ପ୍ରଶଂସା ଏବଂ ଅକୃତକାର୍ଯ୍ୟରେ ଜୋତା ମାଡ଼ । କ୍ରମଶଃ ଅଭିନୟର ସମୟ ପାଖେଇ ଆସିଲା । ମା' ଦୁର୍ଗାଙ୍କୁ ଓ ଜଗନ୍ନାଥ ଠାକୁରଙ୍କୁ ଶତ ସହସ୍ର ପ୍ରଣାମ ଜଣାଇ ଅଭିନୟ ଆରମ୍ଭ କଲି । ଜଣେ କୁଶଳୀ କଳାକାର ଭାବେ ନିଜକୁ ସେଦିନ ମୁଁ ଲୋକଙ୍କ ଆଗରେ ଦେଖାଇଲି । ମୋ ଅଭିନୟରେ ସମସ୍ତେ ଏତେ ମୁଗ୍ଧ,

ଓ ଏତେ ଉଲ୍ଲସିତ ହୋଇ ପଡ଼ିଲେ ଯେ କହି ହେବନି । ପାଟିର ବଙ୍ଗ ଶିଳ୍ପୀର ଅଭିନୟରେ କୃତ୍ରିମତା ଥିଲା । ମୋର ଅଭିନୟରେ କାକିଆ ଠାକୁରଙ୍କ ମନେ ମନେ ଚିନ୍ତା କରିଥିଲେ । ସାବଲୀଳତାରେ ଟିକିଏ ଅପ୍ରାକୃତିକତାର ସ୍ଥାନ ନ ଥିଲା । ବଙ୍ଗାଳୀମାନେ ହସି ହସି ବେଦମ୍ ହେଲେ । ବିହାରୀମାନେ ତହିଁରୁ ବାଦ୍ ଯାଇ ନାହାନ୍ତି । ନାଟକ ସରିଲା । ପୋଷାକ ବଦଳାଇ ମୁଁ ଧୀର ମନ୍ଥର ଗତିରେ ଧର୍ମ-ଶାଳାକୁ ଫେରି ଆସିଲି । କେହି ଜାଣି ପାରିଲେ ନାହିଁ । ଯିଏ ଏ ଦୀର୍ଘ ୫ ଘଣ୍ଟା ଧରି ସେମାନଙ୍କୁ ହସେଇ ହସେଇ ଗଳିଗଲା, ଆମର ବ୍ୟଙ୍ଗ ଶିଳ୍ପୀ ତ ଏମିତି ନ ଥିଲା ! ଆଜି ଏ ପରିଣତ ବୟସରେ ଏ କଥା ଲେଖିବାକୁ ଯାଇ ସେଦିନ କ'ଣ କରିଥିଲି ଭାବି ବିସ୍ମୟ ହେଉଛି ଯେତିକି ତା ଠାରୁ ମୁଁ ନିଜେ ହସିଛି ବେଶୀ । ଆପଣମାନେ ହୁଏତ ଏ ସବୁକୁ ଅତିରଞ୍ଜିତ କିମ୍ବା ମିଥ୍ୟା ବର୍ଣ୍ଣନା ଗୁଡ଼ୁଣ୍ଡ ବୋଲି ଭାବୁଥିବେ । କିନ୍ତୁ ପ୍ରକୃତରେ ଯାହା ଘଟିଗଲା, ତାହା ମୋର ଏକାନ୍ତ ନିଜ ଅନୁଭୂତ ।

ଅପେରାର ପରିଚାଳକ ମୋର ହାତ ଧରି ପକାଇ ଅତି ସ୍ନେହ ପ୍ରକାଶ କଲେ ଏବଂ ଗଦ୍ ଗଦ୍ କଣ୍ଠରେ କହିଲେ—'ବାବୁ ତୁମେ ମୋର ଯାହା ଉପକାର କଲ, କ'ଣ ଦେଇ ସେ ଋଣ ପରିଶୋଧ କରିବି ? ମୋ ତୁଣ୍ଡରେ ଭାଷା ନାହିଁ । ମୋ ଦଳର ଇଜ୍ଜତ, ସମ୍ମାନ, ତୁମେ ଆଜି ମାଟିରେ ମିଶାଇ ଦେଇନ । ଏ ଗୌରବ କେବଳ ତୁମରି ଯୋଗେହିଁ ସମ୍ଭବ ହେଲା । ପଚିଶ ଟଙ୍କା ଗଣେଶ ବାବୁଙ୍କ ପକେଟ୍‌ରେ ଅତି ଶଙ୍କିତ ଭାବରେ ଗୁଞ୍ଜି ଦେଲେ ପିତୃପ୍ରତିମ ଗୌରଦାସ ଅଧିକାରୀ । କାଲେ ରାତି ପାହିଲେ ପୁଣି ଅଭିନୟ କରିବାକୁ ଅନୁରୋଧ କରିବେ । ତେଣୁ ଅଳ୍ପ ରାତି ଥାଇ ସେ ସ୍ଥାନ ପରିତ୍ୟାଗ କରି ଆଗେଇଲୁ ।

ବିଗତ ୫୦ ବର୍ଷର ଏକ ବିରାଟ ଐତିହ୍ୟ ନେଇ ମୁଁ ବୁଲୁଛି । କେତେ ହସ, କାନ୍ଦ, ଆଶା, ନିରାଶା, ଭଙ୍ଗା, ଗଢ଼ା ଯେ ଦେଖିଛି, ତାର କଳନା ନାହିଁ । ଆଉ ଦିନକର ଘଟଣା ମୁଁ ନିମ୍ନରେ ଉଲ୍ଲେଖ କରୁଛି ।

ବିହାରର ଆରା ଜିଲ୍ଲାରେ ବୁଲୁଥାଉ । ଶ୍ୟାମ୍ ସେରଜଙ୍ଗ ନାମକ ଏକ ଗ୍ରାମରେ ପହଞ୍ଚିଲୁ । ଉତ୍ତର ପଶ୍ଚିମାଞ୍ଚଳର ଶୀତ ଓ ଖରା ଯିଏ ଅଙ୍ଗେ ନିଭାଇଛି, ସେ ହିଁ କେବଳ ଜାଣିଛି । ସନ୍ଧ୍ୟା ମାଡ଼ି ଆସୁଛି ପ୍ରବଳ ଶୀତକୁ ସାଙ୍ଗରେ ନେଇ । ବଡ଼ ଗାଁ । ଦେଖିଗଲୁ । ଏଠାକାର ଯେତେ ଭୂ-ସମ୍ପତ୍ତିର ମାଲିକ, ଜମିଦାର ସମସ୍ତେ ରାଜପୁତ । ଠାକୁର ସାହେବ ବୋଲି ତାଙ୍କର ପ୍ରଜାମାନେ ସମ୍ବୋଧନ କରିଥାନ୍ତି । ବଡ ହାବେଲି (ଘର) । ଠାକୁର ସାହେବ ଏକ ବଡ଼ ତକ୍ତପୋଷ

ଉପରେ ମୋଟା ଗଦି ବଚ୍ଛ ଦ'ଟା ମାଣ୍ଡିକୁ ଆଉଜି ବସିଥାନ୍ତି । ଗୋଟିଏ ଛୋଟ ଟୁଲ୍ ଉପରେ ହୁକା ଥାଏ । ତାଠୁଁ ଦୁଇ ହାତର ନଳୀ ଲମ୍ବି ଆସିଥାଏ ତାଙ୍କ ମୁହଁଯାଏ । ଗୁଡ଼୍ ଗୁଡ଼୍ ଆବାଜ କରି ହୁକା ଟାଣୁଥାନ୍ତି । ଧୀରେ ଧୀରେ ଧୂଆଁ ଛାଡ଼ୁଥାନ୍ତି । ଗୋଟିଏ ଦାମିକା କାଶ୍ମୀରି ଶାଲ୍ ଦେହ ଉପରେ ପଡ଼ିଥାଏ । ଜଣେ ଖାମ୍ବେଦାର ଆସ୍ତେ ଆସ୍ତେ ପାଦ ମର୍ଦ୍ଦନ କରୁଥାଏ । ଗୋଲ ମୁହଁ । ହାତ ଦୁଇଟି ବଳଲ୍ଭଳ । ଦୀର୍ଘ ଋଜୁ ଅଙ୍ଗ । ଗୌର ବର୍ଣ୍ଣ । ମୁହଁରେ କଞ୍ଚା ପାଚିଲା ବଡ଼ ନିଶ । ହଠାତ୍ ଦେଖିଲେ ମାତ୍ରେ ମନ ଦବିଯିବ । ଶଙ୍କି ଯିବ । ପାଖରେ ଗୋଟିଏ କୁକୁର ଶୋଇଛି ଚେନ୍‌ରେ ବନ୍ଧା ହୋଇ । ତଳେ ଲମ୍ବ ବେଞ୍ଚଟାଏ ପଡ଼ିଛି । ଦୁଇ ଚାରିଜଣ ତୋଷାମଦକାରୀ 'ଜୀ ହାଁ, ଅନ୍ନଦାତା' ବୋଲି କହୁଥାନ୍ତି ।

ଆମେ ଠାକୁର ସାହେବଙ୍କ କିଛି ଦୂରରେ ଯାଇ ଠିଆ ହେଲୁ । କୁକୁର ଆମକୁ ଦେଖି ଭୁକି ଉଠିଲା । ଜଣେ ନୌକର ଦୌଡ଼ି ଆସିଲା ଆମ ଆଡ଼େ । ପ୍ରଶ୍ନ କଲା—କୌନ୍ ହୋ ତୁମ ଲୋଗ୍ ? 'ହାମ୍ ପରଦେଶୀ' । ବନ୍ଦ୍ ହୋଇଗଲା ହୁକା ଟଣା । ଦୁଇ ଜଣ ପରଦେଶୀ ଏ ସନ୍ଧ୍ୟାରେ, ଏପରି ବିଚିତ୍ର ବେଶରେ, ସମସ୍ତଙ୍କୁ ଚକିତ କଲା ।

ଠାକୁର ସାହେବ ନିର୍ଦ୍ଦେଶ ଦେଲେ—'ଲଛମନ !' ଇଧର ବୋଲାଓ । ପାଖକୁ ଗଲୁ । ସ୍ଥିର ଗମ୍ଭୀର କଣ୍ଠରେ ପ୍ରଶ୍ନ ହେଲା—କୌନ୍ ହୋ ଆପ୍‌ଲୋଗ ? କାହାଁ କେ ହୋ ? କ୍ୟା ଚାହାତେ ହୋ ?

—"ହମ ପୁରୀ ଜଗନ୍ନାଥ ଜୀ କୀ ଦେଶ୍ ସେ ଆୟେ ହେଁ । ପୈଦଲ ମେଁ ମୁସାଫିର୍ କର୍ ରହେ ହେଁ ।" —"ପ୍ରାନ୍ତ ପ୍ରାନ୍ତ୍ ମେଁ ରହନ୍‌ସହନ ରଓ୍ୱାଜ ଅପ୍‌ନେ ଡାଏରୀ ମେଁ ଲେଖ୍‌ତେ ହେଁ ? ଐତିହାସିକ ଘଟନା ବଲୀ ଭି । ଏକ୍ ପୁସ୍ତକ ଛପାୟେଁଗେ । ସାଥ୍ ସାଥ୍ ଭଗବାନ୍ ଜଗଦୀଶ୍ କୀ ଚନ୍ ଗାଥା ଭୀ କୀର୍ତ୍ତନ କରତେ ହେଁ ।" "ସାବାସ୍ । ଆଇଏ, ଆଇଏ, ବୈଠିଏ । ଇତନେ କମ୍ ଉମର୍‌ମେ ଆପ୍ ଲୋଗ୍ ଯୋ କାମ୍ କରତେ ହେଁ, ୱେ କୋଇ ମାମୁଲି ବାତ ନେହିଁ ହୈ । ଆପ୍ ଲୋଗ୍ କା ଦର୍ଶନ୍ କରନା ବଡ଼ା ସୌଭାଗ୍ୟ କି ବାତ୍ ହୈ—"

ଅତି ଗଦ୍ ଗଦ୍ କଣ୍ଠରେ ଠାକୁର ସାହେବ କହି ଚାଲିଲେ ।

—'ଆପ୍ ବ୍ରାହ୍ମଣ ହୈ ?'

ଗଣେଶ ବାବୁ କହିଲେ—'ୟେ ହୈ ବ୍ରାହ୍ମଣ ପଣ୍ଡିତ, ଔର ମେଁ ଇନ୍‌କେ ବନ୍ଧୁ କାୟସ୍ଥ ।'

ବ୍ରାହ୍ମଣ । ପୁଣି ପୁଣିବ୍ର ଆସିଛୁ । ଠାକୁର ସାହେବ ନଜର ସବୁ କିଛି ଭୁଲି ମୋ ପାଦ ତଳେ ପଡ଼ିଗଲେ । ଏଠାରେ କହିରଖେଁ—ଆସାମ ଗୁଛିବା ପରେ ଜାତି ନେଇ ଆମକୁ ବଡ଼ ମୁସ୍କିଲ୍‌ରେ ପଡ଼ିବାକୁ ହେଲା । ତେଣୁ ମୁଁ ପଇତା ପକେଇଲି । କିନ୍ତୁ ଗଣେଶ ବାବୁ ଗୀତାର ସେହି ପଦକ 'ସ୍ୱଧର୍ମେ ନିଧନ ଶ୍ରେୟଃ', ପର ଧର୍ମ ଭୟାବହଃ' ନୀତି ଧରି ରଖିଲେ । ଫଳରେ ମୁଁ ହେଲି ପୂଜିତ । ସେ ହେଲେ ବର୍ଜିତ । ଖୁବ ଭୟ ଲାଗୁଥାଏ ।

ରାତିରେ ଜଗନ୍ନାଥଙ୍କ ଗୁଣକୀର୍ତ୍ତନ ହେବ ବୋଲି ଗ୍ରାମବାସୀଙ୍କୁ ଜଣାଇ ଦିଆଗଲା ! ଠାକୁର ସାହେବଙ୍କର କିଛି ଅଭାବ ନାହିଁ । ୮/୧୦ଟି ମଇଁଷି ପ୍ରାୟ ମହଣେ ଖଣ୍ଡେ କ୍ଷୀର ଦିଅନ୍ତି । ଘିଅ, ଦୁଧ, ଦହିଆଦି, ଛେନା ପ୍ରଚୁର । ଆମ ଆଗମନ ଉପଲକ୍ଷେ ଏକ ବିରାଟ ଭୋଜନର ଆୟୋଜନ ହୋଇଥିଲା । ଭଲ ଘିଅର ପୁରୀ, ତରକାରୀ ଓ ପାୟେସ । ହରିକୀର୍ତ୍ତନ ଲାଗି ମଞ୍ଚ ବ୍ୟବସ୍ଥା ହେଲା ।

ଜଗନ୍ନାଥଙ୍କ ଛବିଟିଏ ଆମ ପାଖରେ ଥାଏ । ଗୋଟିଏ ସୁସଜ୍ଜିତ ଚୌକିରେ ରଖାଗଲା । ଗଣେଶବାବୁ କହୁଥାନ୍ତି "ଜଗନ୍ନାଥଙ୍କ ଗୁଣ କୀର୍ତ୍ତନ କିମ୍ବ କର । ପାଇବ ମଜା । କ'ଣ ଜାଣ ତୁମେ ଜଗନ୍ନାଥଙ୍କ ବିଷୟରେ ? ମନେ ମନେ କେବଳ ସେହି କାଳିଆ ଠାକୁର ଚରଣ ତଳେ ନିଜକୁ ଅର୍ପି ଦେଇ ଆରମ୍ଭ କଲି । ସେତେ-ବେଳେ ମୋର କଣ୍ଠ ଅତି ମଧୁର ଥିଲା ।

ପ୍ରଥମେ ଆରମ୍ଭ ହେଲା—କବୀରଙ୍କର ରଚନା—

"ଠାକୁର ଭଲେ ବିରାଜେ ଜୀ,
ଓଡ଼ିଆ ଜୀ ଜଗନ୍ନାଥ ପୁରୀ ମେଁ,

ତାପରେ—ଜୟ ଜଗଦୀଶ ହରେ ।
ଭକ୍ତ ଜନୋଁ କେ ସଙ୍କଟ ପଲମେଁ ଦୂର କରେ ।"

ତାପରେ ଅନୁସାର ବିସର୍ଗ ଦେଇ କେତେକ ଓଡ଼ିଆ ଗଡ଼ଗଡ଼ମାଳି ସଂସ୍କୃତ ନାମରେ ଚଲାଇ ଦେଲି । ତା ପରେ ମିଛ ସତ କଥା କହି ମଧ୍ୟରେ ଭୋଳା ଇତିହାସ କହିଲି ଶୁଦ୍ଧ ହିନ୍ଦୀରେ । ଅବଶ୍ୟ କେତେକ ବ୍ୟାକରଣଗତ ଦୋଷ ରହି ଯାଉଥାଏ । ଯାହାର ନାମ ଧାରଣ କରି ଆରମ୍ଭ କରିଥିଲି, ତାହାର ନାମଧରି ଶେଷ କଲି । ଜନତା, ମୁଗ୍ଧ ସ୍ତବ୍ଧ । ସମସ୍ତଙ୍କ ତୁଣ୍ଡରେ ଜୟ ଜଗନ୍ନାଥ କି ଜୟ । ଅରେ ନୁହେଁ, ବହୁଥର ।

ଖାଦ୍ୟପେୟର ବିସ୍ତର ଆୟୋଜନ । ଶୟନର ମଧ୍ୟ ବଢ଼ିଆ ବ୍ୟବସ୍ଥା । ଠାକୁର ସାହେବ ଉଆସକୁ ଚଳେ ଗଲେ । ଆମକୁ ତାଙ୍କର ଅତିଥିଶାଳରେ ରହିବାକୁ ପଡ଼ିଲା । କିନ୍ତୁ ମୁସ୍କିଲ ହେଲା ଗଣେଶବାବୁଙ୍କର । ତାଙ୍କ ବାସନ ମାଜିବାକୁ ନୌକର ମନା କରିଦେଲା । କନକନିଆ ଶୀତରାତିରେ ୫°।୬° ହାତ କୂଅରୁ ଗୋଟାଏ ଫୁଟା ବାଲ୍‌ଟିରେ ପାଣି କାଢ଼ି କାଢ଼ି ସେ ନସ୍ତାନାବୁଦ ହୋଇଗଲେ । ଅଟା ଯେଉଁଥିରେ ଦଳା ହୋଇଥିଲା, ସେଇଥିରେ ତାଙ୍କୁ ଖାଇବାକୁ ଦିଆଗଲା । ଫୁଟା ବାଲଟିରେ କୂଅରୁ ପାଣି କାଢ଼ି ଉପରକୁ ଆଣୁ ଆଣୁ ଆଉ କିଛି ନ ଥାଏ । ସ୍ୱଲ୍ପଶ ଚତୁର କଥା କହି କହି ତାଙ୍କ ହାତରେ ସମସ୍ତ ବାସନ ମଜାଇ ଦେଲା କୌଶଳୀ ନୌକର । ଅଣ୍ଟା, ପିଠି ତାଙ୍କର ଲାଗି ଯାଉ ଥାଏ । ବାହାରର ମାଘ ମାସର ଶୀତ । ଅତି କଷ୍ଟରେ ଆସି ଶୋଇପଡ଼ିଲେ ।

ସକାଳେ ଠାକୁର ସାହେବଙ୍କ କାନକୁ କଥାଟା ଗଲା । ସେତେବେଳେ ଅତିଥି । ତାଙ୍କ ହାତରେ ବାସନ ମଜାଇବାଟା ଅତି ଅନ୍ୟାୟ । ନୌକରକୁ ଡାକି ଖୁବ୍ ଗାଳି ଦେଲେ ଏବଂ ଏହାର ଯେପରି ପୁନରାବୃତ୍ତି ନ ହୁଏ, ତାଗିଦ କରି ଦେଲେ । ଦୁଇଟି ଦିନ ଅତି ଆରାମରେ କଟିଲା । ଗ୍ରାମବାସୀମାନଙ୍କ ପ୍ରଦତ୍ତ ଦକ୍ଷିଣା ଏବଂ ଠାକୁର ସାହେବଙ୍କର ଦେୟ ପାଥେୟ ନେଇ ଫେରିଲୁ । ଠାକୁର ସାହେବଙ୍କର ଦ୍ରୁତଗାମୀ ଟାଙ୍ଗାରେ ତାଙ୍କର ସୀମା ପର୍ଯ୍ୟନ୍ତ ଆସିଥିଲୁ । ସେଠାରୁ ପଦଯାତ୍ରା ।

ତହିଁ ଆରଦିନ ଗଣେଶ ବାବୁ ପଇତା ପିନ୍ଧିଲେ । ବାଜ୍‌ପାର ଅଳ୍ପବାଟ ଅଛି, ପିପାସା ଶୋଷ ହେଲାଣି । ଗାଁର କିଛି ଦୂରରେ କୂଅଟିଏ । ଗୋଟିଏ ୧୬।୧୮ ବର୍ଷର ସୁନ୍ଦରୀ ଝିଅ ପାଣି କାଢ଼ୁଛି । ଦେହରେ ଲାବଣ୍ୟର ଝଲକ । ଲୁଗାପଟାକୁ ଯେତେ ଶୃଙ୍ଖଳିତ କଲେ ମଧ୍ୟ ଯୌବନ ମାନୁନି । ସେତେବେଳେ ଆମେ ୨୨।୨୩ ବର୍ଷର ଯୁବକ । ସଙ୍କୋଚ ତଥା ସନ୍ଦର୍ପଣରେ ଶୋଷ ହେବୁ ଫେରିଲୁ । ପାଣି ଢ଼ାଳିଦେଲା ଆମ ଓଷ୍ଠର ବଟଳରେ ଝିଅଟି । ଆଞ୍ଜୁଳିରେ ଜଳ ଭରିଦେଲା । ଆକଣ୍ଠ ପାନକଲୁ ଜଳ ।

—'ବାବୁଜି ! ମୈଁ ଅଛୁତ୍ ହୁଁ ।

—'ତୁମ୍ ଅଛୁତ୍ କନ୍ୟା ?'

କିନ୍ତୁ ଏତେ ସୁନ୍ଦରୀ ହାତରେ ପାଣି ଯେ ଆମର ତୃଷାର୍ତ୍ତ ପ୍ରାଣକୁ ଆର୍ଦ୍ର କଲା !

"ଆପ୍ ତୃଷାର୍ତ୍ତ ଥେ। ଇସିଲିଏ ମନା ନହିଁ କି। ହମ୍ ଅଛୁତ୍ କେ ଲିଏ ଏ କୂଆଁ ସରକାର ନେ ବନ୍‌ୱାଇ ହେଁ। ଗାଁଓ ସେ ଦୂର। ଆପ୍ ଜଲଦି ନିକଲ ଯାଇଏ। ଯବ କୋଇ ଦେଖେଗା, ତବ୍ ମୁସ୍କିଲ୍ ହୋ ଯାଏଗା। ଆପ୍‌କୋ ତୋ ଗାଓଁ ସେ ନିକାଲ ଦେଗେଁ। ମୁଝେ ମେରା ପିତା ମାତା ମାରେଁଗେଁ।"

ତାର ଗାଉଁଲି ଭାଷାରେ ଝିଅଟି ଏତିକି କହି ଅତି ସନ୍ତର୍ପଣରେ ଗଲା ତା ଝୁମ୍ପୁଡ଼ି ପାଖକୁ। ସତକୁ ସତ ତା କଥା ଫଳିଲା। ଗାଁବାଲା ବସିବାକୁ ସ୍ଥାନ ବି ଦେଲେ ନାହିଁ। ଦୋକାନରୁ କିଛି କିଣି ଖାଇ ପାରିଲୁନି। ଅଧିକନ୍ତୁ ଗୁଡ଼ିଏ ଅକଥ୍ୟ ଭାଷାରେ ଗାଳି ଶୁଣି ଧୀରେ ଧୀରେ ଆଗେଇଲୁ ସେହି ମୁଣ୍ଡଫଟା ଖରାରେ ଅନ୍ୟ ସ୍ଥାନକୁ। କେମିତି ଏ କଥା କିଏ ରାଷ୍ଟ୍ର କଲା ଜାଣୁନା, ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ବୁଲିଗଲୁ। ସବୁଠାରେ ନିରାଶାର ପଦ ଚିହ୍ନ। ବିହାରରେ ଛୁଆ ଅଛୁଆଁର ଏତେ ଯେ ବିଚାର, ଅନ୍ୟ କେଉଁଠି ସେତେ ନାହିଁ। ରାଜେନ୍ଦ୍ର ପ୍ରସାଦ ଓ ଜୟପ୍ରକାଶଙ୍କ ପରି ବରେଣ୍ୟ ନେତାଙ୍କ ଜନ୍ମସ୍ଥାନ ମଧ୍ୟ ଜାତି ପ୍ରଥା ନେଇ କଳଙ୍କିତ, କଳୁଷିତ।

ବିହାରର ସୋନପୁରରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ହରି ହର କ୍ଷେତ୍ର ମେଳା ହୁଏ। ବିରାଟ ସେ ମେଳା। ମାସ ମାସ ଧରି ଚାଲେ। କ'ଣ ଯେ ନ ମିଳେ କହି ହେବ ନାହିଁ। ହାତୀ, ଘୋଡ଼ା, ଓଟ, ବଳଦ, ଗାଈ ଠାରୁ ଆରମ୍ଭ କରି ନାନା ଜାତିର ପଶୁ, ପକ୍ଷୀ ଆଦି ଅତି ଆକର୍ଷଣୀୟ। ସେ ମେଳା ଭୁଲି ହେବ ନାହିଁ। ସୋନ୍ ନଦୀ କୂଳରେ ବସେ। ସୋନ୍‌ପୁରର ପ୍ଲାଟଫର୍ମ ପୃଥିବୀ ପ୍ରସିଦ୍ଧ। ୧୯୩୫ ମସିହାରେ ତାର ଅବସ୍ଥା ଅପେକ୍ଷା ବର୍ତ୍ତମାନ ତା'ର ଢେର ଉନ୍ନତି ହେଲାଣି। ଷ୍ଟେସନ୍ ମାଷ୍ଟର୍‌ଙ୍କୁ କହି ନିଜର ପରିଚୟ ଦେବାରୁ ସେ ଆମ ପାଇଁ ଗୋଟିଏ ୱେଟିଂ ରୁମ୍ ଖୋଲି ଦେଲେ।

ବାହାରେ ଭୀଷଣ ଶୀତ। ଭିତରେ ମଧ୍ୟ କମ୍ ଅନୁଭୂତ ହେଉ ନ ଥାଏ। ଚାଲି ଚାଲି କ୍ଳାନ୍ତ ହୋଇ ପଡ଼ିଥିଲୁ। ଷ୍ଟେସନ୍ କ୍ୟାଣ୍ଟିନ୍‌ରୁ ପରଟା ଓ ଆଳୁ ତରକାରି ଖାଇ ଘଣ୍ଟାଏ ଖଣ୍ଡେ ଶୋଇଛୁ କି ନାହିଁ, ହଠାତ୍ ଆମ କବାଟରେ ଦୁମ୍‌ଦାମ୍ ଆବାଜ୍ ହେଲା। ଘଟଣା କ'ଣ ଜାଣିବାଲାଗି ଯେମିତି କବାଟ ଖୋଲିଛୁ ସଙ୍ଗେ ସଙ୍ଗେ ଆମ ଉପରେ ପଡ଼ିଲା ଧକ୍‌କା ଓ ମାଡ଼। ଆମ ବିଛଣା ପତ୍ର ବାହାରକୁ ଫୋପାଡ଼ି ଦିଆଗଲା। ଇଂରାଜୀରେ ଅନବରତ ଗାଳି ଚାଲିଥାଏ। ୪।୬ ଜଣ ସାହେବ ମଦ ଖାଇ ଜଣେ Anglo Indian ଯୁବତୀକୁ ନେଇ

ଖୋଲା ଘର ଭିତର ଯେଉଁ ଉଚ୍ଛୃଙ୍ଖଳ ତାଣ୍ଡବ କଲେ, ସେହି ଶର୍ମାସ୍ୱାଶଂ ରୁମ୍‌ର ବାହାରେ ଗୋଟିଏ କୋଣରେ ଜାକିଜୁକି ହୋଇ ବସି ସବୁ ଦେଖୁଥାଉ ଶୁଣୁଥାଉଁ । ସାହେବଙ୍କ ସ୍ୱର୍ଗୀୟ ନୃତ୍ୟ ପିଟିଲେ ମୁଣ୍ଡଗଲା । ଗୋରା ଲୋକ କ'ଣ ନାହିଁ କ'ଣ କରିଦେବେ ।

ଭୟରେ ଜଡ଼ସଡ଼ ହୋଇ ପଡ଼ିଥାଉ । ନିଜ ନିଜ ମଧ୍ୟରେ ତୁମୂଳ ଝଗଡ଼ା ଆରମ୍ଭ କରିଦେଲେ । କିଏ ଆଗ ସମ୍ଭୋଗ କରିବ ? ସେଥିଲାଗି ଚାଲିଲା ହାତାହାତି, ମରାମରି । ପରେ ମଦ ନିଶା ଟିକିଏ କମିବାରୁ ପାଲବଦ୍ଧ କାର୍ଯ୍ୟରେ ଲିପ୍ତ ରହିଗଲେ । ଜଣେ ସାହେବ ନିର୍ଲଜ ଭଳି ଆମ ସାମ୍ନାରେ ନିଜେ ଉଲଗ୍ନ ହୋଇ ଓ ସେ ଯୁବତୀକୁ ଉଲଗ୍ନ କରି ସମ୍ଭୋଗ କଲା । ଏହି ଅଶ୍ଳୀଳ ଓ ବିଭତ୍ସ ଦୃଶ୍ୟ ଦେଖି ଆମ ପ୍ରାଣ ଭୟରେ ପଡ଼ିଥାଉଁ । ସାହେବମାନେ ଶୋଇ ପଡ଼ିବା ପରେ, ଆଗରୁ ଟଙ୍କାପଇସା ଯାହା ସେ ନେଇଥିଲା ତ. ସ୍ୱେଚ୍ଛାଚାରିଣୀ ବାଳ ସେମାନଙ୍କ ହାତ ଘଣ୍ଟା, ଫାଉଣ୍ଟେନ୍ ପେନ୍, ମନିବ୍ୟାଗ୍ ଇତ୍ୟାଦି ନେଇ ବାହାର ପାଣି ଟବ୍‌ରେ ଧୋଇ ହୋଇ ଚମ୍ପଟ ଦେଲା । ସକାଳୁ ସାହେବମାନେ ଦେଖନ୍ତି ଖାଲି ପିନ୍ଧାସାର୍ଟ ପ୍ୟାଣ୍ଟ ବ୍ୟତୀତ ସେମାନଙ୍କ ନିକଟରେ କିଛି ନାହିଁ । ଆମେ ଦୁହେଁ ଟିକିଏ ଦୂରରେ ବସି ମଜା ଦେଖୁଥାଉ ଲୁଚି ଲୁଚି । କାଳେ ଆମକୁ ସନ୍ଦେହ କରିବେ, ଆମେ ଉଠି କ୍ୟାଣ୍ଟିନ୍‌କୁ ଚାଲିଗଲୁ । ନିଶା କମିଗଲେ ଏମାନେ ଖୁବ୍ ଭଦ୍ର । କିନ୍ତୁ ନିଶା ଥିଲେ ଏମାନେ ଉନ୍ମତ୍ତ, ଖାଲି ଉନ୍ମତ୍ତ ନୁହନ୍ତି, କାମୋନ୍ମତ୍ତ, ମଦୋନ୍ମତ୍ତ ଏବଂ ଉଚ୍ଛୃଙ୍ଖଳ ।

ସକାଳେ ଷ୍ଟେସନ୍ ମାଷ୍ଟରଙ୍କୁ କହିଲୁ ।—"ଏପରି ପ୍ରାୟ ଚାଲେ ଆଜ୍ଞା । ଆମେ ଦେଖି ଦେଖି ଶୁଣି ଶୁଣି ଅଭ୍ୟସ୍ତ ହୋଇ ଯାଇଛୁ । କଣ ଆଉ କରିବୁ ? ସାହେବମାନେ ଆମର ହର୍ତ୍ତା କର୍ତ୍ତା ଓ ଭର୍ତ୍ତା"—ଷ୍ଟେସନ୍ ମାଷ୍ଟର କହିଲେ ।

ଆମେ କହିଲୁ—'ଭର୍ତ୍ତା ? ରସିକ ଷ୍ଟେସନ୍ ମାଷ୍ଟର କହିଲେ— 'ତା ଠୁଁ ବଳି ଆଜ୍ଞା ।' ଆମ ଆହାରର ବ୍ୟବସ୍ଥା କଲେ । ଆଦର ଆପ୍ୟାୟନରେ କୌଣସି ତ୍ରୁଟିକରି ନାହାନ୍ତି । ଗତ ରାତ୍ରିର ଅଶୋଭନୀୟ ଓ ଅଶ୍ଳୀଳ ପରିସ୍ଥିତି ଯୋଗେ ହାତ ଯୋଡ଼ି କ୍ଷମା ମାଗିଲେ । ତାଙ୍କ ଠାରୁ କିଛି ଦର୍ଶନୀ ନେଇ ଆସିଥିଲୁ ।

କାନପୁରର ଗୋଟିଏ ଘଟଣା । ଗୋଟିଏ ହୋଟେଲରେ ଖାଇଲୁ । ପଇସା ଦେଲା ବେଳକୁ ଦେଖିଲୁ ଗଣେଶ ବାବୁଙ୍କ ପକେଟରୁ ମନି ବ୍ୟାଗ୍ ଟଙ୍କା ସହ ଗାଏବ୍ ହୋଇଛି । ହୋଟେଲର ମାଲିକ ଆମର ଦୁରବସ୍ଥା ଓ ସଙ୍କଟଜନକ

ପରିସ୍ଥିତି ଲକ୍ଷ୍ୟ କରି ପଇସା ସିନା ଛାଡ଼ି କରିଦେଲେ, ହେଲେ ଆମେ କରିବୁ କ'ଣ ?

ବାଟରେ ଜଣେ ଶିଲ୍ପପତି ଅତ୍ୟନ୍ତ ଦୟାପରବଶ ହୋଇ ଶହେଟି ଟଙ୍କା ଦାନ କରିଥିଲେ । ଆମର ଆଚରଣ ଏବଂ କଥା ତାଙ୍କୁ ଏପରି ପ୍ରଭାବିତ କରିଥିଲା ଯେ କୃପଣ ବୋଲି ଯାହାର ଖ୍ୟାତି, କଂଜୁସ୍ ଆଉ ମକ୍ଷିଚୁସ୍ ବୋଲି ଯାହାର ନାଁ । ତୁଣ୍ଡରେ ଧରିଲେ ଖାଇବାକୁ ମିଳେ ନାହିଁ, ସେପରି ଲୋକର ଦାନଶୀଳତା ଓ ବଦାନ୍ୟତାରେ ଅନେକ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

କାନପୁର ପରି ଶିଳ୍ପନଗରୀରେ ମାତ୍ର ଦୁଇଟି ଟଙ୍କାରେ ଆମେ ଦୁଇ ବନ୍ଧୁ ଭୂରି ଭୋଜନ କରିଥିଲୁ । ମୁଣ୍ଡରେ ହାତ ଦେଇ ଭାବୁଛୁ, କ'ଣ କରିବୁ ? କେମିତି ଆଗେଇବୁ ? ଏତିକିବେଳେ ଏକ ବିରାଟକାୟ ପୁରୁଷ ହୋଟେଲ୍ ଭିତରକୁ ପଶି ଆସିଲେ । ଦେଖିବା ଭଳି ମଣିଷଟିଏ । ହୋଟେଲ୍‌ର ମାଲିକ, କର୍ମଚାରୀ ଖାଉଥିବା ଲୋକେ ସମସ୍ତେ ନିର୍ନିମେଷ ନୟନରେ ତାଙ୍କ ଆଡ଼େ ଚାହିଁଥିଲେ । ହୋଟେଲ୍‌ବାଲା ଅତି ବିଚଳିତ ହୋଇ କହିଲା—'ଦାଦା ଏ ଦୋନୋ ପଣ୍ଡିତଜୀ ଜଗନ୍ନାଥ ପୁରୀ ସେ ଆୟେ ହେଁ । ପୈଦଲ ମେ ସାରା ହିନ୍ଦୁସ୍ତାନ ମୁସାଫିଲ୍ କର ରହେ ହେଁ । କୌନ୍ ପକେଟ୍ ମାର ଉନ୍ କେ ଏକ ସୌ ରୁପୟେ କା ମନିବ୍ୟାଗ ଲେ ଚୁକା ହେ ।"

ମୁଁ କହିଲି—'ମେହେରବାନୀ କୀଜିୟେ । ଉତ୍ତମ ପୁରୀ କା ସେଠଜୀ ହମ୍ କୋ ଦଏ ଥେ ଜଗନ୍ନାଥ କେ ନାମ ଶୁନ୍ କର ।"

—"ଓ କଂଜୁସ୍ ଆପ୍‌ଲୋଗୋ କୋ ଏକ ସୌ ରୁପୟେ ଦିୟା ଥା, ଯୋ ଏକ ଭିକ୍ଷୁକ୍ କୋ ଏକ ପୈସା ନେହିଁ ଦେତା ହେ । "ସଚ୍‌ମୁଚ୍ ଆପ୍-ଲୋଗ୍ କେ ଉପର ଜଗନ୍ନାଥ ଜୀ କେ ଅଶେଷ୍ ଦୟା ହେ ।"

ଅରେ ଜଗୁ । ବଜ୍ର ଗମ୍ଭୀର କଣ୍ଠରେ ଡାକଦେଲେ ଦାଦାଜୀ । ପଶି ଆସିଲା ଏକ ଭୀଷଣକାୟ ଲୋକ । ମୁଣ୍ଡଲଣ୍ଡା, ବେକରେ ଗୋଟିଏ ବଡ଼ ତାବିଜ ଝୁଲୁଛି । ସେଥିରେ ମହାବୀର ହନୁମାନଙ୍କର ଛବି । ଦୁଇ ହାତର କବ୍‌ଜା ଉପରେ ଚମଡ଼ାର ପଟି, ଧୋତି ପାଇକଚ୍ଛା ମାରିଛି, ପିନ୍ଧିଛି ହାତ କଟା ଗଞ୍ଜି, ଅଣ୍ଟାରେ ବଡ଼ ବେଲ୍‌ଟ । ତା ଭିତରେ ଝୁଲୁଛି ଚମଡ଼ା ଖୋଳରେ ଛୁରି, ଦେହ କୁନ୍ଦିଲା ଭଳି । କୁଆଡ଼ୁ ଥିଲା ଯମ ଦୂତ ଭଳି ଆସି ପହଞ୍ଚିଗଲା ।

—"ସାମୁ କୋ ଢୁଁଢ଼୍‌କେ ଇଧର ଲାଓ ।"

"ବ୍ରାହ୍ମଣ କେ ଚଳ, ଫିର ଜଗନ୍ନାଥ ଦେଶ୍ ନା । ପକେଟ୍ ମାର୍ କେ ଲେ ଲସ୍ସୀ । ଦଶ୍ ମିନଟ୍ ହୁଆ କି ନେହିଁ ନିକଲ୍ ଗୟା ଇସ୍ ହୋଟେଲ୍ ସେ । ପହିଲେ ଏକ ତମାସ୍ତୁ ଡ୍ରମ୍ ଜମାଓ, ଔର ଏକ ତମାସ୍ତୁ ମେରେ ଲିଏ ରଖୋ ।"

—"ଜୀ ଦାଦାଜୀ । ଅଭି ଲାୟା" କହି ସେ ଚାଲିଗଲା ।

୧୫ ମିନଟ୍ ମଧ୍ୟରେ ସେ ଯାହାକୁ ଧରି ଆଣିଲା, ତାକୁ ଦେଖି ଦୟା ହେଲା । ଦାଦାଙ୍କ ପାଦତଳେ ପଡ଼ିଯାଇ କହିଲା—"ଦାଦାଜୀ ! ମୁଝେ ମାଫ୍ କିଜିଏ । ଏ ଆପ୍‌କେ ଆଦ୍‌ମୀ ହୈଁ । ଜରୁ ଖ୍ୟାଲ କେ ଏକ ଥାପଡ଼ ମେରା ଗାଲ୍ ଲେ ଲସ୍ସୀ ଦାଦାଜୀ । ଔର କଭି ଏସା ନେହିଁ ହୋଗା ।

ଦାଦାଜୀ ମଧ୍ୟ ଏକ ଥାପଡ଼ ଦେବାକୁ ପ୍ରସ୍ତୁତ ହୋଇଗଲେ । ଆମେ ତାଙ୍କ ହାତ ଧରି କହିଲୁ—'ଦଣ୍ଡିବା ଶକ୍ତି ଯାର ଥାଇ, ସେ ପୁଣି କ୍ଷମା ଅଚରଇ । ଦାଦାଜୀ କହିଲେ—ଉସ୍‌କା ମତ୍‌ଲବ ? ଗଣେଶ ବାବୁ କହିଲେ—'ଦଣ୍ଡଦେନେକା ଅଧିକାର ଜିସ୍ କା ହୈ, କ୍ଷମା କରନେକା ଅଧିକାର ଭୀ ଉନ୍‌କେ ପାସ୍ ହୋନା ଚାହିଏ ।'

ଦାଦାଜୀ ହସି ହସି କହିଲେ—ଏ ଲୋଗ୍ କିତ୍‌ନେ ଉଦାର୍ ହୈଁ, କିତ୍‌ନେ ଦୟାଳୁ ହୈଁ । ମନବ୍ୟାଗ୍ ଫେରି ପାଇଲୁ ।

ଦାଦାଜୀ କିଏ ? କ'ଣ ତାଙ୍କର ପରିଚୟ କେହି ଆମକୁ କହି ପାରିଲେ ନି । କେବଳ ଏତିକି ଜାଣିଲୁ ଦୁର୍ବଳ ଶ୍ରେଣୀର ସେ ରକ୍ଷକ, ମହିଳାମାନଙ୍କ ଇଜ୍ଜତ କେହି ଲୁଟ୍ କଲେ ଦାଦାଜୀ ହିଂସ୍ର ହୋଇ ଉଠନ୍ତି । ଅଖଣ୍ଡ ଶକ୍ତିଧାରୀ ସେ । କାନପୁରର ଲୁଗା କାରଖାନା, ଚମ କାରଖାନାର ଅଗଣିତ ଶ୍ରମିକ ତାଙ୍କୁ ଦେଖିଲେ ପାଦ ତଳେ ଲୋଟିଯାଆନ୍ତି । କାନପୁର ସହରରେ କେତେ ଯେ ଅନୁଗାମୀ ତାଙ୍କର ଅଛନ୍ତି, କୋଉଁଠୁ ଅର୍ଥାଗମ କରି ଚଳନ୍ତି, ବିବାହିତ କି ଅବିବାହିତ, ମୋଲିସ୍ ମଧ୍ୟ ତାର ସନ୍ଧାନ ପାଇ ପାରିନାହିଁ । ସେହି ହୋଟେଲ୍‌ରେ ଯେତେ ଦିନ ରହିଲୁ ଦାଦାଜୀଙ୍କର ଅତିଥି ହୋଇଥିଲୁ ।

ଅତି ବିଗଳିତ କଣ୍ଠରେ ଦାଦାଜୀ କହିଲେ ମୁଁ ଦିନେ ପୁରୁଷୋତ୍ତମ ଧାମ ଯିବି । ମହୋଦଧିରେ ସ୍ନାନକରି ଜଗନ୍ନାଥ ଜୀଙ୍କ ପାଖରେ ମୋର ସମସ୍ତ ପାପ ସ୍ୱୀକାର କରିବି । ଜଗତର ନାଥ ସେ । ନିଶ୍ଚେ ସେ ମୋତେ କ୍ଷମା ଦେବେ । ଏ ବିଶ୍ୱାସ, ଏ ଆଶା, ଏ ଭରସା ମୋର ତାଙ୍କ ଉପରେ ଅଛି । କାନ୍‌ପୁରରେ ୮ଟି ଦିନ ରହିଲୁ । ତତ୍‌କାଳୀନ ଯୁକ୍ତପ୍ରଦେଶ ଅଜିର ଉତ୍ତର ପ୍ରଦେଶ କାନପୁର ଏକ

ପ୍ରସିଦ୍ଧ ଶିଳ୍ପ ନଗରୀ । ଦିନେ ସାହସ ସଞ୍ଚୟ କରି ଦାଦାଜୀଙ୍କୁ ତାଙ୍କର ପରିଚୟ ପଚାରିଥିଲୁ । ସେ ହସି ହସି କହିଥିଲେ—ଫିର୍ କଭି ବୋଲୁଙ୍ଗା । ଆଉ ଉତ୍ତର ନେଇ ହେବ ।

କିନ୍ତୁ ଆଉ ଦାଦାଙ୍କ ସମ୍ପର୍କରେ ମିଳିଲେ ନାହିଁ । ଯିବାବେଳେ ହୋଟେଲବାଲା କହିଲା—ଦାଦାଜୀ ଆପଣଙ୍କର ଦେୟ ପରିଶୋଧ କରିଛନ୍ତି । ଏ ୨୫୫ଟଙ୍କା ଆପଙ୍କୁ ଖର୍ଚ୍ଚ କରି ଦେଇଛନ୍ତି । ଆଖିରୁ ଲୁହ ଝରି ପଡ଼ିଲା । ଅତି କୃତଜ୍ଞତାର ସହ ସେ ଅର୍ଥ ଗ୍ରହଣ କରି ଉକ୍ତ ମହାନ୍ ଆତ୍ମା ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ଆଗକୁ ବଢ଼ିଲୁ ।

ସେତେବେଳେ ଯୁକ୍ତ ପ୍ରଦେଶ ବର୍ତ୍ତମାନର ଉତ୍ତର ପ୍ରଦେଶ ରାଜଧାନୀ ହେଲା ଲକ୍ଷ୍ନୌ । ବନାରସ (କାଶୀ ବାରଣାସୀ), ଏଲାହାବାଦ, କାନପୁର, ଡେରାଡ଼ୁନ୍, ହରଦ୍ୱାର ପ୍ରଭୃତି ବହୁ ପ୍ରସିଦ୍ଧ ସହର ଓ ତୀର୍ଥସ୍ଥାନ ଉତ୍ତର ପ୍ରଦେଶରେ ରହିଛି ।

ଗଙ୍ଗାଙ୍କ ନଦୀ କୂଳରେ ଲକ୍ଷ୍ନୌ ଦିନେ ଥିଲା ଅତି ବିଳାସପୂର୍ଣ୍ଣ ନଗରୀ । ଅନ୍ତ ତ ଯେ ନାହିଁ ତା ନୁହେଁ, ମୋଗଲର ଶେଷ ନବାବ ଭଜମୌଦ୍ଦୁଲାଙ୍କର ଏ ଥିଲା ରାଜଧାନୀ । ନବାବମାନଙ୍କର ଇମାମ୍‌ବଡ଼ା, ନବାବୀ ବ୍ରିଜ, ତାଙ୍କ ହାରେମ୍‌ର ଖୁବ୍ ସୁରତ୍ ବେଗମ୍, ବହୁ ବାନ୍ଦୀ, ଖାନ୍‌ସାମା, ଲସ୍କର, ଅସ୍ତାବଲ୍, ଘୋଡ଼ା ଗାଡ଼ି, ସିପାହି, ବରକନ୍ଦାଜ ଓ କେତେ କ'ଣ । ନବାବ କିଛୁ କରିବେ ନାହିଁ । ମୂଳରୁ ଚୂଳଯାଏ ସବୁ ବାନ୍ଦୀ କରିବେ । ଜନ୍ମୁକ୍ତ ତରବାରୀ ଧରି ତାଙ୍କ ଦର୍ଶନ ତାତ୍ରୀ ବାନ୍ଦୀମାନେ ପହରା ଦେଉଥିବେ । ଲେଖିବସିଲେ ଗୋଟିଏ ଇତିହାସ ହେବ । ଲକ୍ଷ୍ନୌର ମୋଗଲାଇ ପରଟା, ମୋଗଲାଇ କବାବ, ମୋଗଲାଇ ପୁରୁଆ, ଅତର, ଜରଦା, ସୁରମା, ଚପକନ, ତୁନସୀ ବାଈଜୀଙ୍କ ନାଚ ଗୀତ ଭାରତ ପ୍ରସିଦ୍ଧ । ପୁଣି ନାନା ବହିରୁ ପଢ଼ି ତା ସଙ୍ଗେ ସଙ୍ଗେ ସିପାହୀ ବିଦ୍ରୋହର ଶେଷ ସ୍ମୃତି ଚିହ୍ନ ରେସିଡେନ୍‌ସ ଦେଖିବାର ଇଚ୍ଛା ଅମର ବଳବତୀ ହେଲା । ଲକ୍ଷ୍ନୌ କଂଗ୍ରେସର ଅଧିବେଶନର ତାଲ କଟୁଦନ ଡେରିଥିଲେ ମଧ୍ୟ ତାକୁ ଟିକିଏ ଆଖି ପୂରେଇ ଦେଖିବାର ବାସନା ମନରେ ଜାଗିଲା । ତେଣୁ ଲକ୍ଷ୍ନୌ ଅଭିମୁଖେ ବୁଲିଲୁ । ବାଟରେ ବସ୍ତିର ରାଣୀ ବରଡୋଲ ୧ଟ ଅତି ସୁସ୍ୱାଦୁ ଅମୃଦ (ପିଜୁଳି) ଖାଇ ଅଘେଇଲୁ । ଯେତେ କଷ୍ଟ ପଡ଼ୁ ପଛେ ଲକ୍ଷ୍ନୌ ଯିବାକୁ ହିଁ ହେବ ।

ସେତେବେଳେ ଇଂରେଜ ସରକାରଙ୍କ ଅମଳ । ତର ତର ସ୍ୱାଧୀନ । ସ୍ୱାଧୀନ ହୋଇ ଅସିଲାଣି । ଅଗଷ୍ଟ ସତ ଅସୁଥାଏ । ଅରମ୍ଭ ହେଉଥାଏ

ସେପ୍‌ଟେମ୍ବର । ଏହି ସମୟରେ ଏ ଅଞ୍ଚଳରେ ବୁଲିବାକୁ ଭଲ ଲାଗେ । ମନଟା କେଉଁ ଅଜଣା ରାଇଜକୁ ଚାଲିଯାଏ ।

ପାଦ ଅଳ୍ପ ଅଳ୍ପ ଆସିଲାଣି । କ୍ଲାନ୍ତି ଘୋଟି ଘୋଟି ଆସିଲାଣି । ପେଟ ଭୋକରେ ଘାଉଁଟିପାଉଁଟି ହେଲାଣି । ଆଉ ଯାଇପାରୁନ । ଗଛମୂଳେ କମଳ ବିଛାଇ ପଡ଼ିରହିବାକୁ ଇଚ୍ଛା ହେଉଥାଏ । ହଠାତ୍ ପବନରେ ଅପୂର୍ବ ବାଦ୍ୟ ଝଙ୍କାର ଶବ୍ଦ, ସୁମଧୁର ସ୍ୱର ଏବଂ ନୂପୁରର ଛମ୍ ଛମ୍ ଶବ୍ଦ ଶୁଣାଗଲା । ସେ ସ୍ୱର, ସେ ସିଞ୍ଜନୀ ମନକୁ ମୁଗ୍‌ଧ କଲା । ଶକ୍ତି ସଞ୍ଚୟ କରି କିଛିଦୂର ଆଗେଇ ଦେଖିଲୁ ଆମ ବାମ ପଟେ ଏକ ବିଶାଳ ଫାଟକ । ଦୁଇ ପାର୍ଶ୍ୱରେ ଦୁଇଜଣ ପ୍ରହରୀଙ୍କ କୋଠରୀ । ଫାଟକ ପାଖରୁ ଗୋଟିଏ ରାସ୍ତା ଲମ୍ବି ଯାଇଛି ହାବେଲି (ମହଲ) ପର୍ଯ୍ୟନ୍ତ । ରାସ୍ତାଟି ଏତେ ମନୋରମ ଯେ ଦେଖିଲେ ଜଣାପଡ଼ୁଛି ଯେମିତି କିଏ ଏକ ସୁଦୃଶ୍ୟ ଗାଲିଚା ତା ଉପରେ ବିଛାଇ ଦେଇଛି । ପୁଷ୍ପର କି ଚମତ୍କାର ସମାବେଶ ! ମହଲଟି ଦୂରରୁ ଦେଖିଲେ ମନେହୁଏ ଯେତେ ଯେପରି ଆମେ ନବାବଙ୍କ ରାଜ୍ୟରେ ପ୍ରବେଶ କରିଛୁ । ଜଣେ ପ୍ରହରୀ ଗୋଟିଏ ଖଟିଆ ଉପରେ ବସି ଖଇନି (ଚୂନପତ୍ର) ଦଳୁଥିଲା । ଆଉ ଜଣେ ଅଦ୍ଧା ଜାମା, ପଗଡ଼ି, ଅଗ୍ରାର ନାଗ୍ରା ଯୋତା ପିନ୍ଧି ପହରା ଦେଉଥିଲା ।

ଖଇନି ଦଳୁଥିବା ଲୋକଟି ପାଖରେ ଠିଆ ହେଲୁ । ଗୋରା ରଙ୍ଗ, ବଳିଷ୍ଠ ପର ଦେହ, ଚଉଡ଼ା ଛାତି, ଗୋଡହାତ ବଳିଷ୍ଠ ଏବଂ ମଜ୍‌ବୁତ—ମୁଣ୍ଡଟା ଆମ ଦୁହିଁଙ୍କ ମୁଣ୍ଡ ମିଳାଇ ଦେଲେ ଯେତିକି ହେବ ସେତିକି ବଡ଼ । ସବୁଠାରୁ ଦେଖିବା ଜିନିଷ ହେଉଛି ତାର ଦାଢ଼ି । ଦୁଇପାଖରୁ ମୋଟା ହୋଇ ଲମ୍ବି ଯାଇଛି ତଳକୁ । ବୟସ ଅନ୍ଦାଜ ୬୫ରୁ ୭୦ ଭିତରେ ହେବ । ତାକୁ ଦେଖି ଆମେ ଟିକିଏ ଦବିଗଲୁ । ତଥାପି ସାହସ ସଞ୍ଚୟ କରି କହିଲୁ "ଜିତେ ରହୋ ବେଟା । ଜଗନ୍ନାଥଙ୍କ କୃପାରୁ କଲ୍ୟାଣ କରେ ।" ସାଧୁ ନୁହନ୍ତି, ସନ୍ନ୍ୟାସୀ ନୁହନ୍ତି । ଦୁଇଜଣ ପ୍ୟାଣ୍ଟସାର୍ଟ, ଯୋତାମୋଜା ପିନ୍ଧିଛନ୍ତି, ମୁଣ୍ଡରେ ସାହେବୀ ଟୋପି, କାନ୍ଧରେ ବ୍ୟାଗ, ଫଟୋ କ୍ୟାମେରା, ପିଠିରେ ବଡ଼ ଲଦନ, ସେ ଦେଖି ଚମକି ପଡ଼ି ନିଜ ଭାଷା ବୋଲିରେ ପଚାରିଲା—'ଆପନ୍ ଲୋକ୍ କଉନ୍ ଦେଶକା ବା' ? ଆମେ କହିଲୁ—'ପବିତ୍ରଭୂମି ମଲ୍ଲୁ, ହମ୍ ଜଗନ୍ନାଥ ପୁରୀ ସେ ଆ ରହି ହୈଁ । ହମ୍ ବ୍ରାହ୍ମଣ ହେଁ । ଠାକୁର୍‌କେ ପଣ୍ଡିତ । ଆପ୍ କ୍ୟା ବ୍ରାହ୍ମନ୍ ?' ଆମେ ପ୍ରଶ୍ନ କଲୁ । 'ହଁ ବାବୁଜୀ ।' ବାବୁଜୀ ଦେଉଁ ପଣ୍ଡିତ୍‌ଜୀ କହିବ ।' ଆମେ କହିଲୁ—ଆପ୍ କୌନ୍ ଜାତ୍ ? ସେ ଅଞ୍ଚଳରେ ଜାତି ପଚାରିବାଟା ବିଧି । ଯେ ବ୍ରାହ୍ମଣ, ଭାରଦ୍ୱାଜ । ନାମ ବିଶ୍ୱରଞ୍ଜନ ଶୁକ୍ଳ । ଆମେ କହିଲୁ, "ତୁମ୍ ଶୁକ୍‌ଲାଜି ? ହମ୍ ଜଗନ୍ନାଥ ପୁରୀ ସେ ପଏଦଲ୍ ମୁହାଫିଲ୍

କର୍‌କେ ଆତେ ହେଁ । ଦେଶ୍ ଦେଶ୍‌କେ ଜାନ୍ତି ଜାତ୍‌କେ ଇନ୍ସାନ୍ ସନ୍ମାନ୍ ଦେଖ୍‌ତେ ହେଁ । ଲିଖ୍‌ତେ ହେଁ । ସାଥ୍ ସାଥ୍ ଜଗନ୍ନାଥଜୀକୀ ମହିମାଭି ପ୍ରଚାର କରତେ ହେଁ । ଆପତୋ ବ୍ରାହ୍ମନ୍ ହେଁ । ଥୋଡ଼ା ହମାରାଲିଏ କଷ୍ଟ କୀଜିଏ । ହମ୍ ଦୋନୋ ବହୁତ୍ ବହୁତ୍ ଥକ୍‌ଗିଏ ହେଁ । ଅଚ୍ଛୀତରହ ବର୍ତ୍ତିନ୍ ଧୋକେ ହମ୍ ଦୋନୋ କେ ଲିଏ ଦୋ ରୁଟୀ ସେକି, ଥୋଡ଼ା ଡାଲ୍ ବନାଦିଜିଏ । ବହୁତ ଭୂଖେ ହେଁ । ଜଗନ୍ନାଥଜୀ ଆପକା ମଙ୍ଗଲ କରେଙ୍ଗେ ।" ଏହା କହି ସେହି ଖଟିଆରେ ବସିପଡ଼ିଲୁ । ଜୋତାମୋଜା ନଖୋଲି ସେଇଠି ଶୋଇଗଲୁ । ନିଦ ଭାଙ୍ଗିଲା ଶୁକ୍‌ଲାଜୀଙ୍କ ଡାକରେ । ସେତେବେଳକୁ ରାତି ପ୍ରାୟ ଦଶଟା ହେବ । ଉଠି ବେଶ ପୋଷାକ ବଦଳି ଧୋତି ଚଦର ପିନ୍ଧି, ପଇତାକୁ ଭଲ ଭାବରେ ମାଙ୍କ ଜୟ ଜଗନ୍ନାଥ ଜୟ ଜଗନ୍ନାଥ ବଡ ପାଟିରେ ଡାକି ଚଳୁ ଛଡ଼ାଇ ଖାଇବାରେ ଲାଗିଗଲୁ । ଶୁକ୍‌ଲାଜୀଙ୍କର ଭଗବାନ ମଙ୍ଗଳ କରନ୍ତୁ । ଘିଅ ମାରି ବଢ଼ିଆ ରୁଟି, ମୋଟା ହରଡ଼ ଡାଲି, ଆଳୁ ତରକାରୀ ଭାରି ଭଲ ଲାଗିଲା । ପେଟଭରି ଶୁକ୍‌ଲାଜୀ ଖୁଆଇଲେ । ଦୁଇଟି ଖଟିଆ ପକାଇ ଦେଲେ । ଘୋର ନିଦ । ସକାଳର ଘଣ୍ଟା ପିଟା ଶବ୍ଦ ଶୁଣି ଉଠିଲୁ । ନିତ୍ୟକର୍ମ ବଢ଼ାଇ ଶୁକ୍ଲାଜୀଙ୍କ ପ୍ରଦତ୍ତ ବିଶୁଦ୍ଧ ଘୃତର ପରଟା, ଆଳୁଭଜା, ପୋଦିନା ଚଟଣି ଏବଂ ସ୍ୱାଦିଷ୍ଟ ଉପାଦେୟ ଖାଦ୍ୟ । ଜଗନ୍ନାଥଙ୍କୁ ସ୍ମରଣ କରି ତୃପ୍ତି ସହକାରେ ଭୋଜନ ପର୍ବ ସାରିଲୁ ।

ଖାଇ ଖାଇ ଶୁକ୍ଲାଜୀଙ୍କୁ ପଚାରିଲୁ—ଆଚ୍ଛା ଶୁକ୍‌ଲାଜୀ ଆପଣଙ୍କର ପିଲାପିଲି ? ତିନୋଟି ଝିଅ ଆଜ୍ଞା । ଆଉ କ'ଣ ହେବାର ଅଛି । ସମସ୍ତ ହୋଇ ଗଲଣି । ଶୁକ୍‌ଲାଜୀ ଅତି ବିନମ୍ର ସହକାରେ କହିଲେ । ମୁଁ କହିଲି "ଲଡ଼୍‌କା ହୋଗା, ଅଉର୍ ବହୁତ୍ ଜଲଦି ।' ଗଣେଶ୍ୱର ବାବୁ ଓଡ଼ିଆରେ କହିଲେ—ଯଦି ଝିଅ ହେଲା ତେବେ ସମ୍ଭାଳିବ ତ ? ମୁଁ କହିଲି ପାଟିରୁ ତ ବାହାରିଗଲା, ଯାହା ଜଗନ୍ନାଥ କରିବେ । ଶୁକ୍ଲାଜୀ ଭକ୍ତିରେ ଗଦ୍‌ଗଦ୍ ହୋଇ କହିଲେ ଆପଙ୍କେ ତୁଣ୍ଡରେ ଫୁଲଚନ୍ଦନ ପଡ଼ୁ ପଣ୍ଡିତଜୀ । ଏକ୍ ବେଟାକେ ଲିଏ ହାମାରେ ପରିବାର ବହୁଦିନ୍‌ସେ ତରସ୍ ହେଁ । ମୁଁ ଯୋର ଦେଇ କହିଲି ଜରୁର ହୋଗା । ଜଗନ୍ନାଥଜୀ କେ ଉପର ଭରସା ରଖୋ ଶୁକ୍‌ଲାଜୀ । ଓ୍ୱହ ସବ୍‌କା ମାଲିକ୍ ହେଁ । ଆପ୍ ଉନ୍‌କୋ ସ୍ମରଣ କୀଜିଏ ।

ଖାଇସାରି ଲୁଗାପଟା ବାନ୍ଧୁଛୁ । ପ୍ୟାଣ୍ଟ ବଦଳି ସାରିଲୁଣି । ଶୁକ୍ଲାଜୀଙ୍କର ସାନଭାଇ ଆସି ଖବର ଦେଲା । ଭାଇୟା ସବୁ ସୁ-ଖବର । ଭାଭୀର ଗୋଟିଏ ପୁଅ ଭୋରରୁ ହୋଇଯାଇଛି । ତାଙ୍କ ଭାଇ ଲକ୍ଷ୍ନୌରେ ପଢ଼େ । ଶୁକ୍‌ଲାଜୀ ଆନନ୍ଦରେ ଆମ ପାଦତଳେ ଲୋଟିଗଲେ । ସେ କି ଆନନ୍ଦ, କି ବିଭୋରତା, କି ବିହ୍ୱଳତା !

ଆପଣଙ୍କ କଥା ବାସ୍ତବିକ ସତ ହେଲା ପଣ୍ଡିତଜୀ । ଆଜି ମୁଁ ବହୁତ ଖୁସି । କ'ଣ ଦେଇ ଆପଣଙ୍କୁ ସନ୍ତୁଷ୍ଟ କରିବି ? ଆମେ କହିଲୁ "କାଲି ରାତିରେ ଆଶ୍ରୟ ଦେଲ, ପେଟଭରି ଖୁଆଇଲ, ଆଜି ମଧ୍ୟ ଭୂରିଭୋଜନ ଦେଲ । ଏଇ କଣ ଯଥେଷ୍ଟ ନୁହେଁ ?

ମାଲକନ୍‌ଙ୍କ ସହିତ କ'ଣ ମିଳିବ ନାହିଁ ?

ଆମେ କହିଲୁ ମାଲକନ୍ କିଏ ?

ଏଇ ହାବେଲିରେ ସିଏ ରୁହନ୍ତି । ଲକ୍ଷ୍ନୌର ମସ୍ହୁର (ପ୍ରସିଦ୍ଧ) ସୁଶିଲା ବାଇ । ବାଇ ହେଲେ ମଧ୍ୟ ତାଙ୍କର ବହୁତ ଭଲଗୁଣ । ଦସ୍ତାବତୀ ନାରୀ ସେ । ମନେ ପଡ଼ିଗଲା କାଲି ରାତିର ନୃତ୍ୟଗୀତ ଓ ନୂପୁରର ଛନ୍‌ଛନ୍ ଆବାଜ ।

ଶୁକ୍‌ଲାଜୀ ପୁଣି କହିଲେ, ବହୁତ ବଡ଼ ରକମ୍ ସେଠ୍, ରାଜା, ନବାବଙ୍କ ପାଦ ପଡ଼େ ଆଜ୍ଞା । ରାତିକେ ହଜାର ହଜାର ।

ଆମେ କହିଲୁ ଦେଖ ଶୁକ୍‌ଲାଜୀ ଆମେ ମୁସାଫିର । ଯେଉଁଠି ସେଠ୍ ରହିସ୍, ରାଜା ନବାବଙ୍କ ଯିବା ଆସିବା ସେଠି ଆମଭଳି ଗରିବ ବ୍ରାହ୍ମଣଙ୍କୁ ସେ ବା କାହିଁକି ଖାତିର କରିବେ ? ମାନେ ହାତୀ ପାଖରେ ଠେକୁଆ ।

'ନାହିଁ ନାହିଁ ପଣ୍ଡିତଜୀ । ଆପଣ ଯେତେବେଳେ ଆସିଛନ୍ତି ସେତେବେଳେ ଥରେ ମୁଲାକାତ୍ କରି ଯାଆନ୍ତୁ । ଶୁକ୍‌ଲାର ଅନୁରୋଧ ।

ଶୁକ୍‌ଲାଜୀଙ୍କ କଥା ଖିଲାପି ନପାରି ତାଙ୍କ ସହିତ ଅତି ସନ୍ତର୍ପଣ ହୃଦୟରେ ହାବେଲିକୁ ଗଲୁ । ଆମକୁ ଗୋଟିଏ ଘରେ ବସାଇ ଦେଇ ସେ ଅନୁମତି ଲାଗି ଗଲେ । କିଛି ସମୟ ପରେ ଫେରି ଆସି କହିଲେ; 'ଚାଲିଏ, ମାଲକନ୍ ଆପ୍‌କୁ ବୋଲି ରହି ହେ' । କେତେଗୁଡ଼ିଏ ଘର ଟପି ଏପରି ଏକ ଘରେ ପହଞ୍ଚିଲୁ ଯାହାର ମୁଁ ବର୍ଣ୍ଣନା କରିପାରିବି ନାହିଁ । ବଡ଼ ବଡ଼ ଗାଦି ବିଛାଯାଇଛି । ବଡ଼ ବଡ଼ ମାଣ୍ଡି ଓ ତକିଆ ପଡ଼ିଛି । ଅତର ଏବଂ ସୁଗନ୍ଧ ଅଗରବତୀର ବାସରେ ଘରଟି ଆମୋଦିତ । ମନ ହଜି ଯାଏ । କେତେ ରକମର ବାଦ୍ୟ ଥୁଆ ହୋଇଛି । ସାରଙ୍ଗୀ, ତାନପୁରା, ଡୁଗି, ତବଲା, ପଖାଉଜ, ଢୋଲ, ନାନା କିସମର ଘୁଙ୍ଗୁର, ଆହୁରି ସବୁ ବିଭିନ୍ନ ପ୍ରକାର ଯନ୍ତ୍ର । ଉପରେ ଝାଡ଼ ଲଣ୍ଠନ ସବୁ ଝୁଲୁଛି । ଗୋଟିଏ ମଖମଲ ଗାଦି ଉପରେ ଏକ ଅସାମାନ୍ୟା ଅନନ୍ୟା ସୁନ୍ଦରୀ ତରୁଣୀ ବସିଛନ୍ତି । ସଦ୍ୟ ବୋଧହୁଏ ସ୍ନାନ ସାରିଛନ୍ତି । ଏକ ବନାରସୀ ଶୁଭ୍ର ସିଲ୍‌କ ଶାଢ଼ୀ ତାଙ୍କୁ ଏପରି ମାନୁଥାଏ ଯେ ଆମେ ଭାବିଲୁ ଏ ତ ସୁଶୀଳା ବାଈ ନୁହନ୍ତି ! ଏ ଯେ ଏକ ଆଦର୍ଶ ବଧୂ, ଜାୟା, ତନୟା ।

"ଆଇଏ, ଆଇଏ ପଣ୍ଡିତ୍‌ଜୀ । ମେନେ ସୋଚଥୀ ଶାୟଦ୍ ଆପ୍ ବହୁତ ଉମର୍‌କେ ହୋଙ୍ଗେ ।"

ଆମେ କହିଲୁ 'ନେହିଁ ବହିନ୍‌ଜୀ । ହମାରି ଉମର ଉନଇଶ ବିଶ ସାଲ୍‌କେ ହୈ । ହମ୍ ଦୋନୋ ସାରି ହିନ୍ଦୁସ୍ଥାନ ପଏଦଲ ମେ ଘୁମ୍‌ତେ ହେଁ ।

ବହିନ୍‌ଜୀ ସମ୍ବୋଧନରେ ସେ ଚମକିପଡ଼ି କହିଲ, ଆପନେ କ୍ୟା ମୁଝେ ବହିନ୍‌ଜୀ ପୁକାରି ?

ଆମେ ଅତି ନମ୍ର ସ୍ୱରରେ କହିଲୁ—

"ଆପ୍ ହମ୍‌ସେ ଉମର୍‌ମେ ବଡ଼ୀ ହୈ ।

ଭଲେ ହିଁ ହମ୍ କୌଁ ବ୍ରାହ୍ମଣ ରହେ ।

ଆପକୋ ବହିନ୍‌ଜୀ ବୋଲନା ମୁନାସିବ (ଉଚିତ) ହୈ, ହମାରି ଫର୍ଜ ହୈ ।

କଥାବାର୍ତ୍ତା ହିନ୍ଦୁସ୍ତାନୀ ଅର୍ଥାତ୍ ହିନ୍ଦି ଉର୍ଦ୍ଦୁ ମିଶା ଭାଷାରେ ହେଉଥାଏ । ମୁଁ ତାକୁ ଓଡ଼ିଆ କରି ଲେଖୁଛି ।

ସୁଶୀଳା ବାଈ କହିଲେ "ମୁଁ ପ୍ରଥମ ଥର ଆପଣଙ୍କଠାରୁ ଭଉଣୀ ବୋଲି ଶୁଣିଲି; ନଚେତ୍ ମୁଁ ସମସ୍ତଙ୍କ ପାଖରେ ନାଚନେୱାଲି, ଦିଲ୍ ବହଲାନେୱାଲି ଏକ ବାଈ ।

ଆପଣ ଯାହା କହୁଛ ହୋଇ ପାରନ୍ତି, କିନ୍ତୁ ମନେ ରଖନ୍ତୁ ନାରୀର ଅନେକ ରୂପ, ସେ କନ୍ୟା, ଭଗିନୀ, ଜାୟା, ମାତା । କନ୍ୟା ହୋଇ ସେ ଆଦର ପାଇବ, ଶ୍ରଦ୍ଧାପାଇବ । ଭଗିନୀ ହୋଇ ସେ ସ୍ନେହ ସୋହାଗ ପାଇବ । ଜାୟା ହୋଇ ସେ ସ୍ନେହ, ପ୍ରେମ ମମତାର ଅଧିକାରିଣୀ ହେବ । ପୁଲକରେ ଅନ୍ତର ଭରିଦେବ । ଆଉ ମା' ହୋଇ ତାର ସ୍ୱର୍ଗୀୟ ଆଦର ମମତାରେ, ବାତ୍ସଲ୍ୟ ପ୍ରେମରେ ସନ୍ତାନର ଜୀବନ ଧନ୍ୟ କରିବ ।

ଆପଣ ଯାହା କହୁ କହିଲେ ପଣ୍ଡିତଜୀ ମୁଁ କେବେ ସବୁ ଥିଲି । କିନ୍ତୁ ସବୁ ଥାଇ ମୁଁ ଆଜି ନିଃସ୍ୱ । ଘର ପରିବାର ମାୟା ମମତାଠାରୁ ମୁଁ ଦୂରେଇ ଯାଇଛି । ଏ ଅଳଙ୍କାର ମୋ ଦେହକୁ କଣ୍ଟାସମ ବିନ୍ଧୁଛି । ଏ ବିଳାସବ୍ୟସନ, ଏ ହାବେଲି, ଏ ଘୋଡ଼ାଗାଡ଼ି ମୋର ଏ ପବିତ୍ର ଦେହ ବଦଳରେ ମୁଁ ଅର୍ଜନ କରିଛି । ନାରୀର ସମ୍ମାନ ମୁଁ ରକ୍ଷା କରିପାରିନି । ଧନ ଅଛି କିନ୍ତୁ ପ୍ରାଣ ନାହିଁ । ବିଭବ ଅଛି କିନ୍ତୁ

ପ୍ରେମ ନାହିଁ । ରେଳର ଇଞ୍ଜିନ୍ ପରି ଏକ ଦୁର୍ବିସହ ଜୀବନ ନେଇ ମୁଁ ଗଡ଼ି-ଚାଲିଛି । ଜାଣେନା ତା ଷ୍ଟେସନ କେଉଁଠି, ଶେଷ କେଉଁଠି, ପରିଣତି କେଉଁଠି । ଆପଣ ଯାହା ସବୁ କହିଗଲେ ଦିନେ ମୁଁ ସବୁ ଥିଲି । ଆଜି ବାଇଜୀ, ବେଶ୍ୟା, ପତିତା, ବାରାଙ୍ଗନା, ବାରନାରୀ । ଏ ସମାଜ ଉପରେ ପ୍ରତିଶୋଧ ନେବାପାଇଁ ମୁଁ ତିଳତିଳ ହୋଇ ନିଜକୁ ଜାଳି ଚାଲିଛି । ସେଠ୍, ରଇସ୍, ଜମିଦାର୍, ରାଜା ନବାବ୍ ସମାଜପତିଙ୍କୁ ମୁଁ ପତଙ୍ଗ ଭଳି ଜାଳିପୋଡ଼ି ମାରୁଚି । ସମାଜ ମୋତେ ଚାହିଁନି । ଦୁଆର ଦୁଆର ବୁଲି ଠୋକର ଖାଇଛି । ମୁଁ ଦିନେ କନ୍ୟା ଥିଲି, ଜାୟା ଥିଲି । ମାତା ଥିଲି । କିନ୍ତୁ ଆଜି ମୁଁ ବାରବନିତା । ଛାଡ଼ନ୍ତୁ । ଆପଣ ଲକ୍ଷ୍ନୌ ବୁଲି-ଆସିଛନ୍ତି । ମୋର ସ୍ୱତନ୍ତ୍ର ଘର ଅଛି । ଶୁକ୍ଲାଜୀ ଆପଣଙ୍କ ଖବର ବୁଝିବେ । ଯାହା ଦରକାର ପାଇବେ । ଯେତେଦିନ ଚାହିଁବେ ମୋର ଟାଙ୍ଗା ଅଛି ସେଥିରେ ବୁଲିବେ ।

'ଟିକିଏ କଂଗ୍ରେସ୍ ଅଧିବେଶନ ଦେଖିବାର ବାସନା ଅଛି । ଅତି ସଙ୍କୋଚରେ ଆମେ କହିଲୁ ।

ସେ ତ ଅନେକ ଦିନ ଅଛି । ସେ ପର୍ଯ୍ୟନ୍ତ ମୋ ଘରେ ରହିଲେ ମୁଁ ଧନ୍ୟ ହେବି । କହିଲେ ସୁଶୀଳା ଭଉଣୀ ।

ଆମେ କହିଲୁ ଦେଖନ୍ତୁ ଭଉଣୀ ଆପଣ ଯାହାସବୁ କହିଗଲେ ତା ଆପଣଙ୍କ ମନର କଥା । ସେଥିପାଇଁ ଧନ୍ୟବାଦ ଦେଉଛୁ । ଆମେ ପରଦେଶୀ । ଆମ ଆଗରେ ଅକପଟରେ ନିଜ ଜୀବନରୁ ଯାହା କହିଲେ ତାହା ଆମକୁ ରହସ୍ୟାବୃତ ପରି ଲାଗିଲା । ଆହୁରି ଅନେକ ଅଛି ଯାହା ଆପଣ ଆମକୁ ଲୁଚାଇଛନ୍ତି । ଆପଣ ବଡ଼ ଲୋକ । ଆମେ ଦୁଇଦିନର ମୁସାଫିର । ସେସବୁ ଜାଣି ଆମର ଲାଭ ବା କଣ ? ତଥାପି ଶୁକ୍ଲାଜୀଙ୍କଠାରୁ ଶୁଣିଛୁ ଆପଣ ଅତି ଦୟାବତୀ ନାରୀ । କେତେ ଅନାଥିନୀ ବାଳିକାଙ୍କୁ ଅର୍ଥଦେଇ ଆପଣ ପଢ଼ାଇଛନ୍ତି, କେତେ ନିଃସହାୟ ଅସହାୟ, ଅସହାୟାଙ୍କୁ ଆପଣ ସହାୟ ହୋଇଛନ୍ତି । ଆପଣଙ୍କ ଦେୟ ଉପରେ ନିର୍ଭର କରି ଏକ ଅନାଥାଶ୍ରମ ଚାଲିଛି । କେତେ ଗ୍ରାମରେ ଆପଣ କୂପ ଖୋଳିଛନ୍ତି, ଜଳାଶ୍ରୟ ଖୋଳେଇଛନ୍ତି, ମନ୍ଦିର ମଧ୍ୟ ନିର୍ମାଣ କରିଛନ୍ତି । ଆପଣଙ୍କ ଦାନର ପରିମାଣ ନାହିଁ । ଯୋ ହାତ୍ ଲିଆ ହୈ ଉସ୍‌ସେ କହି ବଢ଼କର୍ ଦିଆହୈ । "ତେବେ ଶୁକ୍ଲାଜୀ ଆପଣଙ୍କୁ ସବୁକଥା କହିଦେଇଛନ୍ତି, ମୋ ବିଷୟରେ ।" ନାଇଁ ଆଜ୍ଞା । ଆପଣଙ୍କ ଜୀବନୀ କହିନାହାନ୍ତି । କହିଛନ୍ତି ଆପଙ୍କେର ଦାନଶୀଳତା, ବଦାନ୍ୟତା, ଏବଂ ସହୃଦୟତା ବିଷୟରେ । —ଆମେ କହିଲୁ ।

"ସେ ମୋତେ ନିଜ ଭଉଣୀଠାରୁ ଅଧିକ ସ୍ନେହ କରନ୍ତି । ଭଲ ପାଆନ୍ତି । ମୁଁ ତାଙ୍କୁ ଏ ହାବେଲିରେ ରହିବାକୁ କହିଥିଲି । କିନ୍ତୁ ସେ ସେଠାରେ ସ୍ୱଚ୍ଛାରେ

ଅଛନ୍ତି । ସେ ମୋତେ ଅନେକ ବିପଦରୁ ରକ୍ଷା କରିଛନ୍ତି । ମୋ ସୁଖଦୁଃଖର ସେ ସାହାଯ୍ୟକାରୀ, ଶୁଭାକାଂକ୍ଷୀ, ଭାଇବନ୍ଧୁ, ପରାମର୍ଶଦାତା—ସବୁ । ଆଚ୍ଛା ଆପଣ ଯାଆନ୍ତୁ, ବୁଲିଆସିବେ; ଆଉ ଦିନେ ମୋ କଥା ଆପଣଙ୍କୁ କହିବି । ବାସ୍ ସେତିକି ।

ତାଙ୍କର ଜରିଆରେ କଂଗ୍ରେସ ଅଧିବେଶନରେ ଅମେ ସ୍ୱେଚ୍ଛାସେବକ ରୂପେ ସ୍ଥାନ ପାଇଲୁ ।

କମଳାନେହେରୁ ନିକଟରେ ସ୍ୱର୍ଗଗାମିନୀ ହୋଇଥିଲେ । ଜବାହରଲାଲ ବିଦେଶରୁ ଆସି କଂଗ୍ରେସର ସଭାପତି ହେଲେ । ପତାକା ଉତ୍ତୋଳନବେଳେ ଆମକୁ ଉଦ୍‌ବୋଧନ ଦେଇ ସେ କାନ୍ଦି ପକାଇଥିଲେ । ଏତେ ବଡ଼ ନାମୁଆ ଲୋକ, ଏତେ ବିଦ୍ୱାନ, ରାଜନୀତିଜ୍ଞ, ପତ୍ନୀର ମାୟା ମମତା ଓ ବିଚ୍ଛେଦ ମନେ ପକାଇ ସେ ଏତେ ବ୍ୟଥିତ ହେଲେ ଯେ ଲୋକଙ୍କ ଆଗରେ ତାଙ୍କର ଅଶ୍ରୁର ଧାର ଛୁଟିଲା । କି ଦୁର୍ଯୋଗ, ପତାକାର ଗଣ୍ଠି ଫିଟିଲା ନାହିଁ । ସମସ୍ତେ ଉତ୍କଣ୍ଠିତ ହୋଇ ପଡ଼ିଲେ । ସମସ୍ତଙ୍କ ମୁହଁ ଶୁଖିଗଲା । ଗଣେଶବାବୁ ସାହସର ସହିତ ଖୁଣ୍ଟ ଉପରେ ଚଢ଼ି ପତାକା ଫିଟାଇ ଦେଲେ । ସମସ୍ତେ ଖୁସି । ବିଶେଷ କରି ଆମର ଓଡ଼ିଆ ଭାଇମାନେ ।

କଂଗ୍ରେସ ଅଧିବେଶନ ପରେ ହାବେଳିକୁ ଫେରିଲୁ । କିନ୍ତୁ ହାବେଳି ଖାଲି । ତାର କର୍ତ୍ତ୍ରୀ ନାହାନ୍ତି । ସେ କେଉଁ ରାଜାଙ୍କ ସହିତ କାଶ୍ମୀର ଯାଇଛନ୍ତି ।

ଶୁକ୍ଲାଜୀ ଦୁଇଶହ ଟଙ୍କା ଓ ଖଣ୍ଡିଏ ପତ୍ର ବଢ଼ାଇ ଦେଇ କହିଲେ "ମାଲିକିନ୍ ଦେଇ ଯାଇଛନ୍ତି ।" ପତ୍ରଟି ହେଲା ।

ସ୍ନେହର ଶ୍ରେଷ୍ଠ ଭାଇ ଦୁଇଟି ମୋର । ଦିଦି ବୋଲି ଯେତେବେଳେ ସମ୍ବୋଧନ କରିଛ ଶ୍ରେଷ୍ଠ ଭାଇ ବୋଲି ଲେଖିବାକୁ ମୁଁ କୁଣ୍ଠାବୋଧ କଲିନି । କାଶ୍ମୀର ଯାଉଛି, କେବେ ଫେରିବି ଜାଣେନା । ଜଗନ୍ନାଥଙ୍କ ନିକଟରେ ମୋ ଦୁଃଖ ଜଣାଇବ । ଯେପରି ମୁଁ ଏ ସଂସାରରୁ ମୁକ୍ତ ହେବି । ଶୁକ୍ଲାଜୀଙ୍କ ପାଖରେ ସାମାନ୍ୟ ରଖିଗଲି । ତୁମ ଯାତ୍ରା ପଥରେ ତାହା ପାଥେୟ ହେଲେ ଧନ୍ୟା ହେବି ।

ପୁନଶ୍ଚ ଶୁକ୍ଲାଜୀଙ୍କଠାରୁ ଶୁଣିଲି ତୁମେ ଦୁହେଁ ଦେଶସେବୀ । କାରାବରଣ କରିଛ । ଇଂରେଜ ସରକାରଙ୍କ ଦ୍ୱାରା ବହୁ ଯନ୍ତ୍ରଣା ସହିଛ । ଏ କଥା ମୁଁ ଜାଣି ନ ଥିଲି । ଶୁକ୍ଲାଜୀଙ୍କଠାରୁ ଏସବୁ ଶୁଣି ଆହୁରି ମୋର ସ୍ନେହ, ଆଦର, ମମତା ବଢ଼ିଗଲା, ତୁମ ଦୁହିଁଙ୍କ ଉପରେ । ତୁମେ ତ ଜଗନ୍ନାଥ ଦେଶର ଲୋକ । ସେ ମଙ୍ଗଳମୟ । ତୁମ୍ଭର ମଙ୍ଗଳ କରନ୍ତୁ । ଚାଲିଲି । —ତୁମର ଦିଦି ।

ଶୁକ୍ଳାଙ୍କୁ ତାର କଥା ପଚାରିଲୁ ।

"ପଣ୍ଡିତଜୀ ଏ ଝିଅଟି ବଡ଼ ହତଭାଗିନୀ । ଶୁକ୍ଳାଜୀ ଆରମ୍ଭ କଲେ । ସବୁ ଥାଇ ତାର କିଛି ନାହିଁ । ବଙ୍ଗାଳୀ ଝିଅ ଏ । ବାପା ଖୁବ ବଡ଼ ଲୋକ ଥିଲେ । ତାଙ୍କର ଏକ ମାତ୍ର କନ୍ୟା । ଖୁବ ଅଲିଅଳି ଦୁଲାଲି । ଆଇ. ଏ. ପର୍ଯ୍ୟନ୍ତ ପଢ଼ିଥିଲା । ଗୋଟିଏ ଅତି ଚରିତ୍ରବାନ୍ ରୂପଗୁଣ ସମ୍ପନ୍ନ ବିଦ୍ୱାନ ଯୁବକକୁ ଭଲପାଇ ବସିଲା । ପିଲାଟି ଖୁବ ଗରିବ । ତାର ଅସାଧାରଣ ଚରିତ୍ରବତ୍ତା ଓ ମେଧାବୀ ଶକ୍ତିରେ ଆକୃଷ୍ଟ ହୋଇ ସେ ବିବାହ ପାଇଁ ପିତାଙ୍କ ଅନୁମତି ଲୋଡ଼ିଲା । କିନ୍ତୁ ଜାତି ହେଲା କାଳ । ସେ ଥିଲା ଦାସବୃତ୍ତି ଘରର ପୁଅ । ଏ ବ୍ରାହ୍ମଣ ଘରର ଝିଅ । ବାପା ଅନୁମତି ଦେଲେନି । ଝିଅ ଜିଦ୍ କଲା ସେହି ଯୁବକ ସହିତ ବିବାହ କରିବାକୁ । ଫଳରେ ସେ ହେଲା ଗୃହରୁ ବିତାଡ଼ିତା, ବାପାମାଆ ଓ ସମସ୍ତ ସମ୍ପତ୍ତିରୁ ବଞ୍ଚିତା । କେବଳ ସେତିକି ନୁହେଁ । ସେ ଯୁବକକୁ ଜୀବନରେ ମାରିଦେବାକୁ ଭୀଷଣ ଷଡ଼ଯନ୍ତ୍ର କଲେ, ତାର ପିତା । ଏହା ଜାଣିପାରି ଦୁହେଁ କଲିକତା ପଳାଇ ଆସି କାଳୀମନ୍ଦିରରେ ବିବାହ କଲେ । ତାଙ୍କ ବାପା ଯୁବକ ନାମରେ ମିଛ ମକଦ୍ଦମା କରିବାକୁ ଚେଷ୍ଟାକରି ଶେଷରେ ବିରତ ହେଲେ ।

ଯୁବକଟିର ନାମ ଥିଲା ଧୀରେନ୍ଦ୍ର । ଭଲ ଚାକିରୀଟିଏ ପାଇଥିଲା । ସୁଖରେ ଚଳୁଥିଲେ । ଝିଅଟିଏ ମଧ୍ୟ ହେଲା । ଦୁଇ ତିନି ବର୍ଷ ପରେ ଦୁଃଖର ପାହାଡ଼ ତା ଉପରେ ଭାଙ୍ଗି ପଡ଼ିଲା । ତାର ବାପା ଗୁଣ୍ଡାମାନଙ୍କ ହାତୋଟରେ ବଶୀଭୂତ କରି ହତ୍ୟା କଲେ ଧୀରେନ୍ଦ୍ରକୁ । ଆପଣ କେବେ କଳ୍ପନା କରିପାରିବେ ପଣ୍ଡିତଜୀ । ପୁଣି ଜନ୍ମଦାତା ପିତା ଏତେ ନିଷ୍ଠୁର ଏତେ ନିର୍ମମ ହୋଇପାରେ ? ନିଜର ଜିଦ୍ ବଜାୟ ରଖିବା ଲାଗି ଝିଅର ମଥାରୁ ସିନ୍ଦୂର ଲିଭାଇ ଦେଇପାରେ ? ସ୍ୱାମୀର ବିଚ୍ଛେଦରେ ତାଙ୍କର ବିୟୋଗରେ ଦୁଃଖରେ ଓ ହତାଶରେ ମିୟମାଣ ହୋଇ ପଡ଼ିଲା ସୁଶୀଳା । ଅଭାବ ଅନଟନରେ ପଡ଼ି ଔଷଧ ଓ ପଥ୍ୟ ନ ପାଇ ତାର ଝିଅଟି ମଧ୍ୟ ଆର ପାରିକୁ ଗୁଲିଗଲା । ତାର ଯୌବନ ଅଛି । କମନୀୟ ଦେହଶ୍ରୀ ଅଛି । ସୁନ୍ଦର ଗୋରା ଚକ୍ ଚକ୍ ଶରୀରଟିକୁ ସମସ୍ତେ ଛିନ୍ ଛିନ୍ ଓଟାରି ଖାଇବାକୁ ଚେଷ୍ଟା କଲେ । କ'ଣ କରିବ ବିଚାରୀ ? ପେଟକୁ ଗଣ୍ଡିଏ ଭଲରୂପେ ଦାନା ମିଳିଲା ନାହିଁ । ନିଜର ଅତୁଟ ଯୌବନ ଢାଙ୍କିବାକୁ ଭଲ ଲୁଗା ଖଣ୍ଡିଏ ପାଇଲାନି । ଯୁଆଡ଼େ ଗଲା ସବୁଆଡ଼େ ମଣିଷର ଲୋଲୁପ ଦୃଷ୍ଟି ଓ ଲୋଲହାନ ଜିହ୍ୱା । ଲକ୍ଷପତି ବାପର ଝିଅ ଆଜି ଜନ୍ମଦାତାର ଷଡ଼ଯନ୍ତ୍ରରେ ଦାଣ୍ଡର ଭିକାରୁଣୀ ।

କହି ଚାଲିଥାନ୍ତି ଶୁକ୍ଳାଜୀ । ସ୍ତମ୍ଭୀଭୂତ ହୋଇ ଶୁଣୁଥାଉ ତାଙ୍କ କଥା । ଔଷଧପତ୍ର ଚିକିତ୍ସା ନ ପାଇ ଝିଅଟି ମଧ୍ୟ ଚିରଦିନ ପାଇଁ ଆଖି ବୁଜିଲା । ମୁଁ ଆଗରୁ

କହୁଛି ତା ପ୍ରାଣର ଶେଷ ସମ୍ବଳ ଟିକକ ହଜିଗଲା । ତାପରେ ଚାଲିଲା ଜୀବନ ସଂଗ୍ରାମ । କେତେ ଜାଗାରେ ଠୋକର ଖାଇ ଖାଇ ଶେଷରେ ଜଣେ ଅତି ଧର୍ମପ୍ରାଣ ବ୍ୟକ୍ତିଙ୍କ ନିକଟରେ ଆଶ୍ରୟ ନେଇଥିଲି । ସେଇଠି ମୁଁ ଥାଏ । ପ୍ରଥମଦିନ ସେ ମୋତେ ଝିଅ ବୋଲି ଡାକିଲେ । ସେମିତି ମୋର ଗୋଟିଏ ଭଉଣୀ ମରି ଯାଇଥିଲା । ସେ ଝିଅ ଡାକରେ କି ମଧୁ ବୋଳା ଯାଇଥିଲା କେଜାଣି ତାକୁ ମୁଁ ଆଉ ଛାଡ଼ିନି । ପକ୍ଷୀ ତାର ଶାବକକୁ ନିଜର ପକ୍ଷପୁଟରେ ରଖିଲା ପରି ମୁଁ ନିଜେ ପ୍ରାଣ ଦେଇ ତାର ଇଜ୍ଜତ, ତାର ସତୀତ୍ୱ, ତାର ସମ୍ମାନ ବଞ୍ଚାଇ ରଖିଛି ।

ତାପରେ ସେ ନିଜ ଇଚ୍ଛାରେ ଜଣେ ସଙ୍ଗୀତ ଓ ନୃତ୍ୟ ବିଶାରଦଙ୍କ ପାଖରେ ଶିକ୍ଷା କଲା । ପରେ ଖବର ପାଇଲୁ ତାର ବାପା ଶେଷ ମୁହୂର୍ତ୍ତରେ ଅନୁତାପାନଳରେ ଦଗ୍ଧ ହୋଇ ମୃତ୍ୟୁ ପୂର୍ବରୁ ତାଙ୍କର ସମସ୍ତ ସମ୍ପତ୍ତି ଝିଅ ନାମରେ ଉଇଲ୍ କରି ଯାଇଛନ୍ତି । ଏ ଖବର ପାଇଁ ଟିକିଏ ହେଲେ ଉତ୍ସାହ ପ୍ରକାଶ କଲାନି ସୁଶୀଳା । ଘରର ସମସ୍ତ ସମ୍ପତ୍ତି ଏବେ ଦାତବ୍ୟ ଚିକିତ୍ସାଳୟକୁ ଦାନ କଲା । ସହରର କୋଠାବାଡ଼ି ଗୋଟିଏ ଶିଶୁଭବନ ହାତରେ ଟେକିଦେଲା । ବ୍ୟାଙ୍କରେ ଥିବା କିଛି ଟଙ୍କାରେ ଏ କୋଠାଟି ସେହି ଧର୍ମପ୍ରାଣ ବ୍ୟକ୍ତିଙ୍କ ଜରିଆରେ କିଣା ଯାଇଛି । ଯେଉଁ ସମାଜ ତାର ଜୀବନକୁ ଜାଳିପୋଡ଼ି ପାଉଁଶ କରିବାକୁ ଚେଷ୍ଟା କରିଛି ସେହି ସମାଜପତିମାନଙ୍କୁ ଜାଳିପୋଡ଼ି ମାରୁଛି ସେ । ମୁଁ ଯେତେଦୂର ଜାଣେ କାହାରି ଦ୍ୱାରା ସେ କ୍ଷୁଣ୍ଣ ହୋଇନି । ତାର ସତୀତ୍ୱରେ କୌଣସି ଆଞ୍ଚ ଆସିନି । ଯାହା ଦେଖୁଛନ୍ତି ତାହା କେବଳ ବାହାରର ଆଡ଼ମ୍ବର । ଭିତରେ ସେ ସନ୍ନ୍ୟାସିନୀ ତପସ୍ୱିନୀ ଜୀବନ ବିତାଉଛି । ଆପଣ ବିଶ୍ୱାସ କରିବେ କି ନାହିଁ ମୁଁ ଜାଣେନା, ସେ ଦିନକୁ ତିନିଥର ସ୍ନାନ କରେ । ହାତରେ ଗଣ୍ଡିଏ ରାନ୍ଧି ଖାଏ । ମୋ ହାତରେ ସେ ମଧ୍ୟ ଖାଏନି । ମୋତେ ସେ ବହୁତ ଅର୍ଥ, ବହୁତ ମର୍ଯ୍ୟାଦା ଦେବାକୁ ଚାହିଁଥିଲା । ମୁଁ କିନ୍ତୁ ଦରୱାନ ହୋଇ ସବୁ ଦିଗ ପ୍ରତି ସତର୍କ ଦୃଷ୍ଟି ରଖି ଚାଲିଛି । ଲୋକଚକ୍ଷୁରେ ମୁଁ ଦରୱାନ । ସେ ମୋର ମାଲିକାଣୀ । କିନ୍ତୁ ସୁଶୀଳା ଚକ୍ଷୁରେ ମୁଁ ତାର ବଡ଼ ଭାଇ । ସେ ମୋର ସାନ ଭଉଣୀ । ଶୁକ୍ଲାଙ୍କୁ ଆମେ ସାଧାରଣ ଦରୱାନ ବୋଲି ଜାଣିଥିଲୁ । କିନ୍ତୁ ସେ ଯେ ଜଣେ ଶିକ୍ଷିତ ସମ୍ଭ୍ରାନ୍ତ ବଂଶୀୟ ଲୋକ ତାହା ଜାଣିପାରି ଶ୍ରଦ୍ଧାରେ ଭକ୍ତିରେ ଆମ ମୁଣ୍ଡ ଆପଣା ଛୁଏଁ ନଇଁଗଲା ।

ସେଦିନ ରାତିରେ ଅନେକ କଥା ଆପଣ କହୁଥିଲେ । ଆମେ କହିଲୁ । ଆଜି ସଦଙ୍କର ଜୀବନର ଯେଉଁ ପୃଷ୍ଠା ଆପଣ ଉନ୍ମୋଚନ କଲେ ମନରେ ତାଙ୍କ ପ୍ରତି ଗଭୀର ମମତା ଓ ଆଦର ବଢ଼ିଗଲା । କଂଗ୍ରେସ ଅଧିବେଶନରେ ଆମେ ତାଙ୍କୁ

ଦେଖିଥିଲୁ । କିନ୍ତୁ ନୃତ୍ୟଗୀତ ପଟ୍ଟୀୟସୀ ବିଭିନ୍ନ ଅଳଙ୍କାର ବିଭୂଷିତା ଦାମୀ ବନାରସୀ ଶାଢ଼ୀ ପରିହିତା ନୂପୁରର ସିଞ୍ଜନରେ ଯେ ସମସ୍ତଙ୍କୁ ପ୍ରେମ ବିଭୋର କରି ଦେଉଥିଲେ ଏ ତ ସେ ନୁହନ୍ତି । ଏ ଯେ ଜଣେ ସ୍ୱର୍ଗୀୟ ଦ୍ୱନ୍ଦ୍ୱ, ମହିଳା, ତପସ୍ୱୀ । ଧଳା ଶାଢ଼ୀ ପିନ୍ଧିଛନ୍ତି, ଧଳା ବ୍ଲାଉଜ୍ । ମୁଣ୍ଡରେ ଚନ୍ଦନ ଟୋପା କି ଅପୂର୍ବ ! କି ସୁନ୍ଦର ! ଅନ୍ୟ କେହି ଚିହ୍ନନ୍ତୁ କି ନ ଚିହ୍ନନ୍ତୁ ଆମେ ଚିହ୍ନିଥିଲୁ । ଏତେ ଜନଗହଳି ମଧ୍ୟରେ ସ୍ପଷ୍ଟ ବାରି ହେଉଥିଲେ ସେ । ତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ଆଗକୁ ପାଦ ବଢ଼େଇଲୁ । ଗଲା ପୂର୍ବରୁ ଶୁକ୍ଲାଜୀଙ୍କୁ କହିଲୁ—ଦାଦିଙ୍କୁ କହିବେ କରିଙ୍କର ଚଳେଇବା ପାଇଁ ତାଙ୍କର ଯଥେଷ୍ଟ ଅଛି । ଆଉ କାହିଁକି ଏ ବେଶଭୂଷା ! ଆଉ କାହିଁକି ଏ ଶରୀରକୁ କଷ୍ଟ ଦେଉଛନ୍ତି !

''କହିବି । ଶୁକ୍ଲାଜୀଙ୍କ ସଂକ୍ଷିପ୍ତ ଉତ୍ତର । ତାଙ୍କୁ ଅଜସ୍ର ଧନ୍ୟବାଦ ଜଣାଇ ଚାଲିଲୁ । ଶୁକ୍ଲାଜୀଙ୍କ ଆଖିରେ ଅଶ୍ରୁ, ଆମ ଆଖିରୁ ମଧ୍ୟ କେତେ ଟୋପା ଲୁହ ଝରି ପଡ଼ିଲା ।

ଯୁକ୍ତ ପ୍ରଦେଶର ଅନ୍ୟାନ୍ୟ ଜିଲ୍ଲା, ଡେରାଡୁନ୍, ହରଦ୍ୱାର, ଲଛମନ୍ ଝୁଲା ଦେଇ ହୃଷିକେଶ, କେଦାରନାଥ, ବଦ୍ରିନାଥ, ଗଙ୍ଗୋତ୍ରି, ଯମୁନୋତ୍ରି, ପ୍ରଭୃତି ଦେଖିବାର କଥା । ବର୍ତ୍ତମାନ ତ ଯାତାୟତର ବହୁ ସୁବିଧା ହୋଇ ଗଲାଣି । ବସ୍ ଓ ଉଡ଼ାଜାହାଜ ଚାଲିଛି । ରାସ୍ତାର ଗତି ମଧ୍ୟ ବଦଳି ଯାଇ ସ୍ଥାନେ ସ୍ଥାନେ ରହିବାର ଖାଇବାର ଅନେକ ସୁଖ ସୁବିଧା କରି ଦିଆଯାଇଛି । କିନ୍ତୁ ଆଜକୁ ୪୫ ବର୍ଷ ତଳେ ଏହିଭଳି ନ ଥିଲା । ଜଣେ ସାଧୁ କାଲିକମଲିବାଲା ଘର ଘର ବୁଲି ଭିକ୍ଷା କରି ସ୍ଥାନେ ସ୍ଥାନେ ଛୋଟ ଛୋଟ ଧର୍ମଶାଳାଟିମାନ ନିର୍ମାଣ କରି ରହିବାର ଓ ଖାଇବାର ବ୍ୟବସ୍ଥା କରିଥିଲେ । ନିଜେ ହାତରେ ରାନ୍ଧି ଖାଇବ । ଚାଉଳ, ଡାଲି, ଅଟା, ଡାଲି ସବୁ ଯୋଗାଇ ଦିଆଯିବ । ଶୋଇବାକୁ ଦଉଡ଼ିଆ ଖଟ ଏବଂ କମଳ ଯୋଗାଇ ଦେବେ । ପଇସା ମାଗିବେ ନାହିଁ । ସ୍ୱେଚ୍ଛାରେ ଯିଏ ଯାହା ଦେବ ଗ୍ରହଣ କରୁଥିଲେ । ଯେଉଁମାନଙ୍କର ପଇସାଥିଲା ସେମାନେ ଘୋଡ଼ା, ଖଚର ପିଠିରେ କମ୍ପା ମଣିଷ ପିଠିରେ ଲଦି ହୋଇ ଯାଉଥିଲେ । ହୃଷିକେଶରୁ ବଦ୍ରିନାଥ, କେଦାରନାଥ, ରୁଦ୍ର ପ୍ରୟାଗର ଦୃଶ୍ୟ ଅତି ମନୋରମ । ଅତି ଛବିଳ ସେ ଶୋଭା । ଗୋଟିଏ ପଟରେ ପୁଣ୍ୟ ସଲିଳା ଭାଗୀରଥୀ, ଅନ୍ୟ ପଟରେ ହିମାଳୟର ଉତ୍ତୁଙ୍ଗ ପର୍ବତ ଶ୍ରେଣୀ । ଆଖି ଝୁଅଡ଼େ ଯିବ, ଆଉ ଫେରାଇ ହେବ ନାହିଁ । ତା କୋଳରେ କେତେ ଯେ ସାଧୁ ସନ୍ଥ ରହି ତପସ୍ୟା ମଗ୍ନ ଅଛନ୍ତି, କିରନ୍ତର ସାଧନାରେ ରତ ଅଛନ୍ତି, ନ ଦେଖିଲେ କେହି ତାହା ବୁଝି ଜାଣି ପାରିବେ ନାହିଁ । ବର୍ତ୍ତମାନ କଥା ମୁଁ କହି ପାରିବିନି । ସେତେବେଳେ ଏ ଚକ୍ଷୁ ଏହିପରି କେତେଜଣ ବନବାସୀ ସାଧୁଙ୍କ

ଦର୍ଶନ ଲାଭ କରି ଧନ୍ୟ ହୋଇଛୁ । ସେମାନଙ୍କ ସାଧନା ଅଲୌକିକ ଓ ଅବର୍ଣ୍ଣନୀୟ ।

ଏହିପରି ଜଣେ ସାଧୁଙ୍କର ଦର୍ଶନ ମିଳିଥିଲା । ସେ ପ୍ରତିଦିନ ହିମାଳୟରେ ଥିବା ତାଙ୍କ ବାସସ୍ଥାନଠାରୁ ଶହ ଶହ ଫୁଟ ତଳେ ଥିବା ଭାଗୀରଥୀରେ ସ୍ନାନ ସାରି ପୁଣି ପାହାଡ଼ ଉପରକୁ ଚଢନ୍ତି । ତାଙ୍କର ଜଟା ପ୍ରାୟ ଦଶହାତ ପର୍ଯ୍ୟନ୍ତ ଲମ୍ବି ଥାଏ । ଆଜି ଏକଥା ଶୁଣିଲେ କେହି ବିଶ୍ୱାସ କରିବେ ନାହିଁ । କିନ୍ତୁ ଏ ଚକ୍ଷୁ ଦେଖି ପବିତ୍ର ହୋଇଛୁ । ଆଉ ଜଣେ ସାଧୁଙ୍କୁ ଦେଖିଲୁ, ସେ ଖାଲି ପତ୍ର ଖାଇ ଜୀବନ ଧାରଣ କରିଛନ୍ତି । ସେ କୌଣସି ପତ୍ର ମୂଠିଏ କଟୁ, ତିକ୍ତ ହେଉପଛେ ଖାଉଥିଲେ ଏବଂ ଗଙ୍ଗା ପାଣି ପିଉଥିଲେ ।

ଲେଖିବାକୁ ଭୁଲିଯାଇଥିଲି ଯେ, ଏହିପରି ଅନେକ ସାଧୁଙ୍କ ଦର୍ଶନ ମିଳିଥିଲା ଅଲ୍ଲାହାବାଦର ତ୍ରିବେଣୀ ସଙ୍ଗମରେ ହେଉଥିବା ପୂର୍ଣ୍ଣ କୁମ୍ଭ ମେଳାରେ ଯେଉଁଠିକି ଲକ୍ଷ ଲକ୍ଷ ଯାତ୍ରୀ ଓ ବହୁ ସାଧୁ ଓ ସନ୍ଥ ଆସି ସମବେତ ହୁଅନ୍ତି ସ୍ନାନ କରିବା ପାଇଁ । ଆମର ମହା ସୌଭାଗ୍ୟ ଯେ ମେଳା ଯେତେଦିନ ରହିଲା, ସେଠି ଆମେ ସ୍ୱେଚ୍ଛା ସେବକ ରୂପେ କାର୍ଯ୍ୟ କରିଥିଲୁ ।

ପ୍ରଥମ ହୋଇ ପଞ୍ଜାବରେ ପାଦ ଦେଇଛୁ, ଗୋଟିଏ ହୋଟେଲରେ ପହଞ୍ଚି ଖାଇବାର ବନ୍ଦୋବସ୍ତ କଲୁ ଓ କ'ଣ ତରକାରୀ କରିଛ ବୋଲି ପଚାରିଲୁ । ଆମ ଭଳି ମିଶ୍ରଣ ତରକାରୀ କରନ୍ତି ନାହିଁ । ସେ କହିଲା ବଟାଉ ଆମେ କହିଲୁ ବଟାଓ । ବଟାଉ ଓ ବଟାଓ ଉପରେ ଏପରି ଗଣ୍ଡଗୋଳ ଲାଗିଲା ଯେ କିଛି ହେବ ନାହିଁ । ଆମେ ଖାଇବୁ କ'ଣ ? ସେ ଆମକୁ ଦେବ କ'ଣ ? ଯାହାହେଉ ଜଣେ ଭଦ୍ର-ଲୋକଙ୍କ ହସ୍ତକ୍ଷେପ ଫଳରେ ତାହାର ପରିସମାପ୍ତି ଘଟିଲା ।

ଉତ୍ତର ପଶ୍ଚିମ ପ୍ରଦେଶର ରାଜଧାନୀ ପେଶାୱାର । ଏଠାକାର ଭାଷା ପୁସ୍ତୁ । ଲୋକଗୁଡ଼ାକୁ ଦେଖିଲେ ଡର ଲାଗିବ । ସତେଜ, ସବଳ ଓ କାର୍ଯ୍ୟଦକ୍ଷ । କିନ୍ତୁ ପେଶାବାସୀର ଅନ୍ତରରେ ଏତେ ଦରଦ, ଏତେ ସ୍ନେହ ଯେ କଳ୍ପନା କରି ହେବ ନାହିଁ । ମୁସଲମାନଙ୍କ ସଂଖ୍ୟା ୫୦ ପରସେଣ୍ଟ ଖାଁ । ଅବଦୁଲ ଗଫର ଖାଁଙ୍କୁ ଏମାନେ ଦେବତା ଭଳି ଭକ୍ତି କରନ୍ତି । ନେତା ଭାବେ ସମ୍ମାନ ଦେଖାନ୍ତି । ଖୁଦାଇ ଖିଦ୍‌ମତ୍ ଗାର (ଈଶ୍ୱରଙ୍କ ସେବକ) ଲାଲ ବାହିନୀ ଦଳ କଂଗ୍ରେସରେ ଏକାନ୍ତ ପରିଚିତ ।

ପେଶାୱାରରୁ ଆଫ୍‌ଗାନସ୍ଥାନ ଆଡ଼େ ଗଲେ ଖାଇବର ଗିରି ସଙ୍କଟ ଏବଂ ବୃଲାନ୍ ଗିରିସଙ୍କଟ ପଡ଼େ । ପାହାଡ଼ କାଟି ହୋଇ ରାସ୍ତା ହୋଇଛି । ଅତି

ଫକୀର୍ଙ୍କ ପାର୍ବତ୍ୟ ପଥ । ଓଟ, ଖଚର, ମେଣ୍ଢା, ଚମରୀ ଗାଈ ବହୁଳ ପରିମାଣରେ ବୋଝ ନେଇ ଯିବା ଆସିବା କରନ୍ତି । ଭାରତରୁ ଅଫଗାନସ୍ଥାନ ଯିବାକୁ ଇଏ ଏକମାତ୍ର ବାଟ । ସାଙ୍ଗରେ ଖାଦ୍ୟପେୟ ନେଇଥିବ, ନଚେତ୍ ଭୀଷଣ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ । ଏ ପଥ ଦେଇ ପ୍ରଚୁର ପରିମାଣରେ ଖଜୁର୍, କିସ୍‌ମିସ୍, ଆଖ୍‌ରୋଟ, ଅଙ୍ଗୁର୍, ସେଓ, ନାସ୍‌ପାତି ବାହାରୁ ଆସେ । ଏକ ରକମର ଉତ୍ତମିଶ୍ର ଫଳ ମଧ୍ୟ ଖାଇବାକୁ ମିଳେ । ସ୍ୱାଦୁ ଯେମିତି ପୁଷ୍ଟିକର ମଧ୍ୟ ସେମିତି । ବଡ଼ ବାଦାମ ଓ ପେସ୍ତା ମଧ୍ୟ ବହୁତ ଆମଦାନୀ ହୁଏ । ସୁସ୍ୱାଦୁ ଫଳ ଖାଇ ଖାଇ ମନ ତୃପ୍ତିରେ ଭରି ଯାଇଥିଲା ।

ଖାଇବାର ପାସ୍ ଗିରିସଙ୍କଟ ପେଶାବାର ଆଡ଼େ ସିଧା ଯାଇଛି । ବାମପଟେ ବେଲୁଚିସ୍ଥାନ ଯାହାର ରାଜଧାନୀ କ୍ୱେଟା । ମଝିରେ ପଡ଼ିବ ଓ୍ୱାଜିରସ୍ଥାନ । ସେଠାକାର ବାସିନ୍ଦା ଚମ୍ବଲ ଉପତ୍ୟକାର ଡକାୟତମାନଙ୍କ ଭଳି ଅତ୍ୟନ୍ତ ଦୁର୍ଦ୍ଧର୍ଷ ଓ ଦୁର୍ଦ୍ଦମ । ଇଂରେଜ ସରକାରଙ୍କ ସହିତ ତାଙ୍କର ଖଣ୍ଡଯୁଦ୍ଧ ବରାବର ଲଗି ରହୁ ଥିଲା । ସେମାନେ କାହାରି ବଶ୍ୟତା ସ୍ୱୀକାର କରୁ ନ ଥିଲେ । ମଝିରେ ମଝିରେ ଆସି ନିକଟସ୍ଥ ବସ୍ତି ଓ ସହରମାନ ଚଢ଼ାଉ କରି ଯାହା ପାଉଥିଲେ, ଲୁଟ୍‌ପାଟ୍ କରି ନେଇ ଯାଉଥିଲେ । ବାଧା ଦେଲେ ମୃତ୍ୟୁ ଅନିବାର୍ଯ୍ୟ । କେଉଁବାଟେ ଆସୁ-ଥିଲେ ଓ କେଉଁବାଟେ ଯାଉଥିଲେ, ତାହା ଜାଣିବା କଷ୍ଟକର । ମଝିରେ ମଝିରେ ସେନା ଛାଉଣି ଥିଲେ ମଧ୍ୟ ସେମାନେ ଏହାକୁ ଡରିଲେ ହେଲେ ଖାତିର କରୁ ନ ଥିଲେ । ସୈନ୍ୟମାନେ ମଧ୍ୟ ସେମାନଙ୍କ ଆକ୍ରମଣରୁ ରକ୍ଷା ପାଇ ପାରୁ ନ ଥିଲେ । ସେମାନଙ୍କ ପାଖରେ ନାନା ପ୍ରକାର ବନ୍ଧୁକ ଥିଲା । ଲକ୍ଷ୍ୟ ଭେଦରେ ସେମାନେ ଅଦ୍ୱିତୀୟ ଥିଲେ । ନିଜ ଜୀବନ ପ୍ରତି ସେମାନଙ୍କର ତିଳେହେଲେ ମାୟା ମମତା ନଥିଲା କିମ୍ବା ଅନ୍ୟ କାହାର ଜୀବନ ନେବାକୁ ମଧ୍ୟ ସେମାନଙ୍କର କୁଣ୍ଠାବୋଧ କରୁ ନ ଥିଲେ ।

ଯାହାକୁ ସନ୍ଦେହ ହେବ, ଗୁଳିରେ ଉଡ଼େଇ ଦେବେ । ହତ୍ୟା, ରକ୍ତପାତ ଲୁଟ୍‌ତରାଜ ତାଙ୍କର ଏକମାତ୍ର ଜୀବିକା ଥିଲା । ବାଟରେ ଠାଏ ଠାଏ ଅନେକ ସୈନ୍ୟ ଛାଉଣି ଥିବାରୁ ସୁବିଧା ହେଉଥିଲା । କିନ୍ତୁ ଭୟ ହେଉଥିଲା ଏ ଦୁର୍ଗମ ପଥରେ ଯଦି ଆଫ୍ରିଦିମାନଙ୍କ ହାତରେ ପଡ଼ିଯାଉ ତେବେ ରକ୍ଷା ନାହିଁ । ଏମାନଙ୍କ ନେତା ଥିଲେ ଇପିର ଫକୀର । ଆଗ୍ରା ମୁସ୍‌ଲିମ୍ ବିଶ୍ୱବିଦ୍ୟାଳୟର ନାମଜାଦା ବିଜ୍ଞାନ ପ୍ରଫେସର । ସେତେବେଳେ ସେ ବନ୍ଧୁକରେ ଡିଗ୍ରୀ ନେଇ ଆସିଥିଲେ । କୌଣସି କାରଣରୁ ଇଂରେଜମାନଙ୍କ ଦ୍ୱେଷ ଚକ୍ଷୁରେ ପଡ଼ି ସେ ଦେଶତ୍ୟାଗୀ

ହେଲେ । ଇଂରେଜମାନେ ସେତେବେଳେ କେତେ ହଜାର ଟଙ୍କା ବଦଳାରେ ତାଙ୍କ ମୁଣ୍ଡକୁ ପଣ ରଖିଥିଲେ । କିନ୍ତୁ ମୀର ସମରୁଦ୍ଦିନ କୌଶଳରେ ପଳେଇ ଯାଇ ଲାହୋରରେ ଜଣେ ବନ୍ଧୁଙ୍କ ଘରେ ଆତ୍ମଗୋପନ କରି ଫକୀର ସାଜିଲେ । କିନ୍ତୁ ସରକାରୀ ଗୁପ୍ତଚରମାନେ ତାଙ୍କୁ ସେଠାରେ ମଧ୍ୟ ରଖାଇ ଦେଲେ ନାହିଁ । ସେ ପେଶୱାର ପଟେ ଓ୍ୱାଜିରସ୍ଥାନ ଆସିଲେ । ଆରବୀ, ପାର୍ସି, ଉର୍ଦ୍ଦୁ ଭାଷାରେ ପାଣ୍ଡିତ୍ୟ ଲାଭ କରିଥିଲେ । ପୁଣି ଜଣେ ବୈଜ୍ଞାନିକ । ପୁସ୍ତୁ ଭାଷା ଆୟତ୍ତ କରିବାକୁ ତାଙ୍କୁ ବେଶୀ ସମୟ ଲାଗିଲା ନାହିଁ । ଆଶ୍ରୟନେଲେ ଆଫ୍ରିଦୀ ବସ୍ତିରେ । କେତେକ ବୈଜ୍ଞାନିକ କୌଶଳ ଦେଖାଇ ସେମାନଙ୍କ ମନରେ ବିଶ୍ୱାସ ଜନ୍ମାଇ ଦେଲେ । ଦୁର୍ଦ୍ଦାନ୍ତ ହେଲେ ମଧ୍ୟ ଆଫ୍ରିଦୀମାନେ ସରଳବିଶ୍ୱାସୀ । ତାଙ୍କ ଠାରେ ସେମାନେ ଆତ୍ମ ସମର୍ପଣ କଲେ । ସମରୁଦ୍ଦିନ ହେଲେ ଇପିର ଫକୀର । ତାଙ୍କର ବୁଦ୍ଧିରେ ପରିଚାଳିତ ହେଲେ ସେମାନେ । ଭାବିଲେ ଏ ଆମର ପୈଗମ୍ବର (ଦେବଦୂତ) । ତାଙ୍କର ଆଦେଶ ଅମାନ୍ୟ କରିବାକୁ କାହାରି ଶକ୍ତି ବା ସାମର୍ଥ୍ୟ ନ ଥିଲା ।

ନିଘଞ୍ଚ ଜଙ୍ଗଲ ଓ ପାହାଡ଼ ତଳେ ଆଫ୍ରିଦି ବସ୍ତିମାନ । ଇପିର ଫକୀର ସେ ବସ୍ତିମାନଙ୍କର ସଂସ୍କାର କଲେ । ସେମାନଙ୍କ ପିଲାମାନଙ୍କୁ ନିଜେ ପାଠ ପଢ଼ାଇଲେ । ବିଭିନ୍ନ ସ୍ଥାନରେ ଛୋଟ ଛୋଟ ଚିକିତ୍ସାଳୟ ସ୍ଥାପନ କଲେ ।

ବାଦ୍‌ଶାହା ଖାଁ (ଖାଁ ଅବଦୁଲ୍ ଗଫର୍ ଖାଁ) ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ତାଙ୍କ ସହ ଫକୀରଙ୍କର ବରାବର ଯୋଗାଯୋଗ ଥିଲା । ସବୁଆଡ଼େ ସେ ଗୁପ୍ତଚର ରଖିଥିଲେ । ପେଶବାରରୁ ଓ ଅନ୍ୟ ଜିଲ୍ଲାମାନଙ୍କରୁ ଅନେକ ସାହାଯ୍ୟ ଆଣି ଏମାନଙ୍କୁ ବାଣ୍ଟୁଥିଲେ । ନିଜ ପାଇଁ କିଛି ରଖୁ ନ ଥିଲେ । ଜଣେ ପେନ୍‌ସନ୍ ପ୍ରାପ୍ତ ସୈନିକଙ୍କୁ ଆଣି ସେମାନଙ୍କୁ ତାହାଙ୍କଦ୍ୱାରା ରଣ କୌଶଳ ଶିକ୍ଷା ଦେଲେ ।

ଅତି ଅଳ୍ପ ସମୟ ମଧ୍ୟରେ ସେ ଏକ ଦୁର୍ଦ୍ଦାନ୍ତ ବାହିନୀ ଗଠନ କଲେ । ଯାହାର ଲକ୍ଷ୍ୟ ହେଲା "କର ଅବା ମର ।" ଗାନ୍ଧିଜୀଙ୍କର ବହୁ ପୂର୍ବରୁ ଫକୀର ସେମାନଙ୍କୁ ଏହି ଅମୋଘ ମନ୍ତ୍ରରେ ଦୀକ୍ଷିତ କରିଥିଲେ । ଆଫ୍ରିଦିମାନଙ୍କ ବିଷୟରେ ଲେଖିଲେ ଏକ ପୋଥି ହେବ । ମୁଁ ଏଣିକି ନିଜର ଅଙ୍ଗେ ନିଭାଇଥିବା କଥା ଲେଖୁଛି ।

ବାଟ ଭୁଲି ଆଫ୍ରିଦିମାନଙ୍କ ଅଞ୍ଚଳକୁ ପଶିଗଲୁ । ଆଉ ଯିବୁ କୁଆଡ଼େ ? ନିସ୍ତାର ନାହିଁ । ସଙ୍ଗେ ସଙ୍ଗେ ଜଙ୍ଗଲ ଭିତରୁ ବାହାରି ପଡ଼ିଲେ ୮।୧୦ ଜଣ

ଅଫିଦ୍ । ବଗ୍ରିଷ୍ଠକାୟ ପୁରୁଷ । ସମସ୍ତଙ୍କ ହାତରେ ବନ୍ଧୁକ ଓ ଛୁରୀ । ସେ ହିଂସ୍ର, ସେ ଦାଢ଼ି ଦେଖିଲେ ଯେ କୌଣସି ସାହସୀ ଯୁବକ ଡରିଯିବ । ଇଂରେଜ ସରକାରଙ୍କ ଗୁପ୍ତଚର ଭାବି ଆମକୁ ଧରି ନେଲେ । ଖାଲି ଧରି ନେଲେ ନୁହେଁ । ହାତ ମୋଡ଼ି ପଛକୁ ବାନ୍ଧି ଦେଲେ । ମୁହଁରେ କଳାକନା ପଟି ବାନ୍ଧି ଦେଇ କେତେ ଦୂରକୁ ନେଲେ କେଜାଣି । କେବଳ ଅନୁମାନ କରୁଥାଉ, କୌଣସି ଉଚ୍ଚା ନୀଚ୍ଚା କଂକ୍ରିଟ୍ ପଥରେ ଗତି କରୁଛୁ । ଏମାନଙ୍କ ମନରେ ଥରେ ସନ୍ଦେହ ଜନ୍ମିଲେ ଗଛରେ ବାନ୍ଧି ଗୁଳି ଚଳେଇ ଦେବେ ।

କିଏ ବା ଆମର ଏଠି ଭରସା ଅଛୁ ? ଆମେ ସେମାନଙ୍କ ଭାଷା ବୁଝୁନା କି ସେମାନେ ଆମ କଥା ବୁଝନ୍ତି ନାହିଁ । ଜଗନ୍ନାଥ ହିଁ ଭରସା । ଆଗରେ କେବଳ ତାଙ୍କର କଳାଶ୍ରୀମୁଖ ଭାସି ଯାଉଥାଏ । ମନେ ହେଉଥାଏ ଯେପରି ଆଉ ଆମେ ଘରକୁ ଫେରିବୁନି । କେତେ ଦୂର ଆସିଲା ପରେ ପରେ ଗୋଟିଏ ଗଛରେ ବାନ୍ଧି ଦିଆଗଲା । ଆଖିରୁ ପଟି ମଧ୍ୟ ଖୋଲି ଦିଆଗଲା । ଯିଏ ଆମ ପାଖରେ ଥିଲା, ତାକୁ ଛଡ଼େଇ ନେଲେ । କାଳେ କୁଆଡ଼େ ପଳେଇ ଯିବୁ ଏଇ ଆଶଙ୍କାରେ । ସଙ୍ଗେ ସଙ୍ଗେ ଗୁଳିରେ ଉଡ଼େଇ ଦେଇଥାନ୍ତେ, କିନ୍ତୁ ସର୍ଦ୍ଦାରର ଦୟା ହେଲା । ଆମକୁ ବଞ୍ଚେଇ ରଖିଲେ ଇପିର ଫକୀର ଆସିବା ପର୍ଯ୍ୟନ୍ତ । ରାତିରେ ଗଛରେ ନ ବାନ୍ଧି ଖୋଲିଦେଲେ । କିନ୍ତୁ ବେକରେ ପଥର ବନ୍ଧା ଯାଇଥାଏ । ଖାଇବାକୁ ଦିଆ-ଯାଉଥାଏ । ମୋଟା ବାଜରା ରୁଟି ଖଣ୍ଡେ, ମଇଁଷି ମାଂସ ଆଉ ପ୍ରଚୁର ଅଙ୍ଗୁର । ସବୁଜ ବସ୍ତ୍ରର ଅଙ୍ଗୁର, ନାସ୍ପାତି ଓ ସେଓ । ପ୍ରକୃତିର ଏସବୁ ବିଚିତ୍ର ଦାନ । ଏସବୁ ପ୍ରତି ତାଙ୍କର ବିଶେଷ ଆଗ୍ରହ ନ ଥାଏ । ରୁଟି ମାଂସ ହେଲେ ଭରି ଖୁସି । ପାଣିର ଅତ୍ୟନ୍ତ ଅଭାବ । ଝାଡ଼ା ଫେରି ଶୌଚ ହେବା ନାସ୍ତି । ପତ୍ରରେ ପୋଛି ଦିଅନ୍ତି । ବର୍ଷକରେ ଥରେ ଦୁଇଥର ହୁଏତ ଗାଧୋଉଥିବେ ।

ଜୀବନର ମମତା ତ୍ୟାଗ କରି ସେମିତି ପଡ଼ିଥାଉ । ପାଞ୍ଚ ଦିନ ପରେ ଇପିର ଫକୀର ଆସିଲେ । ଆମର ପରିଚୟ ନେଲେ । ପ୍ରଶଂସା ପତ୍ର ଓ ଛବି ସବୁ ଦେଖିଲେ । ସବୁଠାରୁ ବେଶୀ କାମ ହେଲା ଉର୍ଦ୍ଦୁ ଭାଷାରେ ଲେଖାଥିବା ଖାଁ ଅବଦୁଲ ଗଫର୍ ଖାଁଙ୍କ ଚିଠି ଖଣ୍ଡିକ । ସମ୍ମାନର ସହ ଆମକୁ ମୁକ୍ତ କରି ଦିଆଗଲା । ଇପିର୍ ଫକୀର ତାଙ୍କୁ କ'ଣ କହିଲେ, କେଜାଣି, ଜଣେ ଜଣେ ହୋଇ ଆସି ନିଜର କୃତ କର୍ମ ପାଇଁ କ୍ଷମା ମାଗୁଥାନ୍ତି । ସଲାମ କରୁଥାନ୍ତି । ଇପିର ଫକୀରଙ୍କ ବ୍ୟକ୍ତିତ୍ୱ ଆମକୁ ମୁକ୍ତ କଲା ।

ହଜାର ହଜାର ଆଫ୍ରିଦ୍ ଯେଉଁମାନେ ଅତି ଦୁର୍ଦ୍ଦାନ୍ତ, ଅତି ଦୁଃସାହସୀ ଏବଂ ଅନ୍ଧବିଶ୍ୱାସୀ ସେମାନଙ୍କୁ ଅଙ୍ଗୁଳି ଚାଳନାରେ ପ୍ରଭାବିତ କରି ରଖିଛନ୍ତି,

ପରିଚାଳନା କରୁଛନ୍ତି । ଏ କିଛି କମ୍ କଥା ନୁହେଁ । ସେତେ ଡେଙ୍ଗା ନୁହନ୍ତି । ମଧ୍ୟମ ଧରଣର ମଣିଷଟିଏ । ବୟସ ଅନ୍ତତଃ ୬୦ ବର୍ଷ ଭିତରେ ହେବ । କଞ୍ଚା ପାକଲ ଜଣ ଓ ଦାଢ଼ି । ମୁଣ୍ଡରେ ଧଳା ଟୋପି । ନାଲ୍ ରଙ୍ଗର ଆଲ୍‌ଖାଲ୍ଲ ବେକରୁ ଗୋଡ଼ଯାଏ ପଡ଼ିଛି । ତାଙ୍କର ବିଦ୍ୟା ବୁଦ୍ଧି, ଚରିତ୍ରବତ୍ତା ଏ ଦୁର୍ଦ୍ଧର୍ଷ ଉପଜାତିଙ୍କୁ ଆୟତ୍ତାଧୀନ କରିରଖିଛି ।

ଯେଉଁ ଲୋକମାନେ ଆମ ଆଖିରେ ପଟି ଭିଡ଼ି, ହାତ ପଛକୁ ବାନ୍ଧି ରଖି-ଥିଲେ, ସେହି ଲୋକମାନେ ହିଁ ଆମକୁ ବହୁତ ଦୂର ଜଙ୍ଗଲ ଭିତର ଦେଇ ଛାଡ଼ି ଆସିଲେ । କ୍ୟାମେରା ଇତ୍ୟାଦି ଯାହା ନେଇଥିଲେ, ସମସ୍ତ ଫେରାଇ ଦେଲେ । ଅଧିକନ୍ତୁ ଖିସ୍‌ମିସ୍, ଖଜୁର, ବାଦାମ, ପେସ୍ତାବ୍ୟାଗ୍‌ରେ ଭରି ଦେଇଥିଲେ ବାଟରେ ଭୋକ ହେଲେ ଖାଇବାକୁ ।

ଏମିତି ଦୁରବସ୍ଥା ହୋଇଥିଲା ନାଗାଲ୍ୟାଣ୍ଡରେ, ତମୁଲ୍ ଉପତ୍ୟକାରେ । ନାଗାମାନେ ଅଜଗର ସାପ ପୋଡ଼ି କୁକୁର ମାଂସରେ ପିଠାକରି ବାଧ୍ୟ କରିଥିଲେ ଆମକୁ ଖାଇବାକୁ । ପ୍ରାଣ ନେବାକୁ ଯାଇ ନେଇ ନ ଥିଲେ । କିନ୍ତୁ ତମୁଲ ଉପତ୍ୟକାର ଡକାୟତମାନେ ସମସ୍ତ ଲୁଣ୍ଠନ କରି ନେଇଗଲେ । ଜଗନ୍ନାଥଙ୍କ ନାମ କହିବାରୁ ଜୀବନ ନ ନେଇ ଗ୍ଲାଗଲେ ସତ କିନ୍ତୁ ଏପରି ବ୍ୟବସ୍ଥା କରିଦେଇ ଗଲେ ଯେ ଅଳ୍ପ ଅଳ୍ପ ସମୟ ପରେ ବଳୀୟାନ କୁକୁର ଟିକ୍ ଟିକ୍ କରି ଆମର ମାଂସ ଖାଇଦେଇଥାନ୍ତେ, ଯଦି ମିଲ୍‌ଟାରୀ ଗାଡ଼ି ଠିକ୍ ସମୟରେ ପହଞ୍ଚି ଆମକୁ ଉଦ୍ଧାର କରି ନ ଥାନ୍ତା । ସବୁଠାରେ କାଳିଆ ଠାକୁର ହିଁ ସହାୟ ହୋଇଛନ୍ତି । ତାଙ୍କରି ଉପରେ ନିର୍ଭର କରି ଆଗେଇ ଥାଉ । ୪୫।୪୬ ବର୍ଷର କଥା । ସେତେ-ବେଳେ ଆମେ କିଶୋର । ଆଜି ବି ସେ ଅଭିଜ୍ଞତା ସ୍ମରଣ କଲେ ଦେହ ରୋମାଞ୍ଚିତ ହୁଏ ।

ଭାରତର ଆଉ ଦୁଇଟି ପବିତ୍ର ତୀର୍ଥ ସ୍ଥାନ ଅଛି, ଯାହା ବିଷୟରେ ଉଲ୍ଲେଖ କରିବାକୁ ମୁଁ ମୋର କର୍ତ୍ତବ୍ୟ ବୋଲି ମନେ କରୁଛି । ଦୁଇଟି ଯାକ ତୀର୍ଥ ସ୍ଥାନ ଯେପରି ଅତି ଆଶ୍ଚର୍ଯ୍ୟଜନକ ସେହିପରି ଅତି ସ୍ମରଣୀୟ । ଗୋଟିଏ ଉତ୍ତର ଭାରତର କାଶ୍ମୀରରେ ଅମର ନାଥ ଓ ଅନ୍ୟଟି ଦକ୍ଷିଣରେ ପକ୍ଷୀତୀର୍ଥ । ଆମେ ଯେତେ-ବେଳେ ବୁଲି ଯାଇଥିଲୁ, ତାହା ଏକ ଦୁର୍ଗମ ଓ ବିପଦ ସଙ୍କୁଳ ପଥ ଥିଲା । ତୁଷାରାବୃତ ପାହାଡ଼ ଉପରେ ପାହାଡ଼ ମୁଣ୍ଡ ଟେକିଛି । ବରଫ ତଳଟାଣ ଠିକ୍ ସମୟରେ ନ ବାହାରିଲେ, ଯଦି ବରଫପାତ ହୁଏ ନା, ମୃତ୍ୟୁ ଅନିବାର୍ଯ୍ୟ । ବର୍ତ୍ତମାନ୍ କାଶ୍ମୀର ସରକାର ତୀର୍ଥଯାତ୍ରୀମାନଙ୍କ ଲାଗି ଅନେକ ସୁବିଧା ସୁଯୋଗ କଲେଣି ।

ବହୁ ଦୁଃଖ କଷ୍ଟ ସହି ଅମରନାଥ ଧାମରେ ପହଞ୍ଚିଯାତ୍ରୀ ଅମର ନାଥଙ୍କୁ ଦର୍ଶନ କଲେ, ସବୁ କ୍ଲେଶ ଭୁଲିଯିବ । ଏକ ବରଫ ଘେରା ବଡ଼ କୁଣ୍ଡ ମଧ୍ୟରେ ପ୍ରତି ଅଧଘଣ୍ଟା ମଧ୍ୟରେ ବରଫ ଖଣ୍ଡ଼ା ଝଡୁଛି । ତାହା ଏକ ବିରାଟ ଲିଙ୍ଗରେ ପରିଣତ ହୋଇ କ୍ଷୁଆଡ଼େ ଉଭେଇ ଯାଉଛନ୍ତି । ସେଠି ମଧ୍ୟ ପକ୍ଷୀତୀର୍ଥ ଭଳି ଗୋଟିଏ ଖୋଲରେ କପୋତ କପୋତୀ ବସିଛନ୍ତି । ଲୋକେ କହନ୍ତି ଏହି ହିଁ ହର ପାର୍ବତୀ । ବରଫ ଖସିବା ଏବଂ ଲିଙ୍ଗ ଉଦ୍‌ଭବ ହେବା ଯିଏ ନ ଦେଖିଛି ସେ ଭଗବାନଙ୍କ ଲୀଳା ଏବଂ ପ୍ରକୃତିର ଏ ବୈଚିତ୍ର୍ୟତାକୁ କେବେହେଲେ କଳ୍ପନା କରି ପାରିବନି । ହଜାର ହଜାର ତୀର୍ଥଯାତ୍ରୀ ନିଜର ଜୀବନକୁ ବିପନ୍ନ କରି କେବଳ ଏତିକ ଦେଖିବାକୁ ଯାଇଥାନ୍ତି । ଆମେ ବୁଲିବା ସମୟରେ ମଧ୍ୟ ପ୍ରଦେଶର ଜଣେ ବିଶିଷ୍ଟ ବ୍ୟକ୍ତି ସେଠ୍ ସୋଲାଙ୍କୀ ଆମକୁ ଅମରନାଥ ଦର୍ଶନରେ ବିଶେଷ ସାହାଯ୍ୟ କରିଥିଲେ । ଅମେ ତାଙ୍କ ନିକଟରେ ଋଣୀ ହୋଇ ରହିଛୁ । ଅମରନାଥଙ୍କୁ ଦର୍ଶନ କରିବା ମହା ଭାଗ୍ୟର ବିଷୟ ।

କାଲି ମାସ୍କେଟ୍‌ର ବଜାରରେ ଜଳଦସ୍ୟୁମାନେ ତାକୁ ବିକି କରିଦେବେ, ଦାସ ବ୍ୟବସାୟୀଙ୍କ ହାତରେ । ଖୁବ୍ ସୁରକ୍ଷ ଜନାନା ହେଲେ, ସୁଲ୍‌ତାନ୍ ସାଲେମ୍‌ଙ୍କ ହାରେମ୍‌କୁ ଚାଲିଯିବ । ନାରୀମାଂସ ଲୋଭୀ ଲମ୍ପଟ କାମୁକ ସମ୍ରାଟର ସେ ହେବ ଭୋଗ ସାମଗ୍ରୀ, ଅଙ୍କଶାୟିନୀ । ଅର୍ଦ୍ଧ ନଗ୍ନ ଅବସ୍ଥାରେ କାଲି ଶତ ଶତ ଲୋକେ ତାର ସୌନ୍ଦର୍ଯ୍ୟ ସୁଧା ପାନ କରିବେ । ସହସ୍ର ସହସ୍ର ଦିନାର୍ (ଆରବୀୟ ମୁଦ୍ରା) ଦେଇ ମେହମାନ୍‌ମାନେ ତାକୁ କିଣିନେବେ ।

ଭଜନ୍ତୁ ଛିରୁତେଇ । ସେ ଆଜି ଜଳଦସ୍ୟୁଙ୍କ ହାତରେ ବାନ୍ଧନ୍ତୀ । କଣ ହେବ ତାର ଅବସ୍ଥା ।

ଚିରୁତେଇ ଆଜି ଜଳଦସ୍ୟୁଙ୍କ ହାତରେ ବନ୍ଦିନୀ । କ'ଣ ଥିଲା ସେ ? କ'ଣ ହୋଇଛି ତାର ଆଜିର ଅବସ୍ଥା ? ତା ଆଖି ଆଗରେ ଉଡ଼ି ଯାଉଛନ୍ତି କେତେ ସାମୁଦ୍ରିକ ପକ୍ଷୀ । କି ଆନନ୍ଦରେ କି ଉଲ୍ଲାସରେ ଡ଼େଣା ମେଲାଇ । ବିଚିତ୍ର କଳରବ କରି । ତା ଚକ୍ଷୁ ସମ୍ମୁଖରେ ଭାସି ଉଠୁଛି ପାର୍ଥ ସାରଥୀଙ୍କ ମନ୍ଦିର । ଆରଣ ମୁଲାଇ ନଦୀ ଧାର ଦେଇ ଉତ୍ସବ ଦିନରେ ଭାସି ଆସୁଛି କେତେ ଭାହିମ (ଡୋଙ୍ଗା) । ଭକ୍ତମାନଙ୍କ ହାତରେ ଜ୍ୱଳନ୍ତ ପ୍ରଦୀପ । କୃଷ୍ଣଙ୍କ ନିକଟରେ ନିବେଦନ କରି ଯିଏ ସେମାନଙ୍କର ପୂଜାର ଉପଚାର । ଉତ୍ସବରେ ମେହ ଭକ୍ତ ସ୍ୱରବଦନ ଚିରୁତେଇକୁ ଟିକିଏ ବିଶ୍ରାମ ନେବାକୁ ସମୟ ମିଳେନି । ସେ ପୁରୋହିତମାନଙ୍କ କାର୍ଯ୍ୟରେ ଅକ୍ଲାନ୍ତ

ସାହାଯ୍ୟ କରେ । ପୂଜା ଆୟୋଜନର ସମସ୍ତ ଭାର ନିଜ ହାତରେ ତୋଳି ନିଏ । ତାର ନିଦ୍ରାହୀନ ଦିବାରାତ୍ରି ଏକ ଅପୂର୍ବ ଉନ୍ମାଦନାରେ କଟିଯାଏ ।

ସେ ଯେ ପାର୍ଥସାରଥୀ ମନ୍ଦିରର ଦେବଚରଣଅଳ୍ (ଦେବଦାସୀ) । ସମସ୍ତଙ୍କ ଅଲକ୍ଷରେ ଅତି ସମସ୍ତ କାର୍ଯ୍ୟ ଓ ଅନୁଷ୍ଠାନରେ ଯୁକ୍ତ ହୋଇ ରହିବା ଯେ ତାର ବ୍ରତ ।

ବାପାଙ୍କ କଥା ମନେ ପଡ଼େ । ଅତି ଶୈଶବରେ ମା'ଙ୍କୁ ହରାଇ ସେ ବାପାଙ୍କ କୋଳରେ ମଣିଷ ହୋଇଛି । ବାପା ରାମର ତିରୁବଣ୍ଡ କୋଲ୍ଲାମ ରସାମନ୍ତ ରାଜା । ବିକ୍ରମ ଇନ୍ଦ୍ର ତୁଲ୍ୟ । ତାଙ୍କ ଅଧୀନରେ ୩୫ ସହସ୍ର ନାୟାର ସେନା । ତା ଛଡ଼ା ଟବୁଟେଇ ତାର କୈଶୋର ସମୟରେ ଦେଖିଛି କେରଳର ପ୍ରାୟ ସକଳ ସାମନ୍ତ ନୃପତି ଉତ୍ସବ ଦିନରେ ସମବେତ ହୁଅନ୍ତି ତାଙ୍କର କୋଲ୍ଲମ କାଲ୍ଲାରେ । ବାପାଙ୍କୁ ଅତି ସମ୍ମାନ କରନ୍ତି ସେମାନେ ।

କିନ୍ତୁ କ'ଣ ହେଲା ଟବୁଟେଇର ? ବାପାଙ୍କ ସଙ୍ଗରେ ଥରେ ସେ ଆସି ଥିଲା ପାର୍ଥସାରଥୀ ମନ୍ଦିରର ଉତ୍ସବ ଦେଖିବାକୁ । ଏକ ତରୁଣ ଭାସ୍କର, ମନ୍ଦିରର ସଂସ୍କାର କରୁଥିଲେ । ତାଙ୍କ ଆଡ଼େ ଆଖି ପଡ଼ିଥିଲା, ଟବୁଟେଇର । ବର୍ଷାଦିନର ପ୍ରଥମ ମେଘ ଭଳି ତାଙ୍କର ରଙ୍ଗ ନୟନରେ ଶରତର ଶୁଭ୍ର ମେଘ ସମ ଉଦାସ ଗୃହାଣୀ । ଟବୁଟେଇ ପ୍ରଥମ ଦର୍ଶନରେ ହୃଦୟ ହରେଇ ବସିଥିଲା । ବ୍ୟସ୍ତ ପିତାର ଚକ୍ଷୁର ଅନ୍ତରାଳରେ ସେ ତରୁଣ ଭାସ୍କରକୁ ଜଣାଇଥିଲା ନିଜ ଅନୁରାଗର କଥା । ଦୁଇଟି ତରୁଣ ହୃଦୟର ସ୍ରୋତ ସେଦିନ ଆରଣ୍ୟ ମୁକ୍ତ ନଦୀଧାରଠାରୁ ଆହୁରି ବେଗବତୀ ହୋଇଥିଲା ।

କିନ୍ତୁ ଫେରିବାର ସମୟ ଯେତେବେଳେ ହେଲା, ସେତେବେଳେ ନିଜର ମନର କଥା ରୁଣ୍ଡ ଖୋଲି କହିପାରିଲା ନାହିଁ ରାମାର ତିରୁବଣ୍ଡାଙ୍କୁ । ନୟନ ନୀରରେ ଅଜସ୍ର ମଲ୍ଲିକାର ଫୁଲ ଫୁଟେଇ ତାକୁ ଫେରି ଆସିବାକୁ ହୋଇଥିଲା ।

ପଥ ମଧ୍ୟରେ ରବି ଭାସ୍କରର କୃତିତ୍ୱ ପ୍ରସଙ୍ଗ ଉଠେଇ ଥିଲା ଟବୁଟେଇ । ତାକୁ ଆଶ୍ଚର୍ଯ୍ୟ କରି ରାମର ତିରୁବଣ୍ଡ କହିଥିଲେ—"ରାଇଶଚନ ଏକ ଅସାଧାରଣ ପ୍ରତିଭାବାନ ଯୁବକ । ତାର ବାପା ଗୋଲ୍‌ବରନ୍ ଥିଲେ ନାମଜାଦା ଭାସ୍କର । ତାର ମାତାମହ ଥିଲେ କୋଣ୍ଡାଲୁର ରାଜଧିରାଜଙ୍କ ପାରିବାରିକ ଚିକିତ୍ସକ । ଏହି ଦୁଇଟିଯାକ ଗୁଣ ରାଇଶଚନ୍ ଅଦ୍ଭୁତଭାବେ ଆୟତ୍ତ କରିଛି । ତାଛଡ଼ା ସେ ନିଜ

ବୃତ୍ତିରେ ଯୋଦ୍ଧା । ନୌ ଯୁଦ୍ଧରେ ଯେ କୌଣସି ସାମନ୍ତ ରାଜାଙ୍କ ସୈନ୍ୟ ବଳକୁ ପରାଭୂତ କରିବାର ଶକ୍ତି ତାର ଅଛି । ସେ ଜଣେ କୁଶଳୀ ନାବିକ ମଧ୍ୟ ।''

ଚକ୍ରୁଡେଇ ପଚାରିଲେ— ଏହି ପ୍ରତିଭାବାନ ଯୁବକ ବର୍ତ୍ତମାନ କେଉଁ ସାମନ୍ତ ରାଜାଙ୍କ ଅଧୀନରେ କାର୍ଯ୍ୟ କରୁଛନ୍ତି ବାପା ?

ରାମର ତିରୁବତ୍ତୀ ଉତ୍ତର ଦେଲେ—ପରଶୁରାମ କୁଟ୍ଟମ୍ ର ସାମନ୍ତ ରାଜାଙ୍କ ଅଧୀନରେ ଯେଉଁ ବିରାଟ ନୌସେନା ବାହିନୀ ଅଛି, ସେଥିରେ ସେ ଜଣେ ସାମାନ୍ୟ ସୈନିକ ମାତ୍ର ।

ବିସ୍ମିତ ହୋଇ ଚକ୍ରୁଡେଇ ପଚାରିଲେ—'ସାମାନ୍ୟ ସୈନିକ ମାତ୍ର !'

ରାମର ତିରୁବତ୍ତୀ କହିଥିଲେ—ପ୍ରତିଭାକୁ ମୁଁ ଚାହେଁ ମା' । ସମ୍ମାନ ଦିଏ । ମୁଁ ତାକୁ ମୋର ନାସ୍ତାର ସେନା ଦଳରେ ନେଇ ଆସିବାକୁ ଚେଷ୍ଟା କରିଥିଲି । ଅନେକ ଉଚ୍ଚ ପଦ ଦେବାର ବ୍ୟବସ୍ଥା କରିଥିଲି । କିନ୍ତୁ ସେ ତାର ପ୍ରଭୁଙ୍କୁ ଛାଡି ଆସିବାକୁ ଚାହିଁନି ।

ଚକ୍ରୁଡେଇ କହିଲେ—କାହିଁକି ବାପା ? ସମସ୍ତେ ତ ପଦୋନ୍ନତି ଚାହାନ୍ତି । ଯେ ନିଜର ଉନ୍ନତି ଚାହେଁ ନା, ସେ ହୁଏତ ଅଯୋଗ୍ୟ କିମ୍ବା ଅକ୍ଷମ ।

ହସିଦେଇ ରାମର ତିରୁବତ୍ତୀ କହିଲେ—ଦୁଇଟାରୁ ଗୋଟିଏ ମଧ୍ୟ ନୁହେଁ । ସେ ଯଥାର୍ଥ ଶିଳ୍ପୀ । ସେଥିପାଇଁ ତାର ହୃଦୟ ମହତ । ସେ ଅର୍ଥ କିମ୍ବା ପଦବୀର ପ୍ରଲୋଭନରେ ନିଜର ସତତାକୁ ବିକ୍ରୀ କରିବାକୁ ଚାହେଁ ନା । ଏଭଳି ବିଶ୍ୱାସୀ ଆଉ ଅନୁଗତ ଅନୁଚର ଯେ ପାଏ ସେ ଭାଗ୍ୟବାନ ମା !

ଆଉ କୌଣସି କଥା ହୋଇନାହାନ୍ତି ପିତା ଓ କନ୍ୟା ବୁହେଁ । କିନ୍ତୁ ସୁନ୍ଦର ରାସ୍ତ ଶଚନ୍ ର ମୂର୍ତ୍ତି ଖୋଦିତ ହୋଇ ରହିଲା ଚକ୍ରୁଡେଇର ହୃଦୟ ମନ୍ଦିରରେ ।

ପରବର୍ଷ ପାର୍ଥସାରଥୀଙ୍କ ମନ୍ଦିରରେ ଯୋଗ ଦେବାର ସୁଯୋଗ ହେଲାନି ରାମର ତିରୁବତ୍ତୀର । ପଶ୍ଚିମ ଘାଟ ପର୍ବତମାଳା ଉପରେ ଚୋଳ ରାଜାମାନଙ୍କର କେରଳ ଉପରେ ଆକ୍ରମଣର କଥା ଶୁଣାଯାଉଥିଲା । ସେଥିଲାଗି ରାମର ତିରୁବତ୍ତୀ କେରଳ ସାମନ୍ତମାନଙ୍କ ଶକ୍ତି ବୁଝିବା ଲାଗି ଯାଇଥିଲେ । ଉଦବିଗ୍ନ ଥିଲା ତାଙ୍କର ମନ ।

ପାର୍ଥସାରଥୀ ମନ୍ଦିରର ଠିକ୍ ଉତ୍ସବ ଦିନ ଘରକୁ ଫେରି ଝିଅକୁ ଶଯ୍ୟାରେ ପଡ଼ି ଆକୁଳ ଭାବରେ କାନ୍ଦୁଥିବାର ଦେଖି ରାମର ଚରୁବତୀ ହତବୁଦ୍ଧି ହୋଇ ପଚାରିଲେ—କାହିଁକି କାନ୍ଦୁଛୁ ମା ? କ'ଣ ତୋର ଦୁଃଖ ?

ଚରୁଚେଇ ମନର ଗୋପନ କଥାଟି କହି ପାରିଲାନି । ସେ କେବଳ ଏତିକି କହିଲା "ମୁଁ କୌଣସି ଦିନ ବିବାହ କରିବିନି ବାପା ।"

ରାମର ଚରୁବତୀ ଅତ୍ୟନ୍ତ ବ୍ୟଥିତ ହୋଇ ପଚାରିଲେ—ଏ କଥା କାହିଁକି ପଚାରୁଛୁ ମା' ? ବିବାହଟା ଯେ ଏକ ଧର୍ମାଚରଣ, ଅମର ବିଧି ।

ଚରୁଚେଇ କହିଥିଲା—ବିବାହ ତ ମୁଁ କରିବି, କୌଣସି ସାମନ୍ତ ରାଜାଙ୍କୁ । ରାଜା ରାଜା ମଧ୍ୟରେ ପ୍ରାୟ ମନୋମାଳିନ୍ୟ ଲାଗିଛି, ବାବା । କୌଣସି ଦିନ ତୁମ ଜାମାତା ସହିତ ଯେ ବିବାଦ ନ ହେବ, ସେ କଥା କିଏ କହିବ ? ଜାମାତା ପାଇଁ ମୁଁ ମୋର ଅତି ପ୍ରିୟ ବାବାଙ୍କୁ ଦୂରେଇବାକୁ ଚାହେଁନା ।

ରାମର ଚରୁବତୀ—ତେବେ କ'ଣ କରିବାକୁ ଚାହୁଁ ମା ? ଚିରଦିନ ପିତୃଗୃହରେ ରହିଲେ ଲୋକେ ମୋତେ ଦୋଷ ଦେବେ ନି ?

ଚରୁଚେଇ ଗୋଟିଏ ନିଶ୍ୱାସରେ କହିଥିଲା—ମୁଁ ପାର୍ଥସାରଥୀଙ୍କ ମନ୍ଦିରରେ ଦେବ ଦେଉଳ ହେବି ।

ସ୍ତବ୍ଧ ହୋଇ ଗାଲରେ ହାତ ଦେଇ କିଛି ସମୟ ବସି ରହିଲେ ରାମର ଚରୁବତୀ ।

ସେହି ଅବସରରେ ଚରୁବତୀ କହିଥିଲା—ତମେ କାହିଁକି ଭାବୁଛ ବାବା ? ରାଜାକୁଳ ଶେଷରେ କନ୍ୟାମାନେ ଦିନେ ରାଜଭବନର ଆନନ୍ଦ, ଐଶ୍ୱର୍ଯ୍ୟ ଛାଡ଼ି ଦେବଦାସୀ ହୋଇଥିଲେ । ଏ ତ ପବିତ୍ର ଜୀବନ । ମୋ ପାଇଁ ମନ୍ଦିର ବାହାରେ ଗୋଟିଏ କୁଡ଼ିଆ ତିଆରି କରିଦିଅ ବାବା । ମୁଁ ସେଇଠି ରହି ଦେବତାଙ୍କ ସେବା କରିବି ।

ତୋତେ ଯେ ଅନେକ ଦୁଃଖ କଷ୍ଟରେ ଜୀବନଯାପନ କରିବାକୁ ହେବ ମା !

ମୁଁ ଜାଣେ ବାବା । ଭୋଗହୀନ ସେ ଜୀବନ କଷ୍ଟର ନୁହେଁ, ଆନନ୍ଦର । ମୋପାଇଁ ଗୋଟିଏ କୁଡ଼ିଆ ତିଆରି କରିଦିଅ ବାବା । ମୁଁ ସେଇଠି ରହି ଦେବତାଙ୍କ ସେବା କରିବି । ତୁମେ ଶିଖାଇଥିବା ନୃତ୍ୟ ଗୀତ ଦେବତାର ସମ୍ମୁଖରେ ପରି-

ବେଷ୍ଟଣ କରିବ । ଆଜି ଯେତେବେଳେ ଇଚ୍ଛା ହେବ, ତୁମକୁ ଯାଇ ଦେଖିଆସିବି । କୌଣସି ବାଧା ନାହିଁ ।

ରାମର ଉତ୍ଫୁଲ୍ଲ କନ୍ୟାର ଇଚ୍ଛାରେ ସମ୍ମତ ଜଣାଇଥିଲେ ।

ଚରୁତେଇର ମନରେ ଆଶା ଥିଲା ଯେ ଅନ୍ତତଃ ବର୍ଷ ଶେଷରେ ଥରେ ହେଲେ ସେ ଗାନ୍ଧର ରାଇଚରନକୁ ଦେଖି ପାରିବ । ପ୍ରତ୍ୟହ ପ୍ରଭାତରେ ମନ୍ଦିରର କାନନରୁ ଫୁଲ ତୋଳେ ଚରୁତେଇ । ମାଳା ଗୁନ୍ଥି ଦେବତାଙ୍କ ଉଦ୍ଦେଶ୍ୟରେ ନିବେଦନ କରେ । ରାତିରେ ମନ୍ଦିରର ଆରତି ଶେଷ ହୋଇଗଲେ ଦ୍ୱାର ବନ୍ଦ କରି ସେ ଶିବଲିଙ୍ଗର ପ୍ରଜ୍ୱଳିତ ନୀଳ ଭିଲକ୍କୁର (ଦୀପ)ର ଆଲୋକରେ ନୃତ୍ୟ ଆରମ୍ଭ କରେ, କୃଷ୍ଣଙ୍କ ମୂର୍ତ୍ତି ଆଡ଼େ ଚାହିଁ ତାର ମନେ ହୁଏ, କାହାକୁ ସେ ଦେଖୁଛି ? କୃଷ୍ଣଙ୍କ ମୁହଁରେ ଫୁଟି ଉଠୁଛି ଶିଳ୍ପୀ ରାଇଚରନର ଛବି ।

ସେ ଆକୁଳ ହୋଇ ପ୍ରସ୍ତର ଚତ୍ୱର ଉପରେ ଲୋଟିପଡି କାନ୍ଦୁଥାଏ । ହଠାତ୍ କୌଣସି ଦିନ ମଥା ଉପରେ କାହାର ହାତ ସ୍ପର୍ଶ ପାଇ ସେ ମୁହଁ ତୋଳି ଦେଖେ ମନ୍ଦିରର ବୃଦ୍ଧ ପୁରୋହିତ ପରମ ସ୍ନେହରେ ତା ଆଡ଼େ ଚାହିଁଛନ୍ତି ।

ପାଖେଇ ଆସେ ଉତ୍ସବର ଦିନ । ବର୍ଷାର ମେଘ ଯେତେବେଳେ ଆକାଶ ବ୍ୟାପୀ ତାର ମାଦ୍ଦଲମ୍ (ମାଦଳ) ବଜାଏ, ଝଡ଼ ପବନରେ ବାଜୁଥାଏ ବଂଶୀର ସ୍ୱର, ସେତିକବେଳେ ମନ୍ଦିରର ଅଙ୍ଗନରେ ଆସି ଠିଆ ହୁଏ ରାଇଚରନ୍ ।

ସେ ଆବାକ୍ ହୋଇ ଚାହିଁ ଦେଖେ ଚନ୍ଦ୍ରହାରେ ଅପୂର୍ବ ଫୁଲମାଳା ନେଇ ତାର ପାଖ ଦେଇ ଚାଲି ଯାଉଛି ଚରୁତେଇ । ହଁ ସେଇ ଝିଅଟି ଯିଏକି ଦୁଇବର୍ଷ ପୂର୍ବରୁ ନିଜ ପିତା ସାମନ୍ତ ରାଜ ରାମର ଚେରୁବଙ୍ଗ ସାଙ୍ଗରେ ଆସିଥିଲା ପାର୍ଥ-ସାରଥୀଙ୍କ ପୂଜା ଦେଖିବାକୁ । ଏ ସେହି ଝିଅ ଯିଏ କି ତାର ଚକ୍ଷୁର ଇଙ୍ଗିତରେ ନିଜ ମନର ଅନୁରାଗ ଜଣେଇଥିଲା ।

ମନ୍ଦିରରୁ ଫେରି ଆସୁଥିଲା ଚରୁତେଇ । ରାଇଚରନ ଦୂରରୁ ଦେଖିଲା ମୁହଁରେ ହସର ରେଖା । ପାଖକୁ ଆସି ଆବାକ ହୋଇ ଠିଆ ହେଲା ଚରୁତେଇ । ଅତି ଶାନ୍ତ ଧୀର କଣ୍ଠରେ କହିଲା—

ମୋତେ ବୋଧହୁଏ ଭୁଲି ଯାଇଛନ୍ତି ।

ରାଇଚରନ୍ କିଛି ଉତ୍ତର ଦେଇ ପାରିଲା ନାହିଁ । କେବଳ ମୁଣ୍ଡହଲେଇ ଜଣେଇ ଦେଲା ଯେ ଚରୁତେଇର ସେ ଦୃଷ୍ଟିକୁ କ'ଣ କେହି ଭୁଲିପାରେ ?

ଚରୁଚେଇ କହିଲା—ଉତ୍ସବର ଏଇ କେତୋଟି ଦିନ ଅଛନ୍ତି ତ ? ପୁଣି ଦେଖା ହେବ ।

ବର୍ତ୍ତମାନ ରାଇଚରଣ୍‌ର ମୁହଁରୁ କଥା ବାହାରିଲା—

ରାମର ଚରୁବଗଙ୍କୁ ତ ଦେଖୁନି ?

ଚରୁଚେଇ କହିଲା—ସେ ଅନେକ କଥା ରାଇଚରଣ୍ । ମୁଁ ବର୍ତ୍ତମାନ କଳ୍କାରେ ରହୁନି । ମୁଁ ପାର୍ଥସାରଥୀ ମନ୍ଦିରର ଦେବରଡଆଳ୍ ।

ବସ୍ମୟ ବମୂଢ଼ ରାଇଚରଣ୍ କେବଳ ଉଚ୍ଚାରଣ କଲା—ଆପଣ ? ପୁଣି ମନ୍ଦିରର ଦେବରଡଆଳ୍ ? ଦେବଦାସୀ ?

ଚରୁଚେଇ ହସି ଦେଇ ଉତ୍ତର ଦେଲା—ହଁ କେବଳ ଆପଣଙ୍କୁ ଦେଖିବା ପାଇଁ ।

ରାଇଚରଣ୍ ଟିକିଏ ଦୂରେଇ ଯାଇ ନମସ୍କାର କରି କହିଲା— ଆପଣ ନମସ୍ୟ ।

ଚରୁଚେଇ ଯିବା ଆଗରୁ କରୁଣ ମିନତି ଜଣାଇ କହିଲା—ଏଇ ନାରିକେଳ କୁଞ୍ଜର ଆଡ଼ୁଆଳରେ ମୋର କୁଟୀର । ଦସ୍ମାକର ଆରତୀର ଶେଷରେ ମନ୍ଦିର ବନ୍ଦ ହେଲେ ଥରେ ସେଠାକୁ ଆସିବେ । ଆପଣଙ୍କୁ କହିବାକୁ ଅନେକ କଥା ଅଛି । ଚରୁଚେଇ ରାଇଚରଣର ସମ୍ମତି କମ୍ବା ଅସମ୍ମତି ଜାଣିବା ପାଇଁ ଅପେକ୍ଷା କଲାନି । ସେ ପାଦ ଚଳେଇ ଚାଲିଯାଇଥିଲା ନିଜର କୁଟୀର ଆଡ଼କୁ ।

ବର୍ଷାର ବରାମ ନାହିଁ । ମନ୍ଦିରର କାର୍ଯ୍ୟ ସାରି ପୁରୋହିତ ଚାଲିଗଲେ ନିଜ ଆସ୍ଥାନକୁ । ତାଙ୍କ ମଥା ଉପରେ ମନ୍ଦିରର ବୃହତ୍ କୁଣ୍ଡା ଭଳି (ଛତୀ) ଧରି ଚାଲିଗଲେ ରାଇଚରଣ୍ । ପରେ ଦେବତାଙ୍କ ପ୍ରସାଦ ଗ୍ରହଣକରି ସେ ଫେରିଆସିଲେ ମନ୍ଦିରର ବହିଃ ଚତ୍ୱରକୁ । ସେଇଠାରେ ତାଙ୍କ ଶୟନର ବ୍ୟବସ୍ଥା ହୋଇଥିଲା ।

ସେ ତାର ଶଯ୍ୟାରେ ଶୋଇ ପଡ଼ିଲା । କିନ୍ତୁ ଆଖିକୁ ନିଦ୍ରା ଆସିଲା ନାହିଁ । ବାହାରେ ଅବରାମ ବର୍ଷା ଚାଲିଛି । ରାଇଚରଣର ମନେ ହେଲା ଯେପରି କୌଣସି ଅଭିସାରିକା ତାର ପାଦରେ ପାଦମ୍ବରମ୍ (ପାଉଁଜି) ପିନ୍ଧି ଆଗେଇ ଆସୁଛି । ନୁପୁରର ରୁମୁଝୁମୁ ଶବ୍ଦ ରାତିର ଚତ୍ୱରରେ ଖେଳେଇ ହୋଇ ଯାଇଛି ।

ଦିନର ଆଲୋକରେ ଯେଉଁ ମନ ଦୃଢ଼ ହୋଇଥାଏ, ସେହି ମନ ରାତିରେ ଆଶ୍ଚର୍ଯ୍ୟ ଭାବେ ଦସ୍ମନାସ୍ତ ହୋଇଯାଏ । ଦିନଯାକ ସେ ମନର ସହିତ ଯୁଦ୍ଧ କରି

ସ୍ଥିର କରିଥିଲା ଯେ ଚବୁତେଇର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିବ । ଏଇ ବର୍ଷା ଝିପି ଅନ୍ଧକାରର ନିଶୀଥରେ ତାର ପ୍ରାଣ ଆକୁଳ ହୋଇ ଉଠିଲା ଚବୁତେଇ ଲାଗି । ବାହାରର ବର୍ଷଣଠାରୁ ଅନ୍ତରର ବର୍ଷଣ ଅଧିକ ଗୁରୁଗମ୍ଭୀର ନାଦରେ ବାଜି ଉଠିଲା । ସେ ଉଠିଲା । ରିମ୍ ଝିମ୍ ବର୍ଷା ଭିତରେ ବିଦ୍ୟୁତର ଆଲୋକରେ ପଥ ଚିହ୍ନି ନେଇ ସେ ଠିଆ ହେଲା ଚବୁତେଇର କୁଡ଼ିଆ ସମ୍ମୁଖରେ । ଭିତରର ଲଣ୍ଠନର ଆଲୋକ ବାହାରେ ସ୍ୱର୍ଣ୍ଣାଭ ଅଞ୍ଚଳ ପରି ଲେଟି ପଡ଼ିଛି । ରାଇଚରଣ ଏକ ଧକ୍କା ଦେବା ମାତ୍ରେ ଦରଜା ଈଷତ୍ ଉନ୍ମୁକ୍ତ ହେଲା । ଚବୁତେଇ କବାଟ ଖୋଲି ଦେଲା । 'ଆସନ୍ତୁ ।' ପ୍ରତୀକ୍ଷା କାତର ଗଳାରେ କହିଲା—

—ମୁଁ ଭିଜି ଯାଇଛି । ଆପଣଙ୍କ ଶୁଖିଲା ଘର ଓଦା ହୋଇଯିବ । ହସି ଉତ୍ତର ଦେଲା ରାଇଚରଣ୍ ।

ହସି ରାଇଚରଣ୍ ଆଡ଼କୁ ହାତ ବଢ଼େଇ ଦେଲା ଚବୁତେଇ । କହିଲା— ଆପଣ ମୋର ସମ୍ମାନିତ ଅତିଥି । ମୋ ଘରେ ଆପଣଙ୍କ ସିକ୍ତ ପାଦର ଚିହ୍ନ ପଡ଼ିବ ଏ ତ ମୋର ମହାଭାଗ୍ୟ । ବହୁ ପୁଣ୍ୟର ଫଳ ।

ରାଇଚରଣ୍ ଚବୁତେଇର ମଙ୍ଗଳସୂତ୍ର ବନ୍ଧା କୋମଳ ହସ୍ତ ସ୍ପର୍ଶ କରି ଘର ଭିତରକୁ ଆସିଲେ । ଚବୁତେଇ ଭିତରୁ ଦରଜା ବନ୍ଦ କରିଦେଲା । ତାପରେ ଦ୍ରୁତ ପାଦରେ ଗଲା ନିଜ ଶୟନ ଘର ଆଡ଼େ ।

ଅତିଥିମାନଙ୍କ ପାଇଁ ମନ୍ଦିରର ନୂତନ ବସ୍ତ୍ର ଥାଏ ଚବୁତେଇର ଘରେ । ସେ ନୂତନ ଶୁଷ୍କ ବସ୍ତ୍ର ଆଣି ରାଇଚରଣକୁ ଦେଲା । ଶୟନ କକ୍ଷ ଆଡ଼େ ନିର୍ଦ୍ଦେଶ କରି କହିଲା—ଯାନ୍ତୁ, ବସ୍ତ୍ର ପରିବର୍ତ୍ତନ କରି ଆସନ୍ତୁ ।

ରାଇଚରଣ୍ ନୂତନ ବସ୍ତ୍ର ପରିଧାନ କରି ଆସି ଚବୁତେଇ ନିକଟରେ ଠିଆ ହେଲା ।

ଚବୁତେଇ ରାଇଚରଣ୍‌କୁ ଆଣ୍ଠେଇ କରିଦେଇ ନାଲ ଭଲ୍ଲାକୁ (ପ୍ରଦୀପ) ନେଇ ଆରତି କଲା । ଆରତି ପରେ ଧାଦା ମଲ୍ଲିକାର ମାଳା ନେଇ ପିନ୍ଧାଇ ଦେଲା ରାଇଚରଣର ଗଳାରେ । କହିଲା—ଆଜି ଆପଣ ମୋର ଅତିଥି ନାରାୟଣ । ମନ୍ଦିର ପାର୍ଥସାରଥିଙ୍କ ସହିତ ଆପଣଙ୍କର କୌଣସି ପ୍ରଭେଦ ନାହିଁ ।

ରାଇଚରଣ୍ ସ୍ଥିର ହୋଇ ଠିଆ ହୋଇଛି । ତାର ସମସ୍ତ ଶରୀର ଉପରେ ବହି ଯାଉଥିବା ଶିଶିର ସମ ଜଳ ଥର ଥର ହୋଇ କମ୍ପୁଛି । ଚବୁତେଇର ହାତ ଧରି ନାରିକେଳ ପତ୍ରରେ ବୁଣା ଯାଇଥିବା ସୁଦୃଶ୍ୟ ଓଳିଆ (ଚଟେଇ) ଉପରେ ବସେଇଲା । ନିଜେ ଟିକିଏ ଦୂରରେ ମାଟି ଉପରେ ବସିଲା ।

ରାଇଚରଣ କହିଲା—କୋଣାର୍କର ସାମନ୍ତରାଜାଙ୍କ କନ୍ୟାକୁ ଆଜ ମୁଁ ଏ ରୂପରେ ଦେଖିବି ଭାବି ପାରିନ ।

ଚାରୁଲତା କହିଲା—ମୁଁ କ'ଣ ପାର୍ଥସାରଥୀ ମନ୍ଦିର ଦର୍ଶନ କରି ଆସିବା ଆଗରୁ ଭାବିଥିଲି କି ଏଇ ବେଶରେ ଚିର ଜୀବନ ମୋତେ ରହିବାକୁ ହେବ ?
ପ୍ରତ୍ୟୁତ୍ତରରେ ରାଇଚରଣ କହିଲା—ମୁଁ ଅତି ସାମାନ୍ୟ ମନୁଷ୍ୟ । ମୋର କୌଣସି ପରିଚୟ ନାହିଁ । ରାଜ ରକ୍ତର ଲେଶ ମାତ୍ର ନାହିଁ, ମୋର ଶରୀରରେ ।

ମୁହଁରେ ହସ ଫୁଟାଇ ଚାରୁଲତା କହିଲା—ସବୁ ରକ୍ତର ରଙ୍ଗ ଲାଲ । ଆପଣ ଜଣେ ମହାନ୍ ଶିଳ୍ପୀ । ଏହାଠାରୁ ବଳି ଆଉ ବଡ଼ ପରିଚୟ କ'ଣ ଥାଇପାରେ ?

କୌତୂହଳ ଜାଗିଛି ରାଇଚରଣ୍‌ର ମନରେ । —ଏହି ଜୀବନଯାପନ ଲାଗି ଆପଣଙ୍କର ପିତାଙ୍କର ସମ୍ମତି ପାଇଛନ୍ତି ?

ଚାରୁଲତା କହିଲା—ମୁଁ ତାଙ୍କର ଏକମାତ୍ର କନ୍ୟା । ସହଜରେ ଅନୁମତି ପାଇବା କି ସମ୍ଭବ ? ତେବେ ଶେଷ ପର୍ଯ୍ୟନ୍ତ ପିତାଙ୍କ ଅନୁମତି ପାଇ ମୁଁ ଏ ଜୀବନ ଗ୍ରହଣ କରିଛି ।

ଏ କଠୋର ଜୀବନ ଆପଣଙ୍କ ପାଇଁ ନୁହେଁ । ଆପଣଙ୍କୁ ପାଇ ଯେ କୌଣସି ରାଜା ଧନ୍ୟ ହୋଇଥାନ୍ତେ । ଆଉ ଆପଣ ମଧ୍ୟ ଅତି ସୁଖ ସମ୍ଭୋଗରେ ଦିନ କଟେଇ ପାରିଥାନ୍ତେ--ରାଇଚରଣ କହିଲା ।

ଚାରୁଲତା କହିଲା—ସୁଖ ନିଜର ମନ ଦିଏ । ମନ ଯେଉଁଥିରେ ତୃପ୍ତି ପାଏ ସେଇଥିରେ ସେ ସୁଖୀ ହୁଏ । ମୋର ତୃପ୍ତି କୌଣସି ରାଜାର ଘରେ ନାହିଁ ।
ଟିକଏ ରହି ଚାରୁଲତା ପୁଣି କହିଲା—ଆପଣ ଚିକିତ୍ସକ । ଆପଣଙ୍କ ମାତାମହ ରାଜଚିକିତ୍ସକ ଥିଲେ । ଆପଣତ ରାଜ ବୈଦ୍ୟ ହୋଇ ଅନେକ ସୁଖରେ ସମ୍ମାନରେ କାଳ କଟେଇ ପାରିଥାନ୍ତେ । କିନ୍ତୁ ସେ ପଥ ଛାଡ଼ିଲେ କାହିଁକି ?

ରାଇଚରଣ କହିଲା—ଦେଖୁଛି ଆପଣ ତ ମୋର ଅନେକ କଥା ଜାଣି ପାରିଛନ୍ତି । କିନ୍ତୁ ଆପଣ ବୋଧହୁଏ ଜାଣି ନାହାନ୍ତି ମୁଁ ଏବେ ମଧ୍ୟ ଚିକିତ୍ସାଶାସ୍ତ୍ରର ଅନୁଶୀଳନ କରେ । ତେବେ ରାଜଗୃହରେ ନୁହେଁ, ଦରିଦ୍ର କୁଟୀରରେ । ମୁଁ ସେବାର ଭିତରେ ଆନନ୍ଦ ପାଏ, ଖ୍ୟାତିରେ ନୁହେଁ ।

ଚାରୁଲତା କହିଲା—ଏହି କଥା ହିଁ ମୁଁ ଆପଣଙ୍କ ମୁହଁରୁ ଶୁଣିବାକୁ ଚାହୁଁଥିଲି । ମୋର ଅବସ୍ଥା ଠିକ୍ ସେଇଆ । ମୋର ଭଲପାଇବା ଗୋଟିଏ ମଣିଷକୁ

ଆଗ୍ରହ୍ୟ କରି ବଢ଼ି ଉଠିଥିଲା । ତା ମଧ୍ୟରେ କୌଣସି ଘଟଣାବଶତଃ ନ ଥିଲା କାରଣ ତାକୁ ପାଇବା ପଥରେ ଥିଲା ଅନେକ ବାଧା । ତେଣୁ ଦେବଦାସୀ ହୋଇଗଲି । ମୋ ଭଲ ପାଇବାର ମଣିଷଟିକୁ ଅନ୍ତତଃ ଅରୁଣିଏ ତ ହେଲେ ଦେଖିପାରିବି । ସେଥିରେ ମୋର ଶାନ୍ତି, ସେଇଥିରେ ମୋର ସୁଖ ।

ରାଇଚରଣ କହିଲା—ତୁମ ଭଲପାଇବାର ପ୍ରତିଦାନ ଦେବାର ଯୋଗ୍ୟତା ମୋର ନାହିଁ, ଚରୁଦେଇ । ମୁଁ ଯେଉଁ ବୃତ୍ତି ଗ୍ରହଣ କରିଛି, ସେଥିରେ ସଂସାରର ବନ୍ଧନ ନାହିଁ । ଆମ ଦେଶର ନିୟମ, ଅବିବାହିତମାନେ ହିଁ କେବଳ ସୈନ୍ୟ ଦଳରେ ଯୋଗ ଦେଇପାରିବେ । ଅବସର ସମୟରେ ସେମାନେ ଭୋଗ ମଧ୍ୟରେ ବୁଡ଼ିଗଲେ ମଧ୍ୟ ଘରସଂସାର ବାନ୍ଧି ପାରିବେ ନାହିଁ ।

ଚରୁଦେଇ କହିଲା—ତା ମୋର ଅଜଣା ନୁହେଁ । ସେଇଥିପାଇଁ ତ ଦେବଦାସୀ ହୋଇ ତୁମକୁ ମୁଁ ଦୃଷ୍ଟିର ଭିତରେ ପାଇବାକୁ ଚାହିଁଥିଲି ।

ରାଇଚରଣ୍ କହିଲା—ମୋର ଧନ ମୋର ରାତି ଆଜିଠାରୁ ତୁମ ଚିନ୍ତାରେ ମଗ୍ନ ରହିବ ଚରୁଦେଇ । ଦେଶ ରକ୍ଷାର କାର୍ଯ୍ୟରେ ଯେତେବେଳେ ମୃତ୍ୟୁର ମୁଖାମୁଖି ହୋଇ ଠିଆ ହେବି, ସେତେବେଳେ ତୁମର ଚିନ୍ତା ହେବ ମୋର ସବୁଠାରୁ ବଡ଼ ପ୍ରେରଣା ।

ଚରୁଦେଇ ଚକ୍ଷୁ ଅବନତ କରି ତଳକୁ ଚାହିଁ ରହିଲା । ଦୁଇଟି ମୁକ୍ତାବିନ୍ଦୁ ଯେପରି ନୟନରୁ ଝରି ପଡ଼ିଲା । ସଚେତନ ହୋଇଉଠିଲା ଚରୁଦେଇ ।

ଆଖି ପୋଛି କହିଲା - ଆଚ୍ଛା ରାଇଚରଣ୍ ! ସମସ୍ତ ହୃଦୟ ଦେଇ କାହାକୁ ଭଲ ପାଇଲେ ସେ ଭଲ ପାଇବା ସଫଳ ହୁଏ ନା । କାହିଁକି କହିପାର ?

ରାଇଚରଣ୍ କହିଲା—ସଫଳ ହୁଏନା ନ କହି କହିପାର ମିଳନର ଅନ୍ତରାୟ ହୁଏ । ମୋର ପିତୃଦେବ କହୁଥିଲେ—ଯାହା ପାଇବାକୁ ଚାହଁ, ତାକୁ ହାତମୁଠା ଭିତରକୁ ଆଣିବାକୁ ଚାହଁନା । ସେଥିରେ ପାଇବାର ସବୁ ଆନନ୍ଦ ଚାଲିଯିବ । ପାଇବାର ଇଚ୍ଛାକୁ ନିଜ ପ୍ରାଣରେ ଅନୁଭବ କର ।

ବେଶୀ ଆନନ୍ଦ ମିଳିବ ।

ଚରୁଦେଇ କିଛି ନ କହି ନିର୍ନିମେଷ ନୟନରେ ଚାହିଁ ଥିଲା ରାଇଚରଣ୍‌ର ମୁହଁକୁ ।

ଗମ୍ଭୀର ରାତ୍ରରେ ସେ ଦୁଇଜଣ ଆସିଥିଲେ ମନ୍ଦିରକୁ । ସେତେବେଳେ ମେଘ ଉଭେଇ ଯାଇ ଚନ୍ଦ୍ରର ରକ୍ତିମ ଆଭା ପଡ଼ିଥିଲା ସିକ୍ତ ବସୁଧା ଉପରେ । ପାର୍ଥସାରଥୀ ମନ୍ଦିର ଚୂଡ଼ାରେ ଲାଗିଥିଲା ସେ ଆଲୋକ ।

ରାଜଶେଖରଙ୍କ ଅନୁରୋଧ କ୍ରମେ ସେ ଚନ୍ଦ୍ରାଲୋକ ପ୍ଲାବିତ ରାତ୍ରିରେ ଦେବଦାସୀ ଚରୁଚେଲି 'ଦାସୀ ଆଟ୍ଟମ' ନାଚ ଥିଲା । ଆଉ ତା ଆଡ଼େ ଅପଲକ ଚକ୍ଷୁରେ ଚାହିଁ ରହିଥିଲା ଭାସ୍କର ରାଜଶେଖର ।

ରାତି ଶେଷରେ ରାଜଶେଖର ଚରୁଚେଲିର ହାତକୁ ନିଜ ହାତ ମୁଠାରେ ନେଇ କହିଥିଲା—ତୁମକୁ ନ ପାଇବାର ଦୁଃଖ ସହିପାରିଲେ ମଧ୍ୟ ତୁମକୁ ଭୁଲି ଯିବାର ଦୁଃଖ ମୁଁ ସହି ପାରିବିନି । ଆଜିଠାରୁ ତୁମର ସକଳ ଦୁଃଖ ସୁଖକୁ ଏଇ ବୁକୁ ମଧ୍ୟରେ ଭରି ଦେଇ ଯାଉଛି ।

ଚରୁଚେଲି କାନ୍ଦି କାନ୍ଦି ହୋଇ କହିଥିଲା—ମୋର ଦେହଟା ଏଠାରେ ପଡ଼ି ରହିଲା ରାଜଶେଖର । କିନ୍ତୁ ମୋ ମନ ବନ୍ଧା ରହିଲା ତୁମ ନିକଟରେ । ଅନୁରୋଧ, ବର୍ଷବର୍ଷେ ପରେ ହେଲେ ମୋତେ ଦେଖା କରି ଯିବ । ସେହି ଗୋଟିକ ଯାକ ଦର୍ଶ ଏ ଦୁଇଟି ଆଖି ତୁମର ପଥ ଚାହିଁ ରହିବ ।

ରାଜଶେଖର ଚାଲି ଯାଇଥିଲା । କିନ୍ତୁ କେଇଟି ମାସ ଯାଉଣୁ ନ ଯାଉଣୁ ସେ ଫେରି ଆସିଥିଲା ଗମ୍ଭୀର ରାତିର ଅନ୍ଧକାରରେ ଏକ ଭୟାବହ ଦୁଃସମ୍ବାଦ ବହନ କରି । ଚରୁଚେଲି ଆଶ୍ଚର୍ଯ୍ୟ ହୋଇ ତା ଆଡ଼େ ଚାହିଁଥିଲା । ଅନ୍ଧକାର ଘରେ ରାଜଶେଖର ହିଁ ଆଲୋକ ଜଳେଇବାକୁ ଦେଇନି । ସେ କହିଥିଲା—ଚୋଳରାଜ କୁଲୋତୁଙ୍ଗ ତା ସେନାପତି ନରଲୋକ ବୀରକୁ ପଠେଇଛି କେରଳକୁ ବିଜୟ କରିବା ଲାଗି । ଚୋଳ ରାଜ ଆଗରୁ ତାର ଚିର ବଇରି ଶତ୍ରୁ ପାଣ୍ଡ୍ୟ ସେନାନୀର ଅଧିପତି ପରା-କ୍ରମକୁ ବିତାଡ଼ିତ କରି ପରାକ୍ରମ ପାଣ୍ଡ୍ୟ ଯୁବରାଜଙ୍କୁ ମଦୁରାଇ ସିଂହାସନରେ ବସେଇଛି । ଫଳରେ କେରଳର ବନ୍ଧୁ ପାଣ୍ଡ୍ୟମାନେ ବର୍ତ୍ତମାନ ଶତ୍ରୁ ପକ୍ଷରେ । ଚୋଳ ଆଉ ପାଣ୍ଡ୍ୟର ସମ୍ମିଳିତ ସୈନ୍ୟ ଉନ୍ମତ୍ତ ପାର୍ବତ୍ୟ ନଦୀ ଧାରା ସମ ସମସ୍ତ ବାଧା ଭାଙ୍ଗି କେତେ ଗ୍ରାମ ଜନପଦ ଶ୍ମଶାନ କରି ଆଗେଇ ଆସୁଛନ୍ତି । ତାଙ୍କର ଲକ୍ଷ୍ୟ ତୁମର ପିତୃରାଜ୍ୟ କୋଲ୍ଲାମ୍ ।

ଚରୁଚେଲି କହିଲା—ମୋ ପିତାଙ୍କ ଖବର କିଛି ଜାଣ ? ରାଜଶେଖର କହିଲା—ଶେଷ ଖବର ମୁଁ କିଛି ଜାଣିନି । କିନ୍ତୁ ସେ ଯେ ରାଜ୍ୟ ରକ୍ଷା ପାଇଁ ଶେଷ ରକ୍ତବିନ୍ଦୁ ପର୍ଯ୍ୟନ୍ତ ଲଢିବେ, ଏ କଥା ଜାଣିଛି । ତୁମେ ସାବଧାନରେ ରୁହ ଚରୁଚେଲି । ଜୀବନରେ ଯଦି ବଞ୍ଚିଥିବେ ତେବେ ପୁଣି ଦେଖା ହେବ ।

ରାଜଶେଖର ସେହି ନିଶିତ ଅନ୍ଧକାରରେ ଯେମିତି ମିଳେଇ ଗଲା । ହତଭାଗ୍ୟ ଚରୁଚେଲି ଠିଆ ହୋଇ ଚାହିଁ ରହିଥିଲା ଚନ୍ଦ୍ରାଲୋକହୀନ ରାତ୍ରି ଆଡ଼କୁ ।

ପ୍ରଭାତର ଆଲୋକରେ ସେ ଦେଖିଥିଲା ତା ଦ୍ୱାର ପାଖରେ ରକ୍ତ ଚିହ୍ନ ଅଙ୍କା ହୋଇଛି । ଏ ଯେ ଆହତ ରାଇଶଚନର ଦେହ ନିସୃତ, ତା ବୁଝିବାକୁ ଚରୁଚେଇର ବିଳମ୍ବ ହେଲା ନାହିଁ । ସେ ମାଟିତକୁ ସେହି ରକ୍ତ ନେଇ ନିଜ ଲଲାଟରେ ଲେପି ଦେଲା ।

ଦୁଃସମ୍ବାଦ ଖେଳେଇ ହୋଇଗଲା ଦାବାନଳ ପରି । ଶତ୍ରୁମାନେ ସହସ୍ର ହସ୍ତୀ ନିଯୁକ୍ତ କରିଛନ୍ତି ଯୁଦ୍ଧରେ । ଚତୁର୍ଦ୍ଦିଗରେ ଅଗ୍ନି ସଂଯୋଗ କରୁଛନ୍ତି । ତାର ଲେଲିହାନ ଶିଖା ଏକ ଗୃହରୁ ଅନ୍ୟ ଗୃହକୁ ଲମ୍ଫ ଦେବାରେ ବ୍ୟସ୍ତ ।

କାତର କ୍ରନ୍ଦନରେ ଭାଙ୍ଗି ପଡ଼େ ଚରୁଚେଇ । ନିଜ ଜୀବନ ପ୍ରତି ତାର କୌଣସି ଚିନ୍ତା ନାହିଁ । ତାର ଚିନ୍ତା ନିଜର ପିତା ଓ ରାଇଶଚନ୍ ପାଇଁ । କି ଅସହନୀୟ ଦୁର୍ଯୋଗରେ କଟୁଥିବ ତାଙ୍କର ଦିନରାତି । ପୁଣି ସମ୍ବାଦ ଆସିଲା ମଣିପର ରକ୍ତରେ ଲାଲ ହୋଇ ଯାଇଛି, ନଦୀ ଆଉ କେରଳର ଜଳ । ପଥର ପ୍ରାନ୍ତରେ, କ୍ଷେତରେ, ଖମାରରେ ସବୁଠାରେ ପଡ଼ିଛି ରକ୍ତ ପଲାଶ ଭଳି ଥୋପା ଥୋପା ରକ୍ତ ।

ଚରୁଚେଇ କ'ଣ ପାଗଳ ହୋଇ ଯାଉଛି ? ସାରା ରାତି, କେତେବେଳେ ଜାଗି, କେତେବେଳେ ଦୁଃସ୍ୱପ୍ନ ଦେଖି କଟି ଯାଉଛି ତାର ବିଭୀଷିକାର ଦିନଗୁଡ଼ିକ । ସେ ଦଉଡ଼ିଯାଏ ପାର୍ଥସାରଥୀ ମନ୍ଦିରକୁ । ପାଷାଣ—କାନ୍ଥ କାନ୍ଥ ଜଣାଏ ତାର ଆକୁଳ ପ୍ରାର୍ଥନା ।

ସେଦିନ କୃଷ୍ଣପକ୍ଷର ତୃତୀୟା । ଚନ୍ଦ୍ର ଉଠିଲା ଦିଗନ୍ତର ଆରଣ୍ୟ ଶିରରେ । ମନେ ହେଲା ସେହି ରକ୍ତିମ ଆଭା ଯେପରି କେରଳର ହୃତ୍ପିଣ୍ଡ, କେତେଗୁଡ଼ିଏ ଲୌହ ଶଲାକାରେ ବିଦ୍ଧ ହୋଇଛି । ଚରୁଚେଇ ଆଉ ସ୍ଥିର ରହିପାରିଲାନି । ସେହି ଅସ୍ପଷ୍ଟ ଚନ୍ଦ୍ରର ଆଲୋକରେ ପଥ ଅନୁମାନ କରି ସେ ଚାଲିଲା କୋଲ୍ଲାମ (କ୍ୱିଲା) ଆଡ଼େ ।

ଦୁଇଦିନ ଦୁଇ ରାତ୍ରି ପଥ ଚାଲି ସେ ଯେତେବେଳେ କୋଲ୍ଲାମରେ ପହଞ୍ଚିଲା, ସେତେବେଳେ ତାର ମନେ ହେଲା, କୋଲ୍ଲାମ ଏକ ମହା ଶ୍ମଶାନ । ଇତସ୍ତତ ବିକ୍ଷିପ୍ତ ଦଗ୍ଧ, ଅର୍ଦ୍ଧ ଦଗ୍ଧ କାଷ୍ଠ ଖଣ୍ଡ ପଡ଼ିଛି । ସେ ଛୁଟିଲା ତାଙ୍କର ପ୍ରସାଦୋ-ପମ ଅଟ୍ଟାଳିକା ଅଭିମୁଖେ । କେହି କୁଆଡ଼େ ନାହିଁ । ଅଦୂର ସାଗର ବୁକୁରୁ ଭାସି ଆସୁଥିବା ପବନ କେବଳ ଚାରିଆଡ଼େ ହାହାକାର କରି ବୁଲୁଛି ।

ଚରୁଚେଇ କାନ୍ଦି କାନ୍ଦି ଗୃହମାନ ବୁଲିଲା । ତା ଶୟନ କକ୍ଷକୁ ଫେରି ଆସିଲା । ସେହି କକ୍ଷର ବାତାୟନ ପଥରେ ସେ ଦେଖିଲା ଆରବ ସାଗରର ଜଳ

ଜଳ ଉଦ୍‌ବେଳିତ ଢେଉଗୁଡ଼ିକ ଯେପରି ଝାଙ୍କି ପଡ଼ୁଛନ୍ତି, ବେଳାଭୂମିରେ । ଯେପରି ଲୋତକର ତରଙ୍ଗଗୁଡ଼ିକ ତାର ବୁକୁର ତଳେ ଅଜାଡ଼ି ହୋଇ ପଡ଼ୁଛନ୍ତି । ହଠାତ୍ ଠିକ୍ ସେମିତି ଦେଖିଲା ଚରୁଚେଇ, ଗୋଟିଏ ପାଲଟଣା ଜାହାଜ ଆସି ଲାଗିଲା ତାଙ୍କ ପ୍ରାସାଦ ସମ୍ମୁଖ ସାଗର ତୀରରେ । ଚରୁଚେଇ ପୁଣି ଦେଖିଲା କେତେଗୁଡ଼ିଏ ଛାୟାମୂର୍ତ୍ତି ଡଙ୍ଗା ନେଇ କୂଳକୁ ଆସିଲେ ।

ସମୁଦ୍ର ଟପିଲେ ନାରିକେଳ ଉଦ୍ୟାନ । ତାପରେ ତାଙ୍କର ଅଟ୍ଟାଳିକା । ଲୋକଗୁଡ଼ିକ ତୀରକୁ ଆସି ଅଗଣିତ ନାରିକେଳ ବୃକ୍ଷର ଆଢ଼ୁଆଳରେ ଅଦୃଶ୍ୟ ହୋଇଗଲେ ।

ଧବଗୁଣ୍ଠରେ ରାତ୍ରି ଅବତୀର୍ଣ୍ଣ ହୋଇଛି । ସ୍ୱପ୍ନ ଉଠିନି । ଚରୁଚେଇ ବିଛଣା ଉପରେ ବସି ତା ଭାଗ୍ୟ କଥା ଚିନ୍ତା କରୁଥିଲା । ଚକ୍ଷୁର ଅଶ୍ରୁ କେତେବେଳେ ଗାଲ ଉପରେ ଝରି ଶୁଖି ଗଲାଣି । ଏଣ୍ଟୁଡ଼େଣ୍ଟୁ ଭାଗ୍ୟାବନ୍ଧ ଚିନ୍ତାସବୁ ଚରୁଚେଇକୁ ବ୍ୟାକୁଳ ଓ ବ୍ୟଥିତ କରି ପକାଇଥିଲା ।

ହଠାତ୍ ବାହାରେ କ'ଣ ଶବ୍ଦ ହେଲା । ଚରୁଚେଇ ଉଠି ଠିଆହେଲା । ସେହି ଅନ୍ଧକାରରେ ସିଡ଼ି ଦେଇ ତଳକୁ ଓହ୍ଲାଇବାରେ ଲାଗିଲା । ହଁ ତାଙ୍କ ଅଟ୍ଟାଳିକାର ତଳ ମହଲା ଘରେ କିଏ ସବୁ ପଶିଛନ୍ତି ବୋଲି ମନେ ହେଲା । ଜିନିଷପତ୍ରସବୁ ଘୁଞ୍ଚାଇବାର ଶବ୍ଦ ହେଲା । କିଛି ସମୟ ପରେ ତିନୋଟି ମଶାଲ ଜଳି ଉଠିଲା । ସିଡ଼ିରେ ଉପରକୁ ଉଠି ଚରୁଚେଇ ବାରଣ୍ଡାରେ ଠିଆ ହେଲା । ଛାୟା ମୂର୍ତ୍ତିଗୁଡ଼ିକ ମଶାଲର ଆଲୋକରେ ରହସ୍ୟମୟ ହୋଇ ଉଠିଥାନ୍ତି । ସେମାନେ ରାଜଗୃହର ସଞ୍ଚିତ ଦ୍ରବ୍ୟ ବୋହି ନେଇ ଚାଲିଲେ ସମୁଦ୍ର ଅଡ଼କୁ । ଯେଉଁମାନେ ବାହକ ସେମାନଙ୍କ ହାତରେ ମଶାଲ ନଥିଲା । ସେମାନେ ଅନ୍ଧକାରରେ ଯେମିତି ମିଳେଇ ଗଲେ । ଏଥର ମଶାଲଧାରୀମାନେ ଦ୍ୱିତଳ ଉପରକୁ ଉଠି ଆସିଲେ । ଦ୍ୱିତଳର ସବୁ କକ୍ଷରେ ଚାଲିଛି ସେମାନଙ୍କର ଅନୁସନ୍ଧାନ ।

ଭୟଭୀତ ହୋଇଗଲା ଚରୁଚେଇ । ବର୍ତ୍ତମାନ ସେମାନେ ଅନ୍ତର ଉପରକୁ ଉଠିବେ । ସେତେବେଳେ ମଶାଲ ଆଲୋକରେ ନିଜକୁ ଗୋପନ କରି ରଖି ପାରିବନି ଚରୁଚେଇ । ସେ ଶିଘ୍ର ଘର ଉପରକୁ ଉଠି ଦରଜା ବନ୍ଦ କରି ତାକୁ ଚାପି ଧରି ରଖିଲା ସମସ୍ତ ଶକ୍ତି ଦେଇ । କିନ୍ତୁ ଆଉ ପାରିଲାନି । ଏକ ସଙ୍ଗରେ ଅନେକ ଲୋକଙ୍କ ସମ୍ମିଳିତ ଶକ୍ତି ଆଗରେ ସେ ପରାଭୂତ ହୋଇ ଦ୍ୱାର ଖୋଲି ଦେଲା ।

ମଶାଲଧାରୀମାନେ ସମ୍ପୂର୍ଣ୍ଣ ଭିନ୍ନ ଦେଶବାସୀ । ଚରୁଦେଇର ମନେ ହେଲା କେତେବର୍ଷ ତଳେ ଏମିତି ୫।୭ ଜଣ ଲୋକ ତା ବାପାଙ୍କ ପାଖକୁ ଆସିଥିଲେ । ବାପାଙ୍କ ପରିଚୟ ଜାଣିଥିଲା—ଏମାନେ ଆରବଦେଶୀୟ ବଣିକ । ବାଣିଜ୍ୟ ଲାଗି କୋଙ୍କ'ମକୁ ଆସିଛନ୍ତି ।

ପ୍ରଥମେ ଚରୁଦେଇକୁ ଦେଖି ସେମାନେ ଆବାକ ହୋଇ ଠିଆ ହୋଇ ରହିଲେ । ତାପରେ ଦୁଇଜଣ ଲୋକ ନିଜ ଭାଷାରେ କଣ କଥାବାର୍ତ୍ତା ହେଲେ । ଶେଷରେ ତାଙ୍କ ଭିତରୁ ଦୁଇଜଣ ଆଗେଇ ଆସିଲେ ଚରୁଦେଇ ପାଖକୁ । ଚରୁଦେଇ ଦୁଇ ପାଦ ପଛକୁ ଗଲା । ଥିକ୍ତ ଗଳାରେ କହିଲା—ମୁଁ ଦେବତା ମନ୍ଦିରର ସେବା ଦାସୀ ।

ଏଠି ତୁମର କ'ଣ ଦରକାର ?

ଆଶ୍ଚର୍ଯ୍ୟ ! ତାଙ୍କ ଭିତରୁ ଜଣେ ମାଲୟାଲମ୍ ଭାଷାରେ କହିଲା । ଆମେ ରାଜପ୍ରାସାଦର ଧନରତ୍ନ ପାଇଁ ଆସିଥିଲୁ । କିନ୍ତୁ ସେମିତି କିଛି ପାଇଲୁନି । ବର୍ତ୍ତମାନ ଅସଲ ରତ୍ନଟି ପାଇଲୁ ।

ଚରୁଦେଇ କହିଲା—ମୋ ନିକଟରେ କୌଣସି ଧନରତ୍ନ ନାହିଁ । କେବଳ ଏହି ପିନ୍ଧିଥିବା ବସ୍ତ୍ର ଖଣ୍ଡିକ ଛଡ଼ା । ଦେବତାର ଦାସୀକୁ ଦୟାକରି ମୁକ୍ତ ଦିଅ ।

ସେମାନେ ଅଦ୍ଭୁତଭାବେ ପରସ୍ପରକୁ ଚାହିଁଲେ । ଦୁଇଟି ମଶାଲ ପକେଇ ଦେଇ ଜଣେ ଗୋଟିଏ ମଶାଲ ଧରି ରହିଲା । ଅନ୍ୟ ଦୁଇଜଣ ଚରୁଦେଇକୁ ଜୁଣ୍ଠେଇ ପକେଇଲେ ।

ଚରୁଦେଇ କହିଲା—ତୁମେ ଯୁଆଡ଼େ କହିବ, ମୁଁ ଯିବି । କିନ୍ତୁ ବଳ ପ୍ରୟୋଗ କର ନାହିଁ । ମୁଁ ତୁମ ସଙ୍ଗରେ ଯାଉଛି ।

ତାଙ୍କ ଭିତରେ ଏ ଦେଶର ଭାଷାବିତ୍ ଜଣକ ବ୍ୟଙ୍ଗ ସ୍ୱରରେ କହିଲା—"ତୁମେ ଯିବ ଓମାନ୍ ରାଜ୍ୟକୁ । ସେଠାରେ ଥରେ ସୁଲତାନଙ୍କ ନଜରରେ ପଡ଼ିଗଲେ ତୁମର ଭାଗ୍ୟ ଖୋଲିଯିବ । ଆଉ ଆମେ ମଧ୍ୟ ପାଇଯିବୁ ଆମ ପରିଶ୍ରମର ଉପଯୁକ୍ତ ପୁରସ୍କାର ।

ଚରୁଦେଇ ଦେଖିଲା ଆତ୍ମରକ୍ଷାର ଆଉ କୌଣସି ଉପାୟ ନାହିଁ । ତୁମେ ଯଦି ମୋତେ ସୁଲତାନ ନିକଟକୁ ନେବାକୁ ଚାହଁ, ତେବେ ଅସମ୍ମାନ କରନା ।

ଲୋକମାନେ କ'ଣ ଭାବିଲେ କେଜାଣି, ତାକୁ ଛାଡ଼ି ଦୂରରେ ଠିଆ ହେଲେ ।

ମୁଁ ଅଳ୍ପ ସମୟ ଦରଜା ବନ୍ଦ କରି ମୋ ଦେବତାଙ୍କ ନିକଟରେ ପୂଜା କରିବି । ତାପରେ ତୁମେମାନେ ମୋତେ ଯେଉଁଆଡ଼େ ନେଇଯିବ, ମୁଁ ସେଆଡ଼େ ଯିବି ।

ଲୋକମାନେ ସମ୍ମତିସୂଚକ ମୁଣ୍ଡ ହଲାଇଲେ । ଚରୁଟେଇ ଘରଭିତରକୁ ଯାଇ ଦାନ୍ତରେ ବାମହାତ ଆଙ୍ଗୁଠିକୁ ଏତେ ଜୋରରେ କାମୁଡ଼ି ଧରିଲା ଯେ, ଟପ୍ ଟପ୍ ହୋଇ ଝରିପଡ଼ିଲା ତାଜା ରକ୍ତ । ଡାହାଣ ହାତରେ କାନ୍ଥରେ ଲେଖି ଦେଲା—'ଜଳଦସ୍ୟୁ ମୋତେ ଓମାନ୍ ରାଜ୍ୟକୁ ନେଇ ଯାଉଛନ୍ତି ।' ହତଭାଗିନୀ ଚରୁଟେଇ ।

ଘର ବାହାରକୁ ଆସିଲା ଚରୁଟେଇ । କହିଲା--ଚାଲ କୁଆଡ଼େ ନେବ ମୋତେ । ମୋତେ ବାନ୍ଧ ନାହିଁ, ମୁଁ ଚାଲି ଚାଲି ତୁମ ସାଙ୍ଗରେ ଯିବି ।

ଲୋକମାନେ ତାକୁ ନେଇ ପ୍ରାସାଦର ତଳକୁ ଓହ୍ଲାଇ ଆସିଲେ । ତା ପରେ ମଶାଲ ମାଟିରେ ପକାଇ ଦେଇ, ସେ ଅନ୍ଧକାରରେ ଚାଲିଲେ ସମୁଦ୍ର ଆଡ଼େ । ଚରୁଟେଇ ସ୍ଥିର ପଦକ୍ଷେପରେ ସେମାନଙ୍କ ସହ ଆଗେଇ ଚାଲିଲା । ସେ ବର୍ତ୍ତମାନ ସବୁ ଭାବନାର ଅତୀତ ହୋଇଯାଇଛି । ଭାଗ୍ୟ ହାତରେ ନିଜକୁ ସମର୍ପି ଦେଇ ବର୍ଷାର ନଦୀ ଜଳ ବହି ଚାଲିଛି ଅନିର୍ଦ୍ଦିଷ୍ଟ ପଥରେ । କୌଣସି ନୂତନ ଇଚ୍ଛା ତା ମନରେ ଜନ୍ମ ନେଉ ନାହିଁ କିମ୍ବା କୌଣସି ନବ ଚେଷ୍ଟା ତା ମନରେ ମୁକ୍ତିର ଲାଗି ତାକୁ ପ୍ରଲୁବ୍ଧ କରୁ ନାହିଁ ।

ରାତିର ଶେଷ ଚନ୍ଦ୍ରର ଅସ୍ପଷ୍ଟ ଆଲୋକରେ ନୋଙ୍ଗର୍ ଉଠାଇଲା ଜାହାଜ । ତା ପରେ ଅନୁକୂଳ ପବନରେ ଭାସି ଚାଲିଲା ଓମାନ୍‌ର ରାଜଧାନୀ ମାସ୍କେଟ୍ ଅଭିମୁଖେ । ଏମିତି କେତେ ଦିନ କେତେ ରାତି ବିତି ଗଲା ।

ବହୁଦିନ ଯୁଦ୍ଧରେ ବ୍ୟସ୍ତ ରହି ରାଇଚନ୍ ପ୍ରାୟ ଚରୁଟେଇର କଥା ଭୁଲି ଯାଇଥିଲା । ହଠାତ୍ ମନେ ପଡ଼ି ଯିବାରୁ ଅତି ଉଦ୍‌ଭ୍ରାନ୍ତ ଭାବରେ ସେ ଆସି ପାର୍ଥସାରଥିର ମନ୍ଦିର ନିକଟରେ ପହଞ୍ଚିଲା । ଚରୁଟେଇକୁ ସନ୍ଧାନ ଖୋଜିଲା । ତା'ର କୁଟୀରରେ ମଧ୍ୟ ପାଇଲା ନାହିଁ । ବୃଦ୍ଧ ପୂଜକ ଭୀତ ଓ ବିହ୍ୱଳ । ସେ ମଧ୍ୟ କିଛି ସନ୍ଧାନ ଦେଇ ପାରିଲା ନାହିଁ । ଚରୁଟେଇର କଥା ମନେ ପକାଇ କେବଳ ଅଶ୍ରୁର ଧାରା ବୁହାଇବାରେ ଲାଗିଲା । ଚରୁଟେଇ ଜୀବିତା, ମୃତା କି ଶତ୍ରୁଦ୍ୱାରା ଲୁଣ୍ଠିତା ସେ କିଛି ଭାବି ପାରିଲା ନାହିଁ । ଶାନ୍ତି ନାହିଁ, କ୍ଲାନ୍ତି ନାହିଁ, ବିଶ୍ରାମ ନାହିଁ । ସମସ୍ତ ଶକ୍ତି ସଂଗ୍ରହ କରି ସେ ଚାଲିଲା କୋଲାମ୍ ଆଡ଼େ । ଘନ ଅନ୍ଧକାର ନିଶୀଥ । ସେଠାରେ ସେ ପହଞ୍ଚି ଦେଖିଲା ମହା ଶ୍ମଶାନର ନୀରବତା । ବହୁ ଦିନର ପରିତ୍ୟକ୍ତ

ଏକ ମଶାଲ ପଡ଼ିଥିଲା । ତାକୁ ଜାଳି ଘର ଘର ବୁଲି ଖୋଜିଲା । କେହି ନାହିଁ । କେବଳ ଗୋଟିଏ କକ୍ଷରେ ଲେଖାଅଛି, "ଜଳଦସ୍ୟୁ ମୋତେ ଓମାନ ରାଜ୍ୟକୁ ନେଇ ଯାଉଛନ୍ତି । ହତଭାଗିନୀ ଚରୁଲେଭି ।" ରକ୍ତ ଉପରେ ଏକ ଆବରଣ ପଡ଼ିଯାଇଛି । ଏତକ ପଢ଼ି ରାଇଶଚନ୍ଦ୍ରର ମଥା ଘୂରିଗଲା । ଆଉ ବିଳମ୍ବ କଲାନାହିଁ । ସୁଦକ୍ଷ ନାବିକ ସେ । ଗୋଟିଏ ନୌକାର ପାଲଟାଣି ଦେଇ ନଦୀ ଭିତରୁ ଚାଲିଆସିଲା ସମୁଦ୍ର ଭିତରକୁ । ସେ ମଧ୍ୟ ଅନୁକୂଳ ବାୟୁ ପାଇ କ୍ଷିପ୍ର ହସ୍ତରେ ନୌକା ନେଇ ଚାଲିଲା ଜଳଦସ୍ୟୁଙ୍କ ଜାହାଜକୁ ଅନ୍ୱେଷଣ କରି । ସେ ଶୟନ ଭୁଲିଛି, ଭୋଜନ ପାଶୋରିଛି । କ୍ଲାନ୍ତି ତାକୁ ଅବଶ କରୁ ନାହିଁ । ଚରୁଲେଭିର ଚିନ୍ତା ତାକୁ ଉଦ୍‌ଭ୍ରାନ୍ତ କରିଛି ।

ଏମିତି କେତେ ରାତି କେତେ ଦିନ ଗଲା ପରେ ଅନାହାର, ଅନିଦ୍ରା ଓ ବିଶ୍ରାମ ହୀନ ଚକ୍ଷୁ ଦୁଇଟି ସେ କେତେ ବେଳେକେ ମୁଦି ହୋଇ ଯାଇଛି, ରାଇଶଚନ୍ଦ୍ର ଜାଣି ନାହିଁ । ଆହୁଲ ଥୁଆ ହୋଇଛି । ନୌକା ଭାସି ଚାଲିଛି ଏକ ଅଜଣା ପଥରେ ।

ହଠାତ୍ ସେହି ବାଟ ଦେଇ ଏକ ଭାରତୀୟ ବାଣିଜ୍ୟ ପୋତ ଭାସି ଯାଉଥିଲା । ଏକ ସୁନ୍ଦର, ସୁଠାମ ମେଘକାନ୍ତି ଯୁବକକୁ ନିଦ୍ରିତ ଅବସ୍ଥାରେ ଦେଖି ପୋତାଧ୍ୟକ୍ଷ ତାକୁ ନଦରୁ ଉଠାଇଲେ । ରାଇଶଚନ୍ଦ୍ରକୁ ପୋତ ଉପରକୁ ନିଆଗଲା । ତା'ର ନୌକାଟି ବାନ୍ଧି ଦିଆଗଲା ତାଙ୍କ ଜାହାଜରେ । ସମସ୍ତ କଥା ଶୁଣି ପୋତାଧ୍ୟକ୍ଷଙ୍କ ଆତ୍ମା କାନ୍ଦି ଉଠିଲା । ଜଳଦସ୍ୟୁଙ୍କ କବଳରୁ ଏକ ଭାରତୀୟ କନ୍ୟାକୁ ଉଦ୍ଧାର କରିବା ଲାଗି ତାଙ୍କ ଲୋକଙ୍କୁ ପ୍ରସ୍ତୁତ ହେବାକୁ କହିଲେ । ରାଇଶଚନ୍ଦ୍ରର ସାହସ ତାଙ୍କୁ ମୁଗ୍ଧ କଲା ।

ସୁରନଗରରେ ଜଳଦସ୍ୟୁମାନଙ୍କ ଜାହାଜକୁ ଠାବ କରି ତା ପାଖରେ ତାଙ୍କ ଜାହାଜକୁ ଲଗାଇଲେ । ଦୁଇ ଚାରି ଦିନ ବିଶ୍ରାମ ଓ ଉପଯୁକ୍ତ ଖାଦ୍ୟ ଖାଇ ରାଇଶଚନ୍ଦ୍ର ତା'ର ପୂର୍ବ ଶକ୍ତି ଫେରି ପାଇଲା । ଅତ୍ୟନ୍ତ କୌଶଳ ପନ୍ଥା ଅବଲମ୍ବନ କରି ରାଇଶଚନ୍ଦ୍ର ଜାହାଜକୁ ଉଠିଲା । ଜଳଦସ୍ୟୁମାନେ ପ୍ରସ୍ତୁତ ନ ଥିଲେ । ଇଶାରା ପାଇ ଭାରତୀୟ ଜାହାଜରୁ ସେମାନଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ ହେଲା । ସେ ଏକ ଜୀବନ ମରଣ ସଂଗ୍ରାମ । ରାଇଶଚନ୍ଦ୍ରର ତରବାରି ଗୋଟିକ ପରେ ଗୋଟିଏ ଜଳଦସ୍ୟୁଙ୍କୁ ଚିରଦିନ ପାଇଁ ଶୁଆଇ ଦେଉଥାଏ । ଭାରତୀୟ ନାବିକ-ମାନଙ୍କ ମଧ୍ୟରେ କୌଶଳୀ ଯୋଦ୍ଧା ଥିଲେ । ଚରୁଲେଭିକୁ ଉଦ୍ଧାର କରାଯାଇ ଭାରତୀୟ ଜାହାଜକୁ ଅଣାଗଲା ।

କ୍ଷତବିକ୍ଷତ ରାଇଶଚନ୍‌କୁ ଦେଖି ଚରୁଲେଭଇର ଆତ୍ମା କାନ୍ଦି ଉଠିଲା । ସେ ତା'ର ସେବାରେ ଲାଗି ପଡ଼ିଲା ।

ଘନ ତମସା ଦୂର ହୋଇଛି । ଉତ୍ତାର ଆକାଶରେ ଯେପରି ଅବିର କିଏ ବୁଣି ଦେଇଛି । ସୂର୍ଯ୍ୟୋଦୟ ହେଉଛି । ସମୁଦ୍ରର ଜଳରେ ଲାଗିଛି ସେହି ଅବିରର ଛିଟା । ନୂତନ ଦିନର ସୂଚନା ଦେଇ ଯେପରି ଅତଳ ସମୁଦ୍ର ଗର୍ଭରୁ ଉଠି ଆସୁଛନ୍ତି ଅନନ୍ତ ଆଲୋକର ଅଧୀଶ୍ୱର ।

ଶ୍ୱେତ ହଂସ ଭଳି ଶୁଭ୍ର ପାଲ ଉଡ଼ାଇ ଭାରତୀୟ ତରଣୀ ବହିଗଲା ନାରିକେଳ କୁଞ୍ଜ ଘେରା ସ୍ୱଦେଶର ଅଭିମୁଖେ ।

—କାହାଣୀର ପରିସମାପ୍ତି ଏହିଠାରେ ଘଟିଥିଲେ ହୁଏତ ସୁଖକର ହୋଇଥାନ୍ତା । କେରଳ ଇତିହାସର ପୃଷ୍ଠା ଖୋଲିଲେ ହୁଏତ ଦେଖାଯିବ ପୋଲ୍ଲାମ୍‌ର ରାଜା ରାମର ଉଦୁବର୍ତ୍ତୀ ପୁନର୍ବାର ସାମନ୍ତ ରାଜାମାନଙ୍କୁ ସଂଘବଦ୍ଧ କରି ଐକ୍ୟବଦ୍ଧ କଲେ । ଚୋଳ, ପାଣ୍ଡ୍ୟମାନେ ପୋଲ୍ଲାମ ଛାଡ଼ି ଏପରିକି କେରଳ ଭୂମି ପରିତ୍ୟାଗ କରି ଚାଲିଗଲେ । କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା, ଏହି ରାମର ଉଦୁବର୍ତ୍ତୀ ଏପରି ଗୋଟିଏ ଘଟଣା କରି ବସିଲେ, ଯାହାକୁ ନେଇ ପୁଣି ମୂଳ କାହାଣୀକୁ ଆସିବାକୁ ପଡ଼ିଲା ।

ବିଜୟ ମହୋତ୍ସବ ଚାଲିଛି । ସାରା କେରଳ ଯେପରି ସାଜିଛି ନୂତନ ସାଜରେ । ପୋଲ୍ଲାମର ରାଜା ରାମର ଉଦୁବର୍ତ୍ତୀ ଆଜି ସମସ୍ତଙ୍କ ନୟନର ମଣି । ତାଙ୍କର ଅସୀମ ସାହସ ଓ ଧୈର୍ଯ୍ୟ ସମଗ୍ର ଦେଶକୁ ମୁଗ୍‌ଧ କରିଛି । ସମଗ୍ର ଦେଶ ଲାଭ କରିଛି ଅପୂର୍ବ ବିଜୟ । ଏଥି ମଧ୍ୟରେ ଚରୁଲେଭଇକୁ ନେଇ ରାଜ ଭବନକୁ ଆସି ଯାଇଛି ରାଇଶଚନ୍ । ତାଙ୍କର କନ୍ୟା ଜଳଦସ୍ୟୁମାନଙ୍କ ଦ୍ୱାରା ଅପହୃତା ହୋଇଥିବା କଥାଟି ଗୋପନ ରଖିଛନ୍ତି ରାମର ଉଦୁବର୍ତ୍ତୀ । ଦେଶର ଉତ୍ଥାନ ପତନର ବିପର୍ଯ୍ୟୟରେ କିଏ କେଉଁଠି ଆଶ୍ରୟ ନେଉଛି, ସେ ଖବର କିଏ ରଖୁଛି ?

ଉଦୁବର୍ତ୍ତୀ ଏହି ସମୟରେ କେରଳର ସମ୍ମାନିତ ଓ ଅଭିଜ୍ଞ ନାୟକ । ଚୋଳ ସୈନ୍ୟଙ୍କ ସେନାପତି ନବଲୋକ ବୀର ପରାସ୍ତ ହୋଇ ପଳାୟନ କରିଛନ୍ତି । କିନ୍ତୁ ପାଣ୍ଡ୍ୟମାନଙ୍କ ତରୁଣ ସେନାପତି ପରାନ୍ତକ ପାଣ୍ଡ୍ୟ ବୀର ବିକ୍ରମରେ ଯୁଦ୍ଧ କରି ପରିଶେଷରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହୋଇଛନ୍ତି । ବର୍ତ୍ତମାନ ବହୁ ଚୋଳ ଓ ପାଣ୍ଡ୍ୟଙ୍କ ସହ ସେ କୋଲ୍ଲମର କାରାଗାରରେ ବନ୍ଦୀ । ମାତ୍ର ତାଙ୍କୁ ବୀର ସେନାପତି ମର୍ଯ୍ୟାଦା ସହ ସସମ୍ମାନେ ବନ୍ଦୀ କରି ରଖାଯାଇଛି ।

ବିଜୟ ମହୋତ୍ସବ ଯେଉଁ ଦିନ ଶେଷ ହେବ, ସେହିଦିନ ବିଚାର ହେବ ବନ୍ଦୀ ସୈନ୍ୟ ଓ ସେନାପତିଙ୍କର । ସେମାନଙ୍କର ଭାଗ୍ୟ ନିର୍ଣ୍ଣୟ ସେହି ଦିନ ହେବ, ଜନତାର ପ୍ରକାଶ୍ୟ ବିଚାରରେ ।

ଆଗାମୀ ଦିନ ସେହି ମହାଲଗ୍ନ ଆସୁଛି । ସମସ୍ତ ନଗରୀର ରୂପ ସଜ୍ଜାର ନାୟକ ତରୁଣ ସ୍ଥପତି ରାଇଶଚନ୍ । ବିବାହର ସଜ୍ଜାରେ ଯେପରି ସାଜିଛି ନଗରୀ । ଟରୁଚେଇ ପ୍ରାସାଦର ଅଳିନ୍ଦ ପଥରୁ ଦେଖୁଛି ରାଇଶଚନ୍‌କୁ । ତାଙ୍କର ଚଞ୍ଚଳ ଗତିବିଧି ସଙ୍ଗେ ସଙ୍ଗେ ଟରୁଚେଇର ଦୁଇଟି ଚକ୍ଷୁର ତାରା ଯେପରି ଦୋଳାୟମାନ କୃଷ୍ଣ ଭ୍ରମରଭଳି ଘୂରୁଛି ।

ରାତ୍ରିରେ ନାରିକେଳ କୁଞ୍ଜର ବିଶ୍ରାମାଗାରରେ ସାକ୍ଷାତ ହେଲା ରାମର ତରୁବତୀ ଓ ରାଇଶଚନ୍‌ଙ୍କର । ତରୁବତୀ ପ୍ରତୀକ୍ଷା କରିଥିଲେ ତରୁଣ ସ୍ଥପତିଙ୍କ ସହ ଟିକିଏ ନିଭୃତରେ ସାକ୍ଷାତ କରିବା ଲାଗି । ରାମର ତରୁବତୀ କୋମଳ କଣ୍ଠରେ କହିଲେ—କଥା ଅଛି ରାଇଶଚନ୍ ! ଆସ ଏହି ପ୍ରସ୍ତର ବେଦୀ ଉପରେ ବସିବା ।

ରାଇଶଚନ୍ ସସଙ୍କୋଚରେ ଟିକିଏ ଦୂରତ୍ୱ ବଜାୟ ରଖି ନିକଟରେ ବସିଲେ ସେହି ଗୋଟିଏ ପ୍ରସ୍ତର ବେଦୀ ଉପରେ ।

ଆଉ ଟିକିଏ ପାଖକୁ ଲାଗିଆସ । ତୁମେ ମୋର ସନ୍ତାନ ।—ଆବେଗ ଅଭିଭୂତ କଣ୍ଠରେ କହିଲେ ତରୁବତୀ ।

ରାଇଶଚନ୍ ବିସ୍ମିତ । ସେ ପ୍ରସ୍ତର ବେଦୀରୁ ଓହ୍ଲାଇ ଆସି ରାମର ତରୁବତୀଙ୍କୁ ପ୍ରଣାମ କଲା । ଆବେଗରେ ରାଇଶଚନ୍‌କୁ ଆଲିଙ୍ଗନ କଲେ ତରୁବତୀ । ତାପରେ ଅତି ନିକଟରେ ତାକୁ ବସାଇଲେ । ଦୁହେଁ ଅନେକ ସମୟ ପର୍ଯ୍ୟନ୍ତ ନୀରବରେ ବସି ରହିଲେ ।

ତା'ପରେ ମୌନ ଭଙ୍ଗ କରି କହିଲେ—ତୁମକୁ ସନ୍ତାନ ବୋଲି ଡାକିଛି, ଆଜି ତୁମ ନିକଟରେ ମୁଁ ଏକ ଭିକ୍ଷା ଚାହିଁବି, ପୁତ୍ର !

ବିସ୍ମିତ ରାଇଶଚନ୍ କହିଲା—ମୁଁ ଦେବି ଆପଣଙ୍କୁ ଭିକ୍ଷା ? ଜଣେ ସାଧାରଣ ମନୁଷ୍ୟ ଠାରୁ ଭିକ୍ଷା ଚାହୁଁଛନ୍ତି ଜନନୀସ୍ୱକ ତରୁବତୀ ?

ରାମର ତରୁବତୀ କହିଲେ—ମୁଁ ତୁମକୁ ଦୀର୍ଘଦିନ ହେଲା ଚିହ୍ନିଛି ରାଇଶଚନ୍ । ପ୍ରସାରିତ ହୃଦୟର ଅଧିକାରୀ ଛଡ଼ା କେହି ଭିକ୍ଷା ଦେଇ ପାରେନା । ଆଜି ମୁଁ ଯେଉଁ ଭିକ୍ଷା ଚାହୁଁଛି, ସମସ୍ତ ଦେଶବାସୀଙ୍କ ତରଫରୁ ଜାତିର ମଙ୍ଗଳ ପାଇଁ ।

ରାଇଶଚନ୍ କହିଲେ—"ପ୍ରକାଶ କରନ୍ତୁ ମହାରାଜ । ମୁଁ ମୋର ଜାତି ଓ ଦେଶ ପାଇଁ କ'ଣ କରିପାରେ ?"

ତିରୁବଣ କହିଲେ—ତୁମେ ଯେଉଁ ଦେଶକୁ ଭଲ ପାଅ ରାଇଶଚନ୍, ତାରି ପାଇଁ ନିଜର ଅତି ପ୍ରିୟ ଲୋକର ଭଲ ପାଇବାକୁ ଉତ୍ସର୍ଗ କରିବାକୁ ହେବ ।

"ମହାରାଜ ! ପ୍ରୟୋଜନ ହେଲେ ମୁଁ ମୋର ସାମାନ୍ୟ ଜୀବନ ଦେଶ ଲାଗି ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଅଛି ।"

ତିରୁବଣ କହିଲେ– ତୁମର ବ୍ୟକ୍ତିଗତ ଭଲ ପାଇବାକୁ ଆଜି ଜନନୀ, ଜନ୍ମଭୂମି ତାଙ୍କର ସ୍ୱାର୍ଥ ପାଇଁ ଚାହୁଁଛନ୍ତି ରାଇଶଚନ୍ !

ରାଇଶଚନ୍ କହିଲା—ଆପଣ ମୋ ଠାରୁ କ'ଣ ଚାହୁଁଛନ୍ତି, ମୁଁ ଠିକ୍ ବୁଝି ପାରୁ ନାହିଁ ମହାରାଜ ! ଆପଣ ଦେଶ ଲାଗି ଯେପରି ନିଜର ସବୁକିଛି ଉତ୍ସର୍ଗ କରିଛନ୍ତି ତାହା ସମସ୍ତ କେରଳ ବାସୀଙ୍କର ପ୍ରେରଣାର ଉତ୍ସ ହୋଇଛି । ମୁଁ ନିଜର ଜନ୍ମମାଟି ପାଇଁ ସୁଖ, ଦୁଃଖ, ଶକ୍ତି, ସାମର୍ଥ୍ୟ ସବୁକିଛି ତ୍ୟାଗ କରି ପାରେ ମହାରାଜ !

ତିରୁବଣ କହିଲେ—ମୁଁ ଜାଣେ ରାଇଶଚନ୍, ମୋ ଇଚ୍ଛା ନିଶ୍ଚୟ ପୂର୍ଣ୍ଣ ହେବ । ତେବେ ଶୁଣ ମୋର ପ୍ରାର୍ଥନା ।

—ପାଣ୍ଡ୍ୟ ରାଜାଙ୍କ ସହିତ କେରଳ ରାଜାଙ୍କ ସଦା ଥିଲା ଗଭୀର ବନ୍ଧୁତ୍ୱ-ପୂର୍ଣ୍ଣ ସମ୍ପର୍କ । ଚୋଳମାନେ କେରଳବାସୀଙ୍କ ଘୋର ଶତ୍ରୁ । ସେଥି ପାଇଁ ଯୁଦ୍ଧ ହେଲେ ପାଣ୍ଡ୍ୟମାନେ ଚୋଳଙ୍କ ଆକ୍ରମଣକୁ ପ୍ରଥମେ ପ୍ରତିହତ କରନ୍ତି । କିନ୍ତୁ ଚୋଳ ରାଜା କୁଲୋତ୍ତୁଙ୍ଗ ଆମର ବହୁ ଦିନର ବନ୍ଧୁତ୍ୱରେ ବିଭେଦ ସୃଷ୍ଟି କରିଛନ୍ତି ଏ ଯୁଦ୍ଧରେ । ପାଣ୍ଡ୍ୟ ରାଜ ପରାନ୍ତକ ଚୋଳ ରାଜ୍ୟର ପକ୍ଷ ନେଇ ଆସି ଆମ କାରା-ଗାରରେ ବନ୍ଦୀ ହୋଇ ରହିଛନ୍ତି, ତୁମେ ଜାଣ । ମୁଁ ମୋର ଦେଶର ସ୍ୱାର୍ଥ ଲାଗି ଯୁବକ ରାଜା ପରାନ୍ତକଙ୍କୁ ଚିର ଦିନ ଲାଗି ବନ୍ଦୀ କରି ରଖିବାକୁ ଚାହେଁ । ଏଥିରେ ତୁମର ସହାୟତା ଏକାନ୍ତ ଦରକାର ପୁତ୍ର ।

ରାଇଶଚନ୍‌ର ହୃଦୟରେ ଯେପରି ଏକ ଗଭୀର କ୍ଷତ ସୃଷ୍ଟି କଲା । ଆଉ ସେଥିରୁ ଧାର ଧାର ହୋଇ ରକ୍ତ ସ୍ରାବ ହେଲା ।

ରାଇଶଚନ୍ କହିଲା—ମୋର କଣ କରଣୀୟ ସୁସ୍ପଷ୍ଟ କରି କୁହନ୍ତୁ ମହାରାଜ !

—'ମୁଁ ପାଣ୍ଡ୍ୟ ରାଜ ପଦ୍ମେନ୍ଦ୍ରଙ୍କ କନ୍ୟା ଦାନ କରି ଚିର ଦିନ ସେମାନଙ୍କ ସହ ମିତ୍ରତା ସ୍ଥାପନ କରିବାକୁ ଚାହେଁ'—କହିଲେ ଉରୁବର୍ତ୍ତୀ ।

ରାଇରଚନ୍ ମଥା ତଳକୁ ପୋତି ଥିବାର ଦେଖି ଉରୁବର୍ତ୍ତୀ ତାଙ୍କ ହାତ ନିଜ ହାତରେ ନେଇ କହିଲେ—ମୁଁ ଜାଣେ ତୁମେ ଚରୁଚେଇକୁ ଭଲପାଅ । ନ ହେଲେ ଏତେ ବାଧା, ବିଘ୍ନ, ମୃତ୍ୟୁ, ଭୟ, ଏତେ ବିପଦ ମଥା ଉପରକୁ ନେଇ ତୁମେ ତାକୁ ଉଦ୍ଧାର କରି ଆଣି ନ ଥାନ୍ତ । ତା ଛଡ଼ା ସ୍ୱାଭାବିକ ଭାବେ ଚରୁଚେଇ ତୁମ ପ୍ରତି ଆସକ୍ତ । ବର୍ତ୍ତମାନ ଚରୁଚେଇକୁ ଏ ପ୍ରସ୍ତାବରେ ସମ୍ମତ କରିବାର ଦାୟିତ୍ୱ ମୁଁ ତୁମ ହାତରେ ଦେବାକୁ ଚାହେଁ ରାଇରଚନ୍ । ମୁଁ ଜାଣେ ଏଥିରେ ତୁମ ଛଡ଼ା ଅନ୍ୟ କେହି କରିପାରିବେ ନାହିଁ । ଦେଶର ସ୍ୱାର୍ଥ ଲାଗି ଏତିକ ତୁମକୁ କରିବାକୁ ହେବ, ରାଇରଚନ୍ ।

ରାଇରଚନ୍ ମଥା ଉଠାଇ କହିଲା—ତାହା ହିଁ ହେବ, ମହାରାଜ । ରାଜନୀତି କ'ଣ ମୁଁ ବୁଝେନା । ତେବେ ମୁଁ ଦେଶକୁ ଭଲ ପାଏ । ଆଉ ସେହି ଭଲ ପାଇବା ମୋର କାହାଠାରୁ କମ୍ ନୁହେଁ ।

ଉରୁବର୍ତ୍ତୀ ଗଭୀର ଆବେଗ ସହ କହିଲେ—ମୁଁ ଜାଣିଥିଲି ରାଇରଚନ୍ ! ଏ ଗଭୀର ତ୍ୟାଗ ତୁମ ଛଡ଼ା ଅନ୍ୟ କେହି କରିପାରିବେ ନାହିଁ । ଶୁଣ ! ତୁମକୁ ଯେତେବେଳେ ମୁଁ ସନ୍ତାନ ବୋଲି ଗ୍ରହଣ କରିଛି, ଅଜିଠାରୁ ତୁମେ ହେବ କୋଲ୍ଲାମର କର୍ମସଚିବ । ଯେଉଁ ଦିନ ପଶ୍ଚିମ କୁଳମ୍ର ସାମନ୍ତ ରାଜା ସ୍ୱେଚ୍ଛାରେ ମୋତେ ଦାନ କଲେ, ସେହି ଦିନଠାରୁ ଏ ଆଶା ମୁଁ ପୋଷଣ କରିଆସିଛି ।

ରାଇରଚନ୍ କହିଲା—ଆପଣଙ୍କ ନିକଟରେ ମୋର ଏକ ପ୍ରାର୍ଥନା ମହାରାଜ ! ମୋତେ ଶାସନ ଓ ରାଜନୀତିର ଜଟିଳ ଜାଲରେ ଜଡ଼ିତ କରିବେ ନାହିଁ, ମହାରାଜ ! ମୁଁ ଜଣେ ସାଧାରଣ ମଣିଷ । ସାଧାରଣରେ ମିଳିମିଶି ରହିବାକୁ ଚାହେଁ ।

× × × ×

ରାଇରଚନ୍ ରାତ୍ରିର ଅନ୍ଧକାରରେ ନାରିକେଳ ଘେରା ସମୁଦ୍ର ତୀରକୁ ନେଇ ଆସିଲା ଚରୁଚେଇକୁ । ପିତା ଉରୁବର୍ତ୍ତୀ ଅନୁମତି ଦେଇଛନ୍ତି ନିଭୃତ ଆଳାପ ଲାଗି । କଥାଟି ଶୁଣି ବିସ୍ମୟର ସୀମା ରହିଲା ନାହିଁ ଚରୁଚେଇର । ନିଭୃତ ନାରିକେଳ କୁଞ୍ଜର ଧୂସର ଛାୟାରେ ସେ ଦୁହେଁ ବସିଲେ । ଆଗରେ ଚନ୍ଦ୍ରାଲୋକିତ ଜଳଧିର

ସମୁଦ୍ର, ଢେଉ ଆସି ଭାଙ୍ଗି ପଡ଼ୁଛି ବାଲୁକା ତୀରରେ । ରାଇଶେଖର୍ କୌଣସି ଭୂମିକା କଲ ନାହିଁ । ଅବେଗଷ୍ଣ କଣ୍ଠରେ ରାଜା ଢରୁଣର ପଣକଲ୍ପନା ସବୁ କହିଗଲ ।

କଥା କହି ସାରିବା ପରେ ଦୁହେଁ ସ୍ତବ୍ଧ ହୋଇ ବସି ରହିଲେ, ଅନେକ ସମୟ ପର୍ଯ୍ୟନ୍ତ ।

ସମୁଦ୍ରର ବେଳାଭୂମିରେ ଅଜାଡ଼ି ହୋଇ ପଡୁଥିବା ଢେଉ ଭଳି ଉଦ୍-ବେଳିତ କଣ୍ଠରେ ଚରୁଶେଇ କହିଲ—ମୁଁ ତୁମର ମନର କଥା ଜାଣିବାକୁ ଚାହେଁ, ରାଇଶେଖର୍ । ତୁମେ କ'ଣ ପ୍ରକୃତରେ ମୋତେ ତ୍ୟାଗ କରିବାକୁ ଚାହଁ ?

ରାଇଶେଖର୍‌ର କଣ୍ଠରେ ଫେରି ଯାଉଥିବା ଢେଉର ନିରୁଚ୍ଛ୍ୱାସ ସ୍ୱର ବାଜି ଉଠିଲ । —ମହାରାଜଙ୍କୁ ମୁଁ କଥା ଦେଇଛି ଚରୁଶେଇ । ସେ ମୋ ଠାରୁ ତୁମକୁ ସାଗ୍ କେରଳ ପାଇଁ ଭିକ୍ଷା ମାଗିଛନ୍ତି ।

—ତୁମେ ମୋର ଇଚ୍ଛା ଅନିଚ୍ଛାର କଥା ନ ଭାବି ସଙ୍ଗେ ସଙ୍ଗେ ସେ ଇଚ୍ଛା ପୂରଣ କରିଦେଇଛ, ନୁହେଁ ?

ରାଇଶେଖର୍ କହିଲ—ମଣ୍ଡୁରର ପ୍ରଶ୍ନ ଉଠେନା ଚରୁଶେଇ । ତେବେ ଦେଶର ମଙ୍ଗଳ ଲାଗି ମୁଁ ମୋର ବ୍ୟକ୍ତିଗତ ସୁଖକୁ ତ୍ୟାଗ କରିବାର ପ୍ରତିଶ୍ରୁତି ଦେଇଛି ।

ଚରୁଶେଇ କହିଲ—ତୁମେ ମହାନ୍ ରାଇଶେଖର୍ । ତୁମ ଭଳି ଏତେ ବଡ଼ ହୃଦୟର ମୁଁ ଅଧିକାରିଣୀ ନୁହେଁ । ମୁଁ କ୍ଷୁଦ୍ର କ୍ଷୁଦ୍ର ସୁଖ ଦୁଃଖର ଅଧୀନ । ସେଇଥି ଲାଗି ସାମାନ୍ୟ କିଛି ହରେଇ ବସିଲେ ମୋ ପ୍ରାଣ କାନ୍ଦି ଉଠେ ।

ପୁନର୍ବାର ନୀରବତା । ଦୁଇ ଜଣ ଯାକ ଗଭୀର ଚିନ୍ତାରେ ମଗ୍ନ ।

ନୀରବତା ଭଙ୍ଗ କରି କଥା କହିଲ ଚରୁଶେଇ । —ତୁମର ଇଚ୍ଛା ପୂର୍ଣ୍ଣ ହେବ ରାଇଶେଖର୍ ।

ଯେଉଁ ଜୀବନ ମୁଁ ତୁମଠାରୁ ଫେରି ପାଇଥିଲି, ତାକୁ ବାଣ୍ଟି ଦେବାର ଅଧିକାର ତୁମର ଅଛି ।

ରାଇଶେଖର୍ କହିଲ—ଏପରି ଭାବରେ କଥା କହି ମୋ ହୃଦୟ ଦୁର୍ବଳ କରି ଦିଅନା ଚରୁଶେଇ । ତୁମର ଶକ୍ତି, ତୁମର ସାନ୍ତ୍ୱନା, ଆଜି ମୋର ସମସ୍ତ କ୍ଷତ, ସମସ୍ତ ବ୍ୟଥାକୁ ଉପଶମ କରୁ, ଏତିକି ମୋର ପ୍ରାର୍ଥନା । ତାହେଲେ ମୁଁ ଯାହା ଚାହିଁଥିଲି ତାହା ପାଇଯିବି ।

ଚରୁଚେଇ କହିଲା—ତାହା ହିଁ ହେବ ରାଇଶଚନ୍ । କେବଳ ଏତିକି ଅନୁରୋଧ ତୁମେ ମୋର ବିବାହ ବାହାରରେ ରହିବ ନାହିଁ । ଆଉ ମୁଁ ଜୀବନସାରା ଭାବିବି ରାମଚନ୍ଦ୍ରଙ୍କ ପରି ତୁମେ ମୋତେ ବିସର୍ଜନ ଦେଇଛ ।

ରାଇଶଚନ୍ କିଛି କହିଲା ନାହିଁ । ମୂକ ଭଳି ମଥାନତ କରିଦେଲା । ଠିଆ ହେଲା ଚରୁଚେଇ । ଅଲୁଅ ଅଙ୍ଗାର ମିଶା ଚକ୍ଷୁରେ ଚାହିଁ ରହିଲା ସ୍ଥିର ପାଷାଣ ମୂର୍ତ୍ତିଟିର ଆଡ଼େ । ତା ପରେ ଗ୍ରୀଷ୍ମର ଅରଣ୍ୟ ପାର ହୋଇ ଚାଲିଗଲା ରାଜପ୍ରାସାଦର ଦିଗକୁ ।

ବିବାହ ବାସରରେ ଦେଖାଗଲାନାହିଁ ରାଇଶଚନ୍‌କୁ । କାହାରି ଦୃଷ୍ଟିରେ ମଧ୍ୟ ସେ ଘଟଣା ପଡ଼ିଲା ନାହିଁ । ଉତ୍ସବ ପ୍ରମତ୍ତ ସମଗ୍ର କୋଲ୍ଲାମନଗରୀ । କନ୍ୟା ବିଦାୟ ସମୟରେ ଦେଖାଗଲା, ସୁସଜ୍ଜିତ ହସ୍ତୀ ପୃଷ୍ଠରେ ବସିଛନ୍ତି ବର ଓ ବଧୂ । ବଧୂ ତାର ଦୁଇ ହାତରେ ମୁହଁ ଢାଙ୍କିଛି ।

ଯେଉଁମାନେ ବର ବଧୂଙ୍କୁ ନେଇ ଯାଇଥିଲେ, ସେମାନେ ଆସି କହିଲେ ଚରୁଚେଇ କେରଳ ସୀମା ପର୍ଯ୍ୟନ୍ତ ହାତ ଆଖିରୁ ଖୋଲିନି । ଥରେ ହେଲେ ଫେରି ଚାହିଁନି ନିଜର ଜନ୍ମ ମାଟି ଆଡ଼କୁ ।

× × × ×

କେରଳରେ ଇତସ୍ତତଃ ବହୁ ଭଗ୍ନ ମନ୍ଦିର ଦେଖାଯାଏ । ଗୋଟିଏ ମନ୍ଦିର ଗାତ୍ରରେ ଏ କାହାଣୀ ବର୍ଣ୍ଣିତ ବହୁ ମୂର୍ତ୍ତି ରହିଛି । ତା ମଧ୍ୟରେ ଅଛି ସୁସଜ୍ଜିତ ହସ୍ତୀ ପୃଷ୍ଠରେ ବର ବଧୂ । ବରର ଦୃଷ୍ଟି ସମ୍ମୁଖରେ ନିବଦ୍ଧ । ଆଉ ବଧୂର ମୁଖ ଦୁଇ କର ପତ୍ରରେ ଆବଦ୍ଧ । କେରଳରେ ଜଣେ ଐତିହାସିକଙ୍କଠାରୁ ଏ କାହାଣୀ ଶୁଣି ଟିପି ଦେଇଥିଲି । ଡାଏରିର ଛିନ୍ନ ପୃଷ୍ଠା ଦେଖୁ ଦେଖୁ ଏ କାହାଣୀଟି ବାହାରି ପଡ଼ିଲା ।

ଅନେକ ଭ୍ରମଣକାରୀ ମଧ୍ୟ ଯିଏ ସେ ଅଞ୍ଚଳକୁ ଯାଇଥିବେ, ଦେଖି ଥିବେ, ଶୁଣିଥିବେ, ଲେଖି ରଖିଥିବେ ସେ ଭାସ୍କର୍ଯ୍ୟ ସମ୍ପର୍କରେ । ଅନେକ ପ୍ରସ୍ତର ଗାତ୍ରରେ ଖୋଦିତ ମୂର୍ତ୍ତି ଯାହା କୋଣାର୍କ ଛଡ଼ା ଅନ୍ୟ କେଉଁଠାରେ ଦେଖିବାକୁ ମିଳେ ନାହିଁ । ଜନଶ୍ରୁତି ରାଇଶଚନ୍‌ର ଅତୃପ୍ତ ଆତ୍ମା ଏବେ ବି ପ୍ରସ୍ତର ମୂର୍ତ୍ତି ଗଢ଼ି ଚାଲିଛି କେତେ ଶତାବ୍ଦୀ ଅତୀତ ହୋଇଗଲେ ମଧ୍ୟ । ରାତ୍ରିର ନିଃଶବ୍ଦରେ କାନ ପାରିଲେ ଶୁଣାଯାଏ—ଠୁକ୍ ଠୁକ୍ ଶବ୍ଦ ।

ଦକ୍ଷିଣ ଭାରତରେ ରାମେଶ୍ୱର, କନ୍ୟାକୁମାରୀ ଏବଂ ମିନାକ୍ଷୀ ଦେବୀଙ୍କୁ ତ ଦର୍ଶନ କଲୁ, ତା ବ୍ୟତୀତ ଆଉ ଏକ ଆଶ୍ଚର୍ଯ୍ୟଜନକ ତୀର୍ଥ ଦର୍ଶନ କଲୁ, ତା ହେଉଛି ପକ୍ଷୀତୀର୍ଥ। ଆମର ଦୁର୍ଭାଗ୍ୟ ଯେ ଠିକ ଏ ଦେବୁପତୀଙ୍କୁ ଦର୍ଶନ କରି ପାରିଲୁ ନାହିଁ।

ପକ୍ଷୀତୀର୍ଥ—ଏହାକୁ ଦକ୍ଷିଣରେ କୈଳାସ ବୋଲି କୁହନ୍ତି। ମାନ୍ଦ୍ରାଜଠାରୁ ୪୪ ମାଇଲ୍ ଦୂର ତିରୁକଲ୍ଲୀକଲମ୍। ଗୋଟିଏ ଛୋଟିଆ ପାହାଡ଼। ସେଇଠି ଦେବ ଗିରିଶ୍ୱରଙ୍କର ପବିତ୍ର ଶିବକ୍ଷେତ୍ର। ଏଠାରେ ପାର୍ବତୀଙ୍କର ମନ୍ଦିର ମଧ୍ୟ ଅଛି।

ତିରୁକ୍ଲକୁଣ୍ଡମ୍‌ର ବିଶେଷତ୍ୱ ହେଉଛି ଯେ ଏହି ପାହାଡ଼ ଉପରେ ପ୍ରତିଦିନ ଦୁଇଟି ଗୃଧ୍ର ପକ୍ଷୀ ଠିକ୍ ମଧ୍ୟାହ୍ନ ବାରଟାରେ ଉଡ଼ି ଆସନ୍ତି। ଭୋଗ ଖାଇ ପୁଣି କେଉଁଆଡ଼େ ଉଡିଯାଆନ୍ତି। ପ୍ରଥମେ ପାହାଡ଼କୁ ୩ଥର ପରିକ୍ରମା କରି ତା ଉପରେ ବସି ପଡ଼ନ୍ତି। ସେମାନଙ୍କ ପ୍ରତୀକ୍ଷାରେ ପୂର୍ବରୁ ସହସ୍ର ସହସ୍ର ଯାତ୍ରୀ ସେଠାରେ ସମବେତ ହୋଇଥାନ୍ତି। ଘଣ୍ଟା ମିଳାଇ ନେବେ ଠିକ୍ ୧୨ଟା ବେଳେ ପକ୍ଷୀ ଦୁଇଟି ଉଡ଼ାଜାହାଜ ଭଳି ଚକ୍କର କାଟି ଭୋଗ ଖାଇବା ସ୍ଥାନରେ ପହଞ୍ଚି ଯିବେ। ଏଣେ ପୂଜକ ମଧ୍ୟ ଭୋଗ ଥାଳି ନେଇ ଏହି ବିହଙ୍ଗ ଅତିଥି ଦ୍ୱୟଙ୍କ ସତ୍କାର ନିମନ୍ତେ ଉପସ୍ଥିତ ଥାଏ। ନିଜ ହାତରେ ଏହି ପକ୍ଷୀ ଦୁଇଟିଙ୍କୁ ଖୁଆଇଦିଏ ପୂଜକ। ଅନ୍ନ ଡାଲି ଓ ବିଭିନ୍ନ ମିଠାଇ। ତା' ପରେ ଭକ୍ତମଣ୍ଡଳୀଙ୍କ ସମ୍ମୁଖରେ ଦେଖୁ ଦେଖୁ ଅଦୃଶ୍ୟ ହୋଇଯାନ୍ତି ଆକାଶ ମାର୍ଗରେ।

ପକ୍ଷୀ ଦୁଇଟିକୁ ଦେଖିଲେ ଜଣାପଡ଼େ ଯେପରି ଅନେକ ଗୁଡାଏ ବୟସ ହୋଇଗଲାଣି। ରଙ୍ଗ ହଳଦିଆ, ଗଳା ଆଗକୁ ପର ଦେହରେ ରହିଛି ଧଳା ରଙ୍ଗର ପୁଞ୍ଛ। ଯୁଗ ଯୁଗ ଧରି ଏହି ରୀତି ଚାଲିଆସୁଛି। ଏହି ମନ୍ଦିର ତଳ ଦେଶରେ ଅଛି ଏକ ପୁଷ୍କରିଣୀ। ତାର ଜଳ ମଧ୍ୟରୁ ପ୍ରତି ୧୨ ବର୍ଷରେ ଥରେ ଏକ ବିରାଟ ଶଙ୍ଖ ଉଠି ଆସେ। ଏହି ଶଙ୍ଖର ଶୁଭ ଦର୍ଶନ ନିମନ୍ତେ ହଜାର ହଜାର ଭକ୍ତଙ୍କର ଆଗମନ ହୋଇଥାଏ।

ପଦବ୍ରଜରେ ଭାରତ ଭ୍ରମଣ କରିବା ସମୟରେ ବହୁ ମନୀଷିଙ୍କର ସାକ୍ଷାତ ଓ ସାନ୍ନିଧ୍ୟ ଲାଭ କରିବାର ଅପୂର୍ବ ସୁଯୋଗ ମିଳିଛି। ସେମାନଙ୍କର ସେବା କରି ଏ ଜୀବନ ଧନ୍ୟ ହୋଇଛି। ଗାନ୍ଧିଜୀ, କବିଗୁରୁ ରବିନ୍ଦ୍ରନାଥ ଟାଗୁର, ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ, ପୁରୁଷୋତ୍ତମ ଦାସ ଟଣ୍ଡନ୍, ମୌଲନା ଆବୁଲ କାଲମ୍ ଆଜାଦ୍, ରାଜେନ୍ଦ୍ର ପ୍ରସାଦ, ଲୋକନାୟକ ଜୟ ପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ଅରୁଣା ଆସଫ୍ ଅଲ୍ଲୀ, ଆଚାର୍ଯ୍ୟ କୃପାଲିନୀ, ବାବା ରାଘବ

ଦାସ, ଅଚ୍ୟୁତ ପଟ୍ଟବର୍ଦ୍ଧନ୍, କମଳାଦେବୀ ଚଟ୍ଟୋପାଧ୍ୟାୟ, ସରୋଜିନୀ ନାଇଡ଼ୁ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଐତିହାସିକ ଆର୍. ସି. ମଜୁମ୍‌ଦାର୍, ବଶିଷ୍ଠ ବୈଜ୍ଞାନିକ ପି. ସି. ଗୁପ୍ତ, ଜେ. ସି. ଘୋଷ୍ ଏବଂ ଯୋଗେଶ୍ ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ—ଏହିପରି ଆହୁରି ଅନେକ। ସେମାନଙ୍କୁ ସାକ୍ଷାତ କରି ସେମାନଙ୍କର ମହତ୍ତ୍ୱ ବାଣୀଶୁଣି ଏ ଜୀବନ ଧନ୍ୟ ହୋଇଛି। ନେତାଜୀ ସୁବାଷଚନ୍ଦ୍ର ବୋଷଙ୍କର ସେବା କରିବାର ସୌଭାଗ୍ୟ ଆମେ ଅର୍ଜନ କରିଛୁ।

ସବୁଠାରୁ ଉଲ୍ଲେଖନୀୟ ଘଟଣା ହେଉଛି ଚଟ୍ଟାଗାଙ୍ଗ ସରକାରୀ ଅସ୍ତ୍ରାଗାର ଲୁଣ୍ଠନକାରୀ ବିପ୍ଳବୀମାନଙ୍କ ସହିତ ସାକ୍ଷାତ। ବିପ୍ଳବୀ ସୂର୍ଯ୍ୟ ସେନ୍ ଥିଲେ ସେମାନଙ୍କର ନେତା, ଯାହାକୁ ଲୋକେ ମାଷ୍ଟର ଦାଦା ବୋଲି ଡାକୁଥିଲେ। ସେମାନଙ୍କ ମଧ୍ୟରୁ ଅନେକ ଫାଶୀ ପାଇଛନ୍ତି। ଅନେକ ନିର୍ବାସନ ଦଣ୍ଡ ଭୋଗିଛନ୍ତି। ଅନ୍ୟ ଯେଉଁମାନେ ବନ୍ଦୀ ଯାଇଥିଲେ ସେମାନଙ୍କୁ ଏବଂ ଆହୁରି ଅନେକ ଯୁବ-ବିପ୍ଳବୀଙ୍କୁ ପୂର୍ବ ଓ ପଶ୍ଚିମ ବଙ୍ଗର ବିଭିନ୍ନ ଥାନାମାନଙ୍କରେ ଅନିର୍ଦ୍ଦିଷ୍ଟ ବନ୍ଦୀ ରୂପେ ରଖା ଯାଇଥିଲା। ସେମାନଙ୍କର ତ୍ୟାଗ, ନିଷ୍ଠା, ଦେଶଭକ୍ତି ସମସ୍ତଙ୍କର ଅନୁକରଣୀୟ।

ଆଉ ଜଣେ ବିପ୍ଳବୀ ଯାହା କହୁଥିଲେ—

ତାହା ଏଠାରେ ଲିପିବଦ୍ଧ କରୁଛି। "ଅସ୍ତ୍ରାଗାର ଲୁଣ୍ଠନ ପରେ ପୋଲିସ୍ ଆମକୁ ପିଛା ଧରିଛି। ଆମେ ଗୋଟିଏ ଜଳିତା କଆଁରେ ଲୁଚି ଗଲୁ। କଆଁରେ ଆଣ୍ଠୁ ଏ ପର୍ଯ୍ୟନ୍ତ ପାଣିଥାଏ। ଜୋକ ସାଲୁବାଲୁ ହେଉଥାନ୍ତି। ଆମ ଦେହ ଯାକ ଲାଗି ଯାଇ ରକ୍ତ ଶୋଷିଲେ। କିନ୍ତୁ ଟିକିଏ ହଲଚଲ୍ କମ୍ବା 'ଉଁ' 'ଚୁଁ' ହେବାର ଶକ୍ତି ନଥିଲା। କାରଣ ଆମର ଶବ୍ଦ ପାଇ କାଳେ ପୋଲିସ୍ ଧରିନେବ। ଦେହରେ ସିଗରେଟ୍ ଡାଳି ନିଆଁ ଲଗାଇ ଦେଇଛନ୍ତି। ହାତ ନଖରେ ପିନ୍ କଣ୍ଟା ପିଟିଛନ୍ତି। ତଥାପି ଆମ ଠାରୁ ପଦେ ହେଲେ ଗୁପ୍ତ ଖବର ନେଇ ପାରି ନାହାନ୍ତି।

ସେତିକି ନୁହେଁ, ଆଣ୍ଠୁ ତଳେ ବଡ଼ ବଡ଼ ଗୋଡ଼ି ରଖି ଘଣ୍ଟା ଘଣ୍ଟା କରି ଆମକୁ ଆଣ୍ଠେଇ କରି ରଖିଛନ୍ତି। ସେ ଅତ୍ୟାଚାରର ସୀମା ନାହିଁ। ଆପଣ ଆମର ଦେଶବାସୀ। ଓଡ଼ିଶାର ଲୋକ ହେଲେ ମଧ୍ୟ ଆପଣମାନେ ଦେଶସେବୀ। ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ଜେଲ୍ ଯାଇଛନ୍ତି। ଅକଥନୀୟ ଅତ୍ୟାଚାର ସହିଛନ୍ତି। ଆପଣମାନଙ୍କୁ ଆମର କଥା କହିବୁ ନାହିଁ ତ କହିବୁ କାହାକୁ ? ହୁଏତ ଏପରି ଅନିର୍ଦ୍ଦିଷ୍ଟ ବନ୍ଦୀ ଅବସ୍ଥାରେ ଜୀବନ ବିତିଯିବ। ଇତିହାସରେ ଆମର ନାମ ରହିବ

ନାହିଁ, ତଥାପି ଆମେ ଯାହା କରିଛୁ, ଆଉ ଯେତେ ବର୍ଷରହୁ ଯାହା କରିବୁ, ତାହା ଆମ ଭବିଷ୍ୟତ ବାସ୍ତଦଙ୍କ ପାଇଁ ଏକ ମାଇଲ୍ ଷ୍ଟୋନ୍ ସଦୃଶ ହୋଇ ରହିବ ।"—ଭାବ ବିହ୍ୱଳ ହୋଇ କହିଲେ ଏକ ମହାନ୍ ବିପ୍ଳବୀ ଯୁବକ ଜ୍ୟୋତିଷ ଚକ୍ରବର୍ତ୍ତୀ ।

× × ×

ଯେଉଁ କଟକରୁ ଭାରତ ଭ୍ରମଣର ପ୍ରାରମ୍ଭ, ସେହି କଟକରେ ତା'ର ପରିସମାପ୍ତି ହେଲା । ଆମ ଭ୍ରମଣ କାହାଣୀ କେହି ପୁସ୍ତକରେ ଛପାଇ ନାହାନ୍ତି । ତେବେ ଭାଷାକୋଷ ପଣେତା ସ୍ୱର୍ଗୀୟ ଗୋପାଳ ଚନ୍ଦ୍ର ପ୍ରହରାଜ ଏ ବିଗରେ ଆମକୁ ବହୁ ଉତ୍ସାହିତ କରିଥିଲେ । ସେ ଥିଲେ ହୁଏତ ବହିଟି ଛପା ଯାଇ ପାରିଥାନ୍ତା ।

ତେବେ Orissa Book Emporiumର ମାଲିକ ପ୍ରାଣକୃଷ୍ଣ ମିଶ୍ର ଦୟା ପରବଶ ହୋଇ ବଙ୍ଗ ପ୍ରଦେଶର ବିବରଣୀଟିକୁ "ଭାରତର ବାଟେ ଘାଟେ" ନାମ ଦେଇ ପ୍ରକାଶ କରିଥିଲେ । ଅଳ୍ପ ସମୟରେ ସେ ସଂସ୍କରଣଟି ନିଃଶେଷ ହୋଇଗଲା । ଅନ୍ୟ ପ୍ରଦେଶର ବିବରଣୀ ଗୁଡ଼ିକ ଛପାଇବାର ତାଙ୍କର ଏକାନ୍ତ ଇଚ୍ଛା ଥିଲେ ମଧ୍ୟ ଆଉ ସମ୍ଭବପର ହେଲା ନାହିଁ ।

ଅନେକ ଦିନ ପରେ ମୋର ଅତି ସ୍ନେହର ଶ୍ରେଷ୍ଠ ଭାଇ ମନପବନର ସୁଯୋଗ୍ୟ ସମ୍ପାଦକ ଅଧ୍ୟାପକ ମହେଶ୍ୱର ମହାନ୍ତି ନିଜ ତରଫରୁ ଅତ୍ୟନ୍ତ ଆଗ୍ରହ ଓ ଉତ୍ସାହ ପ୍ରକାଶ କରି ଧାରାବାହିକ ଭାବେ ତାଙ୍କ ମନପବନରେ ଭ୍ରମଣ ବିବରଣୀ ଛାପିଲେ । ମୁଁ ତାଙ୍କଠାରେ ଋଣୀ ।

ଆକାଶବାଣୀ ଶିଶୁ ସଂସାରର ସଞ୍ଚାଳକ ଶ୍ରୀ ନନ୍ଦୀସ୍ୱା ବିହାରୀ ମହାନ୍ତି (ବଡ଼ଭାଇ) ଶିଶୁମାନଙ୍କୁ ଏ ଭ୍ରମଣ ବାର୍ତ୍ତା ଆକାଶବାଣୀ ମାଧ୍ୟମରେ କହିବାକୁ ସୁଯୋଗ ଦେଇ ମୋତେ କୃତାର୍ଥ କରିଛନ୍ତି ।

୧୯୩୭ର ଶେଷ ଭାଗରେ ଭାରତ ଭ୍ରମଣରୁ ଫେରିଲୁ । ସ୍ଥାନ ମିଳିଲା ମହତାବ୍ ବାବୁଙ୍କ ପାଖରେ । ସେ ସେତେବେଳେ ସନ୍ସାଇନ୍ ଫିଲ୍ଡ଼ ପାଖରେ ରହୁଥିଲେ—ବର୍ତ୍ତମାନ ଯାହାକୁ ଚଳୋକନ ଅଗ୍ରୱାଲ୍ ନେଇଛନ୍ତି ।

ବାଗଲ୍ପୁରର ଅକ୍ଷୟ ଦାସ ଓ ମାସ୍ତ୍ରାଧର ମହାନ୍ତି ମଧ୍ୟ ସେଠାରେ ରହୁଥିଲେ । କିଛି ଅସୁବିଧା ହେଲା ନାହିଁ । ଗୋପ ବାବୁଙ୍କ ବାଖରବାଦ ଘରେ ନବବାବୁ ଓ ମାଳତୀ ଦେବୀ ରହୁଥିଲେ । ମୁଁ ଗଲି । ସେଠାରେ ସାରଙ୍ଗ ଧର ଦାସଙ୍କ ସହ ପରିଚୟ ହେଲା । ଶୁଭ୍ର ବଳାତ ସୁଟ୍ ପରିଧାନ କରିଥାନ୍ତି । ଧୀରେ ଧୀରେ ମଜା ମଜା ଗପ ମଧ୍ୟ କହୁଥାନ୍ତି । ଅନବରତ ସିଗାରେଟ୍ ପିଥା ଭୁଲି ଥାଏ । ଇଂରାଜୀରେ ଯାହାକୁ କହନ୍ତି Chain Smoker.

ଢେଙ୍କାନାଳ ରାଜାଙ୍କ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ ହୋଇ ଯାଇଥାଏ । ରାଜାଙ୍କ ଅତ୍ୟାଚାର ଅନାଚାର ଓ ବ୍ୟଭିଚାର ବିରୁଦ୍ଧରେ ପ୍ରଜାମାନେ ମୁଣ୍ଡ ଟେକିଥାନ୍ତି । ଗ୍ରାମେ ଗ୍ରାମେ ସଙ୍ଗଠନ ବଢ଼ି ଚାଲିଥାଏ । ପଞ୍ଚାୟତ୍, ଜଳ ସାହେବ ଓ ନନ୍ଦପେଶ୍କାର ତାର ଶରବ୍ୟ ହୋଇଥାନ୍ତି । ବାଖରାବାଦରେ ଯେଉଁ କୋଠାରେ ପ୍ରଥମେ ଇଂରେଜମାନଙ୍କ ତହସିଲ ଦପ୍ତର ହୋଇଥିଲା, ଅସହଯୋଗ ଆନ୍ଦୋଳନ ବେଳେ ଶହ ଶହ ସତ୍ୟାଗ୍ରହୀ ଲୁଣ ମାରିବା ପାଇଁ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି, କଟକ ଜିଲ୍ଲାର କୁଜଙ୍ଗ ଓ ଓରଣ୍ଡ ଲୁଣ ଚଟାଣକୁ ଯାଉଥିଲେ, ସେହିଠାରେ ହିଁ ଢେଙ୍କାନାଳ ରାଜାଙ୍କ ତହସିଲ ଦପ୍ତର ଚାଲିଥାଏ ।

ନବବାବୁ, ମାଳତୀ ଦେବୀ (ନୁମା), ଭଗବତୀ ପାଣିଗ୍ରାହୀ, ରବିଘୋଷ, ସୁରେନ୍ଦ୍ର ଦ୍ୱିବେଦୀ, ବୈଷ୍ଣବ ପଟ୍ଟନାୟକ, ମହେଶ୍ୱର, ସୁବାହୁ ସିଂହ, ନରୋତ୍ତମ ଦାସ ପ୍ରଭୃତି ଚଳାଚଳ ମନ୍ତ୍ରଣା ଚଳାଇଥାନ୍ତି । ଢେଙ୍କାନାଳର ଆନ୍ଦୋଳନ ଜୋର୍‌ସୋର ଚାଲିଥାଏ । ଏହି ଆନ୍ଦୋଳନରେ ଯୋଗ ଦେବାକୁ ମୋତେ ମାଳତୀ ଦେବୀ କହିଲେ । ଯୋଳପୁର କ୍ୟାମ୍ପକୁ ଯିବାକୁ ହେଲା । କିନ୍ତୁ ଅସୁସ୍ଥ ହୋଇ ପଡ଼ିବାରୁ ଫେରି ଆସିଲି ।

କଟକରେ କିଛି ଦିନ ରହିବା ପରେ ବାଜିରାଉତ, ନଟ, ହୁରୁଷୀ, ଗୁରି, ରଘୁ ପ୍ରଭୃତି ଗୁଳି ଖାଇ ମଲେ । ସେମାନଙ୍କର ଶବ କଟକକୁ ଅଣାଗଲା । ଶବରେ କାନ୍ଧ ଲଗାଇବାର ସୌଭାଗ୍ୟ ମୋତେ ମିଳିଥିଲା । ସେ ଦିନର ସେ ସ୍ମୃତିକୁ ମୁଁ ଭୁଲି ପାରିବି ନାହିଁ । ଖାନ୍‌ନଗର ଶ୍ମଶାନରେ ସେମାନଙ୍କୁ ଦାହ କରାଗଲା । ସେମାନଙ୍କ ପାଇଁ ସେଦିନ କଟକ ସହରର ହଜାର ହଜାର ଲୋକ ଲୁହ ଢାଳି-ଥିଲେ । ସେହି ଅମର ଆତ୍ମାଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇ ମୁଁ ଗାଁକୁ ଫେରିଲି ।

ବହୁ ବର୍ଷ ପରେ ଗାଁରେ ସମସ୍ତେ ମୋତେ ଦେଖି ବିହ୍ୱଳ ହୋଇ ପଡ଼ିଲେ । ଘରେ ଥାଏ । ଗୋପ ବାବୁ ଆମ ଅଞ୍ଚଳକୁ ବୁଲି ଆସିଥିଲେ । ବରି ଯାଇ ମହୁମାଛି ଚାଷ ଶିକ୍ଷା ନେବାକୁ ସେ ମୋତେ କହିଲେ । ସେଥିରେ ମୁଁ ରାଜି ହେଲି ।

ହରିଦାସପୁର ଷ୍ଟେସନ୍‌ରେ ଓହ୍ଲାଇ ଜାଏମା ହାଟ ଓ କୋଟ ପୁର ଦେଇ ଚାଲି ଚାଲି ବରିରେ ପହଞ୍ଚିଲି । ଠିକ୍ ସନ୍ଧ୍ୟା ହେଉଛି । ସେଠାରେ ଅନେକ ପୁରାତନ ଭାଇ ଭଉଣୀଙ୍କ ସହ ସାକ୍ଷାତ ହେଲା । ପୂଜନୀୟା ରମା ଦେବୀ ବରି ସେବାଘରର ତତ୍ତ୍ୱାବଧାନରେ ଥାଆନ୍ତି । ସେଇଠି ଚନ୍ଦ୍ରଅପା, ମଙ୍ଗଳା ଅପା, ଶୋଭା ଅପା ପ୍ରଭୃତିଙ୍କ ସହ ସାକ୍ଷାତ ମିଳିଲା । ଏମାନେ ଆମ ଲଢ଼ୁଆ ସମୟର ସାଥୀ ଥିଲେ । ଏଇଠି ସୁରେନ୍ଦ୍ର ନାଥ ପଟ୍ଟନାୟକ ଓ ଜ୍ଞାନ ମଣ୍ଡଳର ପ୍ରଣେତା ବିନୋଦ୍

କାନୁନ୍‌ଗୋ ମଧ୍ୟ ଥିଲେ । ଆମେ ସମସ୍ତେ ଇଂରେଜ ସରକାର ବିରୁଦ୍ଧରେ କାନ୍ଧକୁ କାନ୍ଧ ମିଳାଇ ଲଢ଼ିଥିଲୁ । ଏରସମା ଅଂଚଳର ଜଣେ ଭଜଣୀ ବେଲ ଅପାଙ୍କ ସହିତ ଏଠାରେ ପରିଚୟ ହେଲା । ମାଲ, କରଣ, ଗିରି, ଉମା ପ୍ରଭୃତି ଶ୍ରେଷ୍ଠ ଶ୍ରେଷ୍ଠ ଭଜଣୀଙ୍କ ସହ ମଧ୍ୟ ସାକ୍ଷାତ ହେଲା । ମୋର ପରିଚୟ ଯେମାନେ ପାଇ ଖୁବ୍ ଖୁସି ହେଲେ । ଆମ କ୍ୟାମ୍ପ୍ ସେବା ଘର ଠାରୁ ଟିକିଏ ଦୂର ହେଲେ ମଧ୍ୟ ମୋତେ ସେଠାରୁ ଡାକରା ଆସେ । ଗୀତ ଗାଏ, କ୍ୟାରିକ୍ୟାଚର ଦେଖାଏ । ସମସ୍ତଙ୍କ ମନୋରଂଜନ କରେ । ଭଲ ଭଲ ଜିନିଷ ଖାଇ ଫେରେ ।

ମୋର ଗୋଟିଏ ଐଶ୍ୱରିକ ଶକ୍ତି ଅଛି ଯେ ମୁଁ କଥାରେ କଥାରେ ସମସ୍ତଙ୍କୁ ହସାଏ । ତେଣୁ ଅନେକ ସ୍ଥାନରୁ ମୋର ଡାକରା ଆସେ । ଅଭିନୟରେ ମୋର ଦକ୍ଷତା ହେତୁ ନାଟକ ପରିଚାଳନା ଲାଗି ଅନେକ ମୋତେ ସେମାନଙ୍କ ଗ୍ରାମକୁ ନିଅନ୍ତି । ମୋ ଠାରୁ ଶିଖନ୍ତି । ଆଖଡ଼ାର ଓସ୍ତାଦ୍ ମୁଁ ସାଜେ ।

କେଉଁ ପ୍ରଣାଳୀରେ ମହୁମାଛି ଧରାଯିବେ, କେମିତି ବାକ୍ସରେ ରହିବେ, କପରି ସେମାନଙ୍କ ଯତ୍ନ ନିଆଯିବ, ଏ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଶ୍ରୀ ମନମୋହନ ଚୌଧୁରୀଙ୍କ ଠାରୁ ନେଇଥାଇ । କିଛି ଦିନ ବାରିରେ ଅବସ୍ଥାନ କରି ମୋର ଗ୍ରାମକୁ ଫେରି ଆସିଲି, ଆମର ଶିକ୍ଷାକୁ କାର୍ଯ୍ୟରେ ଲଗାଇବା ପାଇଁ । ବଣ୍ଟନ୍‌ପୁର କଲ୍ଲିର ଗଣେଶ୍ୱରପୁର ଠାରେ ହରିବାବୁ (ବଶିାଳ) ଆଶ୍ରମ କରିଥାନ୍ତି । ମୁଁ ତାକୁ ହିଁ ନିଜର କର୍ମ କ୍ଷେତ୍ର ରୂପେ ବାଛି ନେଲି ।

୧୯୩୮ ମସିହା ଏପ୍ରିଲ । ତେଲଙ୍ଗ ସମ୍ମିଳନୀ ପାଖେଇ ଆସିଲା । ଆମ ବାଲକୁଦାରୁ ଗୋଟିଏ ପଦଯାତ୍ରୀ ଦଳ ହରେକୃଷ୍ଣ ବଶିାଳଙ୍କ ନେତୃତ୍ୱରେ ଭିନ୍ନ ଭିନ୍ନ ଗ୍ରାମରେ ଗାନ୍ଧିଜୀଙ୍କର ବାର୍ତ୍ତା ପ୍ରଚାର କରି ଚାଲିଥାଇ । ନିର୍ଦ୍ଦିଷ୍ଟ ସମୟରେ ଡେଲଙ୍ଗରେ ହାଜର ହେଲୁ । ଡେଲଙ୍ଗ ଷ୍ଟେସନ୍‌କୁ ଲାଗି ବେରବୋଇ ଗ୍ରାମ । ସମ୍ମିଳନୀର ସ୍ଥାନ ସେଇଠି । ଭାରତର ବିଭିନ୍ନ ରାଜ୍ୟରୁ ବହୁ ନେତୃସ୍ଥାନୀୟ ବ୍ୟକ୍ତି ଓ କର୍ମୀ ସେଠାରେ ସମବେତ ହୋଇଥାନ୍ତି । ଆମ ଘରର ଓଡ଼ିଆ ବୋହୂ ଓ ଝିଅମାନେ ଦିନ ରାତି ଲାଗି ଓଡ଼ିଆ ଘରର ବିଭିନ୍ନ ପିଠାପଣା ରାନ୍ଧଣା ରାନ୍ଧି ପରି-ବେଷଣ କରୁଥାନ୍ତି । ବହିରାଗତ ଅତିଥିମାନେ ଆମ ଝିଅ ବୋହୂମାନଙ୍କ ହାତ ପରସା ରନ୍ଧା ଖାଇ ବିଶେଷ ପରିତୋଷ ଲାଭ କରୁଥାନ୍ତି । ନିଜେ ଗୋପ ବାବୁ (ଚୌଧୁରୀ) ଖୋଲା ଦେହରେ ମୁଣ୍ଡରେ ଓଦା ଗାମୁଛା ପକାଇ ଦେଇ ସମସ୍ତ ତଦାରଖ କରୁଥାନ୍ତି । ଅଦ୍ଭୁତ ସଙ୍ଗଠନ ଶକ୍ତି ତାଙ୍କର । ଟିକିଏ ଗଳ୍‌ତି ହେବାର ସୁ ନାହିଁ ।

ସମ୍ମିଳନୀକୁ ଲାଗି ହସ୍ତଶିଳ୍ପ ପ୍ରଦର୍ଶନୀ ଖୋଲା ଯାଇଥାଏ । ଅତି ଆକର୍ଷଣୀୟ ଓ ଅତି ଶିକ୍ଷଣୀୟ ହୋଇଥାଏ । ଗ୍ରାମାଞ୍ଚଳର ତଥା ପୁରୀ କଟକର ଆଖପାଖରୁ ବହୁ ଲୋକ ଆସି ପ୍ରଦର୍ଶନୀ ଦେଖି ନେତାମାନଙ୍କ ଭାଷଣ ଶୁଣି ମୁଗ୍ଧ ହେଉଥାନ୍ତି । ପ୍ରତିଦିନ ସନ୍ଧ୍ୟାରେ ଗାନ୍ଧିଜୀଙ୍କର ପ୍ରାର୍ଥନା ସଭା ହେଉଥିଲା ।

ଷ୍ଟେସନ୍‌ରେ ମୋର Duty ଥାଏ । ମୋ ଅଧୀନରେ ପ୍ରାୟ ୧୦।୧୨ ଜଣ ସ୍ୱେଚ୍ଛାସେବକ ଥାଆନ୍ତି । ବାହାରୁ କେହି ଆସିଲେ ତାଙ୍କୁ ଶିବିରରେ ପହଞ୍ଚାଇ ଦେବା ଏବଂ କେହିଗଲେ ତାଙ୍କ ଯିବାର ସୁବ୍ୟବସ୍ଥା କରିଦେବା ଥିଲା ଆମର କାମ । ସଦ୍ୟ ଭାରତ ଭ୍ରମଣରୁ ଫେରିଛି । ବିଭିନ୍ନ ପ୍ରଦେଶର ଭାଷା ଜାଣିଛି ବୋଲି ମୋତେ ଏ ଦାୟିତ୍ୱ ଗୋପବାବୁ ଦେଇଥିଲେ ।

ଦିନେ କସ୍ତୁରବା ଜଗନ୍ନାଥଙ୍କ ଦର୍ଶନ କରିବାର ଇଚ୍ଛା ପ୍ରକାଶ କରି ତେଲଙ୍ଗ ଷ୍ଟେସନ୍‌ରେ ପହଞ୍ଚିଲେ । ତାଙ୍କ ସହିତ ମହାଦେବ ଦେଶାଇଙ୍କ ସ୍ତ୍ରୀ, ରାଜେନ୍ଦ୍ର ପ୍ରସାଦଙ୍କ ଭଉଣୀ ଓ ଅନ୍ୟମାନେ ଥିଲେ । ମୁଁ ଭଲ ରୂପେ ହିନ୍ଦୀ ଜାଣି-ଥିବାରୁ ତାଙ୍କ ସହିତ ଯାଇ ପୁରୀର ସମସ୍ତ ଦର୍ଶନୀୟ ସ୍ଥାନ ଦେଖାଇ ଆଣିବାକୁ ସେ ମୋତେ ଅନୁରୋଧ କଲେ । ଗାନ୍ଧିଜୀଙ୍କ ସହଧର୍ମିଣୀ, ପୁଣି ଏ ଜାତିର ମାଆ, ତାଙ୍କ କଥା ଏଡ଼ି ପାରିଲିନି । ମୁଁ ମୋର କର୍ତ୍ତବ୍ୟ ଭୁଲିଲି । ଦଳର ନେତା ଯେଉଁ ଗୁରୁ ଦାୟିତ୍ୱ ଦେଇଥିଲେ, ତାକୁ ଏଡ଼ାଇ ଦେଇ ମା'ର ଆଦେଶକୁ ବଡ଼ ମନେ କରି ପୁରୀ ଗଲି ।

ପୁରୀରେ ପହଞ୍ଚି ଗୋଟି ଗୋଟି କରି ସମସ୍ତ ଦର୍ଶନୀୟ ସ୍ଥାନ ଦେଖାଇଲି । ଜଗନ୍ନାଥଙ୍କ ଦର୍ଶନ ମଧ୍ୟ କସ୍ତୁରବା କଲେ । ହରିଜନମାନଙ୍କୁ ଜଗନ୍ନାଥ ମନ୍ଦିରରେ ପ୍ରବେଶର ଅଧିକାର ନ ମିଳିବା ପର୍ଯ୍ୟନ୍ତ ମୁଁ ମନ୍ଦିର ମଧ୍ୟକୁ ଯିବି ନାହିଁ ବୋଲି ଗାନ୍ଧିଜୀ ଯେଉଁ କଠୋର ଶପଥ ନେଇଥିଲେ, ସେହି ମହାପୁରୁଷଙ୍କ ସହଧର୍ମିଣୀ ଚକାଡୋଳାଙ୍କ ଚରଣ ତଳେ ଆତ୍ମନିବେଦନ କରି ସନ୍ଧ୍ୟାରେ ଫେରିଆସିଲେ ।

ଗାନ୍ଧିଜୀ ଏ ବିଷୟ ଜାଣିଗଲେ । ତହିଁ ଆରଦିନ ପ୍ରାର୍ଥନା ସଭାରେ ସେ ଏକଥା ପ୍ରକାଶ କଲେ । ସ୍ତ୍ରୀର କୃତକର୍ମ ପାଇଁ ସ୍ୱାମୀ ହିସାବରେ ଅନଶନ କରିବେ ବୋଲି ସର୍ବ ସାଧାରଣରେ ଘୋଷଣା କଲେ । ଗାନ୍ଧିଜୀ ଗୋପ ବାବୁଙ୍କୁ କହିଲେ— "ଯେଉଁ ସ୍ୱେଚ୍ଛାସେବକ ଜଣକ କସ୍ତୁରବା ସହିତ ଯାଇଥିଲେ, ସେ କ'ଣ ଶିବିରର ଅଧିନାୟକଙ୍କ ଅନୁମତି ନେଇ ଯାଇଥିଲେ ? ହୁଏତ ସେ ଯାଇ ନ ଥିଲେ ଏମାନଙ୍କର ଏତେ ଷ୍ଟାନ ବୁଲିବା ସମ୍ଭବପର ହୋଇ ନ ଥାନ୍ତା । ତେଣୁ ଆପଣ

ଏଇ ବିଷୟରେ ଅନୁସନ୍ଧାନ କରନ୍ତୁ ଏବଂ ସ୍ୱେଚ୍ଛାସେବକଙ୍କ ଲାଗି ଯାହା ଉଚିତ୍ ବିଚାର କରୁଛନ୍ତି, କରନ୍ତୁ ।"

କି ଅଦ୍ଭୁତ ଶୃଙ୍ଖଳାଜ୍ଞାନ । ସାମାନ୍ୟ କଥା ପ୍ରତି କି ତୀକ୍ଷ୍ଣ ଦୃଷ୍ଟି ! ମୋ ଉପରେ ଚଡ଼କ ପଡ଼ିଲା । ନିଜ କର୍ତ୍ତବ୍ୟରେ ଅବହେଳା କରିଥିବା ଯୋଗୁଁ ଗୋପବାବୁ ମୋତେ ତିରସ୍କାର କଲେ ଏବଂ ସନ୍ଧ୍ୟା ସୁଦ୍ଧା ଶିବିର ଛାଡ଼ି ଚାଲିଯିବାକୁ ମୋତେ ନିର୍ଦ୍ଦେଶ ଦେଲେ । ମୁଁ ମୋର ଦୋଷ ସ୍ୱୀକାର କଲି । ଭବିଷ୍ୟତକୁ ଏପରି କରିବି ନାହିଁ ବୋଲି ପ୍ରତିଶ୍ରୁତି ଦେଲି । କିନ୍ତୁ ଗୋପବାବୁ ଅଟଳ ଓ ଅଚଳ । ଜଣେ ବିଶିଷ୍ଟ ଗାନ୍ଧୀବାଦୀ ଗୃଟୁବାବୁ ମୋ ରହିବା ଲାଗି ଅନୁରୋଧ କଲେ । ହରେକୃଷ୍ଣ ବିଶ୍ୱାଳ ମୋ ଲାଗି ଗୋପବାବୁଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ, କିନ୍ତୁ ଗୋପବାବୁ କୌଣସି କଥାକୁ କାନକୁ ନେଲେ ନାହିଁ । ଗୋଟିଏ ରାତି କୌଣସିମତେ ରହି ସକାଳୁ ଲୁଗା ପଟା ବାନ୍ଧି ଶିବିର ଛାଡ଼ି ପଳାଇବାକୁ ବାହାରିଲି । ମନରେ କ୍ରୋଧ, ଆଖିରେ ଲୁହ । ସମସ୍ତେ ଚାହିଁଲେ । ମୁଁ ଆଜି ଦଣ୍ଡିତ ହୋଇ ଏ ସ୍ଥାନ ଛାଡ଼ି ଚାଲି-ଯାଉଛି । ଦେଖିଲି ଗୃଟୁବାବୁ ଅସୁସ୍ଥ । ମୁଁ ତାଙ୍କୁ ନମସ୍କାର କରି ବିଦାୟ ନେଲି । ସେ ମୋତେ ହାତଠାରି ଡାକିଲେ । ପାଖକୁ ଗଲି । କାନ୍ଧରେ ହାତ ପକାଇ କହିଲେ—'ଗୋପବାବୁ ତାଙ୍କ ମତ ପରିବର୍ତ୍ତନ କରିଛନ୍ତି । ତମେ ଏଣିକି ନେତା-ମାନଙ୍କର ଶିବିର ପରିଷ୍କାର ଓ ପରିଚ୍ଛନ୍ନ ରଖିବାର ଦାୟିତ୍ୱ ନେବ ।' ଆନନ୍ଦରେ ରାଜି ହୋଇ ଗଲି । ଗାନ୍ଧିଜୀ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍, ରାଜେନ୍ଦ୍ର ପ୍ରସାଦ, ମୌଲାନା ଆବୁଲ୍ କାଲାମ୍ ଆଜାଦ୍‌ଙ୍କ ଶିବିର ସଫେଇର ଦାୟିତ୍ୱ ନେଲି, ସମ୍ମିଳନୀ ଶେଷ ପର୍ଯ୍ୟନ୍ତ । ମୋର କର୍ମରେ ତ୍ରୁଟି କରିନାହିଁ ବରଂ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଛି । ମହା ସୌଭାଗ୍ୟ ମୋର ।

ସମ୍ମିଳନୀ ଶେଷ ହେଲା । ଘରକୁ ଫେରିଲି । ବଡ଼ ବାପା ରହୁଥାନ୍ତି ପଞ୍ଚ-ପଲ୍ଲୀରେ । ମୋର ଦାଦା ଯାହାଙ୍କୁ ମୁଁ ଆଉବାପା ବୋଲି କହେ, ସେ ରହୁଥାନ୍ତି ଘରେ । ମୋ ବାପା ରହୁଥାନ୍ତି ମାୟପୁରର ରାମବାଗରେ । ମୋର ଦେହ ବ୍ୟସ୍ତ ହେତୁ ଘରେ ରହିଲି । ମଝିରେ ମଝିରେ ହରେକୃଷ୍ଣ ବିଶ୍ୱାଳଙ୍କ ପ୍ରତିଷ୍ଠିତ ବିଶୁନ୍‌ପୁର କାଛାର ଗଣେଶ୍ୱରପୁରର ଆଶ୍ରମକୁ ଯାଉଥାଏ ।

ହଠାତ୍ ଆମ କୁଟୁମ୍ବର ଜଣେ ଦାଦା କପିଳଚରଣ ମହାନ୍ତି ଟାଇ-ଫଏଡ୍‌ରେ ପଡ଼ିଲେ । ତାଙ୍କ ଅବସ୍ଥା ସଙ୍କଟାପନ୍ନ ବୋଲି କଲିକତାରୁ ଟେଲିଗ୍ରାମ୍ ଆସିଲା । ତାଙ୍କ ବାପା ପ୍ରମାଦ ଗଣିଲେ । ବାଉଣ୍ଡି ସାଥାନ୍ତି ବାପା ଘର ଘର ହୋଇ ଖୋଜିଲେ କିଏ କଲିକତା ଯିବ ? କିଏ ତାଙ୍କ ମୃତ୍ୟୁ ପଥର ଯାତ୍ରୀ ପୁଅକୁ ଫେରାଇ

ଆଣିବ ? ବୁଢ଼ା ବାବାଙ୍କ ସମସ୍ତଙ୍କୁ ନିଜର ଦୁଃଖ ଜଣାଇଲେ । ତାଙ୍କୁ ମିନତି କଲେ । ହାତ ଧରିଲେ । ମାତ୍ର କେହି ଯିବା ପାଇଁ ଆଗଭର ହେଲେ ନାହିଁ ।

ମୁଁ ଗଣେଶ୍ୱରପୁର ଆଶ୍ରମରୁ ମେଦିନ ଫେରିଥାଏ । ସଦାଳୁ କଲିକତା ଅଭିମୁଖେ ଚାଲିଲି । ରାତି ଆରଦିନ ହାଓଡ଼ା ଷ୍ଟେସନ୍‌ରେ ପହଞ୍ଚିଲି । ଟ୍ରାମ୍‌ରେ ଗଲି ସିଆଲଦା । ସିଆଲଦା ଷ୍ଟେସନ୍‌ରୁ ଟ୍ରେନ୍‌ରେ ଯାଇ ଓହ୍ଲାଇଲି ଯୋନପୁର ଷ୍ଟେସନରେ । ସେଠାରୁ ଚାଲି ଚାଲି ପଚାରି ପଚାରି ବଡ଼ କଷ୍ଟରେ କପିଳ ଦାଦାଙ୍କ ଖବର ପାଇଲି । ହାଓଡ଼ା ଷ୍ଟେସନ୍‌ରେ ଫଟୋଗ୍ରାଫରଙ୍କ ପାଲରେ ପଡ଼ି ଯେଉଁ କଷ୍ଟରେ ପରିତ୍ରାଣ ପାଇଛୁ, ତାହା ଈଶ୍ୱରହିଁ ଜାଣନ୍ତି । ଦେଖିଲି କପିଳ ଦାଦା ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥାରେ ପଡ଼ିଛନ୍ତି । ଔଷଧ ଏବଂ ପଥ୍ୟ ଅଭାବରୁ ଶଯ୍ୟାଶାୟୀ । ଦେଖି ଭାରି ଦୁଃଖ ଲାଗିଲା ।

ସେବା ଯତ୍ନ ଅବିରତ ଚାଲିଲା । ଔଷଧ ଓ ପଥ୍ୟ ଦେବାରେ କୌଣସି ତ୍ରୁଟି ହେଲା ନାହିଁ । ପନ୍ଦର ଦିନ କାଳ ନିରବଚ୍ଛିନ୍ନ ଭାବରେ ଚିକିତ୍ସା ଚାଲିବା ପରେ ସେ ରୋଗମୁକ୍ତ ବୋଲି ଡାକ୍ତର ଘୋଷଣା କଲେ । ଆଉ ସାତଟି ଦିନ କଲିକତାରେ ରହି କପିଳଦାଦାଙ୍କୁ ସଙ୍ଗରେ ନେଇ ଘରକୁ ଫେରିଲି ।

ଘରେ ପହଞ୍ଚି ଶୁଣେ ତ ମୋର ବିବାହ ସ୍ଥିର ହୋଇ ଯାଇଛି । ଗତକାଲି ପଞ୍ଚପଲ୍ଲୀର ବିଖ୍ୟାତ ମହାଦେବ ରାମେଶ୍ୱରଙ୍କ ଠାରେ ମହାପ୍ରସାଦ ନିର୍ବନ୍ଧ ସାରି ଆଉବାପା (ଦାଦା) ଫେରିଛନ୍ତି । ଚଣ୍ଡିକୁଳ ନିବାସୀ ପଙ୍କଜ ଦାସଙ୍କ ଏକମାତ୍ର କନ୍ୟା ଶରତ କୁମାରୀଙ୍କ ସହିତ ମୋର ବିବାହ ହେବ । ଦେଖା ନାହିଁ, ଶୁଣା ନାହିଁ, ହଠାତ୍ ପ୍ରସ୍ତାବ ଓ ନିର୍ବନ୍ଧ । କିଏ ମୋ ବିରୁଦ୍ଧରେ ଏପରି ଷଡ଼ଯନ୍ତ୍ର କଲା ? କିଏ ମୋ ଜୀବନ ସହିତ ଏପରି ଖେଳ ଖେଳିଲା ? ମୁଁ ବିଦ୍ରୋହ କଲି । ପ୍ରତିବାଦ ଜଣାଇଲି । ଘର ଛାଡ଼ି ଚାଲିଯିବାର ଧମକ ଦେଲି । ଦେଖିଲି ପରିବାରର ସମସ୍ତେ ଗୋଟାଏ ବନ୍ଧନରେ ମୋତେ ବାନ୍ଧି ଦେବାକୁ ଏକାନ୍ତ ବ୍ୟଗ୍ର । ବୋହୂଟିଏ ପାଇବାକୁ ମୋ ବୋଉ ମଧ୍ୟ ବ୍ୟାକୁଳ । ନିଜ ଗୋଡ଼ରେ ନିଜେ ଠିଆ ନ ହେବା ପର୍ଯ୍ୟନ୍ତ ଯେଉଁ ଶପଥ ନେଇଥିଲି, ଆଜି ମୋ ପରିବାରର କେତେକଙ୍କ ଚକ୍ରାନ୍ତ ଫଳରେ ମୋର ସେ ଆଶା ଧୂଳିସାତ୍ ହୋଇଗଲା । ପଇସାଟିଏ ରୋଜଗାର କରିବାର କ୍ଷମତା ବା ପନ୍ଥା ମୋର ନ ଥିଲା । ନିଜକୁ ବଡ଼ ଅସହାୟ ମନେ କଲି ।

ମୋର ଭାଉଜ (ବଡ଼ ଭାଇଙ୍କ ସ୍ତ୍ରୀ) ମୋର ଭାବୀପତ୍ନୀ ଓ ତାଙ୍କ ପରିବାର ବିଷୟରେ ଅନେକ କଥା କହିଲେ । ମୋର ଶ୍ୱଶୁର ୧୧ ଭାଇ । ୧୦ ଭାଇ ଜୀବିତ ଥା'ନ୍ତି । ମୋର ଶ୍ୱଶୁର ତୃତୀୟ ପୁତ୍ର । କ୍ଷେତ୍ରପର ବିଖ୍ୟାତ ଜମିଦାର ରାଘବାନନ୍ଦ

ଚୌଧୁରୀଙ୍କର କନିଷ୍ଠା କନ୍ୟା ମୋର ଶାଶୁ। ନାମ ତାଙ୍କର ସୀତା। ଶୁଣିଲି ରୂପରେ ଯେମିତ ଗୁଣରେ ମଧ୍ୟ ସେପରି ଥିଲେ। ନନ୍ଦ ଓ ଅକ୍ଷୟ ନାମରେ ଦୁଇଟି ପୁଅ ତାଙ୍କ ଗର୍ଭରୁ ଜନ୍ମ ହୋଇ ଅକାଳରେ ଚାଲିଗଲେ। ଶାଶୁ ଶ୍ୱଶୁର ପୁତ୍ରଙ୍କର ମୃତ୍ୟୁ ଶୋକରେ ମ୍ରିୟମାଣ ହୋଇ ପଡ଼ିଲେ। ତାଙ୍କର ତୃତୀୟ ସନ୍ତାନ ଶରତକୁମାରୀ। ଶରତକୁମାରୀଙ୍କ ୭ ବର୍ଷ ବୟସ ବେଳେ ମୋର ଶାଶୁ ଆଉ ଗୋଟିଏ କନ୍ୟା ଜନ୍ମ ଦେଇ ବହୁ ରୋଗ ଯନ୍ତ୍ରଣା ଭୋଗ କରି ସେହି କନ୍ୟା ସହ ପ୍ରସୂତି-ଶାଳାରେ ସ୍ୱର୍ଗବାସିନୀ ହେଲେ। ଏପରି ଅବସ୍ଥାରେ ଶ୍ୱଶୁର ଭାଙ୍ଗି ପଡ଼ିଲେ ମଧ୍ୟ ଝିଅଟିର ମୁହଁ ଚାହିଁ ଛାତିକୁ ପଥର କରି ତାର ଲାଳନ ପାଳନର ଦାୟିତ୍ୱ ନେଲେ। ସେ ଏକାଧାରରେ ପିତା ଓ ମାତା ହୋଇ ଏକମାତ୍ର ସନ୍ତାନକୁ ମଣିଷ କରି ଚାଲିଲେ।

ଶାଶୁଙ୍କ ମୃତ୍ୟୁପରେ ପୁନର୍ବିବାହ ଲାଗି ଅନେକ ଭଲ ପ୍ରସ୍ତାବ ଆସିଲା। ପ୍ରଲୋଭନ ମଧ୍ୟ କମ୍ ଆସିନି। କିନ୍ତୁ କନ୍ୟାର ମୁଖ ଚାହିଁ ସେ ସମସ୍ତ ପ୍ରସ୍ତାବ ଓ ପ୍ରଲୋଭନକୁ ପ୍ରତ୍ୟାଖ୍ୟାନ କଲେ।

ଶ୍ୱଶୁର ମୋର କୃଚ୍ଛ୍ରବ୍ରତୀ ଥିଲେ। ଯେଉଁ ଗଛଟିଏ ପୋତୁଥିଲେ, ତାହା ଫୁଲ ଫଳରେ ନଇଁ ପଡ଼ୁଥିଲା। ଯାହା ଠିକ୍ ବୋଲି ମନେ କରୁଥିଲେ, ସେଥିରେ ସେ ଶେଷ ପର୍ଯ୍ୟନ୍ତ ଅଟଳ ରହୁଥିଲେ। ତାଙ୍କର ଚିନ୍ତାଧାରା ଅନ୍ୟ ଭାଇମାନଙ୍କ ସହ ମିଶୁ ନ ଥିଲା।

ପୂର୍ବ କଥା ଲେଖୁ ଲେଖୁ ମୁଁ ପରକୁ ଚାଲି ଆସିଲି। ୧୯୩୮ ଜୁନ୍ ୧୮ ତାରିଖ ଦିନ ଜ୍ୟେଷ୍ଠ ୫ ଦିନରେ ମୋର ବିବାହ ହୋଇଗଲା। ଜଣେ ଅପରିଚିତର ହାତ ସହ ଏକ ଅପରିଚିତାର ହାତ ମିଳିଗଲା। ହୃଦୟର ବନ୍ଧନମୟ ହେଲା। ପୁରୋହିତ ମନ୍ତ୍ର ପଢ଼ି ଚାଲିଲେ। ଦୂବ ଅକ୍ଷତ ଶିରରେ ପଡ଼ିଲା ଏବଂ ସଙ୍ଗେ ସଙ୍ଗେ ହସ୍ତଗ୍ରନ୍ଥି ମଧ୍ୟ। ଅଗ୍ନିକୁ ସାକ୍ଷୀ ରଖି ଆମେ ଦୁହେଁ ସେହି ମୁହୂର୍ତ୍ତରେ ସ୍ୱାମୀ ସ୍ତ୍ରୀ ହୋଇଗଲୁ। ପ୍ରବଳ ଆଡ଼ମ୍ବର ସହ ବିବାହ କରିବାକୁ ଯାଇ ଫେରିଲି। ଶ୍ୱଶୁର ବରଯାତ୍ରୀଙ୍କ ପାଇଁ ବିପୁଳ ଆୟୋଜନ କରିଥିଲେ ମଧ୍ୟ ନିଜ ଭାଇମାନଙ୍କ ଘୋର ଅବହେଳା ଯୋଗେ କୌଣସି ସହଯୋଗ ନ ମିଳିବାରୁ ସବୁଥିରେ ବାଧା ପଡ଼ିଲା। ଏକୁଟିଆ ଲୋକ କ'ଣ ଆଉ କରନ୍ତେ? କନ୍ୟାକୁ ନେଇ କଣିଆ ଫେରିଲୁ।

ବାସର ରାତ୍ରି। ସେ ଦିନ ମଧୁଶଯ୍ୟା। ପରିଚୟହୀନ ଦୁଇଟି ପ୍ରାଣରେ ଆଶା ଜାଗେ। ଦୁହେ ଦୁହିଁଙ୍କ ନିକଟରେ ପାଇ ବ ଲାଜରେ ହୋଇ ରହନ୍ତି। କେତେ ଆଶା, ଆକାଂକ୍ଷା ନେଇ ମୁଁ ଶଙ୍କିତ ହୃଦୟରେ ବାସର ଗୃହକୁ ଗଲି। ନବବଧୂକୁ

କଥା କୁହାଇବାକୁ ହେବ । ମୁଣ୍ଡ ଉପରେ ମଙ୍ଗଳ ଦୀପ ଜଳୁଥାଏ । ସେ ମିଳନ ରାତ୍ରିର ମୂକସାକ୍ଷୀ ହୋମ ନଡ଼ିଆ ପାଟିରେ ଦେଲି । ଗ୍ରହଣ କଲେ । ନୂତନ ଜୀବନର ଉନ୍ମେଷ । ଦୁହିଙ୍କର ପ୍ରାଣର ହମ୍ନତା ପ୍ରଶମିତ କରିବାକୁ ହେଲା । କି ଆନନ୍ଦ କି ମଧୁମୟ ସେ ରାତିଟି ! ଛନ୍ଦମୟ ହୋଇ ସେ ରାତିଟି ଯାଉଥିଲା ।

ଶରତକୁମାରୀ ଆମ ଘରକୁ ଆସିବା ପରେ ମୋ ଚଳପଥ ନିଷ୍କଣ୍ଟକ ହେଲା । ଏକ ବାଟ ଭୁଲା ବାଟୋଇ ଯେପରି ଅନ୍ଧାରୀ ବାଟରୁ ନିଜ ପଥ ଖୋଜି ପାଇଲା । ମୋ ଜୀବନ ଶୃଙ୍ଖଳିତ ହେଲା । କେତେକ କ୍ଷେତ୍ରରେ ମୋର ଯଦି ସେ ଏକମତ ନ ହେଲେ ମଧ୍ୟ କୌଣସି କାର୍ଯ୍ୟରେ ସେ ବାଧା ଦେଇ ନାହାନ୍ତି । ବରଂ ମୋର ଦେଶ ସେବା ବ୍ରତକୁ ସେ ନିଜର ବୋଲି ଆଦରି ନେଇଛନ୍ତି । ଏ ଦିଗରେ ମୋତେ ପ୍ରେରଣା ଦିଅନ୍ତି । ଉତ୍ସାହିତ କରନ୍ତି ମଧ୍ୟ । ସେ ମୋର ସହଧର୍ମିଣୀ ନୁହଁନ୍ତି, ସହକର୍ମିଣୀ । କେତେକ କ୍ଷେତ୍ରରେ ତାଙ୍କର କର୍ମକୁଶଳତା ମୋତେ ଟପି ଯାଇଛି । ମନେ ପଡ଼ିଲା ଯେପରି ଏକ ଶାପଭ୍ରଷ୍ଟା ପୁରୁଷକୁ ଏକ ଅଜ୍ଞାତ ପରିଚୟସ୍ଵିନା ନାରୀ ଋଷି ଆଶ୍ରମରୁ ଉଦ୍ଧାର କଲେ । ତାର କଲ୍ୟାଣ ସ୍ପର୍ଶରେ ପାଷାଣରେ ରୂପାନ୍ତରିତ ଏକ ପୁରୁଷ ଅହଲ୍ୟା ପରି ପ୍ରାଣ ପାଇ ଚେଇଁ ଉଠିଲା ।

ଜମିଦାର ଘରର ଝିଅ ସେ । ଅନେକ ଆଶା କରିଥିଲେ ଏବଂ ଆଶଙ୍କା ମଧ୍ୟ ପ୍ରକାଶ ପାଇଥିଲା ଯେ ଆମ ଘରେ ସେ ଚଳିପାରିବେ ନି । କିନ୍ତୁ ଦେଖିଲି ସେ ସମସ୍ତଙ୍କ ସହିତ ମିଳିମିଶି ଚଳିଗଲେ । ଅଳ୍ପ ଦିନରେ ପ୍ରତ୍ୟେକଙ୍କୁ ନିଜର କରି-ନେଲେ । ଆଉ ଭଗାରିହସା ହେବାକୁ ପଡ଼ିଲା ନାହିଁ । ଆମର ଇଷ୍ଟ ଦେବ ଗଦାଧର ବଞ୍ଚେଇ ଦେଲେ ।

ମୋର ବିଭାଘରର ଅଳ୍ପ ଦିନ ପରେ ବାପ ଭୀଷଣ ଗ୍ରହଣୀ ରୋଗରେ ଆକ୍ରାନ୍ତ ହେଲେ । ଯାଜପୁରରୁ ଡାକ୍ତର ଆସିଲା । ହାତରେ ପଇସାଟିଏ ନାହିଁ । ବାପାଙ୍କ ଚିକିତ୍ସା ଓ ପଥ୍ୟ ଲାଗି ଅର୍ଥର ଏକାନ୍ତ ପ୍ରୟୋଜନ । ଆଉବାପା (ଦାଦା) ସେ ଏ ବିଷୟରେ ସମ୍ପୂର୍ଣ୍ଣ ଉଦାସୀନ ରହିଲେ । ମୁଁ ବେକାର ପୁଣି ଅସୁସ୍ଥ । ମୋର ସାନଭାଇ ବିଷ୍ଣୁ ସେତେବେଳେ ପାଠ ପଢୁଥାଏ । ଶରତକୁମାରୀ ସ୍ୱେଚ୍ଛାରେ ତାଙ୍କର ଗୋଟିଏ ସୁନା ଅଳଙ୍କାର ଖୋଲି ଦେଲେ । ମୋର ସ୍ୱୀକାର ମୁଦି ମଧ୍ୟ ମୁଁ ଖୋଲି ଦେଲି । ଆଉବାପା (ଦାଦା) ତାକୁ ବନ୍ଧକ କରି ନେଇ ଯାଜପୁର ଗଲେ । ସେତିକି ନୁହେଁ ବଡ଼ବାପାଙ୍କ ମଝିଆଣି ଝିଅ କେନ୍ଦୁମଣିର ବିଭାଘରରେ ମୋର ସ୍ତ୍ରୀ ତାଙ୍କର ଅଧିକାଂଶ ଗହଣା ନେଡକୁ ପିନ୍ଧାଇ ଦେଇଛନ୍ତି ଗୋଟି ଗୋଟି କରି ଦେହରୁ କାଢ଼ି । ବହୁତ ବାସନକୁସନ ଯୌତୁକ ରୂପେ ମିଳିଥିଲା, କୁଆଡ଼େ ସେ ସବୁ ଗଲା

ଭଗବାନ ଜାଣନ୍ତି । ମୋର ବିବାହ ପରେ ଏକାନ୍ତ ସ୍ୱାର୍ଥପରତା ଆମ ପରିବାରରେ ମୁଣ୍ଡ ଟେକିଲା । ମୁଁ ବଣରେ ଥାଏ ଗୋପବାବୁ ଓ ରମାଦେବୀଙ୍କ ପାଖରେ । ବିଷ୍ଣୁ ବାପାଙ୍କ ପାଖରେ ରାମବାଗରେ ପଢୁଥାଏ । ଘରେ ବୋଉ ଏବଂ ମୋର ସ୍ତ୍ରୀ ରହୁଥାନ୍ତି । ପରିବାରର ଯିଏ ମୁଖିଆ ସେ ଏ ଦୁହିଁଙ୍କୁ ଦେଖି ପାରିଲେ ନାହିଁ କି ସହି ପାରିଲେ ନାହିଁ । ଚରମ ଅବହେଳା ପ୍ରଦର୍ଶନ କଲେ ।

୧୯୩୧ ମସିହା ପ୍ରାରମ୍ଭରେ ବଣରୁ କଟକ ସ୍ୱରାଜ ଆଶ୍ରମକୁ ଫେରି ଆସିଲି । କଂଗ୍ରେସ ଅଫିସ୍‌ରେ ଥାଏ । ନେତାଙ୍କ ଲାଗି ଖଟେ । ବୋଲ ହାକ ଶୁଣେ । ଗୀତ ଲେଖି ଶୁଣାଏ । ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀଙ୍କ ସ୍ତ୍ରୀ ସ୍ୱରାଜ ଆଶ୍ରମର ଉପର ମହଲାରେ ରହୁଥାନ୍ତି । ମୁଁ ତାଙ୍କୁ ମାଉସୀ ବୋଲି ଡାକେ । ସେ ମୋତେ ବଡ଼ ସ୍ନେହ ଓ ଆଦର କରୁଥିଲେ । ଯାହା କିଛି ରଖିଥିବେ, ଅତି ଶ୍ରଦ୍ଧାରେ ମୋତେ ଖୁଆଇବେ । ଏପର୍ଯ୍ୟନ୍ତ ମୁଁ ତାଙ୍କୁ ଭୁଲି ପାରିନି ।

ଆଶ୍ରମରେ ଭୀଷଣ ଖଟଣି ପଡ଼ୁଥାଏ । ଖଟି ଖଟି ଯେତେବେଳେ କ୍ଲାନ୍ତ ହୋଇ ପଡ଼େ, ଘରକୁ ଚାଲିଯାଏ । ମଟରରେ ଯିବାକୁ ପଇସା ନ ଥାଏ । ଖାଇ ପିଇ ମାତ୍ର ୧୫ ଟଙ୍କା କଂଗ୍ରେସ ଅଫିସରୁ ମିଳୁଥାଏ । ସେଇଥିରୁ ବଞ୍ଚେଇ କିଛି କିନେଇ ପଠେଇ କେବେ ଅଫିସରୁ ୪୦ ମାଇଲ୍ ଦୂର ଗାଁକୁ ସାଇକେଲ ଚଲାଇଯାଏ ଏବଂ ୨।୩ ଦିନ ରହି ଫେରେ । ସେହି ଦୁଇ ତିନି ଦିନ ଶରତକୁମାରୀ ମୋ ପ୍ରାଣକୁ ପରିପୂର୍ଣ୍ଣ କରିଦିଅନ୍ତି । ଘରେ ଅଭାବ ଅସୁବିଧା ମୋତେ ଜଣାଇ ଦିଅନ୍ତି ନାହିଁ । ମନେ ଯେ ପରିବାରରେ କେତେ ବଞ୍ଚିତା ତାହା ଥରେ ହେଲେ ମୋ କାନକୁ ଆଣନ୍ତି ନାହିଁ । ବାପା ପ୍ରାୟ ଘରକୁ ଆସନ୍ତି ନ । ସାମୟିକ କିଛି ଅର୍ଥ ପଠାଇ ସେ ନିଶ୍ଚିନ୍ତ । ଶାଶୁ ବୋହୂ ଦୁଇ ଜଣ ଯାକ ବଡ଼ କଷ୍ଟରେ ଚଳୁଥାନ୍ତି । ଏକ ଅନ୍ନରେ ଥାଇ ମଧ୍ୟ ନ ଥିଲା ଭଳି ।

ସେତେବେଳେ କଟକ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ୍ ଥାନ୍ତି ନୀଳମଣି ପ୍ରଧାନ । ଭାଇସ୍ ଚେୟାରମ୍ୟାନ୍ ଥାନ୍ତି ମଦନ ମୋହନ ପଟ୍ଟନାୟକ । କଟକ ସଦର ଲୋକାଲ୍ ବୋର୍ଡ଼ ଚେୟାରମ୍ୟାନ୍ ଥିଲେ ଜାଜପୁର କବି ବୀରକିଶୋର ଏବଂ ଭାଇସ୍ ଚେୟାରମ୍ୟାନ୍ ସୁଧୀର ଘୋଷ । ସମସ୍ତେ କଂଗ୍ରେସ୍ ଅଫିସ୍‌ରେ ରହୁଥାନ୍ତି । ସୁଧୀର ବାବୁଙ୍କ ଉଦ୍ୟମରେ ପ୍ରାଥମିକ ଶିକ୍ଷକମାନଙ୍କର କେତେଗୁଡ଼ିଏ ଟ୍ରେନିଂ କ୍ୟାମ୍ପ ବିଭିନ୍ନ ସ୍ଥାନରେ ହୋଇଥିଲା । କଟକ କଂଗ୍ରେସ୍ ଅଫିସ୍‌ରେ ତା'ର ପ୍ରଥମ କ୍ୟାମ୍ପ୍ ହେଲା । ଶିବିର ପରିଚାଳନାର ସମସ୍ତ ଦାୟିତ୍ୱ ମୋ ଉପରେ ପଡ଼ିଲା । ପରେ ଅନ୍ୟ ଯେଉଁ ସ୍ଥାନମାନଙ୍କରେ ହୋଇଛି, ସେ ସ୍ଥାନକୁ ମୁଁ ଯାଇଛି ।

ଶିବିରରେ ଶିକ୍ଷକମାନଙ୍କୁ ଶୃଙ୍ଖଳା ଜ୍ଞାନ, ଉପଯୁକ୍ତ ଶିକ୍ଷାଦାନର ପ୍ରଣାଳୀ, ଶିଶୁ ମନୋରଞ୍ଜନ, ସ୍କାଉଟ୍ସ ଏବଂ ଡ୍ରିଲ୍ ଇତ୍ୟାଦି ଶିକ୍ଷା ଦିଆ ଯାଉଥିଲା । ମହମ୍ମଦ ବାବୁ, ନବବାବୁ ଓ School Inspector ପଦ୍ମଚରଣ ପଟ୍ଟନାୟକ ପ୍ରଭୃତି ଆସି ଶିକ୍ଷା ଦେଉଥିଲେ ।

ପରେ ଗ୍ରାମାଞ୍ଚଳରେ କଂଗ୍ରେସ୍ ସଙ୍ଗଠନକୁ ମଜବୁତ କରିବା ଲାଗି ସୁଚିନ୍ତିତ ଯୋଜନା ହେଲା । ସେତେବେଳେ କଂଗ୍ରେସ୍ ମନ୍ତ୍ରୀମଣ୍ଡଳ ଥାଏ । ସ୍ୱର୍ଗୀୟ ସାରଙ୍ଗ ଧର ଦାସ ସୁଟ୍, ବୁଟ୍, ହ୍ୟାଟ୍ ଛାଡ଼ି ଖଦଡ଼ ଧୋତି, କାମିଜ ଏବଂ ଗାନ୍ଧୀ ଟୋପି ପିନ୍ଧି ଗାଁ ଗାଁ ବୁଲିଲେ । ତାଙ୍କ ସହିତ ଜଣେ ସହଯୋଗୀ ହିସାବରେ କାର୍ଯ୍ୟ କରିବାର ମୋତେ ପରମ ସୌଭାଗ୍ୟ ମିଳିଛି । କେବେ କେବେ ଗ୍ରାମ ଗ୍ରାମ, କେବେ ବଳଦ ଗାଡ଼ିରେ ସେ ବୁଲୁଥିଲେ । ମୋ ସାଇକେଲ ପଛରେ ବସି ଅନେକ ସ୍ଥାନକୁ ମଧ୍ୟ ଯାଇଛନ୍ତି । ଗାଁ ଲୋକଙ୍କୁ ଅତି ଗାଉଁଲି ଭାଷାରେ ସେ କଂଗ୍ରେସ୍ କଥା ବୁଝାଉଥିଲେ । ଖୁବ୍ ଧୀରେ ଧୀରେ ଓଜନିଆ କଥା କହୁଥିଲେ । ତାଙ୍କ ସହିତ ଭଲ ଭାବରେ ନ ମିଶିଲେ ସେ ମହାନ୍ ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ କିଛି ଜାଣି ହେବ ନାହିଁ । କର୍ମୀମାନଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ମମତା ଥିଲା । ସମୟାନୁବର୍ତ୍ତିତା ସାରଙ୍ଗ ବାବୁ ହିଁ କେବଳ ଜାଣିଥିଲେ । ଜଣେ ସାହେବ ଏତେ ଶୀଘ୍ର ଜଣେ ସାଧାରଣ କର୍ମୀ ହୋଇ ଯିବା ମୋ କଳ୍ପନାର ବାହାରେ ଥିଲା ।

ଗୋଟିଏ ଅତି ଉଲ୍ଲେଖନୀୟ ଘଟଣା ଯାହା ମୁଁ ଛାଡ଼ି ଯାଉଛି, ତାହା ହେଲା ଢେଙ୍କାନାଳ ଆନ୍ଦୋଳନ । ସାରଙ୍ଗ ବାବୁ, ରବି ବାବୁ, ରମାଦେବୀ, ମାଳତୀ ଦେବୀ, ରବି ଘୋଷ୍, ସୁରେନ୍ଦ୍ର ଦ୍ୱିବେଦୀ, ଭଗବତୀ ପାଣିଗ୍ରାହୀ ପ୍ରଭୃତି ଢେଙ୍କାନାଳ ଆନ୍ଦୋଳନର ନେତୃତ୍ୱ ନେଇଥାନ୍ତି । ମିସ୍ ଆଗାଥା ହ୍ୟାରିସନ୍ ନାମକ ଜଣେ ଇଂରେଜ ମହିଳା ସେ ସବୁ ଦେଖିବାକୁ ଆସିଥାନ୍ତି । ପ୍ରଜାମଣ୍ଡଳର ଆହ୍ୱାନରେ ଢେଙ୍କାନାଳ ଖାଲି ଜଳୁଥାଏ ପୋଡ଼ୁଥାଏ । ଢେଙ୍କାନାଳର ରାଜା ପଟ୍ଟାୟତ, ନନ୍ଦ ସାହେବ, ନନ୍ଦ ପେସ୍କାରର ଅତ୍ୟାଚାରରେ ଲୋକେ ଜର୍ଜ୍ଜରିତ । ସାରଙ୍ଗ ବାବୁ ତାର ପରିଚାଳନା କରୁଥାନ୍ତି । ସ୍ୱର୍ଗୀୟ ଗୌରାଙ୍ଗ ଚରଣ ଦାସ (ଗୌରୀ ଭାଇ)ଙ୍କୁ ଢେଙ୍କାନାଳରେ ଏତେ ମାଡ଼ ଦିଆଗଲା ଯେ ଶେଷ ପର୍ଯ୍ୟନ୍ତ ମୁଣ୍ଡ ଏବଂ କାନ ରୋଗରେ ପୀଡ଼ିତ ହୋଇ ପଡ଼ିଲେ, ସେ ବ୍ୟାଧି ତାଙ୍କର ଗଲାନି ।

ରବି ଘୋଷ ଆଜି ସ୍ୱର୍ଗରେ । କିନ୍ତୁ ତାଙ୍କର ଅଦ୍ଭୁତ ସଙ୍ଗଠନ ଶକ୍ତି ଲୋକଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ଛଦ୍ମବେଶ ଧରି ସେ ଯେପରି ଭାବେ ନିଜ ଜୀବନକୁ ବିପନ୍ନ କରି ଗାଁ ଗାଁରେ ପ୍ରଚାର କରୁଥିଲେ, ତାର ପଟାନ୍ତର ନାହିଁ । ଆଜିକାଲି

ତାଙ୍କ ଭଳି ଏକ ନିଃସ୍ୱାର୍ଥପର କର୍ମୀ ମିଳିବା ଅସମ୍ଭବ । ସେ ଚିରକୁମାର ଥିଲେ । ଡାକ୍ତର ହୋଇଥିଲେ ମଧ୍ୟ ରୋଜଗାରର କୌଣସି ଆଶା ନ ରଖି ଦେଶ ଓ ଦଶର ସେବାରେ ନିଜକୁ ନିୟୋଜିତ କରିଥିଲେ । ବହୁ କର୍ମୀଙ୍କୁ ମଧ୍ୟ ସେ ମାଗି ଯାଚି ଅର୍ଥ ସାହାଯ୍ୟ କରୁଥିଲେ । ଏପରି ଏକ ସାଧୁ, ସଚ୍ଚୋଟ, ନିରଳସ କର୍ମୀ ମିଳିବା ମୁସ୍କିଲ । ଅସମୟରେ ସେ ଆମକୁ ଛାଡ଼ି ଚାଲିଗଲେ ।

ଏ ଦେଶ, ଏ ଜାତି ସେପରି ଏକ ଦେଶସେବୀଙ୍କ ପାଇଁ କିଛି କରିନାହିଁ । ଦି ଟୋପା ଲୁହ ମଧ୍ୟ ଢାଳିନି । ବାଜି ରାଉତ ପାଇଁ ଅନେକ କାବ୍ୟ କବିତା ଲେଖାଗଲା । କବି ସଚ୍ଚି ରାଉତରାୟ ନିଜ କବିତାରେ ତାଙ୍କୁ ଅମର କରିଗଲେ । କିନ୍ତୁ ରବିଦାଙ୍କ ପାଇଁ କିଛି ହୋଇ ପାରିଲା ନାହିଁ ।

ସେତେବେଳେ କଂଗ୍ରେସ ମନ୍ତ୍ରୀମଣ୍ଡଳ । ପାରଳାଖେମୁଣ୍ଡି ମହାରାଜା, ମାନ୍ଧାତା ଗୋବିନ୍ଦ୍ ପଟ୍ଟନାୟକ ଓ ମୌଲବୀ ଲତିଫୁର ରହମାନ୍ ଖାଁଙ୍କ ମନ୍ତ୍ରୀମଣ୍ଡଳ ଭାଙ୍ଗି ଦିଆଯାଇ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳ ଗଢ଼ାଯାଇଥାଏ । ସେ ଥାଆନ୍ତି ପ୍ରଧାନ ମନ୍ତ୍ରୀ ଓ ତାଙ୍କର ସହଯୋଗୀ ମନ୍ତ୍ରୀ ଥାଆନ୍ତି ଶ୍ରୀ ଦୁବେ ଓ ନିତ୍ୟାନନ୍ଦ କାନୁନ୍‌ଗୋ ।

ସୁରୁଖୁରୁରେ କାମ ଚାଲିଥିଲା । ହଠାତ୍ ୧୯୩୯ ସେପ୍‌ଟେମ୍ବର ୨୩ ତାରିଖରେ ପୋଲଣ୍ଡ ବିରୁଦ୍ଧରେ ହିଟ୍‌ଲର୍ ଯୁଦ୍ଧ ଘୋଷଣା କଲା । ବିପୁଳ ନାଜି ବାହିନୀ ପୋଲଣ୍ଡ ରାଜଧାନୀ ଓ୍ୱାରସ୍ ଅଭିମୁଖେ ଆଗେଇ ଚାଲିଲେ । ରୁଷିଆର ବଲ୍‌ସେଭିକ୍ ନେତା ଷ୍ଟାଲିନ୍, ଇଟାଲୀର ମୁସୋଲିନ୍, ଜାପାନ୍‌ର ଟୋଜୋ ଜର୍ମାନୀର ବନ୍ଧୁ ହେଲେ । ଇଂଲଣ୍ଡ, ଫ୍ରାନ୍ସ, ଆମେରିକା ମିଶି ଯାହାର ଛକା ପଞ୍ଜାରେ ରହିଲେ । ସେତେବେଳେ ବିଲାତର ପ୍ରଧାନମନ୍ତ୍ରୀ ଥିଲେ ଲର୍ଡ଼ ଚେମ୍ବରଲେନ୍ । ଭାରତକୁ ନ ପଚାରି ଇଂରେଜ ସରକାର ଜବରଦସ୍ତ ତାକୁ ଯୁଦ୍ଧରେ ପୁରାଇ ଦେଲା । ଭାରତର ଜାତୀୟ କଂଗ୍ରେସ୍ ଏ ଅନ୍ୟାୟ ଆଚରଣର ତୀବ୍ର ବିରୋଧ କଲା । ପ୍ରତିବାଦ କଲା । ଫଳରେ ଦେଶରେ ଚାଲିଥିବା ସମସ୍ତ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ ।

କିଛି ଦିନ ପରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଇଂରେଜ ସରକାରଙ୍କୁ ଧନ ଓ ଜନ ଦେଇ ଏ ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରିବା "ପାପ ଓ ହାରାମ୍ " (It is sin to help British war effort by men or money.)" —ଏଇ ଯୁଦ୍ଧ ବିରୋଧୀ ଧ୍ୱନି ଦେଇ ବହୁ ନେତା ଓ କର୍ମୀ କାରାବରଣ କଲେ ।

ପ୍ରଥମ ସତ୍ୟାଗ୍ରହୀ ଥିଲେ ଆଚାର୍ଯ୍ୟ ବିନୋବା ଭାବେ । ଆମ ଓଡ଼ିଶାରୁ ମଧ୍ୟ ବହୁ ମନ୍ତ୍ରୀ ଓ ନେତା କର୍ମୀମାନଙ୍କ ଗହଣରେ ଜେଲ୍ ଗଲେ । ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ ସେତେବେଳେ ପ୍ରାଦେଶିକ ସଞ୍ଚାଳକ ଥାଆନ୍ତି । ତାଙ୍କର ଅଧ୍ୟକ୍ଷତାରେ ସତ୍ୟାଗ୍ରହ ପରିଚାଳିତ ହେଉଥାଏ । ନିୟମିତ ଓ ଶୃଙ୍ଖଳିତ ଭାବେ ସତ୍ୟାଗ୍ରହ ଚାଲୁଛି କି ନାହିଁ ପର୍ଯ୍ୟବେକ୍ଷଣ କରିବା ନିମନ୍ତେ ସେ ସାରା ପ୍ରଦେଶ ବୁଲୁଥିଲେ । ମୋତେ ମଧ୍ୟ ସାଥୀରେ ନେଉଥାନ୍ତି । ଗଞ୍ଜାମରେ ଆମେ ବେଶୀ ବୁଲିଛୁ । ସ୍ୱର୍ଗୀୟ ଉମା-ଚରଣ ପଟ୍ଟନାୟକ ଗଞ୍ଜାମ ଜିଲ୍ଲା କଂଗ୍ରେସ୍ କମିଟିର ସଭାପତି ଥିଲେ । ତାଙ୍କ କାର୍‌ରେ ଆମକୁ ଜିଲ୍ଲା ତମାମ୍ ବୁଲାଉଥିଲେ । ଜିଲ୍ଲାର ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହ ପରିଚାଳନା ଦାୟିତ୍ୱ ତାଙ୍କ ଉପରେ ଥିଲା ।

ଦିନକର କଥା । ସନ୍ଧ୍ୟା ହୋଇ ଆସିଲାଣି । ନିଜର ନିତ୍ୟକର୍ମ ସାରି ବରଗଡ଼ ଯିବାର ସ୍ଥିର ହେଲା । ଆମେ ସୋନପୁର ଶଜର୍ଭର ତଳେ ଗୋଟିଏ ଗ୍ରେଟିଆ ନଈ କୂଳେ କାର୍ ରଖିଲୁ । ଜଙ୍ଗଲ ସ୍ଥାନ । ଯିଏ ଯୁଆଡ଼େ ଝାଡ଼ାଗଲେ । ପଣ୍ଡିତ ମହାଶୟ ୧୦ ମିନିଟ୍ ଦାନ୍ତ ଘଷିବା ପରେ ଏକ ନିକଟସ୍ଥ ବୁଦାମୂଳକୁ ଝାଡ଼ା ଗଲେ । ତାଙ୍କର କୋଷ୍ଠକାଠିନ୍ୟ ହେତୁ ଝାଡ଼ା ଫେରିଲାବେଳେ ଏକରକମ ଶବ୍ଦ କରନ୍ତି—ଯାହା ଶୁଣିଲେ ଅଜଣା ଲୋକ ଡରିଯିବ । ମୁଁ ଟିକେ ଦୂରକୁ ଯାଇଥିଲି । ଅନ୍ୟମାନେ ଫେରିଲେଣି ଆମ ସାଥୀରେ । ବର୍ତ୍ତମାନର କମ୍ୟୁନିଷ୍ଟ ନେତା ହରିହର ଦାସ ମଧ୍ୟ ଥିଲେ । ପଣ୍ଡିତ ମହାଶୟଙ୍କର ଆବାଜ୍ ସହିତ ସେମାନେ ତ ଅଭ୍ୟସ୍ତ ନ ଥିଲେ । ବୁଦା ଆଡ଼ୁ କୌଣସି ବନ୍ୟଜନ୍ତୁର ଶବ୍ଦ ଆସୁଛି ଭାବି ବିଶେଷ କରି (ଭାଲୁର) ଟେକା ପଥର ଧରି ସମସ୍ତେ ଆକ୍ରମଣ କରିବାକୁ ଅଣ୍ଟା ଭିଡ଼ିଲେ । ଦୈବାତ୍ ମୁଁ ଆସି ପହଞ୍ଚିଗଲି । ଦଳରେ ୮।୧୦ ଜଣ ଥିଲେ । ମୁଁ ବାରଣ କରି ନ ଥିଲେ, ସେଦିନ ହିଁ ପଣ୍ଡିତ ମହାଶୟ ଟେକା ପଥର ମାଡ଼ରେ ମୃତ୍ୟୁ ବରଣ କରିଥାନ୍ତେ ।

କିନ୍ତୁ ଅତି ଦୁଃଖ ଓ କ୍ଷୋଭର ବିଷୟ ମେଦ୍ଦ ଇଟା, ପଥର ନିସ୍ମା ସଡ଼କର ଏକ କୋଠାରୁ ଖସିପଡ଼ିବା ଫଳରେ ତାଙ୍କ ତ୍ୟାଗପୂତ, ସଂଗ୍ରାମୀ ଜୀବନର ଅବସାନ ଘଟିଲା । ଦେଶ ଓ ଦଶ ଲାଗି ଏକ ଉତ୍ସର୍ଗୀକୃତ ଆତ୍ମା ଯାହାକୁ କି ଇଂରେଜ ସରକାର ଲାଠି ଓ ଗୁଳିରେ ଶୁଆଇ ପାରି ନ ଥିଲା, ବିଧାତାର ଚରମ ନିର୍ଦ୍ଦେଶରେ ଚିରଦିନ ଲାଗି ତାଙ୍କୁ ରକ୍ତାକ୍ତ ଅବସ୍ଥାରେ ଶେଷ ନିଃଶ୍ୱାସ ତ୍ୟାଗ କରିବାକୁ ପଡ଼ିଲା । ସେ ଥରେ କହିଥିଲେ ଭଗବାନଙ୍କ ବ୍ୟତୀତ କାହାରି ନିକଟରେ ସେ ମୁଣ୍ଡ ନୁଆଁଇବେ ନାହିଁ ବୋଲି । ସେଦିନ କେବଳ ଭଗବାନ ହିଁ ତାଙ୍କ ଉନ୍ନତ ମସ୍ତକକୁ ଅବନତ କରିଥିଲେ ।

କଂଗ୍ରେସ୍ ଅଫିସ୍‌ରେ ମୋତେ ଆଉ ଭଲ ଲାଗିଲା ନାହିଁ । ମୁଁ ପଣ୍ଡିତ ମହାଶୟଙ୍କ ଅନୁମତି ନେଇ ମୋ ଥାନା ବାଲିକୁଦା ଫେରିଗଲି, ସତ୍ୟାଗ୍ରହ କରିବାକୁ । ସାଥୀରେ ଜଗତସିଂହପୁରର ଅଗଣି ସେଠିକୁ ଧରିଲି । ବାଲିକୁଦା, ଜଗତ୍‌ସିଂହପୁର, ଏରସମା ଓ ଗୋବିନ୍ଦପୁର ଅଞ୍ଚଳର ଗାଁ ଗହଳି ହାଟ ବଜାର ବୁଲିଆଡ଼େ ବୁଲି ଯୁଦ୍ଧ ବିରୋଧୀ ଧ୍ୱନିମାନ ଦେଇ ଗୀତ ଗାଇଲୁ । ଯାହା ଭଣ୍ଡିକୁ ଆସେ ଇଂରେଜ ସରକାରଙ୍କ ବିରୁଦ୍ଧରେ କହିଲୁ । କିନ୍ତୁ ଗିରଫ୍ ହେଲୁ ନାହିଁ । ଏମିତି ପ୍ରାୟ ୨।୩ ମାସ ବୁଲିଲା ପରେ ବାଲିକୁଦା ହାଟରେ ଯୁଦ୍ଧ ବିରୋଧୀ ଧ୍ୱନି କରି ଗିରଫ୍ ହେଲୁ ।

ସତ୍ୟାଗ୍ରହକୁ ଯିବା ପୂର୍ବରୁ ମୋ ସ୍ତ୍ରୀ ମୋ ମଥାରେ ଚନ୍ଦନ, ସିନ୍ଦୂର ଦେଇ ଫୁଲମାଳ ଗଳାରେ ଲମ୍ବାଇ ହସି ହସି ବିଦାୟ ଦେଇଥିଲେ । ବିଚାରରେ ମୋତେ ୪ ମାସ ଜେଲ୍ ଓ ୫୦ ଟଙ୍କା ଜୋରିମାନା । ଅନାଦାୟରେ ଆଉ ୨ ମାସ ୧୫ ଦିନ କାରାଦଣ୍ଡ ହେଲା । ଅଗଣି ସେଠିଙ୍କୁ କୋର୍ଟ ଉଠିବା ପର୍ଯ୍ୟନ୍ତ ରଖି ଛାଡ଼ି ଦିଆଗଲା । ଜେଲ୍‌ରେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଆମ ସହିତ ଥିଲେ । ଶିଳ୍ପୀ ଜଗନ୍ନାଥ ଦାସ, ମନମୋହନ ଚୌଧୁରୀ ପ୍ରଭୃତି ଥିବାରୁ ହସ ଖୁସିରେ ଦିନଗୁଡ଼ିକ କଟିଗଲା ।

କାରାବାସ ଭୋଗ କରି ଘରକୁ ଫେରିଲି । ଘରେ ୮।୧୦ ଦିନ ରହି ପୁଣି କଟକକୁ ଆସିଲି । ସେତେବେଳେ ସବୁ ନେତା ମୁକ୍ତ ହୋଇଥିଲେ । ଅଧିକାଂଶ କଟକ ସ୍ୱରାଜ ଆଶ୍ରମରେ ରହୁଥିଲେ । ସମସ୍ତଙ୍କୁ ଏକାଠି ଦେଖି ମନରେ ବଡ଼ ଆନନ୍ଦଜାତ ହେଲା । ଘରକୁ ଗଲି । ଘରେ ରହୁ ରହୁ ମାସଟିଏ ରହିଗଲି । ହଠାତ୍ ମାଲତୀ ଦେବୀଙ୍କଠାରୁ ଚିଠି ପାଇ ବାରି ଗଲି । ବାରିରେ ଗୃହି ବାବୁଙ୍କ କ୍ୟାମ୍ପରେ ୭।୮ ଦିନ ରହିଛି କି ନାହିଁ, କଟକରୁ ଡାକରା ଆସିଲା । କଟକରେ ୨।୪ ଦିନ ରହି ଘରକୁ ଆସିଲି ।

ଘରେ ୭ ଦିନ ରହିବା ପରେ କଂଗ୍ରେସ୍ ଅଫିସ୍‌ରୁ ଚିଠି ପାଇ କଟକ ଗଲି । ସେଦିନ କ'ଣ ପର୍ବ ଥିବାରୁ ମୋ ସ୍ତ୍ରୀ ଓ ମୋ ବୋଉ କଟକ ଯିବାକୁ ମନା କଲେ । ମୁଁ ସେମାନଙ୍କ କଥା ନ ମାନି ଚାଲି ଆସିଲି । ମୋତେ ହୁକୁମ୍ ହେଲା ଫୁଲବାଣୀ ଯିବାକୁ । ସେତେବେଳେ ପାରଳାଖେମୁଣ୍ଡି ମନ୍ତ୍ରୀମଣ୍ଡଳରେ ସ୍ୱର୍ଗୀୟ ପଣ୍ଡିତ ଗୋଦାବରୀଶ ମିଶ୍ର ମଧ୍ୟ ଜଣେ ମନ୍ତ୍ରୀ ଥିଲେ । ଫୁଲବାଣୀ ନିର୍ବାଚନ ମଣ୍ଡଳୀରୁ ଶାସକ ଗୋଷ୍ଠୀ ତରଫରୁ କନିକା ରାଜା ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଠିଆ ହୋଇଥିଲେ ଏବଂ କଂଗ୍ରେସ୍ ତରଫରୁ ଉମାଚରଣ ପଟ୍ଟନାୟକ । ଭୋଟ୍

ପ୍ରଚାର ଲାଗି ବ୍ରହ୍ମପୁରରେ ହାଜର ହେଲି । ଉମାବାବୁ ଆଗରୁ ପରିଚିତ ଥିଲେ । ହସ ହସ ମୁହଁରେ ସେ ମୋତେ ତାଙ୍କ ଘରେ ଠାବ ଦେଲେ । ଏତେ ସରଳ ଅମାୟିକ ଲୋକ ମୁଁ କଂଗ୍ରେସ୍ କର୍ମୀଙ୍କ ମଧ୍ୟରେ କମ୍ ଦେଖିଛି । ଏତେ ବଡ଼ ବିଦ୍ୱାନ, ବୁଦ୍ଧିମାନ, ନାମଜାଦା ଓକିଲ । କିନ୍ତୁ ଟିକେ ହେଲେ ଗର୍ବ ନ ଥିଲା । ଶିଶୁପରି କୋମଳମନା ତାଙ୍କ ସହିତ ଯିଏ ମିଶିବ ତାକୁ ସେ ଅତି ଅଳ୍ପ ସମୟ ମଧ୍ୟରେ ନିଜର କରିନେବେ ।

ଉମାବାବୁ ଆଜି ସ୍ୱର୍ଗରେ । କିନ୍ତୁ ତାଙ୍କ ବିଷୟ ଲେଖି ମୁଁ ମୋର ଲେଖନୀକୁ ଧନ୍ୟ କରୁଛି । ନିଜ ସିଦ୍ଧାନ୍ତରେ ଅଟଳ ବୋଲି ହୁଏତ ଉତ୍ତର ଜୀବନରେ କଂଗ୍ରେସର ନେତାମାନଙ୍କ ସହିତ ତାଙ୍କର ମତ ବା ମନ ମିଳିନାହିଁ । ମୋର ଫୁଲବାଣୀ ଯିବାର ସମସ୍ତ ବ୍ୟବସ୍ଥା ସେ କରିଦେଲେ । ବ୍ରହ୍ମପୁରରୁ ବସ୍ ରସୁଲକୁଣ୍ଡା (ଭଞ୍ଜନଗର) ଗଜପତିର ଦେଇ ଚାଲିଲା । ବିଖ୍ୟାତ କାଳିଙ୍ଗି ଘାଟି ଦେଇ ବହୁ ପାହାଡ଼ ପର୍ବତ ଅତିକ୍ରମ କରି ଉଦୟଗିରିବାଟେ ଟିକା ବାଲିରେ ହାଜର ହେଲି । ସେଇଠି ଆମ କ୍ୟାମ୍ପ୍ ଥିଲା । ଗାଁକୁ ଗାଁ ବୁଲିବାକୁ ପଡ଼ିଲା । ଆମଆଡ଼ ଭଳି ଜନାକୀର୍ଣ୍ଣ ଅଞ୍ଚଳ ଏ ନୁହେଁ । ପାହାଡ଼ ଜଙ୍ଗଲ ରାସ୍ତା । ଗୋଟିଏ ଗାଁ ପାଖରୁ ଅନ୍ୟ ଗାଁଟି ଦୂର । ଘରଆଡ଼େ କନ୍ଧ ପଲ୍ଲୀ । ଆଚରଣରେ ଟିକିଏ ଏପାଖ ସେପାଖ ହେଲେ ଜୀବନ ଯିବାର ଭୟ । ଓଡ଼ିଆ ସେମାନେ ଭଲ ବୁଝୁ ନ ଥିଲେ । ମୁଁ ସେମାନଙ୍କ ଭାଷା ନ ବୁଝିବା ସ୍ୱାଭାବିକ । ତଥାପି ମୋ ପ୍ରଚାର ଧାରାରେ କର୍ତ୍ତୃପକ୍ଷ ପ୍ରମାଦ ଗଣିଲେ ।

ବନ୍ଧୁମାନଙ୍କ ସହ ନାଚ ଗୀତ ମୁଁ ମିଶିଗଲି । ହଠାତ୍ ମୋର ଭୀଷଣ ହାଡ଼ ଫୁଟି ହେଲା । କାମ ବନ୍ଦ୍ ହୋଇଗଲା । କେହି ମୋ ପାଖରେ ନାହିଁ । ଯିଏ ଯାହା କାର୍ଯ୍ୟରେ ବ୍ୟସ୍ତ । ଏକ ରକମ ନିଃସହାୟ ଅବସ୍ଥାରେ ପଡ଼ିଥାଏ । ଅନେକ କର୍ମୀ ମୋ ପାଖ ମାଡ଼ୁ ନ ଥାନ୍ତି । ଦେହ ମୁଣ୍ଡରେ ଅସହ୍ୟ ଯନ୍ତ୍ରଣା । ଯେମିତି ମନେ ହେଉଥିଲା ପ୍ରାଣ ଏ ଘଟ ଛାଡ଼ି ଚାଲିଯିବ ! ମୋର ଦୁଃଖ ନ ଦେଖି ପାରି ଗୋଟିଏ କନ୍ଧ ଝିଅ ଆଗେଇ ଆସିଲା । ପର ପୁରୁଷ ଦେହରେ ହାତ ଦେବା ତାଙ୍କ ସମାଜରେ ବାରଣ ଥିଲେ ମଧ୍ୟ ସେ ସବୁ ଭୁଲି ମୋର ଯତ୍ନ କଲା । ତା'ର ସ୍ନେହ ଓ ମମତାକୁ ମୁଁ ଭୁଲି ପାରିବିନି । ମୀତାର ନାମକୁ ଅତି ଆପଣାର ଗଣ୍ଠି ଧନ କରି ରଖିଛି । ବଣରୁ ଏକ ରକମ ପତ୍ର ଆଣି ମୋ ସର୍ବାଙ୍ଗରେ ବୋଳି ଦେଲା । କମ୍ବପତ୍ର ମିଶା ଡାଳରେ ଦେହସାକ ଝାଡ଼ିଦେଲା । ବରେ ମନ୍ତ୍ର ଖୁଆଇଲା । ଗୋଟିଏ ବୁଢ଼ା କନ୍ଧକୁ ଡାକି ଆଣି ମୋତେ ଝାଡ଼ ଫୁଙ୍କି କରିସାରିଲା ।

କପଟତା ସରଳ ଆଦିବାସୀ ଝିଅଟିଏ କାହିଁକି ଯେ ଦିନ ଦିନ ଧରି ମୋର ସେବା କଲା, ଯତ୍ନ ନେଲା, ପ୍ରତିଦାନରେ ମୋ ଠାରୁ କିଛି ସେ ପାଇନି ବରଂ ଦେଇଛି ଅନେକ। ମୁଁ ସମ୍ପୂର୍ଣ୍ଣ ସୁସ୍ଥ ନ ହେବା ପର୍ଯ୍ୟନ୍ତ ବରାବର ମୋ ପାଖେ ଜଗି ରହିଲା। ମୀତା ଆଜି କେଉଁଠି ତାହା ମୁଁ ଜାଣେ ନା। କିନ୍ତୁ ସେ ମୋ ଲାଗି ଯାହା କରିଛି, ତା'ର ପଟାନ୍ତର ନାହିଁ। ମୁଁ ଆଜି ଅତି ସ୍ନେହାପ୍ଳୁତ ପ୍ରାଣରେ ତାକୁ ସ୍ମରଣ କରୁଛି—ଯାହାର କର ସ୍ପର୍ଶରେ ମୁଁ ରୋଗ ମୁକ୍ତ ହୋଇଥିଲି।

ବିଶ୍ୱନାଥ ଦାସ ଆସିଲେ। ମୋର ରୋଗକ୍ଲିଷ୍ଟ ଶରୀର ଦେଖି ସେ ମୋତେ ବ୍ରହ୍ମପୁର ଫେରି ଯିବାକୁ କହିଲେ। ଯୁଦ୍ଧ କ୍ଷେତ୍ରକୁ ଆସି ପୁଣି ଲେଉଟିବା ଠିକ୍ ମନେ କଲି ନାହିଁ। ସେଇଠି ବିଶ୍ରାମ ନେଇ ଧୀରେ ଧୀରେ ପୁଣି କାମ ଆରମ୍ଭ କଲି।

ଶାସକ ଦଳ ପକ୍ଷରୁ ମନ୍ତ୍ରୀ ସ୍ୱର୍ଗୀୟ ଗୋଦାବରୀଶ ମିଶ୍ର ଭୋଟ ପ୍ରଚାର ଉଦ୍ଦେଶ୍ୟରେ ଆସି ଟିକାବାଲିରେ ସଭା କଲେ। ମୁଁ କର୍ମୀମାନଙ୍କୁ ମଡେଇ ସେ ସଭାରେ ବାଧା ଦେବାରୁ କର୍ତ୍ତୃପକ୍ଷଙ୍କର ମୋ ଉପରେ ରୋଷଚକ୍ଷୁ ପଡ଼ିଲା। ଦୁଇଦିନ ପରେ ସେହି ଟିକାବାଲିରେ ସଭା ହେଲା ବିଶ୍ୱନାଥ ଦାସଙ୍କ ସଭାପତିତ୍ୱରେ। ଭୀଷଣ ଜନସମାଗମ ହୋଇଥିଲା। ମୋତେ ଦୁଇ ପଦ କହିବାକୁ ଅନୁମତି ମିଳିଲା। କିନ୍ତୁ ଦୁଇ ପଦ ସ୍ଥାନରେ କେତେ ପଦ ଯେ କହିଦେଲି। ମୋ ଭାଷଣ ଲୋକଙ୍କ ମଧ୍ୟରେ ଉନ୍ମାଦନା ସୃଷ୍ଟିକଲା। ପୂର୍ବରୁ ମୁଁ ଏତେ ବଡ଼ ଜନ ସମାବେଶରେ କେବେ ଭାଷଣ ଦେଇ ନ ଥିଲି। ଛାତି ଦୁକ୍ ଦୁକୁ ହେଉଥାଏ। ଗୋଡ଼ ଥରୁଥାଏ। ତଣ୍ଟି ଶୁଖି ଯାଉଥାଏ। ଏକେ ତ ଶାରୀରିକ ଦୁର୍ବଳତା, ତା ଉପରେ ମାନସିକ ଅବଶନ୍ନତା। ଈଶ୍ୱରଙ୍କୁ ସ୍ମରଣ କରି କହିଲି। ପ୍ରଚଳିତ ମନ୍ତ୍ରୀମଣ୍ଡଳ ଓ ଇଂରେଜ ସରକାରଙ୍କୁ ଏପରି ଭାବେ ସମାଲୋଚନା କଲି ଯେ ଘନ ଘନ କର ତାଳିରେ ମୋତେ ଅଭିନନ୍ଦିତ କରାଗଲା। ଫଳରେ ତହିଁ ଆର ଦିନ ଅତି ଭୋରରୁ ମୋତେ ଗିରଫ କରିନେଲେ ଏବଂ ଫୁଲବାଣୀ ଜେଲରେ ରଖିଲେ ଭାରତ ରକ୍ଷା ଆଇନ ବଳରେ।

ମୋତେ ସ୍ତ୍ରୀମାନଙ୍କ ଜେଲ (ଜନାନାରେ)ରେ ସ୍ଥାନ ମିଳିଲା। ସେତେବେଳେ କୌଣସି ବନ୍ଦିନୀ ଆସି ନ ଥିଲେ। ମୋ ପରେ ସମ୍ବଲପୁର ଜିଲ୍ଲା ପଦ୍ମପୁରର ସର୍ଚ୍ଚି ପାଢ଼ୀ ଏବଂ ବାଲିକୁଦାର ମୁଖ୍ୟ କର୍ମୀ ହରେକୃଷ୍ଣ ବିଶ୍ୱାଳ ଆସିଲେ। ୧୦।୧୫ ଦିନ ଏକାନ୍ତ କାରାବାସ ମୋତେ ପାଗଳ କରିଦେଲା। ଦିନକୁ ୩ ଥର ଫାଟକ ଖୋଲିବ, ତାପରେ ବନ୍ଦ୍। ଜେଲ୍‌ରେ କେବଳ ପାଣ କନ୍ଧ କଏଦୀ ଥାଆନ୍ତି। ସେମାନଙ୍କ ମଧ୍ୟରୁ ଅନେକ ନରହତ୍ୟାକାରୀ।

ଦୁଇ ମାସ ବିଚାରାଧୀନ ବନ୍ଦୀ ରହିବା ପରେ ମୋଟେ ସାଢ଼େ ସାତ ମାସ ଜେଲ୍ ହେଲା । ୧୯୪୨ ଅଗଷ୍ଟ ୬ ତାରିଖରେ ମୁଁ ମୁକ୍ତ ହେଲି । ଜେଲ୍‌ରେ ଆମେ ତୃତୀୟ ଶ୍ରେଣୀ ବନ୍ଦୀ ରୂପେ ଥିଲେ ମଧ୍ୟ ଜେଲ୍ ବଗିଚାରେ ବୁଲିବାର ଅବାଧ ସ୍ୱାଧୀନତା ଆମକୁ ଦିଆଯାଇଥିଲା । ଫୁଲବାଣୀ ଜେଲ୍‌ରେ ଥିଲାବେଳେ ମୁଁ ମୋର ପୁତ୍ରର ବର୍ତ୍ତମାନ ମହାବିଦ୍ୱାନ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ରାଜନୈତିକ ବିଜ୍ଞାନ (Poltical Science)ର ମୁଖ୍ୟ ପ୍ରାଧ୍ୟାପକ ଡକ୍ଟର ମନୋରଞ୍ଜନଙ୍କର ଜନ୍ମ ଖବର ପାଇଲି । ପ୍ରାଣ ଆନନ୍ଦରେ ପୁରି ଉଠିଲା । ମୁଁ ତା ବଡ଼ ଭାଇର ନାମ ଦେଇଥିଲି ଚିତ୍ତରଞ୍ଜନ ଆଉ ତା ସାନ ଭାଇର ନାମ ମନୋରଞ୍ଜନ ଦେବାକୁ ଘରକୁ ଚିଠି ଦେଲି ।

ଉମାଚରଣ ପଟ୍ଟନାୟକଙ୍କର ଖଲାସ ଖବର ସେହି ଜେଲ୍‌ରେ ହିଁ ଆମକୁ ମିଳିଲା । ପ୍ରାଣରେ ଶାନ୍ତି ଆସିଲା । ଆମର ଶ୍ରମ ସାର୍ଥକ ହେଲା ବୋଲି ମନେ କଲୁ । ୧୯୪୨ ଅଗଷ୍ଟ ୬ରେ ମୁଁ କାରାମୁକ୍ତ ହେଲି । ଫୁଲବାଣୀ ଡାକ୍ତରଙ୍କ ଘରେ ରାତିଟି ରହି ବ୍ରହ୍ମପୁର ଆସିଲି । ବ୍ରହ୍ମପୁରରେ ଉମାଚରଣଙ୍କ ଘରେ ଦୁଇ ଦିନ କଟେଇଲି । ସେଇଠି କଂଗ୍ରେସ୍‌ର ଐତିହାସିକ ଘୋଷଣା ସମ୍ବାଦ ପତ୍ରରୁ ପାଇଲି । ଗାନ୍ଧିଜୀଙ୍କର 'କର ଅବା ମର' (Do or Die) ଆହ୍ୱାନ ସମସ୍ତଙ୍କ କାନରେ ପ୍ରତିଧ୍ୱନିତ ହେଲା । ଆରମ୍ଭ ହେଲା (Quit India) 'ଭାରତ ଛାଡ଼' ଆନ୍ଦୋଳନ । ଲୋକେ ଅତି ଉନ୍ମାଦନାରେ ନାଚି ଉଠିଲେ । ବଡ଼ ବଡ଼ ନେତାମାନେ ଅହମ୍ମଦନଗର ଦୁର୍ଗରେ ବନ୍ଦୀ ହେଲେ । ଗାନ୍ଧିଜୀଙ୍କୁ ପୁନେର ଆଗା ଖାଁ ପ୍ରାସାଦରେ ଅଟକ ରଖାଗଲା । ସବୁଆଡ଼େ ବିପ୍ଳବର ବହ୍ନି ଜଳି ଉଠିଲା । ଏ ଦେଶ, ଏ ଜାତି ପୁଣି ଥରେ ସ୍ୱାଧୀନତାର ଶପଥ ନେଲା ।

ନେତା ବିହୁନେ ଲୋକେ ଅଥୟ ହୋଇ ଉଠିଲେ । ଥାନା, କଚେରୀ, ଡାକ ବଙ୍ଗଳା, ପୋଷ୍ଟ ଅଫିସ୍ ସବୁ ପୋଡ଼ା ହେଲା । ଟ୍ରେଜେରୀ ଲୁଟ୍ ହେଲା । ମଧ୍ୟ ପ୍ରଦେଶ ଓ ଚିମୁରରେ ରକ୍ତର ସୁଅ ଛୁଟିଲା । ହେମୁ କଲାଣୀ ନାମକ ୧୭ ବର୍ଷ ବୟସର କିଶୋରକୁ ଫାଶୀରେ ଲଟକେଇ ଦିଆଗଲା । କଟକ ଜିଲ୍ଲାର ବଣ୍ଡ କଳା ମାଟିଆ ମଧ୍ୟ ଗାନ୍ଧିଜୀଙ୍କ ଆହ୍ୱାନର ଜବାବ୍ ଦେଲା । ସାତିଟି ଓ ସାନନ୍ଦ ମଲିକ, ମାଧ୍ୱାଧର ଭୂୟାଁ, ହାଡ଼ିବନ୍ଧୁ ପଣ୍ଡା ପୋଲିସ୍‌ର ସଙ୍ଗୀନ୍ ମୁନରେ ଟଳି ପଡ଼ିଲେ । ସେମାନଙ୍କ ରକ୍ତରେ ଜଷ୍ଟୁର ଇଂରେଜ ଅଫିସର୍ ହୋଲି ଖେଳିଲେ । ବ୍ରାହ୍ମଣୀର ଜଳ ହେଲା ରକ୍ତରଞ୍ଜିତ ।

ପୁରୀ ଜିଲ୍ଲାର ନିମାପଡ଼ାର ଉତ୍କଳ ମଲ୍ଲିକ, ନୟାଗଡ଼ର କଷ୍ଟିଭାଙ୍ଗୁଆ ପୋଲିସ୍ ଗୁଳିର ଶିକାର ହେଲେ । ବାଲେଶ୍ୱର ଜିଲ୍ଲାର ଇରମ୍ ଓ ଲୁଣିଆରେ ପୋଲିସ୍‌ର ନଗ୍ନ ଅତ୍ୟାଚାର ଆତ୍ମପ୍ରକାଶ କଲା । ନିର୍ମମ ଭାବରେ ଗୁଳି ଚଳାଇ ଅନେକ ଲୋକଙ୍କୁ ହତ୍ୟା କରାଗଲା । କୋରାପୁଟ ମଧ୍ୟ ଏ ଆନ୍ଦୋଳନରେ ମୁଖ୍ୟ ଅଂଶ ଗ୍ରହଣ କଲା । ଗୋବିନ୍ଦା ପଲ୍ଲୀ ହେଲା ତା'ର ମୂଳ କେନ୍ଦ୍ର ।

ଦେଶ ସାରା ଅଗଷ୍ଟ ଆନ୍ଦୋଳନ ବ୍ୟାପିଗଲା । ଅଗଷ୍ଟ ୯ ତାରିଖ ସନ୍ଧ୍ୟାରେ କଟକ ଷ୍ଟେସନ୍‌ରେ ମୋତେ ଗିରଫ କରାଯାଇ କଟକ ଜେଲ୍‌କୁ ନିଆଗଲା । ମୋ ଆଗରୁ ସେହି ଦିନ ଗିରଫ ହୋଇ ଗୋପ-ବାବୁ, ଲିଙ୍ଗ ବାବୁ, ନିତ୍ୟାନନ୍ଦ ବାବୁ, ନବ ବାବୁ, ବୁଲୁ ବାବୁ, ସୁରେନ୍ଦ୍ର ପଟ୍ଟନାୟକ, ସୁଧୀର ବାବୁ, ମଦନ ପଟ୍ଟନାୟକ ପ୍ରଭୃତି ଥା'ନ୍ତି । ତହିଁଆରଦିନ ଡ. ରାଧାନାଥ ରଥ ଏବଂ ସମାଜ ସମ୍ପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ର ଆସିଲେ । ରମାଦେବୀ, ମାଲତୀ ଦେବୀ ପ୍ରଭୃତି ନାରୀ ନେତ୍ରୀ ଆସି କାରାବରଣ କଲେ । ମୁସାହେବ୍ ଖାଁ ବରୀର ରଚନାତ୍ମକ ପୀଠକୁ ଭାଙ୍ଗି ମାଟିରେ ମିଶେଇ ଦେଲା । ଏତେ ଶ୍ରମ, ସମ୍ବଳ ଓ ସମୟ ଦେଇ ନିର୍ମାଣ କରାଯାଇଥିବା ସେବା ସଦନର ଶ୍ରୀକୁ ନଷ୍ଟ କରି ଦିଆଗଲା ।

ଦଳକୁ ଦଳ ଗିରଫ ହୋଇ ଜେଲ୍ ଆସିଲେ । ହାଜିପୁରର ଗୌରୀ ଶ୍ୟାମ ନାୟକଙ୍କ ନେତୃତ୍ୱରେ ଏରସମା ଥାନା ପୋଡ଼ା ହେଲା । ଏଥିରେ ପଇଡା, ଶିହା, ହାଜିପୁର ଓ ଅନ୍ୟାନ୍ୟ ଗ୍ରାମବାସୀମାନେ ଅଂଶ ଗ୍ରହଣ କଲେ । ଏ ଯୋଡ଼ରେ ମୋ ସ୍ତ୍ରୀଙ୍କର ମଧ୍ୟ ବହୁତ ହାତ ଥିଲା । ଏକ ଉତ୍ସାହୀ ଯୁବକ ନିଶାମଣି ଖୁଣ୍ଟିଆଙ୍କ ନେତୃତ୍ୱରେ ସଅଁରା କୋଠିରେ ଅଗ୍ନି ସଂଯୋଗ କଲା ।

କଟକ ଜେଲ୍‌ରେ ପ୍ରାୟ ୩ ମାସ କାଳ ଆମକୁ ରଖି ଅନୁଗୁଳ ଜେଲ୍‌କୁ ବଦଳି କରାଗଲା । ଅନୁଗୁଳ ଜେଲ୍‌ରେ ୬ ମାସ ରହି ଆମେ ବ୍ରହ୍ମପୁର ଜେଲ୍‌କୁ ଆସିଲୁ । ଆମ ଦଳରେ ଥା'ନ୍ତି ନିତ୍ୟାନନ୍ଦ କାନୁନ୍‌ଗୋ, ରାଜକୃଷ୍ଣ ବୋଷ, ମନ-ମୋହନ ଚୌଧୁରୀ, ସୁଧୀର ଘୋଷ, ସୁରେନ୍ଦ୍ର ପଟ୍ଟନାୟକ, ନବକୃଷ୍ଣ ଚୌଧୁରୀ ଓ ମୁଁ । ପରେ ନବବାବୁଙ୍କୁ ପୁରୀ ଜେଲ୍‌କୁ ନିଆଗଲା ।

କଟକ ଜେଲ୍‌ରେ ରମାଦେବୀଙ୍କ ସହିତ ସାକ୍ଷାତ ହେଲା । ବର୍ତ୍ତମାନ ଅବସ୍ଥାରେ ଘରେ ଧୀର ସ୍ଥିର ଭାବେ ନ ବସି ପଦାକୁ ବାହାରି ପଡ଼ି ଦେଶ ସେବା କରିବାକୁ ସେ ଶରତକୁମାରୀଙ୍କୁ ଚିଠି ଦେବାକୁ ମୋତେ ନିର୍ଦ୍ଦେଶ ଦେଲେ ।

ଶରତକୁମାରୀ ଯେତେବେଳେ ଶ୍ୱଶୁରଙ୍କ ଘରେ ଦେହ ଖରାପ ହେବାରୁ ତଣ୍ଡିକୂଳ ଯାଇଥିଲେ । ଖଣ୍ଡିଏ ଉତ୍ତେଜନାପୂର୍ଣ୍ଣ ଚିଠି ମୁଁ ତାଙ୍କ ପାଖକୁ ଓ୍ୱାର୍ଡ଼ର

ହାତରେ ଲୁଚେଇ ପଠାଇଲି । ସେଇ ଚିଠି ଖଣ୍ଡିକ ଈଶ୍ୱରଙ୍କ କୃପାରୁ ତାଙ୍କର ହସ୍ତଗତ ହୋଇଥିଲା । ତାକୁ ପଢ଼ି ବାପାଙ୍କ ରୋଗ ଯନ୍ତ୍ରଣା ଏବଂ ତାଙ୍କର ପ୍ରବଳ ବାରଣ ନ ମାନି ସେ ପଦାକୁ ବାହାରି ପଡ଼ିଲେ । ହାଜିପୁର ଯାଇ ଏରସମା ଥାନା ପୋଡ଼ି ସମ୍ବନ୍ଧରେ ଗୌରଶ୍ୟାମ ନାୟକଙ୍କ ସହ ମନ୍ତ୍ରଣା କଲେ । କର୍ମୀମାନେ ଲୁଚି ଛପି ମୋର ଶ୍ୱଶୁର ଘର ତଣ୍ଡିକୂଳ ଆସନ୍ତି । ସେ ତାଙ୍କୁ ଆଶ୍ରୟ ଦେଉଥିଲେ । ଖୁଆଇ ପିଆଇ ଯତ୍ନ କରୁଥିଲେ । ଆମ ଦାଦା ପୁଅ ଭାଇ ନରୋତ୍ତମ ଏବଂ ମୋ ସ୍ତ୍ରୀଙ୍କ ବଡ଼ ବାପା ପୁଅ ଭାଇ ବୀରେନ୍ ଦାସ ଏସବୁ କାମରେ ତାଙ୍କୁ ପୂର୍ଣ୍ଣ ସହଯୋଗ କରୁଥିଲେ । ସେ ବାହାରେ ଥାଇ କେତେ ଦିନ ଅଉ ଧୈର୍ଯ୍ୟ ଧରି ରହିବେ ? ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ଏକ ନିର୍ଦ୍ଦେଶନାମା ପାଇ ଜେଲ୍ ଗଲେ ।

ଏ ସନ୍ଦର୍ଭରେ ମୁଁ ଆଉ ଜଣେ ପରମ ବନ୍ଧୁଙ୍କ ନାମ ଏଠାରେ ଉଲ୍ଲେଖ ନ କଲେ ମୋ ଲେଖାର ଅମର୍ଯ୍ୟାଦା ହେବ । ସେ ହେଉଛନ୍ତି ସମାଜର ଏକନିଷ୍ଠ କର୍ମୀ ଓ କୋଷାଧ୍ୟକ୍ଷ ଶ୍ରୀ ଚୈତନ୍ୟ ଚରଣ ଦାସ । ଆମ ପ୍ରତି ତାଙ୍କର ଗଭୀର ସ୍ନେହ ଓ ସହାନୁଭୂତି ମୋତେ ଅଭିଭୂତ କରି ରଖିଛି । ବ୍ୟକ୍ତିଗତ ସତ୍ୟାଗ୍ରହରେ ମୁଁ ଜେଲ୍ ଯିବାଠାରୁ ଅର୍ଥାତ୍ ୧୯୪୧ରୁ ୧୯୫୧ ପର୍ଯ୍ୟନ୍ତ ସେ ମୋ ସ୍ତ୍ରୀଙ୍କ ନାମରେ ନିରବଚ୍ଛିନ୍ନ ଭାବରେ ସମାଜ କାଗଜ ଖଣ୍ଡିଏ ପଠାଉଥିଲେ । ମୋ ସ୍ତ୍ରୀଙ୍କ ପାଖକୁ ବାରମ୍ବାର ଉତ୍ସାହ ଓ ପ୍ରେରଣା ପୂର୍ଣ୍ଣ ଚିଠି ଦେଉଥିଲେ । ବଡ଼ ଭାଇର ଏକାନ୍ତ ଆଦର ଓ ସୋହାଗ ସେ ଚିଠିର ଛତ୍ରେ ଛତ୍ରେ ପୂରି ରହିଥିଲା । ପରେ ସମାଜ ବ୍ୟବସ୍ଥାର ଘୋର ପରିବର୍ତ୍ତନ ହେବାରୁ କାଗଜ ବନ୍ଦ କରି ଦିଆଗଲା । ଆମ ପାଖକୁ ଆଉ କାଗଜ ଆସିଲା ନି ସିନା କିନ୍ତୁ ଚୈତନ୍ୟ ଭାଇଙ୍କ ସ୍ନେହ ମମତାରୁ ଆମେ ଏ ପର୍ଯ୍ୟନ୍ତ ଦୂରେଇ ଯାଇନୁ ।

ବ୍ରହ୍ମପୁର କେନ୍ଦ୍ର ଜେଲ୍‌ରେ ଆମେ ଓଡ଼ିଶାର ସବୁ ଜିଲ୍ଲାର ରାଜନୈତିକ ବନ୍ଦୀ ଥାଉଁ । ହସ ଖୁସିରେ ଖାଇ ପିଇ ବିଭିନ୍ନ କ୍ଲାସ୍‌ରେ ଯୋଗ ଦେଇ ଦିନ କଟି ଯାଉଥିଲା । ଜେଲ୍ ତରଫରୁ ପ୍ରଚୁର ଖାଦ୍ୟ ଯୋଗାଇ ଦିଆଯାଉଥିଲା । ବିଭିନ୍ନ ମେସ୍‌ର ନାମକରଣ କରାଯାଇଥିଲା । ଯଥା—ହସଘର, ଗୋଆଟୁ, ସାଆନ୍ତିଆ, ବାଳେଶ୍ୱରୀ, ନବଦ୍ଧୁଟୀ, ଗୋଠଖଣ୍ଡିଆ, ଏକୁଟିଆ, ଫରଓ୍ୱାର୍ଡ ବ୍ଲକ୍ ଓ କମ୍ୟୁନିଷ୍ଟିଆ ଇତ୍ୟାଦି ।

ନବ ବାବୁଙ୍କୁ ପୁରୀ ଜେଲ୍‌ରୁ ଆଣି ଏକ ସେଲ୍‌ରେ ରଖା ଯାଇଥାଏ । ଏପଟ ସେଲ୍‌ରେ ବୀର ଲକ୍ଷ୍ମଣ ନାୟକ ଓ ଆର ପଟ ସେଲ୍‌ରେ ଥାଆନ୍ତି ନବ

ବାବୁ । ଲକ୍ଷ୍ମଣ ନାୟକ ଆଦିବାସୀ ନେତା । ଇଂରେଜ ଗୋଲାମ ସାଷ୍ଟର ପ୍ରଥମ ଶିକାର । ରାମ ନାଥନ୍ ସିଏ କି କଂଗ୍ରେସ୍ ଶାସନରେ ପରେ ଜଣେ ବଡ଼ ହାକିମ ହେଲେ, ସିଏ ଦେଇଥିଲେ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ହୁକୁମ । ସେତିକି ନୁହେଁ ନିରୀହ, ସରଳ ଆଦିବାସୀମାନଙ୍କୁ ଯେଉଁଠି ପାଇଲେ ଜେଲ୍‌ରେ ଠୁଙ୍କିଲେ । ପ୍ରକୃତିର ନଗ୍ନ କୋଳରେ ଲାଳିତପାଳିତ କନ୍ଧ, ସଅର, ଗାଦ୍‌ବା, ପର୍‌ଜା ଓ କୋୟା ଓ ଗୋଣ୍ଡମାନେ ପ୍ରାଚୀର ଘେରା ବନ୍ଧ କାରାଗାରରେ ରହି ପାରିଲେ ନାହିଁ । ଦିନକୁ ଦିନ ସେମାନଙ୍କ ସଂଖ୍ୟା ହ୍ରାସ ପାଇବାକୁ ଲାଗିଲା । ନାନା ବ୍ୟାଧିରେ ସେହି କାରାଗାରରେ ଜଣକ ପରେ ଜଣେ ଟଳି ପଡ଼ିଲେ ।

ଲକ୍ଷ୍ମଣ ନାୟକଙ୍କୁ ଫାଶୀରୁ ରକ୍ଷା କରିବା ପାଇଁ ହାଇକୋର୍ଟ ପର୍ଯ୍ୟନ୍ତ ଲଢ଼େଇ ଚାଲିଲା । ବଡ଼୍‌ଲାଟ୍‌ଙ୍କ ଠାରେ ମଧ୍ୟ ଅପିଲ ହେଲା । କିନ୍ତୁ କୁଆଡ଼ୁ କିଛି ହେଲା ନାହିଁ । ଫାଶୀ ହୁକୁମ୍ କାଏମ୍ ରହିଲା । ମୃତ୍ୟୁ ପୂର୍ବରୁ ସେ କୋରାପୁଟର ବରିଷ୍ଠ ନେତା ରାଧାକୃଷ୍ଣ ବିଶ୍ୱାସ ରାୟ, ସଦାଶିବ ତ୍ରିପାଠୀ, ରାଧାମୋହନ ସାହୁ, ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର ଦାସଙ୍କ ସହ ସାକ୍ଷାତ କରିବାକୁ ଚାହିଁଲେ । ଏମାନେ ଯାଇ ଦେଖିଲେ, ତାଙ୍କ ମନରେ ଟିକିଏ ହେଲେ ଅବସନ୍ନତା ନାହିଁ । ହସ ହସ ମୁହଁ । ଜନ୍ମଭୂମିର ସ୍ୱାଧୀନତା ଯଜ୍ଞ ବେଦୀରେ ନିଜକୁ ଆହୁତି ଦେଇ ଥିବାରୁ ପ୍ରାଣ ଯେପରି ପରିପୂର୍ଣ୍ଣ । ଏମାନଙ୍କୁ ଦେଖି ଲକ୍ଷ୍ମଣ ନାୟକ କହିଲେ —"ମୁଁ ଦେଶର ସ୍ୱାଧୀନତା ଦେଖି ପାରିଲିନି । କିନ୍ତୁ ମୋ ପିଲାଏ ନିଶ୍ଚୟ ଦେଖିବେ । ସ୍ୱର୍ଗରେ ଥାଇ ମୋ ଆତ୍ମା ଶାନ୍ତି ଲାଭ କରିବ । ଖୁସି ହେବ ।"

ଅଶ୍ରୁଭରା ନୟନରେ ନେତାମାନେ ଫେରିଗଲେ । କିନ୍ତୁ ରୁଦ୍ଧ ସିଂହ ପରି ଅଟଳ ରହିଥାନ୍ତି ଲକ୍ଷ୍ମଣ ନାୟକ । ପ୍ରାଣ ଖୋଲା ହସରେ ଏମାନଙ୍କୁ ବିଦାୟ ଦେଲେ । ସେଦିନ ରାତି ୩ଟାରେ ପ୍ରାର୍ଥନା ସାରିଲେ । ତାଙ୍କୁ ଗାଧୋଇ ଦିଆଗଲା । ନବବାବୁ ଆର ପାଖ ସେଲ୍‌ରେ ଥାଇ ସବୁ ଦେଖୁଥାନ୍ତି । ୧୯୪୩ ଅଗଷ୍ଟ ମାସ ୨୯ ତାରିଖ ପ୍ରତ୍ୟୁଷରେ ଯେତେବେଳେ ତାଙ୍କୁ ଫାଶୀ ମଞ୍ଚକୁ ନିଆଗଲା, ସେତେବେଳେ ଲକ୍ଷ୍ମଣ ନାୟକ ଆର ପଟେ ଥାଇ "ଭାରତ ମାତା କୀ ଜୟ" ଧ୍ୱନି ଦେଇଥିଲେ । ନବ ବାବୁ ତା'ର ଜବାବ୍ ଦେଲେ । ଆମେ ଏ ପଟେ ଶୋକାକୁଳ ନୟନରେ ଜାନପାଠ ଆହାର ନିଦ୍ରାଭୁଲି ଶୁଣୁଥାଉ । 'ଭାରତ ମାତା କୀ ଜୟ', 'ଲକ୍ଷ୍ମଣ ନାୟକ ଜିନ୍ଦାବାଦ୍' ଧ୍ୱନିରେ ସମଗ୍ର ଜେଲଖାନା ପ୍ରକମ୍ପିତ ହେଲା । ଗଗନ ପବନ ଗାଇ ଉଠିଲା ଜଣେ ବୀର ଶହୀଦ୍‌ଙ୍କର ବନ୍ଦନା । ପୋଲିସ୍ ପରିବେଷ୍ଟନୀ ମଧ୍ୟରେ ଲକ୍ଷ୍ମଣ ନାୟକ ଫାଶୀ ମଞ୍ଚ ପାଖରେ ରହିଲେ । ଅପରାଧ ଶୁଣାଇ

ଦିଆଗଲା । ଜେଲ୍ ସୁପରିଣ୍ଟେଣ୍ଡେଣ୍ଟ ହାତ ଘଣ୍ଟା ଦେଖି ତକ୍ତାର ଲିଭର ଟାଣିବାକୁ ଜେଲର୍ ନାୟାରଙ୍କୁ ନିର୍ଦ୍ଦେଶ ଦେଲେ । ଏଠାରେ ଜେଲର୍ ଫାଶୀ ଦିଅନ୍ତି । ତକ୍ତାରୁ ଖସି ପଡ଼ିଲା ଏକ ବୀର ଯୁବକ, ଶହୀଦ୍ ହେଲେ । ତାଙ୍କର କର୍ମମୟ ଜୀବନର ଅବସାନ ସେଇଠି ହିଁ ଘଟିଲା ।

ଏହି ଦେଶର ଏଇ ମାଟି ଯେପରି ସୁପୁତ୍ର ଜନ୍ମ କରି ଧନ୍ୟ ହେଲା । ବୀରମାନେ କହୁଥିଲେ ମୃତ୍ୟୁ ପର୍ଯ୍ୟନ୍ତ ହସ ହସ ବଦନରେ ଫାଶୀ ମଞ୍ଚରେ ଚଢ଼ିଥିଲେ, ଦ୍ୱିଧା ନାହିଁ, ଭୟ ନାହିଁ, ଅନୁଶୋଚନା ନାହିଁ ।

ଏହିପରି ଜଣେ ୧୭ ବର୍ଷ ବୟସର ଶୁଦ୍ଧିଗ୍ରାମ ପ୍ରଥମ ଶହୀଦ୍ ହୋଇଥିଲେ । ସମଗ୍ର ଜେଲରେ ଶୋକର ଛାୟା ଖେଳି ଯାଇଥିଲା । ଯିଏ ଯେଉଁଠି ବସିଛି, ସିଏ ସେଇଠି । ଯେପରି ବହୁତ ଦିନର ଏକ ପରମ ଆତ୍ମୀୟର ବିଚ୍ଛେଦରେ ସମସ୍ତେ ଆତୁର ମି୍ୟମାଣ । ଶୋକସନ୍ତପ୍ତ ହେଲା । ମୁଁ ପଦଟିଏ ଲେଖିଲି—

"ଲକ୍ଷ୍ମୀ ନାୟକ ରେ ଲକ୍ଷ୍ମଣ ନାୟକ
ଦେଶ ଲାଗି ଫାଶୀ ଖୁଣ୍ଟେ ଝୁଲିଗଲୁ ବେଳରେ
ରଖି ଗଲୁ କୋରାପୁଟ ଟେକ ।"

କିନ୍ତୁ ମୁଁ ଆଜି କହିବି କେବଳ କୋରାପୁଟ ନୁହେଁ ସମଗ୍ର ଉତ୍କଳର, ଏ ଦେଶର ଏ ଜାତିର ଟେକ ରଖିଗଲେ । ସେ ଆଜି ଆମ ସମସ୍ତଙ୍କର ନମସ୍ୟ । ସେଦିନର କଥା ଭୁଲିବାର ନୁହେଁ । ଜାତିର ପ୍ରାଣରେ ତାହା ଶେଲବିଦ୍ଧ ହୋଇ ରହିଛି ।

୧୯୪୪ ଜାନୁୟାରି ୨୬ ତାରିଖରେ ବ୍ରହ୍ମପୁର ଜେଲ୍ ପ୍ରାଙ୍ଗଣରେ ଜାତୀୟ ପତାକା ଉଡ଼ାଇଲୁ । ପୋଲିସ୍‌ର ନିର୍ମମ ଲାଠି ପ୍ରହାର ଆମ ଉପରେ ଚାଲିଲା । ବିଶ୍ୱନାଥ ଦାସ ମଧ୍ୟ ଅବ୍ୟାହତି ପାଇଲେ ନାହିଁ । ଲାଠି ମାଡ଼ରେ ଆହତ ହେଲେ । କଣ୍ଡୁରି ମଲ୍ଲିକଙ୍କର ଦୁଇଟି ଦାନ୍ତ ଭାଙ୍ଗି ଗଲା । ଆହୁରି ଅନେକ ଆଘାତ ପାଇଲେ ।

ଜେଲ୍‌ରେ ଥିଲାବେଳେ ଆମେ କେତେ ଜଣ ମିଶି ମାସିକ ପତ୍ରିକା "ବୈଜୟନ୍ତୀ" ଓ ଚନ୍ଦ୍ରନନାମକ ଏକ ହାସ୍ୟରସ ପତ୍ରିକା ହାତରେ ଲେଖି ପ୍ରକାଶ କରୁଥିଲୁ । ଜାତୀୟ କବି ବୀର କିଶୋର ଦାସ ଥିଲେ ଦୁଇଟିର ସମ୍ପାଦକ । ରାମପ୍ରସାଦ ମହାନ୍ତି ଓ ମୁଁ ମୁଖ୍ୟ ସଞ୍ଚାଳକ ଥିଲୁ । ବିଶ୍ୱମ୍ଭର ପରିଡ଼ା ଥିଲେ ସହକାରୀ

ସମ୍ପାଦକ । ପତ୍ରିକା ଦୁଇଟି ନୀରସ ଜୀବନରେ ସରସତା ଭରି ଦେଉଥିଲା । ମନମୋହନ ଚୌଧୁରୀଙ୍କ ବ୍ୟଙ୍ଗଚିତ୍ର ତା ମଧ୍ୟରେ ଥିବାରୁ ବେଶ୍ ଆଦୃତ ହେଉଥିଲା ।

ଜେଲ୍‌ରେ ଗୋଆଲ୍ଲ ମେସ୍ ଗୋପ ବାବୁ, ଆଚାର୍ଯ୍ୟ ମହାଶୟ ଏବଂ ଲ୍ଲଣ୍ଟୁ ବାବୁଙ୍କୁ ନେଇ ଗଢ଼ା ଯାଇଥିଲା । ଏଥିରେ ଗୁଣନିଧି ମହାନ୍ତି, ବୁଲୁ ବାବୁ, ଦାଶରଥି ବେହେରା, ସାରଙ୍ଗଧର ଦାସ ଏବଂ ଅନ୍ୟାନ୍ୟ ବହୁ ରଚନାତ୍ମକ କର୍ମୀ ଖାଉଥିଲେ । ପ୍ରତିଦିନ ହାତରେ ଅଟା ପେଷୁଥିଲେ । ଦହି ବସାଉଥିଲେ । ସକାଳେ ସବୁ ଚୂଡ଼ା, ଗୁଡ଼, ନଡ଼ିଆ, ବସାଦହି, ଜଳଖିଆ, ଗୋଟାଏ ବେଳେ ଚିଙ୍କି ରୁଟୀ ସ୍ତ୍ୱଦଳର ଭାତ ଓ ହରଡ଼ ଡାଲି, ସିଝା ତରକାରୀ, ରାତିରେ ରୁଟି, କ୍ଷୀର ଇତ୍ୟାଦି ଅତି ପୁଷ୍ଟିକର ଖାଦ୍ୟ ।

ସାରଙ୍ଗଧର ଦାସ ଓ ଗୋପ ବାବୁ ଦାଢ଼ି ରଖୁଥିଲେ । ବ-ସ-ଘ-ସ ମେସ୍ ଜାତୀୟ କବି ବୀର କିଶୋର, ସହଦେବ ଦାସ, ଡାକ୍ତର ଘନଶ୍ୟାମ ମହାନ୍ତି ଏବଂ ସଚ୍ଚିଦାସଙ୍କୁ ନେଇ ଗଠନ କରାଯାଇଥିଲା । ସାଆନ୍ତିଆ ମେସ୍‌ରେ ନିତ୍ୟାନନ୍ଦ କାନୁନ୍‌ଗୋ, ମଦନବାବୁ, ସୁଧୀରବାବୁ, ସୁରେନ୍ଦ୍ର ପଟ୍ଟନାୟକ, କୃଷ୍ଣପ୍ରସାଦ ଘୋଷ, ପ୍ରାଣକୃଷ୍ଣ ପଡ଼ିହାରୀ, ପଣ୍ଡିତ ବନମାଳୀ ମିଶ୍ର, ଅନୁସୂୟା ପ୍ରସାଦ ପାଠକ, ରାଜକୃଷ୍ଣବାବୁ ପ୍ରଭୃତି ଥିଲେ । ଲୋକନାଥ ରାୟ ଏବଂ ମୁଁ ମେସ୍ ଦାୟିତ୍ୱରେ ଥିଲୁ । ଲୋକନାଥ ରାୟ ପ୍ରତିଦିନ ଛଅ ତଅଣ ନଅ ଭଜା କରି ଖୁଆଉଥିଲେ ।

ବାଲେଶ୍ୱର ମେସ୍‌ରେ କରୁଣାକର ପାଣିଗ୍ରାହୀ, ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, ଭଗବତ ସାହୁ, ଗୋକୁଳାନନ୍ଦ ମହାନ୍ତି, ରବି ରାଇ, ଗୌରୀରାଇ, ନୀଳାମ୍ବର ଦାସ ପ୍ରଭୃତି ସଭ୍ୟ ଥିଲେ ।

କମ୍ୟୁନିଷ୍ଟ ମେସ୍‌ରେ ହରିହର ଦାସ, ମନମୋହନ ମିଶ୍ର, ରାମକୃଷ୍ଣ ପତି, ଗୋବିନ୍ଦ ମହାନ୍ତି, ବୈଦ୍ୟନାଥ ରଥ, ରାମ ରାମ ପ୍ରଭୃତି ରହୁଥିଲେ ।

ସୁରଜମଲ ଶାହା, ବିଭୂଦେନ୍ଦୁ ମିଶ୍ର, ମୋତିଲାଲ ତ୍ରିପାଠୀ, ଉମାପ୍ରସାଦ ତ୍ରିପାଠୀ ପ୍ରଭୃତି ବାଣ୍ଟି ବାଣ୍ଟି ହୋଇଖାଉଥିଲେ । ସଦାଶିବ ବାବୁ, ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ନିଜ ହାତରେ ରାନ୍ଧି ଖାଉଥିଲେ । ହରିନାଥ ଦାସ ଓ ଆଉ ଜଣେ କର୍ମୀର ସ୍ୱତନ୍ତ୍ର ମେସ୍ । ପ୍ରତିଦିନ ମାଛ ତାଙ୍କର ହେଉଥିଲା ।

୧୯୪୪ ଫେବୃଆରୀରେ ମୁଁ ଜେଲରୁ ଖଲାସ ହେଲି । ଘରକୁ ଆସିବାର ୮ ଦିନରେ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର ଖଣ୍ଡେ ଚିଠି ଜେଲରୁ ମୋ ପାଖକୁ

ଆସିଥିଲା । ତାଙ୍କୁ ପୋଲିସ ବାଟରୁ ଧରି ମୋତେ ପୁଣି ଥରେ ଗିରଫ କଲେ । ସୁଶଧନ କାଳ କାଳିଆ ପଣ୍ଡାଆରେ ଥିବା ଗୋଇନ୍ଦା ପୋଲିସଙ୍କ ହାଜତରେ ରଖି ନ ଖୁଆଇ ପିଆଇ ଜେଳ ଉପରେ ଜେରା କରି ଖ୍ରପଣ ମାଡ଼ ଦେଇ ପଦେହେଲେ କଥା ମୋ ତୁଣ୍ଡରୁ ନେଇ ପାରିଲେ ନାହିଁ । ନଗଣ ହୋଇ ମୋତେ ଛାଡ଼ ଦେଲେ । ମନବୋଧ ପଣ୍ଡା ଏବଂ ଆଉ ଜଣେ ଗୋରା ସାର୍ଜେଣ୍ଟ ମୋତେ ସୁଶଧନ ଖ୍ରପଣ ହଇରାଣ କରିଛନ୍ତି । କଟକରେ ଦୁଇଟି ଦିନ ରହି ପୁଣି ଘରକୁ ଆସିଲି । ମୋର ସ୍ତ୍ରୀ ଓ ବୋଉ ମୋତେ ଦେଖି ଆଶ୍ୱସ୍ତ ହେଲେ ।

୧୯୪୩ ମସିହା ବାତ୍ୟା ଓ ବନ୍ୟାରେ ହରଣ୍ଟପୁର ଓ ବଗୁନ୍‌ପୁରର ଏକ ବିସ୍ତୃତ ଅଞ୍ଚଳ ଧ୍ୱଂସ ହୋଇଥିଲା । ହରେକୃଷ୍ଣ ବଣ୍ଡାଲ ଓ ମୁଁ ସେ ଅଞ୍ଚଳର ଦାୟିତ୍ୱ ନେଇ ରିଲିଫ୍ କାର୍ଯ୍ୟ ଆରମ୍ଭ କଲୁ । ଠକ୍‌କର ବାପା କଟକରେ ରହି ସମସ୍ତ କାର୍ଯ୍ୟ ଦେଖାଶୁଣା କରୁଥାନ୍ତି । କଆଦାର ନାରୀ କର୍ମୀ ବେଲ ଅପା ଏବଂ ଅନ୍ୟାନ୍ୟ ମେଠୀ ଆମ ସହିତ ଯୋଗ ଦେଲେ । ଘୋରଡ଼ିଆ ହାଟରେ ସାହାଯ୍ୟ କେନ୍ଦ୍ର ଖୋଲାଯାଇ ଦୁସ୍ଥ ଲୋକଙ୍କୁ ଲୁଗା ଓ ଚାଉଳ ବଣ୍ଟା ଯାଉଥିଲା । ଈଶ୍ୱରଲାଲ ବ୍ୟାସ ଏବଂ ବମ୍ବେର ଜଣେ ଯୁବକ ଏହାର ତଦାରଖ୍ କରିବା ପାଇଁ ଆସିଥିଲେ । ବସ୍ତିରୁ ଆମ ଘରପାଖେ ଓହ୍ଲାଇ ଖାଇ ପିଇ ପରେ ବଳଦ ଗାଡ଼ିରେ ଘୋରଡ଼ିଆ ଗଲେ ।

ସେଦିନ ଶାମ୍ବଦଶମୀ ହୋଇଥାଏ । ପିଠା, ତରକାରୀ, ଖିରି, ସ୍ୱତନ୍ତ୍ରଭାବେ ସେ ଦୁହିଁଙ୍କ ଲାଗି ତିଆରି ହୋଇଥିଲା । ସେତେବେଳେ ଦାଲ୍‌ଡା ଘିଅର ପ୍ରଚଳନ ନ ଥିଲା । ମଣ୍ଡା ପିଠାରେ ଛେନା ଓ ନଡ଼ିଆ ପୁର ପଶିଥିଲା । ପିଠାର ଚାରିପାଖ ବନ୍ଦ, ପୁର ପଶିଲା କେମିତି ? ଦୁହେଁ ଆଶ୍ଚର୍ଯ୍ୟ ହୋଇ ଅନେକ ସମୟ ପର୍ଯ୍ୟନ୍ତ ବସିଲେ । ପରେ ତାଙ୍କ କୌତୁହଳ ମେଣ୍ଟିବା ଲାଗି ତାଙ୍କ ଆଗରେ ତିଆରି କରି ଦେଖାଇ ଦିଆଗଲା । ପ୍ରାୟ ୪ ମାସ ସାହାଯ୍ୟ କାର୍ଯ୍ୟ ଚାଲିଲା ।

କଣିଆରେ ସେତେବେଳେ ନୂଆ ନାଟ ଅଖଡ଼ାଟି ଗଢ଼ା ଯାଇଥାଏ । ମୋର ଏସବୁ ଆଡ଼େ ଝୁଙ୍କ୍ ବେଶୀ ବୋଲି ମୁଁ ପୂର୍ବରୁ କହିଛି । ଭଲ ନାଟକ ସେପରି ନଥାଏ । ଗୋଟିଏ ଦୁଇଟି କ'ଣ ଶିଖିଥା'ନ୍ତି । ସେତେ ଯୁଗୋପଯୋଗୀ ହୋଇ ନ ଥାଏ । ନିଜେ କଲମ ଧରିଲି । ବନ୍ଧୁ ମହାନ୍ତି, ଧ୍ରୁବ, ପରିଣାମ, ସାବିତ୍ରୀ, ଅଗ୍ନିଦାନ ଇତ୍ୟାଦି ଲେଖିଲି । ଗୀତ ନିଜେ ଯୋଡ଼ିଲି । ଅଭିନୟ ଶିଖେଇଲି । ନାଚ ବି ବତେଇଲି । ଦଳଟି ଜମିଗଲା । ଅନେକଆଡ଼ୁ ଡାକରା ଆସିଲା । ବହୁତ ଆଡ଼େ ମୋତେ ମଧ୍ୟ ଯିବାକୁ ପଡ଼ିଲା । ଭଲ ରୋଜଗାର ମଧ୍ୟ ହେଲା ।

ଘୋରଡିଆରେ ଥିଲାବେଳେ ମୋର ଶ୍ୱଶୁରଙ୍କୁ ଦେଖିବାକୁ ଯାଇଥିଲି ଓଣ୍ଡିକୋଳ। ଶ୍ୱଶୁରଙ୍କ ମୃତ୍ୟୁ ପରେ ଆମେ ଯେଉଁ ସ୍ଥାନରେ ପ୍ରାୟ ୩୫ ବର୍ଷ ରହିଲୁ ସେଇଟି ସିଏ ରହୁଥାନ୍ତି। ମୁଁ ପହଞ୍ଚିଲି। ଦିନଟିଏ ତାଙ୍କ ପାଖରେ ରହି ଫେରି ଆସିଲି। କେତେ ଯେ ଆଦର ଆପ୍ୟାୟନ କରିଛନ୍ତି, ତାହା କହି ହେବ ନାହିଁ। ଗୋଡ଼ ତାଙ୍କର ତଳେ ପଡ଼ୁନଥାଏ।

ସେତେବେଳେ ବାଲିକୁଦାର ବିଭିନ୍ନ ଅଞ୍ଚଳରେ ଥିଏଟର କରିବାର ଧୁମ୍ ପଡ଼ିଲା। ଦୋଳ ରଜରେ ଗାଁକୁ ଗାଁ ଡ୍ରାମା ହେଲା। ମୋତେ ଡାକରା ଆସିଲା। ନ ଯାଇ ରହନ୍ତି କେମିତି ? ଡ୍ରାମା ଶିଖେଇବାକୁ ପଡ଼େ। ପେଣ୍ଡାଲ ବନ୍ଧାଠୁ ଆରମ୍ଭ କରି ଡ୍ରେସିଂ, ପେଣ୍ଟିଂ, ପ୍ରମ୍ପଟିଂ ଏମିତିକି ପାଉଡ଼ର ବୋଳି ନାଚିବାକୁ ବି ପଡ଼ିଛି। କେହି ଛାଡ଼ନ୍ତି ନି। ମୁଁ ଟିକିଏ ବେଲିଆ ବୋଲି ସେହି ପାର୍ଟ ମୋତେ ବେଶୀ କରିବାକୁ ପଡ଼େ। ରାତି ଅନିଦ୍ରା, ଅତ୍ୟଧିକ ଖଟଣୀ, ଖାଦ୍ୟର ଅନିୟମିତତା ହେତୁ ହେଲା ପ୍ରବଳ ଆନ୍ତ୍ରିକ ଜ୍ୱର। ମୋଟେ ଛାଡ଼ିଲାନି। ଦିନକୁ ଦିନ ଅବଶ ହୋଇ ପଡ଼ିଲି। ଶ୍ୱଶୁର ମୋତେ ଦେଖିବାକୁ ଆସିଲେ। ବିବାହର ୭/୮ ବର୍ଷ ମଧ୍ୟରେ ଏହି ତାଙ୍କର ପ୍ରଥମ ପଦାର୍ପଣ। ମୁଣ୍ଡରେ ହାତ ବୁଲାଇ ଦେଲେ, ଆରୋଗ୍ୟ ହେବାକୁ କଲ୍ୟାଣ କଲେ। ଗୋଟିଏ ରାତି ରହି ସକାଳୁ ଓଣ୍ଡିକୋଳ ଫେରିଗଲେ। ସେହି ତାଙ୍କର ପ୍ରଥମ ଓ ଶେଷଯାତ୍ରା ଆମ ଘରକୁ। ବହୁତ ଦିନ ଶଯ୍ୟାଶାୟୀ ହୋଇ ଶେଷରେ ମୁଁ ଆରୋଗ୍ୟ ହେଲି।

ନେତାମାନେ ତ ସମସ୍ତେ ଜେଲ୍‌ରେ ଆରାମ୍‌ରେ ରହିଲେ। ଅଗଷ୍ଟ ଆନ୍ଦୋଳନକୁ ଓଡ଼ିଶାରେ ବଞ୍ଚେଇ ରଖିଲେ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ। ନିଜ ଜୀବନକୁ ବିପନ୍ନ କରି ଲୁଚି ଛପି ଗାନ୍ଧିଜୀଙ୍କର 'କର ଅବା ମର' ବାର୍ତ୍ତାକୁ ଓଡ଼ିଶାରେ ଘରେ ଘରେ ପହଞ୍ଚାଇଲେ। ତାଙ୍କୁ ଏ ଦିଗରେ ବହୁ ଉତ୍ସାହୀ ଯୁବକ ସାହାଯ୍ୟ କରିଥିଲେ। ତାଙ୍କୁ ଧରେଇ ଦେବା ଲାଗି ସରକାର ପୁରସ୍କାର ମଧ୍ୟ ଘୋଷଣା କଲେ। ତଥାପି ଗିରଫ କରି ପାରିଲେନି। ଚିଅଁ ଦିନକୁ ଦିନ ଜଳିବାକୁ ଲାଗିଲା। ଶେଷରେ ପର୍ଶୁରାମ ନାମରେ ଜଣେ ଦେଶଦ୍ରୋହୀ କମ୍ୟୁନିଷ୍ଟ ପୋଲିସ୍‌କୁ ତାଙ୍କର ସନ୍ଧାନ ଦେଲା। ଦ୍ୱିବେଦୀ ଗିରଫ ହେଲେ। ଅଲିଶାବଜାରର ନନ୍ଦ ସାହୁଙ୍କ ଘରୁ ତାଙ୍କୁ ଆରେଷ୍ଟ କରାଗଲା। ନନ୍ଦସାହୁ ଏବଂ ତାଙ୍କ ପୁତ୍ର ମଥୁରା ସାହୁ ମଧ୍ୟ ଗିରଫ ହେଲେ। ତାଙ୍କ ସାଥୀରେ ଥିବା ନିଶାମଣି ଖୁଣ୍ଟିଆ, ବିଶ୍ୱନାଥ ପଣ୍ଡିତ, ଚିନ୍ତାରଞ୍ଜନ ଦାସ, ନୃସିଂହ ଚରଣ ମହାନ୍ତି ଏବଂ ବାଙ୍କ ବିହାରୀ ଦାସ ପ୍ରଭୃତି ସେ ମାମଲାରେ ସମ୍ପୃକ୍ତ ଥିଲେ।

ଦ୍ୱିବେଦୀ ଷଡ଼ଯନ୍ତ୍ର ମାମଲାର ବିଚାର ମାହେର୍ ନାମକ ଏକ ଆଇ.ସି.ଏସ୍ ଜଜ୍‌ଙ୍କ କୋର୍ଟରେ ଅନେକ ଦିନ ଧରି ଚାଲିଲା । ସ୍ୱର୍ଗତ ଦୀନବନ୍ଧୁ ସାହୁ ଦ୍ୱିବେଦୀଙ୍କ ତରଫରୁ ମକଦ୍ଦମା ଲଢ଼ିଥିଲେ । ମାସ ମାସ ଧରି ମକଦ୍ଦମା ଚାଲିଲା । ଆମେ ସମସ୍ତେ ଆତଙ୍କିତ ହୋଇ ପଡ଼ିଥିଲୁ ଯେ ଦ୍ୱିବେଦୀଙ୍କୁ ଫାଶୀ ଦଣ୍ଡ ମିଳିବ। ସହ ଅନ୍ୟମାନଙ୍କୁ ବହୁ ବର୍ଷ କଠିନ କାରାଦଣ୍ଡ ମିଳିବ । ସେ ଯୋଜନା କଲେ ତତ୍କାଳୀନ ସି. ଆଇ. ଡ଼ି. ଡ଼ି. ଏସ୍. ପି ମନବୋଧ ପଣ୍ଡା ଓ ଇନସପେକ୍ଟର ଗଙ୍ଗାଧର ଦ୍ୱିବେଦୀ । ସୁରେନ୍ଦ୍ରନାଥ ଦ୍ୱିବେଦୀ ନିଜେ ଏକ Statement ଦେଲେ । ମାହେର୍ ସ୍ୱାଧୀନ ଦେଶର ଲୋକ ଏବଂ ଏକାନ୍ତ ସ୍ୱାଧୀନଚେତା ବ୍ୟକ୍ତି । ସମସ୍ତ ବିଷୟ ଉପଲବ୍‌ଧି କରି ଦ୍ୱିବେଦୀଙ୍କ ସହ ତାଙ୍କର ସହଯୋଗୀମାନଙ୍କୁ ଛଅବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା । ଦ୍ୱିବେଦୀଙ୍କୁ ଏକାକୀ କୋରାପୁଟ ଜେଲ୍‌କୁ ନିଆଗଲା । ସେଠାରେ ତାଙ୍କପ୍ରତି ଆଦୌ ଭଲ ବ୍ୟବହାର ହେଲା ନାହିଁ । ଯାହା ଫଳରେ କି ସେ ପେଟ ବେମାରି ନେଇ ଫେରିଲେ । ଭବିଷ୍ୟତରେ ବି ତାହାର ପରିଣାମ ତାଙ୍କୁ ଭୋଗିବାକୁ ପଡ଼ିଲା ।

ହଁ ଆଉ ଗୋଟିଏ କଥା ଘଟି ଯାଇଥିଲା । ଯାହାକି ମୋ ଜୀବନର ଏକ ଉଲ୍ଲେଖନୀୟ ଘଟଣା । ସାରଙ୍ଗଧର ବାବୁ ସେତେବେଳେ ପ୍ରଜାମଣ୍ଡଳର ସବୁଠାରୁ ବଡ଼ ନେତା । ଚାରିଆଡ଼େ ତାଙ୍କର ଭାରି ସୁନାମ । ଭାରତବର୍ଷର ବିଭିନ୍ନ ଅଞ୍ଚଳରୁ ତାଙ୍କର ଡାକରା ପଡ଼ୁଥାଏ । ଥରେ ସେ ମୟୂରଭଞ୍ଜ ଯାଇଥିଲେ । ସେଠାରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଯାଇ ଥିଲା । ତେଣୁ ସେ ଫେରି ମୋତେ କହିଲେ— "ବୈକୁଣ୍ଠ ! ମୁଁ ମୟୂରଭଞ୍ଜ ଯାଇଥିଲି, ଶରତ୍‌ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ପ୍ରଜା ମଣ୍ଡଳରେ କର୍ମୀମାନେ ଯେପରି ସଭା ଓ ସମ୍ମିଳନୀ କଲେ ମୁଁ ବଡ଼ ଆତ୍ମସନ୍ତୋଷ ଲାଭ କଲି । କେବଳ କର୍ମୀମାନଙ୍କଠାରେ ବିଶୃଙ୍ଖଳାର ଅଭାବ ଦେଖିଲି । ତୁମେ ମୟୂରଭଞ୍ଜ ଯାଇ, ସେଠାରେ ଗୋଟିଏ ସ୍ୱେଚ୍ଛାସେବକ ବାହିନୀ ଗଠନ କର । ମୁଁ ଶରତବାବୁଙ୍କୁ କହୁଛି । ତାଙ୍କର ନିଜ ଗ୍ରାମ ଅମ୍ବାଯୋଡ଼ାରେ କ୍ୟାମ୍ପ ହେବ ।"

କଂଗ୍ରେସ କର୍ମକର୍ତ୍ତାଙ୍କ ଅନୁମତି ନେଇ ମୁଁ ମୟୂରଭଞ୍ଜ ଅଭିମୁଖେ ଚାଲିଲି । ସେତେବେଳେ ବାଲେଶ୍ୱର କିମ୍ବା ବାରିପଦାକୁ ଏତେ ବସ୍ ଯା ଆସ କରୁ ନଥିଲା । ମୁଁ ରୂପ୍‌ସା ଷ୍ଟେସନ୍‌ରେ ଓହ୍ଲାଇ ଗ୍ରେଟ ଟ୍ରେନ ଧରି ବେତନଟୀରେ ପହଞ୍ଚିଲି । ଷ୍ଟେସନ୍‌ରେ ମୋତେ ପାଛୋଟି ନେବାକୁ ଆସିଥିଲେ, ପରେ ପିଏ ହେଲେ ଯେଠାକାର ପ୍ରଜା ସୋସାଲିଷ୍ଟ ପାର୍ଟିର ନେତା ତଥା ବାଚସ୍ପତି ପ୍ରସନ୍ନ କୁମାର ଦାସ ଏବଂ ଆଉ ଜଣେ କର୍ମୀ ।

ଉଠାମଙ୍ଗା ରାସ୍ତାରେ ପ୍ରାୟ ତିନି ମାଇଲ୍ ଆସି ଶରତ୍‌ବାବୁଙ୍କ ନିଜ ଘର ଆମ୍ବାଜୋଡ଼ାରେ ରହିଲି । ଦେଖୁ ଦେଖୁ ଅନେକ କର୍ମୀ ଯୁଟିଗଲେ । ଶିବିରର କାର୍ଯ୍ୟ ସୁରୁବୁରୂପେ ଚାଲିଲା । ମଝିରେ ମଝିରେ ଶରତ୍‌ବାବୁଙ୍କ ସହିତ ବିଭିନ୍ନ ଗ୍ରାମକୁ ଯାଉଥିଲି । ପ୍ରଜାମଣ୍ଡଳର ପ୍ରତ୍ୟେକ ସଭାରେ ଶରତ୍‌ବାବୁ ବିପୁଳ ଭାବରେ ଅଭ୍ୟର୍ଥିତ ହେଉଥିଲେ । ମୟୂରଭଞ୍ଜର ଚାରିଆଡ଼େ ସେ ଯେ କେତେ ଜନପ୍ରିୟ ନେତା, ମୁଁ ତାଙ୍କ ସହିତ ବୁଲି ଜାଣିଥିଲି । ଲୋକେ ତାଙ୍କୁ ସେ ଅଞ୍ଚଳର ଗାନ୍ଧୀ ବୋଲି କହୁଥିଲେ । ଅତି ନିରାଡ଼ମ୍ବର, ନିଷ୍କଳଙ୍କ ନିର୍ବିହ ଲୋକଟିଏ । କିନ୍ତୁ କାର୍ଯ୍ୟ-ବେଳେ କି ତେଜ ! କି ନିର୍ଭୀକତା ! ଭାଷଣ ଦେଲାବେଳେ କି ଓଜସ୍ୱିନୀ ଭାଷା ! ତାଙ୍କ ଅନ୍ତରରେ ଲୋକଙ୍କ ପ୍ରତି କେତେ ଯେ ମମତା ଓ ଆଦର ପୂରି ରହିଥିଲା, ତାହା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ପରେ ସେ ମୟୂରଭଞ୍ଜର କିଛିଦିନ ମୁଖ୍ୟ-ମନ୍ତ୍ରୀ ହୋଇଥିଲେ । ଆଜି ଶରତ୍‌ବାବୁ ସ୍ୱର୍ଗରେ । କିନ୍ତୁ ତାଙ୍କର ଅପୂର୍ବ ସଙ୍ଗଠନ ଶକ୍ତି, ତ୍ୟାଗ, କର୍ତ୍ତବ୍ୟ ନିଷ୍ଠା ଆମର ଭବିଷ୍ୟତ ବଂଶଧରଙ୍କୁ ପଥ ଦେଖାଉଥିବ ।

କ୍ୟାମ୍ପ ଚାଲିଥାଏ । ଏଥି ମଧ୍ୟରେ ବଳଙ୍ଗ ନଦୀରେ ପ୍ରବଳ ବନ୍ୟା ଆସିଲା । ମୟୂରଭଞ୍ଜର ଏକ ବିସ୍ତୃତ ଅଞ୍ଚଳକୁ ଧ୍ୱସ୍ତବିଧ୍ୱସ୍ତ କରି ଦେଲା । ସ୍ୱେଚ୍ଛାସେବକ ବାହିନୀକୁ ନେଇ ବିଭିନ୍ନ ଗ୍ରାମରେ ସାହାଯ୍ୟ ପହଞ୍ଚାଇବା ହେଲା ଆମର ପ୍ରଧାନ କାର୍ଯ୍ୟ । ମୋ ଅଧ୍ୟକ୍ଷତାରେ ସେଠାରେ ଯେପରି ରିଲିଫ୍ କାର୍ଯ୍ୟ ଚାଲିଲା, ଲୋକେ ଦେଖି ମୁଗ୍ଧ ହୋଇଗଲେ । ଗୀତଟିଏ ରଚନା କଲି ଏ ପ୍ରଳୟଙ୍କରୀ ବନ୍ୟା ବିଷୟ ନେଇ । ସେଠାକାର ସୁପରିଚିତ କର୍ମୀ ତଥା ବିଶିଷ୍ଟ ଗାୟକ କୈଳାସବାବୁଙ୍କ କଣ୍ଠରେ ତାହା ଏତେ ସୁଶ୍ରାବ୍ୟ ହେଲା ଯେ ଲୋକଙ୍କ ମନକୁ ଛୁଇଁଗଲା, ହୃଦ ତରଳାଇ ଦେଲା । ଯାହା ଘରେ କିଛି ନାହିଁ, ସେ ମଧ୍ୟ ମୁଠିଏ ଭିକ୍ଷା ଦେବାକୁ କୁଣ୍ଠାବୋଧ କରି ନ ଥିଲା ।

ତିନିମାସ ପର୍ଯ୍ୟନ୍ତ ମୟୂରଭଞ୍ଜରେ ରହି କଟକ ଫେରିଲି । ଶରତ୍‌ବାବୁଙ୍କ ପରିବାର ମୋତେ ଅତି ଆପଣାର କରି ନେଇଥିଲେ । ଶରତ୍‌ବାବୁଙ୍କର ପିତୃବତ୍ ସ୍ନେହ, ଶ୍ରଦ୍ଧା ଏବଂ ମମତା ମୁଁ ଏ ଜୀବନରେ ଭୁଲି ପାରିବିନି । ମୋର ଆଚରଣରେ ଖୁସି ହୋଇ ସେ ଖଣ୍ଡିଏ ଚିଠି ସାରଙ୍ଗଧର ବାବୁଙ୍କ ନିକଟକୁ ଲେଖିଥିଲେ । ସେ ଖଣ୍ଡିକ ପଢ଼ି ସାରଙ୍ଗଧର ବାବୁ ଖୁବ୍ ଆନନ୍ଦିତ ହୋଇ ଶୁଭେଚ୍ଛା ଜଣାଇଥିଲେ । ଆଶୀର୍ବାଦ କରିଥିଲେ ।

ଦିନ ପରେ ଦିନ ଗଡ଼ି ଚାଲିଥାଏ । ବୟସ ମଧ୍ୟ ବଢ଼ି ଚାଲିଥାଏ । ୧୯୪୫ ମସିହା ଆସିଗଲା । ବୋଧହୁଏ ଜୁନ୍ ମାସ ହେବ । କୌଣସି କାମରେ କଟକ

ଆସିଥିଲି । ହଠାତ୍ କ୍ୟାପିଟାଲ ସିନେମା ନିକଟରେ ସେତେବେଳେର ମୀନାବଜାର ସମ୍ପାଦକ ରାମପ୍ରସାଦ ମହାନ୍ତି (ନନ୍ଦିଗ୍ରାମ ଭାଇ)ଙ୍କ ସହିତ ଶ୍ରୀ ବାବୁଲାଲ ଦୋଶୀଙ୍କୁ ଦେଖିଲି । ପରିଚୟ ହେଲା, ଅତି କମ୍ ସମୟରେ । ଆମେ ଦୁହେଁ ଅତି ବନ୍ଧୁ ହୋଇଗଲୁ । ପରେ P. S. P.ର ଅଫିସ୍ ସେହିଠାରେ ହିଁ ହୋଇଥିଲା । ଦୋକାନ ଉପରେ ସେ ସସ୍ତ୍ରୀକ ରହୁଥିଲେ । ଆନନ୍ଦରେ ଘରକୁ ଡାକି ନେଲେ ଏବଂ ସ୍ତ୍ରୀଙ୍କ ସହ ପରିଚିତ କରାଇ ଦେଲେ । ବଡ଼ ବଡ଼ ଗୁଜୁରାଟୀ ଲଡ଼ୁ ଖୁଆଇ ସେ ମୋତେ ଆପ୍ୟାୟିତ କଲେ । ସେହି ଦିନ ଠାରୁ ଆମ ଦୁହିଁଙ୍କ ମଧ୍ୟରେ ବନ୍ଧୁତାର ଏକ ପ୍ରଚ୍ଛନ୍ନ ସ୍ରୋତ ବହିବାକୁ ଲାଗିଲା । ଦୁହେଁ ଦୁହିଁଙ୍କର ସୁଖଦୁଃଖର ସମସାଥୀ ହୋଇଗଲୁ । ବହୁତ ଦିନର ବହୁତ ଦୁଃଖ, ଶୋକ, ଆନନ୍ଦ, ଉତ୍ସବ, କାମନା, ଲୋଭ, ଗ୍ରହଣ ଓ ତ୍ୟାଗର ଇତିହାସ ଏ ବୁକୁରେ ଧରି ସେ ଓ ମୁଁ ଚାଲିଛୁ । ଘରକୁ ଫେରିଗଲି । ମହିଳରେ ମହିଳରେ କଂଗ୍ରେସର ଛୋଟବଡ଼ କାମ କରି ଦେଉଥିଲି ।

୧୯୪୭ ମସିହା ଆସିଲା । ଗୋପବାବୁ ମୋତେ ଚିଠି ଲେଖି ବାରି ଡକାଇଲେ । ମାସ ଗୋଟିଏ ବୁଲିଛି, ଦାଣ୍ଡିଆ ନାଚ ଶିଖିବା ଲାଗି ଓ୍ୱାର୍ଧାର ସେବାଗ୍ରାମ ଗଲି । ଗୋପବାବୁ ଖଣ୍ଡିଏ ପରିଚୟ ପତ୍ର ଆଶାଦେବୀ ଓ ତାଙ୍କ ସ୍ୱାମୀ ଆର୍ଯ୍ୟ ନାୟକଙ୍କ ପାଖକୁ ଦେଇଥିଲେ । ନଇ ତାଲିମ ଶାଳାରେ ମୋର ରହିବାର ବ୍ୟବସ୍ଥା ହୋଇଥିଲା । ଓ୍ୱାର୍ଧାରେ ଓହ୍ଲାଇ, ଷ୍ଟେସନରୁ ଟାଙ୍ଗାଟିଏ ଧରି ସେବା ଗ୍ରାମ ଗଲି । ଆମ ସ୍ଥାନ ଗ୍ରାଉଣ୍ଡ ଟିକେ ଦୂରକୁ ଆଗେଇ ଯାଇଛୁ, ଦେଖିଲି ଲଣ୍ଠନଟିଏ ଧରି ଖଦଡ଼ର ଶୁଭ୍ରଶାଢୀ ପିନ୍ଧି ଜଣେ ବିଦେଶିନୀ ମହିଳା ଆସୁଥିଲେ । ମୁଁ ତାଙ୍କୁ ଆର୍ଯ୍ୟ ନାୟକଙ୍କ କଥା ପଚାରିଲି । ରାତି ବେଶୀ ହେଲାଣି । ତେଣିକି ଆଉ ଅଗ୍ରସର ନ ହୋଇ ତାଙ୍କ କୁଡ଼ିଆରେ ରହିବା ଯିବା ପାଇଁ ସେ ମୋତେ ଅନୁରୋଧ କଲେ । ତାଙ୍କର ଅନୁରୋଧ ଭାଙ୍ଗିବାର ଶକ୍ତି ମୋର ନଥିଲା । ମାର୍ଚ୍ଚ ମାସରେ ସେବା ଗ୍ରାମରେ ପ୍ରଚଣ୍ଡ ଗରମ । ବାହାରେ ଦଉଡ଼ିଆ ଖଟଟିଏ ପକାଇ ଦେଲେ । କ୍ଷୀର ଓ କମଳା ଲେମ୍ବୁ ମୋ ସମ୍ମୁଖରେ ରଖିଲେ । ତାଙ୍କ ଆତିଥ୍ୟରେ ମୁଁ ମୁଗ୍ଧ ହୋଇଗଲି । ପରିଷ୍କାର ହିନ୍ଦୀରେ, ଅବଶ୍ୟ ଇଂରାଜୀରେ ଟିକିଏ ଟାଣ ଥାଏ । ଗୋପବାବୁ, ରମାଦେବୀ ଓ ମାଳତୀ ଦେବୀଙ୍କ କଥା ପଚାରିଲେ । ମୁଁ ଯାହା ଜାଣେ କହିଲି । କୌତୁହଳ ସମ୍ଭାଳି ନ ପାରି ତାଙ୍କ ପରିଚୟ ପଚାରିଲି । ସେ ଅତି ମଧୁର ଭାଷାରେ ତାଙ୍କ କାହାଣୀ କହିଲେ ।

ପ୍ରସିଦ୍ଧ ଦାର୍ଶନିକ ରୋମାରୋଲାଁଙ୍କ ପାଖକୁ ଦର୍ଶନ ଶାସ୍ତ୍ର ଅଧ୍ୟୟନ କରିବାକୁ ଆସି କପରି ତାଙ୍କ ନିର୍ଦ୍ଦେଶରେ ଗାନ୍ଧୀଙ୍କ ପାଖରେ ଆସି ପହଞ୍ଚିଲେ ଏବଂ

ତାଙ୍କରି ନିର୍ଦ୍ଦେଶରେ କିପରି ଗାନ୍ଧୀଜୀଙ୍କ ସହିତ ତାଙ୍କର ସାକ୍ଷାତ ହେଲା, ବାପୁଙ୍କର ବିରାଟ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ଆଜି ନିଜର ଉଚ୍ଚଶିକ୍ଷାର ଅହମିକା ତ୍ୟାଗ କରି ସନ୍ନ୍ୟାସିନୀ ଭଳି ଶୁଖିଲା ବାଜରା ରୁଟି ଓ ଟିକିଏ ତରକାରୀ ଖାଇ ସୁଦୂର ଭାରତ-ବର୍ଷର ଏକ ଗ୍ରାମାଞ୍ଚଳରେ ପଡ଼ିଛନ୍ତି—ଶୁଣି ମୁଁ ମୁଗ୍ଧ ହେଲି । ବାସ୍ତବିକ ତାଙ୍କ ତ୍ୟାଗର ତୁଳନା ନାହିଁ । ଆମେରିକାର ଏକ ଧନୀର ଏକମାତ୍ର ଅଲିଅଳ ଦୁଲାଳୀ ଆଜି ଭାରତର ଏକ ଗ୍ରାମର ସେବିକା । ସେବାବ୍ରତକୁ ନିଜର ଧ୍ୟେୟ ବୋଲି ଆଦରି ନେଇଛନ୍ତି । ମନରେ ଦୁଃଖ ନାହିଁ, ଅନୁଶୋଚନା ନାହିଁ । ମୁହଁରେ ହସ ଲାଗି ରହିଛି । କାମରେ ଯେପରି ଆନନ୍ଦ, ସେବାରେ ସେହିପରି ଆଗ୍ରହ । ଶୁଣୁଶୁଣୁ କେତେବେଳେ ଯେ ନିଦ ଆସି ଯାଇଛି, ମୁଁ ଜାଣେନା । ଯୁଗପତ୍ ବିସ୍ମୟ ପୁଲକ ମୋତେ ଏତେ ଦୂର ଅଭିଭୂତ କରିଥିଲା ଯେ ପ୍ରାର୍ଥନା ଘଣ୍ଟା କେତେବେଳେ ବାଜିଛି, ମୁଁ ଜାଣି ନାହିଁ । ଆଶ୍ରମର ଅନ୍ତେବାସୀଗଣ ଯିଏ ଯାହାର କାର୍ଯ୍ୟରେ ଲାଗିପଡ଼ିଲେଣି । କରୁଣା ବେନ୍‌ଙ୍କୁ ଅନ୍ତରର କୃତଜ୍ଞତା ଜଣାଇ ଆମ କ୍ୟାମ୍ପକୁ ଚାଲି ଆସିଲି । ଆଶା ଦେବୀ ଓ ଆର୍ଯ୍ୟ ନାୟକ ଗୋପବାବୁଙ୍କ ଚିଠି ପଢ଼ି ମୋତେ ସ୍ଥାନ ଦେଲେ । ତାଙ୍କ ପି. ଏ.ଙ୍କ ସହିତ ମୁଁ ରହିଲି ।

ନରସିଂହ ରାଓ ନାମକ ଆଉ ଜଣେ ଭଦ୍ରବ୍ୟକ୍ତି ସେ ଘରେ ରହୁଥାନ୍ତି । ସେହିଦିନ ରାତି ୯ଟାରେ ସେ ମାନ୍ଦ୍ରାଜ ଗଲେ । ମୁଁ କିଛି ଜାଣିନି । ଶୋଇ ପଡ଼ିଥିଲି । ସେ ଦୁଇଘଣ୍ଟା ପରେ ଷ୍ଟେସନରୁ ଫେରି କହିଲେ ମୋର ତିନିଶହ ଟଙ୍କା ଚୋରି ଯାଇଛି । କିଏ ନେଇଛି କିଏ ନେଇଛି ମହା ଭାଳେଣୀ ପଡ଼ିଲା । ସମସ୍ତେ ମୋତେ ସନ୍ଦେହ କଲେ । P.A.ଙ୍କୁ ପଚାରିବାରେ କାହାରି ସାହସ ନ ଥିଲା । ଆର୍ଯ୍ୟ ନାୟକଙ୍କର ସେ ଡାହାଣ ହାତ । ସମସ୍ତଙ୍କ ଆଖି ମୋ ଉପରେ ପଡ଼ିଲା । ମୋଠାରୁ ଟଙ୍କା ଆଦାୟ କରିବାର ସମସ୍ତ ପ୍ରଚିନ୍ତା ଓ ପ୍ରଚେଷ୍ଟା ଆରମ୍ଭ ହେଲା । ସେଦିନ ହୋଲି ଥାଏ । ଏଇ ଘଟଣା ନେଇ ସେ ଉତ୍ସବ ବନ୍ଦ ରହିଲା । ଆଶ୍ରମରେ ପୁଣି ଚୋରି ? ସମସ୍ତଙ୍କ ମନରେ ତାହା ଦାରୁଣ ଆଘାତ ଦେଲା । ମୁଁ ସ୍ପଷ୍ଟ ମନା କରିଦେଲି ଏବଂ ଯାହା କିଛି ବିପଦ ଆସିବ, ତାକୁ ମୁକାବିଲା କରିବାକୁ ପ୍ରସ୍ତୁତ ହେଲି । ନଇତାଲିମର ସ୍ତ୍ରୀ, ପୁରୁଷ, ବାଳକ, ବାଳିକା ସମସ୍ତେ ମିଶି ମୋତେ ଦେଖେଇ ଶୁଣେଇ ନାନା କଥା କହୁଥାନ୍ତି । ମହାରାଷ୍ଟ୍ରର ଲୋକେ ବେଶୀ ଥାନ୍ତି । ମୁଁ ସେମାନଙ୍କ କଥା ଓ ଇଙ୍ଗିତ ସବୁ ବୁଝୁଥାଏ । କ'ଣ ବା ଜବାବ୍ ଦେବି । ମନର ଦୁଃଖ ମନରେ ମାରି ରହିଥାଏ । ଖାଦି ବିଭାଗରେ ଶକ୍ତିଶେଖର ଦାସ, ଗୌରିଶ୍ୟାମ ସାମନ୍ତରାୟ ଏବଂ ବ୍ରଜ ଦାସ ପ୍ରଭୃତି ରହୁଥିଲେ ଏବଂ ହିନ୍ଦୀ

ତାଳିମ ଶିବିରରେ ଗୋବିନ୍ଦ ନନା ପ୍ରଭୃତି ଥିଲେ । ମୁଁ ସେମାନଙ୍କୁ ମୋ ଦୁଃଖର କଥା କହିଲି । ମୋ ଦୁଃଖରେ ସେମାନେ ବ୍ୟଥିତ ଓ ବିଚଳିତ ହୋଇପଡ଼ିଲେ ।

ହୋଲି ଉପଲକ୍ଷେ ସନ୍ଧ୍ୟାରେ ପାହାଡ଼ ଉପରେ ଏକ ବିଚିତ୍ର କାର୍ଯ୍ୟକ୍ରମ ହେଲା । ଅନିଚ୍ଛା ସତ୍ତ୍ୱେ ଓଡ଼ିଆ ଭାଇମାନଙ୍କ ଅନୁରୋଧ ଏଡ଼ି ନ ପାରି ଯୋଗ ଦେଲି । ମୋର କ୍ୟାରିକେଚର ସମସ୍ତଙ୍କୁ ଖୁବ୍ ଆନନ୍ଦ ଦେଲା । ଈଶ୍ୱରଙ୍କ ଅପାର କରୁଣାରୁ ତେଣୁ ମୁଁ ଫେର ଶୁଣିଲି ଆର୍ଯ୍ୟ ନାୟକଙ୍କର P.A ନିଜେ ଟଙ୍କା ନେବାର ମାନିଛି ଓ ନିଜର ଦୋଷ ସ୍ୱୀକାର କରିଛି । ଲଜ୍ଜା ନିବାରଣ ହରି ମୋର ଲଜ୍ଜା ନିବାରଣ କଲେ । ମୁଁ ଯଦି ଚେଷ୍ଟା କରିଥାନ୍ତି, ତେବେ ମୋତେ କି ଦଣ୍ଡ ମିଳିଥାନ୍ତା ମୁଁ ଜାଣେନା, କିନ୍ତୁ ସେ ଆର୍ଯ୍ୟ ନାୟକଙ୍କର P.A ବୋଲି ତାଙ୍କୁ କ୍ଷମା କରି ଦିଆଗଲା ।

ଦୁଇଟି ମାସ ସେବା ଗ୍ରାମରେ ଅତି ଆନନ୍ଦରେ କାଟି ଅନୁଗୁଳ ଆସିଲି । ଅନୁଗୁଳରେ ନବବାବୁ ଓ ମାଳତୀ ଦେବୀଙ୍କ ରହିବା ସ୍ଥାନରେ ବାଜି ରାଉତ ଛାତ୍ରାବାସର ଶୁଭ ଉଦ୍‌ଘାଟନ ହେବାର ଥାଏ । ମୋତେ ମାଳତୀ ଦେବୀ ସେଠାରେ କିଛି ଦିନ ରହି ବ୍ୟବସ୍ଥାରେ ସାହାଯ୍ୟ କରିବାକୁ କହିଲେ । ଗୋପବାବୁ ମଧ୍ୟ ଅନୁମତି ଦେଲେ । ମାଳତୀ ଦେବୀଙ୍କ କଥା ମୁଁ ଏଡ଼ି ପାରିଲିନି । ସେଠାରେ ରହିଗଲି । ପିଲାଏ ଆସି ଦାଣ୍ଡିଆ ନାଚ ଶିକ୍ଷା କଲେ । ସାଂସ୍କୃତିକ କାର୍ଯ୍ୟକ୍ରମର ସମସ୍ତ ଦାୟିତ୍ୱ ମୋ ଉପରେ ଥିଲା । ଏଥିରେ ବୁବୁ, କରଣ ପ୍ରଭୃତି ମୋତେ ସାହାଯ୍ୟ କରୁଥିଲେ । ନିର୍ଦ୍ଦିଷ୍ଟ ଦିନ ପାଖେଇ ଆସିଲା । କଟକରୁ ବହୁ ବିଶିଷ୍ଟ ଲୋକ ଆସି ଉପସ୍ଥିତ ହେଲେ । ଉତ୍ସବର ଖୁବ୍ ବିରାଟ ଆୟୋଜନ ହୋଇଥିଲା । କିନ୍ତୁ ଅତି ଦୁଃଖର କଥା ଆମର ସମସ୍ତ ଶ୍ରମ, ସାଧନା ଓ ସମ୍ବଳ ସବୁକୁ ବ୍ୟର୍ଥ କରି ମୂଷଳ ଧାରାରେ ବୃଷ୍ଟି ହୋଇଗଲା । ତା ସହିତ ଝଡ଼ । ସମସ୍ତ ଉଦ୍ୟମ ପଣ୍ଡ ହେଲା । ତମ୍ବୁ ଉଡ଼ିଗଲା । ଗେଟ ଭାଙ୍ଗି ପଡ଼ିଲା । ପେଣ୍ଡାଲ ଛାରଖାର ହୋଇଗଲା । ଦୂରାଗତ ଅତିଥିମାନେ ଭଲରେ ଗଣ୍ଡିଏ ଶୁଖିଲା ଖାଇ ପାରିଲେ ନାହିଁ । ଦେଖିଲି ନବବାବୁ ଓ ମାଳତୀ ଦେବୀଙ୍କର ଅସୀମ ଧୈର୍ଯ୍ୟ । କୌଣସିମତେ ଉତ୍ସବ ସାଙ୍ଗ ହେଲା । କିନ୍ତୁ କାହାରି ମନରେ ସରାଗ ରହିଲା ନାହିଁ ।

ଅନୁଗୁଳରେ ଗୋଟିଏ ମାସ ରହି ରାମଚନ୍ଦ୍ରପୁର ଫେରି ଆସିଲି । ରାମଚନ୍ଦ୍ରପୁରରେ ସେତେବେଳେ ମହିଳା ଶିକ୍ଷାକେନ୍ଦ୍ର, ମୌଳିକ ବିଦ୍ୟାଳୟ ପ୍ରଭୃତି ସ୍କୁଲ ଥିଲା । ବହୁ ଛାତ୍ରଛାତ୍ରୀ ଶିକ୍ଷାର୍ଥୀ ଓ ଶିକ୍ଷାର୍ଥୀମାନଙ୍କ ସମାବେଶରେ ସ୍ଥାନଟି ପରିପୂର୍ଣ୍ଣ ହୋଇଥାଏ । ଶ୍ରୀ ଫକୀର ମିଶ୍ର ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିଲେ ।

ଭୁବନାନନ୍ଦ ସ୍ୱାଇଁ, ବାସୁଭାଇ ପ୍ରଭୃତି ତାଙ୍କୁ ସାହାଯ୍ୟ କରୁଥିଲେ । ସର୍ବୋଦୟ ଶ୍ରୀ ଶରତ୍‌ଚନ୍ଦ୍ର ମହାରଣାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବିଦ୍ୟାଳୟଟି ଚାଲିଥାଏ । ଏଣେ ମହିଳା ଶିବିରରେ ରମାଦେବୀ ଥାନ୍ତି । ଚନ୍ଦ୍ର ଅପା, ମଙ୍ଗଳା ଦିଦି ଶିକ୍ଷାର୍ଥୀମାନଙ୍କର ଶିକ୍ଷାର ଦାୟିତ୍ୱ ନେଇଥାନ୍ତି । ଏଇଠି ଗୀତୁ ଆସି ପହଞ୍ଚିଲି । ବହୁ ଦିନ ପରେ ତାଙ୍କୁ ଦେଖି ପ୍ରାଣ ପୂରିଉଠିଲା ।

ରାମଚନ୍ଦ୍ରପୁର ଶିକ୍ଷାକେନ୍ଦ୍ର ବ୍ରାହ୍ମଣୀ ନଦୀ କୂଳରେ । ବିଦ୍ୟାଳୟର ଚାରିପଟେ ଝାଉଁବଣ । ନାନାଦି ଫୁଲର ବଗିଚା ସମାରୋହ । ପିଲାମାନଙ୍କ ହସ ଖେଳରେ ସମସ୍ତ ଦୁଃଖଦୈନ୍ୟ ଭୁଲି ହୋଇଯିବ । ଏ ପରିବେଶ ଶୁଷ୍କ ପ୍ରାଣକୁ ମଧ୍ୟ ସରସ, ସୁନ୍ଦର କରିଦେବ । ଏଠି ଦୁଇଟି ନୃତ୍ୟ ଗୀତ ଶିକ୍ଷାକେନ୍ଦ୍ର ଖୋଲିବାର ଦାୟିତ୍ୱ ଗୋପବାବୁ ମୋତେ ଦେଲେ । ଝିଅମାନେ ଗରବା ଶିଖିବେ ଓ ପୁଅମାନେ ଡାଣ୍ଡିଆ ଓ ଶ୍ରେଷ୍ଠ ପିଲାମାନେ ଶବ୍ଦ ନୃତ୍ୟ । କ୍ଲାସ ଆରମ୍ଭ ହେଲା । ମୁଁ ଯେପରି ତା ମଧ୍ୟରେ ଲୀନ ହୋଇଗଲି । ଘଣ୍ଟା ଘଣ୍ଟା ଧରି ନୃତ୍ୟ ଗୀତ ଶିକ୍ଷା ଦେଇ ଟିକିଏ ହେଲେ କ୍ଳାନ୍ତ ଅନୁଭବ କରୁ ନଥିଲି ।

ଏଇଠି ବିଭିନ୍ନ ବିଷୟ ନେଇ କେତେକ ଅତି ଆବଶ୍ୟକୀୟ ସଙ୍ଗୀତ ରଚନା କଲି । ଆଦରଣୀୟା ଭଉଣୀ ସକୁନ୍ତଳା (ମାଲ) ଅତି ଦରଦ ଦେଇ ଗାଉଥିଲା ଏବଂ କେତେକ ଭଉଣୀ ତାକୁ ସାହାଯ୍ୟ କରୁଥିଲେ । ମୟୂରଭଞ୍ଜରୁ ସାବିତ୍ରୀ ଏବଂ ଲୁଣିଆରୁ ବିପ୍ଳବୀ ନେତା ମୁରଲୀଧର ପଣ୍ଡାଙ୍କ ଭଉଣୀ ବୈଦେହୀ ଆସିଲେ ।

ସାବିତ୍ରୀ କର୍ମତତ୍ପର । ଯେତେବଡ଼ କାର୍ଯ୍ୟ ହେଉପଛେ, ତାକୁ ହସି ହସି କରିଦେବେ । ଆଉ ବୈଦେହୀ ବାଳି ବିଧବା, ସୁନ୍ଦରୀ, ତାର କୋମଳ, ମଧୁର ବ୍ୟବହାର ମନେ ରଖିବାର କଥା । ଅଳ୍ପ ଦିନେ ଆମ ସମସ୍ତଙ୍କୁ ସେ ନିଜର କରି ନେଲା । ଚମତ୍କାର କଣ୍ଠଟିଏ । ମାଲ ପ୍ରଭୃତିଙ୍କ ସହ ଗୀତ ଗାଏ । ଶିବିରର ସମସ୍ତ କାର୍ଯ୍ୟ ମନ ଦେଇ କରିଯାଏ । ନିଜ ଗୋଡ଼ରେ ଛିଡ଼ା ହେବା ପାଇଁ ତାର ପ୍ରବଳ ଆଗ୍ରହ । ବାସ୍ତବିକ ପରେ ସେ ଆତ୍ମନିର୍ଭରଶୀଳା ହୋଇଛି । ସ୍ୱତନ୍ତ୍ରଭାବେ ଗାଁ ଗହଳର ସେବା କରିବାର ସୁଯୋଗ ତାକୁ ମିଳିଛି । ବିନୋବାଜୀଙ୍କ ଉତ୍କଳ ପଦଯାତ୍ରା ବେଳେ ସେ ଏକ ମୁଖ୍ୟ ଅଂଶ ଗ୍ରହଣ କରିଥିଲା । ମୋ ପ୍ରତି ତାର ଢେର ମମତା । ସେପରି ଭଉଣୀଟିଏ ମିଳିବା ଭାଗ୍ୟର କଥା । ଏବେ ବି ତା କଥା ମନେ ପଡ଼ିଲେ ପ୍ରାଣ ଆନନ୍ଦରେ ପୁରି ଉଠେ । ରାମଚନ୍ଦ୍ରପୁରରେ ଥିଲାବେଳେ ମାଲର

ସୁହାଗ, ଆଦର ଓ ଯତ୍ନକୁ ମୁଁ ଅତି ଗଣ୍ଠିଧନ କରି ରଖିଛି । ସେଠି କେତେଦିନ ସେଠାରେ ଥିଲି ସେ ଦିନଗୁଡ଼ିକ ଅତି ମଧୁମୟ ଓ ସରସମୟ ହୋଇ ଉଠିଥିଲା । ଏଇଠି ମୋର କବି ଜୀବନର ଛନ୍ଦ ବିଶେଷ ଭାବରେ ପ୍ରାଣ ପାଇ ଉଠିଥିଲା । ଗୀତ ଲେଖେ, ପିଲାମାନେ ଗାଆନ୍ତି । ଲୋକେ ଶୁଣି ମୁଗ୍ଧ ହୁଅନ୍ତି ।

ଘରୁ ଚିଠି ପାଇ ଫେରିଆ ଗଲି । ମୋ ସାନଭଉଣୀ ବିଷ୍ଣୁପ୍ରିୟାର ବାହାଘର ହେବ । ଅନେକ ସ୍ଥାନରେ ବିବାହ ପ୍ରସ୍ତାବ ପଡ଼ିଲା । ପରିଶେଷରେ ଆମ୍ବଗଡ଼ିଆ ବୃନ୍ଦାବନ ଦାସ ଝିଅଙ୍କ ସହିତ ତାର ଶୁଭ ପରିଣୟ ହେଲା । ମୋ ଶ୍ୱଶୁର ଆମ ଘରକୁ ଆସିବାର କଥା । ଜ୍ୱର ହେଉଥିବା ଯୋଗୁଁ ସେ ଆଉ ଆସିଲେନି । ବର ଓ ବରଯାତ୍ରୀମାନେ ଚାଲିଗଲେ । ମୁଁ କିଛିଦିନ ଢେଙ୍କାନାଳରେ ରହିଥିଲି । ବାହାଘର ପ୍ରାୟ ସରିବା ଉପରେ । ହଠାତ୍ ଖବର ଆସିଲା ମୋ ଶ୍ୱଶୁର ଖୁବ୍ ଅସୁସ୍ଥ । ମୋ ସ୍ତ୍ରୀ ସେ ଖବର ପାଇ ବିଶେଷ ଆତୁର ହୋଇ ପଡ଼ିଲେ । ସଙ୍ଗେ ସଙ୍ଗେ ଆମ ଗାଁକୁ ଗଲି । ସବାରୀ ଗାଡ଼ି ବ୍ୟବସ୍ଥାରେ କିଛିଟା ଡେରି ହେଲା । ଏହିକବେଳେ ଖବର ଆସି ପହଞ୍ଚିଲା—ସେ ଆଉ ଏ ସଂସାରରେ ନାହାନ୍ତି । ତାଙ୍କର ଏକମାତ୍ର କନ୍ୟା ଓ ଜାମାତାଙ୍କୁ ଶୋକସାଗରରେ ଭସାଇ ଦେଇ ଚିରଦିନ ପାଇଁ ଆଖି ବୁଜିଛନ୍ତି । ମୋ ସ୍ତ୍ରୀଙ୍କୁ କିଏ ଏ ଖବର ଦେବ ? ଜୀବନରେ ତାଙ୍କର ଯାହା କିଛିଏ ସମ୍ବଳ ଥିଲା, ସିଏ ଯେ ଆଜି ଶେଷ ହୋଇଗଲା, ଏକଥା କିଏ କହି ତାଙ୍କର ପିତୃହରା ପ୍ରାଣରେ ସାନ୍ତ୍ୱନା ଦେବ ? ମୁଁ କହିଲି—"ସ୍ନାନକୁ ମଥର କରି ଏ ଚିଠି ମୁଁ ଦେବି ।" କ'ଣ ଯେ ତାଙ୍କ ଅବସ୍ଥା ହେଲା, ଏକଥା ନ ଦେଖି ମୁଁ ଶୀଘ୍ର ମୋ ଶ୍ୱଶୁର ଘର ଗାଁ ଭଣ୍ଡିକୁଳ ଅଭିମୁଖେ ଚାଲିଲି ।

ସେଦିନ ଥାଏ ୧୯୪୭ ମସିହା ଜୁଲାଇ ମାସ ୧୦ ତାରିଖ ସୋମବାର । ବାହୁଡ଼ା ଦଶମୀ । କାଳିଆ ଠାକୁରଙ୍କ ବାହୁଡ଼ା ବେଳେ ସାଙ୍ଗକୁ ତାଙ୍କର ମଧ୍ୟ ବେଳେ ହୋଇଗଲା । ଯେଉଁଠାରୁ ଆସିଥିଲେ, ସେଇଠାକୁ ଚାଲିଗଲେ । ମୁଁ ପାଣି କାଦୁଅରେ ଉଠିପଡ଼ି ଗଲା ବେଳକୁ ଚିତା ଉପରେ ମଡ଼ ଦେହ ଲଦା ସରିଲାଣି । ବହୁତ ବ୍ୟସ୍ତ ହେଲି । ଅଶ୍ରୁର ଧାରକୁ ପ୍ରତିରୋଧ କରି ପାରିଲିନି । କିଛିଏ ଦେହ ମୁଣ୍ଡରେ ହାତ ବୁଲାଇ ପାରିଲିନି, ଏ ଅବଶୋଷ ମନରେ ରହିଗଲା । ତାଙ୍କର ହାର୍ନିଆ ଥିଲା । ସେଦିନ Stangulated ହୋଇ ଗୁଡ଼ିସାରା ବଡ଼ ଯନ୍ତ୍ରଣାରେ ଛଟପଟ ହୋଇ-ଥିଲେ । ପାଣି କିଛିଏ ପାଇଁ ଅତି କାତର କଣ୍ଠରେ ଡାକିଥିଲେ । କିନ୍ତୁ ନିଅଣ୍ଟ ଓ ତାଙ୍କର ପିଲାପିଲି ଥିଲେ ମଧ୍ୟ କେହି କିଛି ଶୁଣି ନ ଥିଲେ । ପାଣି ଢୋକେ ତୁଣ୍ଡରେ ଦେବା ତ ଦୂରର କଥା ସେ ଦୁଆର ମଧ୍ୟ କେହି ମାଡ଼ି ନ ଥିଲେ । ସେବା

ନ ପାଇ, ଶୁଶ୍ରୂଷାରୁ ଦୂରରେ ରହି ଅତି ଅଯତ୍ନରେ ତାଙ୍କ ଜୀବନ ଯାଇଛି । କେହି ତାଙ୍କୁ ପଗ୍ଭରି ନାହାନ୍ତି । ଶେଷ ସମୟରେ କେବଳ ବଳଦାସ ବୃଢ଼ା, ସେ ଆଜି ସ୍ୱର୍ଗରେ ଯାହା କିଛି କରିଥିଲା ।

ମୋର ସ୍ତ୍ରୀ ପହଞ୍ଚିଲେ । ଏଣିକି ଆରମ୍ଭ ହେଲା ଆମର ସଂଗ୍ରାମ । ଶ୍ୱଶୁରଙ୍କ ଉପର ଭାଇ ସାଧୁଚରଣ ଦାସ ନିଜର କନିଷ୍ଠ ପୁତ୍ରକୁ ନଣ୍ଡା କରି ଶ୍ୱଶୁରଙ୍କ ପୋଷ୍ୟ ପୁତ୍ର ବୋଲି ପରିଚୟ ଦେଇ ସମସ୍ତ ଶୁଦ୍ଧି କ୍ରିୟା କାର୍ଯ୍ୟରେ ବାଧା ଦେଲେ । ଆମେ ତାହା କରାଇ ଦେଲୁ ନାହିଁ । ଶବ୍ଦ କାର୍ଯ୍ୟ ଆମେ ଛିଅ ନ୍ୟାୟିକ କଲୁ । ମହା ସମାରୋହରେ ଶୁଦ୍ଧି କାର୍ଯ୍ୟ ସମାପ୍ତ ହେଲା ।

ତାପରେ ଆରମ୍ଭ ହେଲା ଗଣ୍ଡଯୁଦ୍ଧ । ଗୋଟିଏ ସାଧା କାଗଜରେ କେବେ ଶ୍ୱଶୁର କୌଣସି ଅଙ୍କ ଉଆରି କରିବା ଲାଗି ଏକ ଦସ୍ତଖତ କରିଥିଲେ । ତାକୁ ନେଇ ମୂଷ ଦାଦା ବୋଲି ଶ୍ୱଶୁରଙ୍କ ଜଣେ ସାନଭାଇ ସାଧୁଚରଣଙ୍କୁ ଦେଇ ତା ବଦଳରେ ଜଜ କୋର୍ଟରେ ଉଇଲ୍ ପ୍ରବେଟ୍ ମକଦ୍ଦମା ଆରମ୍ଭ କରିଦେଲେ । ସେହି ଉଇଲ ଦାଖଲ କରି ସାଧୁ ବଡ଼ବାପା ଆମ ଜମି ଦଖଲ କରିବାକୁ ବସିଲେ । ଯେତେ ହଇରାଣ କରିପାରନ୍ତି କଲେ । ଦିନ ନାହିଁ, ରାତି ନାହିଁ, ସମୟ ଅସମୟର କିଛି ବାଛବିଚାର ନକରି ସେ କଳିଗୋଳ ଆରମ୍ଭ କରିଦେଲେ । ଆମ ସାହିକୁ ଢେଲା, ପଥର, ହାଡ଼ ଇତ୍ୟାଦି ପକାଇଲେ । କୋର୍ଟରେ ତିନି ତିନିଟା ମକଦ୍ଦମା ଚାଲିଲା । ସବୁଥିରେ ଆମେ ଡିଗ୍ରୀ ନେଲୁ । ଏ କେସ୍‌ଗୁଡ଼ିକ ଦୀର୍ଘ ୪ ବର୍ଷ କାଳ ଚାଲି ଶେଷରେ ସେମାନଙ୍କ ତରଫରୁ ରଫାର ପ୍ରସ୍ତାବ ଆସିଲା । ଏହି ସମୟରେ ଆମ ଦୁଇଜଣଙ୍କୁ ପ୍ରାଣରେ ମାରି ଦେବା ପାଇଁ ଆପ୍ରାଣ ଚେଷ୍ଟା ଚାଲିଥିଲା । ବହୁ ସମୟ, ସମ୍ବଳ ଓ ଶକ୍ତି ବ୍ୟୟ ହୋଇଛି । କିନ୍ତୁ ଈଶ୍ୱର ସବୁଥିରେ ସହାୟ ହୋଇଛନ୍ତି । ଏଥିରେ ଶରତକୁମାରୀଙ୍କ ସାହସ, ଧୈର୍ଯ୍ୟ ଓ ନିଷ୍ଠା ପ୍ରଶଂସନୀୟ । ସ୍ୱର୍ଗୀୟ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଶ୍ରୀ ଧ୍ରୁବଚରଣ ସାହୁ, ଶ୍ରୀ ହରମୋହନ ଦାସ ଆଡ଼ଭୋକେଟ, ସ୍ୱର୍ଗୀୟ ଦଳବେହେରା ମୁକ୍ତିସ୍ୱାର୍ ଆମକୁ ଅକାତରେ ଯେଉଁ ସାହାଯ୍ୟ ଦେଇଛନ୍ତି, ଚିରଦିନ ପାଇଁ ସେମାନେ ଆମ ମନରେ ଅପାଶୋରା ହୋଇ ରହିବେ । ପୂର୍ବତନ ଜମାଦାର ମୋହନ ଦାସ, ଫକୀର ଦାସ, ବାହାରଣାର ପୃଷ୍ଟିଧର ଏବଂ ସାହୁ ଚଉଧୁରୀ, କଟକ ମୋଟର ଅସୋସିଏସନର ଡ୍ରାଇଭର, କ୍ଲିନର୍‌ମାନଙ୍କ ସ୍ନେହ ଶ୍ରଦ୍ଧା ଭୁଲି ହେବ ନାହିଁ । ସର୍ବୋପରି ମୋହରିର ଧ୍ରୁବଚରଣ ବରାଳ ମକଦ୍ଦମା ମାନ ଜଗି ନ ଥିଲେ, ହୁଏତ ଆମେ ଯଶସ୍ୱୀ ହୋଇ ପାରି ନଥାନ୍ତୁ । ଗୋବର୍ଦ୍ଧନ ମହାପାତ୍ର ମଧ୍ୟ ଆମ ପାଇଁ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ଏହି ଚାରି ବର୍ଷ କାଳ

ସେ କପଟ କରିଛୁ, ତାହା ପରମାତ୍ମା ଜାଣନ୍ତି । ବିବାଦର ସମାଧାନ ହୋଇଗଲା, ସୁରେନ୍ଦ୍ରନାଥ ଦ୍ୱିବେଦୀ, ସ୍ୱର୍ଗତ ରମାମଣି ଖୁଣ୍ଟିଆ ଓ ଅକୁଳାନନ୍ଦ ବେହେରାଙ୍କ ମିଳିତ ଉଦ୍ୟମରେ । ଏଥିରେ ମଧ୍ୟ ଚମତ୍କାର କରି ଗଜେନ୍ଦ୍ରନାଥ ଦାସ ବହୁ ଜମି ନିଜ ନାମରେ କରିନେଲେ । ସାଧୁଚରଣ ଦାସ ପାର୍ଟି ବାଢ଼େଇଲେ ବାଲିଆ ପିଠିରେ । ଗଜେନ୍ଦ୍ର ନାଥ ଦାସ, ସେ ଏକୁଟିଆ ଜାଙ୍କି ବୈଷ୍ଣବ ଦାଢି ଏବଂ ତାଙ୍କର ଧନଭାଇଙ୍କୁ ଛାଡ଼ି ଦେଲେ । ସମସ୍ତେ ନେବା ଲାଗି ତତ୍ପର, ଦେବା ଲାଗି ନୁହେଁ । ସେତେବେଳେ ବାବୁଲାଲ ଦୋଷୀଙ୍କ ଆର୍ଥିକ ସହାୟତା ଆମକୁ ବହୁତ ସାହାଯ୍ୟ କରିଥିଲା ।

ଶ୍ୱଶୁରଙ୍କ ମୃତ୍ୟୁ ପରେ ମୁଁ ରାମଚନ୍ଦ୍ରପୁର ଫେରି ଆସିଲି । ସେଠାରୁ ଅଣନ୍ଦେ, ଧାରପୁର, ବାଲିବିଲି ଗ୍ରାମମାନଙ୍କରେ ଦାଣ୍ଡିଆ ଟିଶାଇଲି । ଗ୍ରାମବାସୀ ମାନଙ୍କଠାରୁ ଢେର ସ୍ନେହ ଓ ଆଦର ପାଇଲି । କିଛିଦିନ ଆଗ୍ରହୀ ହରିହର ଦାସ ମୋତେ ସାକ୍ଷୀ ଗୋପାଳକୁ ଡକେଇ ନେଲେ । କାଦୁଆ ଆଶ୍ରମରେ ରହି କାଦୁଆ ଗ୍ରାମବାସୀ ସତ୍ୟବାଦୀ ହାଇସ୍କୁଲର ପିଲାମାନଙ୍କୁ ଶିକ୍ଷା ଦେଲି । ତାପରେ ଅଲଗୁମ ଗଲି । ଅଲଗୁମର ନେତା କୃଷ୍ଣଚନ୍ଦ୍ର ରଥ ଯେ କି ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସେ ଆଜି ସ୍ୱର୍ଗରେ । କିନ୍ତୁ ତାଙ୍କର ସ୍ନେହ, ଶ୍ରଦ୍ଧା ମୁଁ ଆଜି ପାଶୋରି ପାରିବି ନାହିଁ । ସେଠାରୁ ବୀରବଲଭଦ୍ରପୁର ଆସିଲି । ଏଠାର ଆବାଳ ବୃଦ୍ଧ-ବନିତା ମୋତେ ଏକ ମମତା ବନ୍ଧନରେ ବାନ୍ଧି ଦେଇଥିଲେ । ସେମାନଙ୍କର ନିବିଡ଼ ମାୟା ଭେଦ କରି ଚାଲିଆସିବା ମୋ ପକ୍ଷରେ ଅସମ୍ଭବ ଥିଲା । ବୀରବଲ-ଭଦ୍ରପୁରରୁ ଯେତେବେଳେ ବିଦାୟ ନେଲି ସେତେବେଳେ ଅଶ୍ରୁର ଧାରାକୁ ମୁଁ ରୋଧ କରି ପାରିଲି ନାହିଁ । ସେ ବେଳର ପିଲାମାନେ ଆଜି ଅତି ମହତ୍ତ୍ୱପୂର୍ଣ୍ଣ ସ୍ଥାନରେ ପ୍ରତିଷ୍ଠିତ ହେଲେ ମଧ୍ୟ ମୋ ପ୍ରତି ସେମାନଙ୍କ ଭକ୍ତି, ସ୍ନେହ ଓ ଶ୍ରଦ୍ଧା ଅତୁଟ ରହିଛି । ଆଜି ବି ମୁଁ ସେମାନଙ୍କ ଭକ୍ତିଭାଜନର ଗୁରୁଜୀ । ମୁଁ ସେମାନଙ୍କୁ ଅତି ଭଲ ପାଉଥିଲି । ମୁଁ ସେ ଗାଁଟିରେ ମୋର ସମସ୍ତ ଆଦର ଓ ଶ୍ରଦ୍ଧା ଅଜାଡ଼ି ଦେଇଥିଲି ।

ମୋ ସ୍ତ୍ରୀ ଅତି ସାଂଘାତିକ ବେମାର ପଡ଼ିଲେ । ସେ ଖବର ପାଇ ମୁଁ ଛୁଟିପତ୍ର ଦୌଡ଼ିଲି କଣିଆ । ଈଶ୍ୱରଙ୍କ ଅପାର କରୁଣାରୁ ନଟବାବୁଙ୍କ ଚିକିତ୍ସାରେ ସେ ଆରୋଗ୍ୟ ଲାଭ କରିଥିଲେ । କେତୋଟି ଦିନ ଘରେ ରହି ପୁଣି ସାକ୍ଷୀ-ଗୋପାଳକୁ ଫେରି ଆସିଲି । ଏଠାରେ ଉମା ବୋଲି ଗୋଟିଏ ଝିଅ ମୋତେ ଭଲପାଇ ବସିଲା । ଆଶ୍ରମର ଅଧ୍ୟକ୍ଷା 'ସୁନାମଣି ଦେବୀ' ଯେ କି ନିକଟରେ ସ୍ୱର୍ଗ-ଗାମିନୀ ହେଲେ, ସେ ସ୍ନେହମମତାକୁ ସନ୍ଦେହ ଚକ୍ଷୁରେ ଦେଖିଲେ । ମୁଁ

ବିବାହିତ । ମୋର ଘରେ ସ୍ତ୍ରୀ ଅଛନ୍ତି । ଆମ ଦୁହିଁଙ୍କ ମଧ୍ୟରେ ଭାଇ ଭଉଣୀର ସମ୍ପର୍କ ବୋଲି ଯେତେ ବୁଝାଇଲି, ସେ ତାହା ବୁଝିଲେ ନାହିଁ । ହୁଏତ ଉମା ମନରେ କଣ ଥାଇପାରେ ? ମୋ ମନରେ ଆବିଳତା ନଥିଲା । ମୁଁ ଅପସରି ଗଲି । ଉମା ମଧ୍ୟ କିଛିଦିନ ଲାଗି ଆଶ୍ରମ ଛାଡ଼ି ଅନ୍ୟତ୍ର ଚାଲିଗଲା । ପରେ ଶୁଣିଲି ତା'ର ବିବାହ ହୋଇଯାଇଛି । ଈଶ୍ୱର ତାକୁ ସୁଖରେ ରଖନ୍ତୁ ।

କ୍ରମାନ୍ୱୟରେ ନାକ ଫଳରେ ମୋର ସ୍ୱାଭାବିକ ଦେଖାଦେଲା । ଧୀରେ ଧୀରେ ଭୀଷଣ କଷ୍ଟ କମିଗଲା । ଜୀବନ ବିକଳତର କଣ୍ଟକ ପଳାଇ ଆସିଲା । ସେ ବେଳେ ମେଜର ଓଝାଲ ଥାନ୍ତି କଟକ ଜେନେରାଲ ହସ୍ପିଟାଲର ବଡ଼ ଡାକ୍ତର ଓ M. L. A. ଥାନ୍ତି ସ୍ୱର୍ଗୀୟ ଭୈରବଚରଣ ମହାନ୍ତି ଏବଂ ବନମାଳୀ ପଟ୍ଟନାୟକ । ମୋର ଚିକିତ୍ସା ଲାଗି ଶ୍ରମ ଓ ସମୟ ସେ ଦୁହେଁ ଅଯାଚିତ ଭାବରେ ବ୍ୟୟ କରିଛନ୍ତି । ହସ୍ପିଟାଲରେ ଥିବା ପର୍ଯ୍ୟନ୍ତ ମୋର ପୁଷ୍ଟିକର ଖାଦ୍ୟର ସମସ୍ତ ବ୍ୟବସ୍ଥା କରିଥିଲେ ବନ୍ଧୁ ବନମାଳି ପଟ୍ଟନାୟକ । ସାରବଳଭଦ୍ରପୁରର ଜଣେ ଗ୍ରାମ ସାନବନ୍ଧୁ ମହାନ୍ତି ବରାବର ପାଖରେ ରହି ମୋର ସେବାଯତ୍ନ କରୁଥିଲେ । ତାର ଖର୍ଚ୍ଚ ଭୈରବବାବୁ ବହନ କରିଥିଲେ । ଦୁହେଁ ଆଜି ନାହାନ୍ତି, କିନ୍ତୁ ସେମାନଙ୍କର ସ୍ମୃତି ମୋ ଅନ୍ତରରେ ଅଲିଭାଦୀପ ହୋଇ ଜଳୁଛି । ଶ୍ରୀ ବାବୁଲାଲ ଦୋଷୀ ମୋତେ ଓଭାଲଟିନ୍ ଓ ହରଲିକ୍ସ ପ୍ରଭୃତି ଯୋଗାଉଥିଲେ । ମାଲତୀ ଦେବୀ ସେତେବେଳେ ପାର୍ଲାମେଣ୍ଟ ସଭ୍ୟା ଥିଲେ । ତାଙ୍କର ବାଖରାବାଦର ବସାରେ ମୋର ପ୍ରତିଦିନ ଖାଇବା ପିଇବାର ବ୍ୟବସ୍ଥା କରି ଦେଇଥିଲେ ଏବଂ ଦିଲ୍ଲୀରୁ ମୋ ପାଇଁ ଓଭାଲଟିନ୍ ଆଣି ଯୋଗାଉଥିଲେ । ଏମାନଙ୍କ ଋଣ କେବେ ପରିଶୋଧ କରିବି, ତାହା ମୁଁ ଜାଣେ ନା ।

ଅରବିନ୍ଦ ଜନ୍ମ ହେଲା । ବହୁଦିନର ଏକ ଅତୃପ୍ତ ଆଶା ଓ ଆକାଂକ୍ଷା ପୂର୍ଣ୍ଣ ହେଲା । ପ୍ରାଣ ଏକ ଅବର୍ଣ୍ଣନୀୟ ଆନନ୍ଦରେ ପୂରି ଉଠିଲା । ଈଶ୍ୱରଙ୍କ ନିକଟରେ ଆମେ ଦୁହେଁ ପ୍ରାର୍ଥନା କଲୁ, ହେ ପ୍ରଭୁ ପିଲାଟିକୁ ଦୀର୍ଘାୟୁ କର, ନିରାମୟ କର ।

୧୯୪୭ ମସିହା ଏକ ଘଟଣାବହୁଳ ବର୍ଷ । ସୁରେନ୍ଦ୍ରନାଥ ଦ୍ୱିବେଦୀ କଂଗ୍ରେସ ଦଳ ଛାଡ଼ି ସୋସିଆଲିଷ୍ଟ ପାର୍ଟି ଗଢ଼ିଲେ । ଆମେ ସବୁ ତହିଁରେ ଯୋଗ ଦେଲୁ । ବହୁ ଶିକ୍ଷିତ ଯୁବକ ସୋସିଆଲିଷ୍ଟ ପାର୍ଟିର ଚକ୍ର ଲାଙ୍ଗଳ ଚିହ୍ନିତ ଲାଲ ପତାକା ତଳେ ଆସି ଜୁଟି ହେଲେ । ସାଂସ୍କୃତିକ ବିସ୍ତାରଧାରା ଦେଇ ଲୋକମାନଙ୍କୁ ପ୍ରଭାବିତ କରିବା ପାଇଁ ଜନସଂସ୍କୃତି ସଂଘ ଗଢ଼ା ଗଲା । ତା'ର ଆନୁକୂଲ୍ୟରେ ମନୋରଞ୍ଜନ ଦାସଙ୍କ ରଚିତ ଅଗଷ୍ଟ ୯ ଓ ମୋ ଦ୍ୱାରା ଲିଖିତ ବାଜିରାଉତ ନାଟକ ବଭିନ୍ନ

ସ୍ଥାନରେ ଅଭିନୀତ ହୋଇ ଉଚ୍ଚ ପ୍ରଶଂସିତ ହେଲା । ଆଜିର ସୁନାମଧନ୍ୟ ଚଳ ଚିତ୍ରଶିଳ୍ପୀ ଶ୍ରୀ ନନ୍ଦାଇ ପାଲିତ ଏହାର ପରିଚାଳନା କରିଥିଲେ । ପୁରୀ, କଟକ, ବ୍ରହ୍ମପୁର ଓ ବାଲେଶ୍ୱର ଲୋକଙ୍କ ଦ୍ୱାରା ଏହା ବିଶେଷ ଆଦୃତ ହୋଇଥିଲା । ଅଗଷ୍ଟ ୭ରେ ମୁଁ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଠାରୁ ଚିଠିପାଇ କଟକ ଆସିଲି । ବର୍ତ୍ତମାନ ଯେଉଁ ଓଡ଼ିଆ ବଜାର ଘରେ ଜନତା ପାର୍ଟି ଅଫିସ ଅଛି, ସେହିଠାରେ ହିଁ ସୋସିଆଲିଷ୍ଟ ପାର୍ଟି ଅଫିସ ଥିଲା । ଉପର ଘରେ ଶ୍ରୀ ବାବୁଲାଲ ଦୋଷୀ ସସ୍ତ୍ରୀକ ରହୁଥିଲେ । ସେତେବେଳେ ତାଙ୍କ ସ୍ତ୍ରୀ ବମ୍ବେ ଯାଇଥାନ୍ତି । ବାବୁଲାଲ ଅତି ଆନନ୍ଦରେ ମୋତେ ତାଙ୍କ ଘରେ ସ୍ଥାନ ଦେଲେ । ମାଳତୀ ଦେବୀ କଟକ ଆସିଥାନ୍ତି । ମୋତେ ସେ କିଛି ଦିନ ଲାଗି ଅନୁଗୁଳ ଯିବାକୁ କହିଲେ । ଅପରେସନ୍ ପରେ ମୁଁ ଅନେକ ଦିନ ତାଙ୍କ ପାଖରେ ଥିଲି । ଅନୁଗୁଳରେ ଅବସ୍ଥାନ ସମୟରେ ଐତିହାସିକ ୧୯୪୭ ମସିହାର ଅଗଷ୍ଟ ପନ୍ଦର ପଡ଼ିଲା । ୧୪ ତାରିଖ ରାତି ୧୨ଟା ବେଳେ ଇଂରେଜ ସରକାର ଭାରତବାସୀଙ୍କୁ ଶାସନ କ୍ଷମତା ହସ୍ତାନ୍ତର କରି ଅପସରି ଗଲେ । ପ୍ରାୟ ୨୫୦ ବର୍ଷ ଧରି ଗ୍ରାସିଥିବା ବ୍ରିଟିଶ୍ କର୍ତ୍ତୃତ୍ୱର ଆଜି ଅବସାନ ଘଟିଲା । ଆମର ସ୍ୱପ୍ନ ସାର୍ଥକ ହେଲା । ସେଦିନ କି ଆନନ୍ଦ । କି ଉନ୍ମାଦନା । କି ସ୍ଫୂର୍ତ୍ତି । ଦେଶର ଅଗଣିତ ନରନାରୀଙ୍କର ତ୍ୟାଗ, ବଳିଦାନ ଆଜି ସଫଳତାର ରୂପରେଖ ନେଇଛି । ଆଶ୍ରମବାସୀ ସମସ୍ତେ ରାଜରାସ୍ତା ଅନୁଗୁଳ ଟାଉନରେ ପଟୁଆର କରି ବୁଲିଲେ । ସକାଳେ ଚରଖା ଚିହ୍ନିତ ତ୍ରିରଙ୍ଗ ପତାକା ସର୍ବତ୍ର ଉଡ଼ିଲା । ତୋରଣ ସଜା ହେଲା । ଖାଇବା ପିଇବା ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମର ତ୍ରୁଟି ରହିଲା ନାହିଁ । ସର୍ବତ୍ର ଆନନ୍ଦ ଉତ୍ସାହ । ବିପୁଳ ପୁଲକରେ ଏ ଦେଶ ହସିଉଠିଲା ।

ଅନୁଗୁଳରେ ଏ ଦୁଇଦିନ ମୋତେ ଅନେକ କାମ କରିବାକୁ ପଡ଼ିଲା । ନିସ୍ତମାଳସ ରେ ପତାକା ଉତ୍ତୋଳନ କରିବା ଲାଗି ମୋତେ ଅନେକ ସ୍ଥାନରୁ ଡାକରା ଆସିଲା । ମୁଁ ଆଗରୁ ସେସବୁ ଜାଣିଥିଲି । ପ୍ରତ୍ୟେକ ସ୍ଥାନକୁ ଯାଇ ଉତ୍ସ-ବରେ ଯୋଗ ଦେଇ ନିଜକୁ ଧନ୍ୟ ମନେକଲି ।

ଅନୁଗୁଳରୁ ଫେରିବା ବାଟରେ ଡକ୍ଟର ମହତାବ ବାବୁ ମୋର ଭେଟ ହେଲେ । ସେତେବେଳେ ନୂତନ ହୋଇ 'ପ୍ରଜାତନ୍ତ୍ର' ଖବରକାଗଜ କଟକରୁ ପ୍ରକାଶ ପାଉଥାଏ । ମୋତେ ସେଥିରେ ସାହାଯ୍ୟ କରିବାକୁ କହିଲେ । ମୁଁ କିନ୍ତୁ ଅତୀତର କେତେ ତିକ୍ତ ଅଭିଜ୍ଞତାରୁ ମନା କରି ଦେଇ ସୋସିଆଲିଷ୍ଟ ପାର୍ଟି ଅଫିସକୁ ଫେରି ଆସିଲି ।

କିଛିଦିନ ପରେ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସହ ମୁଁ ଓ ନୀଳକଣ୍ଠ ସାହୁ ମୟୂରଭଞ୍ଜ ଗଲୁ । ସେତେବେଳେ ଗିରଣ ଗ୍ରସ୍ତ ଆମ ପାର୍ଟିରେ ଥିଲେ । ବିରୋଧୀ ଦଳର ଲୋକେ ଆମକୁ ସଭା କରାଇ ଦେଲେ ନାହିଁ । ସବୁଆଡ଼େ ପ୍ରବଳ ବିରୋଧ ହେଲା । ସୋନାରାମ୍ ସୋରେନ୍ ବସ୍ତ୍ର ପିଆଜର ମାଳ ବେକରେ ପକାଇ ସାନ୍ତାଳ ଯୁବତୀମାନଙ୍କୁ ନେଇ ଆମ ସଭା ପାଖରେ ସାନ୍ତାଳ ନାଚ କଲେ । ମୟୂରଭଞ୍ଜର ମଧୁବନୀ ଓଳାରେ ପ୍ରସନ୍ନ ଦାସ ପ୍ରଭୃତି ସଭା ଭାଙ୍ଗିବାର ସମସ୍ତ ଚେଷ୍ଟା କଲେ । ଏଠାରେ ମଧ୍ୟ ଧାଙ୍ଗଡ଼ା ନାଚ ହେଲା । ସେତେବେଳେ ଶରତଚନ୍ଦ୍ର ଦାସ ମୟୂରଭଞ୍ଜର ମୁଖ୍ୟମନ୍ତ୍ରୀ ଥିଲେ । ପରେ ଅବଶ୍ୟ ପ୍ରସନ୍ନ ଦାସ ଆମ ପାର୍ଟିରେ ମିଶି ମୟୂରଭଞ୍ଜରେ ବହୁଥର ପାର୍ଟି ଟିକେଟରେ ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି । ଅଜି ସେ ବିଧାନସଭାର ବାଚସ୍ପତି ।

ସେହିବର୍ଷ ଡିସେମ୍ବର ମାସରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓଡ଼ିଶା ଆସିଲେ । ଓଡ଼ିଶାର ସମସ୍ତ ଗଡ଼ଜାତଗୁଡ଼ିକୁ ମୋଗଲବନ୍ଦୀରେ ମିଶାଇ ଦେଲେ । ଏକ ବୃହତ୍ତର ଓଡ଼ିଶା ଗଠନ ହେଲା । ସେହି ଦିନଟି ଚିରସ୍ମରଣୀୟ ହୋଇ ରହିଛି । ୧୯୪୭ ଡିସେମ୍ବର ୧୪ ତାରିଖ ।

୧୯୪୭ରେ ପାର୍ଟି ଅଫିସରେ ଥିବାବେଳେ ଥରେ ଢେଙ୍କାନାଳର ଭୁବନ ଗାଁରେ ନିଆଁ ଲାଗିଲା । ଭୁବନ ଗ୍ରାମଟି ସମଗ୍ର ଓଡ଼ିଶାରେ ବିରାଟ ଗ୍ରାମ । ଗୋଟିଏ ଘରେ ନିଆଁ ଲାଗିଲେ ସମଗ୍ର ଗ୍ରାମଟି ଭସ୍ମ କରିଦେବ । ସମ୍ବାଦପତ୍ରରୁ ପଢ଼ି ବାପୁଜୀଙ୍କୁ କହିଲି । ସାରଙ୍ଗଧରବାବୁ ମଧ୍ୟ ଚିଠି ଲେଖିଲେ । ସଙ୍ଗେ ସଙ୍ଗେ ତାଙ୍କ ପୂଜ୍ୟବ୍ରତ ବନ୍ଧୁମାନଙ୍କୁ କହିଲେ ଏବଂ ନିଜେ ମଧ୍ୟ ଟଙ୍କା ଯୋଗାଡ଼ କରିଦେଲେ । ଲୁଗାପଟା କେତେ ହେଲା । ଗୁହଳ, ଚୂଡ଼ା, ଅଟା ଇତ୍ୟାଦି ନେଇ ନୀଳକଣ୍ଠଦ୍ୱାରଠାରେ ବ୍ରାହ୍ମଣୀ ନଦୀ ପାର ହୋଇ ବଳଦ ଗାଡ଼ିରେ ଲଦାଲଦି କରି ଭୁବନରେ ପହଞ୍ଚିଲୁ । ଆମ ଦଳରେ ଥାଆନ୍ତି ଭାରତ ସେବକ ସମାଜର ମୁଖ୍ୟ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ମିଶ୍ର, ସୋସିଆଲିଷ୍ଟ ନେତା ବାଙ୍କବିହାରୀ ଦାସ, ମୁଁ ଏବଂ ମୋର ବନ୍ଧୁ ସ୍ୱର୍ଗତଃ ଦୟାନିଧି ଦାସ । ଶ୍ୟାମବାବୁ ମଧ୍ୟ ତାଙ୍କ ଅନୁଷ୍ଠାନ ତରଫରୁ କିଛି ଅର୍ଥ ନେଇ ଯାଇଥିଲେ ।

ସେଠାକାର ସ୍କୁଲ ଗ୍ରାମଠାରୁ ଟିକିଏ ଦୂରରେ । ସେହିଠାରେ ରହିଲୁ । ଘର ଘର ବୁଲି ବିବରଣୀ ସଂଗ୍ରହ କଲୁ । ପ୍ରାୟ ଅର୍ଦ୍ଧେକ ଗ୍ରାମ ଧ୍ୱଂସ ସ୍ତୂପରେ ପରିଣତ ହୋଇଥାଏ । ଲୋକମାନେ ପ୍ରଚଣ୍ଡ ଗ୍ରୀଷ୍ମରେ ଯାହା କଲବଲ ହେଉଥାନ୍ତି

ଦେଖିଲେ ଆଖିରେ ଲୁହ ଚହଲିବନି । ପାଷାଣ ହେଲେ ବି ତାର ହୃଦୟ ତରଳି ଯିବ । ତିନୋଟି ଦିନ ରହିଲୁ । ସ୍କୁଲର ଶିକ୍ଷକ ଛାତ୍ରମାନେ ଏବଂ ସ୍ଥାନୀୟ ଭଦ୍ରବ୍ୟକ୍ତିଙ୍କ ସହାୟତାରେ ଶୃଙ୍ଖଳିତଭାବରେ ବଣ୍ଟନ ହୋଇଗଲା । ଏତେ ଦୁରବସ୍ଥା ସତ୍ତ୍ୱେ ସେମାନେ ଆମକୁ ଯେଉଁ ଆତିଥ୍ୟ ପ୍ରଦର୍ଶନ କରିଥିଲେ ତାହା ଭୁଲିବାର ନୁହେଁ । ସେଠାରୁ ଫେରି କପିଳାସ ଦର୍ଶନ କରି କଟକ ଲେଉଟି ଆସିଲୁ ।

ଶ୍ୟାମବାବୁ ଆଜି ଚଳଚ୍ଛକ୍ତିହୀନ ରହିଛନ୍ତି । ଗୁଲିବାରେ ବଡ଼ କଷ୍ଟ । ତାଙ୍କ ଭଳି ଜଣେ ଗୁଣୀ, ଜନସେବକ, ଜ୍ଞାନୀ, ସ୍ୱାଧୀନଚେତା ମାନ୍ୟଗଣ୍ୟ ବ୍ୟକ୍ତି ସେତେବେଳେ କି ସୁନ୍ଦର ସ୍ୱାସ୍ଥ୍ୟ, କି ସୁନ୍ଦର ବଳିଷ୍ଠ ହସ୍ତପଦ, ମନର କି ବଳ ! ତାଙ୍କ ସାହସ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କପିଳାସ ପାହାଡ ଉପରକୁ ଯିବାକୁ ଅନେକ ପାହାଚ ପଡ଼େ । ସେତେବେଳେ ଆମେ ଯୁବକ ହେଲେ ମଧ୍ୟ ସେ ଆମକୁ ଟପି ଚାଲି ଯାଉଥାନ୍ତି । ଅଜି ତାଙ୍କ କଥା ଭାବିଲେ ମନରେ ଦୁଃଖ ଆସେ । ବ୍ୟଥା ଲାଗେ । ଖାଇବାବେଳେ ମଧ୍ୟ ଆମେ ପଛରେ ପଡ଼ିଯାଉଥାଉ ।

ପାର୍ଟି ଅଫିସରେ ଥାଇ ମୁଁ ଭୀଷଣ ବେମାର ପଡ଼ିଲି । ପାର୍ଟି କାର୍ଯ୍ୟରେ ମୁଁ ବାଙ୍କି ଯାଇଥିଲି । ସେହିଠାରୁ ଜ୍ୱର ନେଇ ଆସିଲି । ଅର୍କାଇଟିସ୍ ହୋଇ ଗଲା । ପ୍ରାୟ ଦୁଇ ତିନିଦିନ ପର୍ଯ୍ୟନ୍ତ ବେହୋସ ଅବସ୍ଥାରେ ଥିଲି । ୧୫ ଦିନ ପରେ ହସ୍‌ପିଟାଲରୁ ଫେରିଲି । ଏହିଠିଁ ମୋତେ ଏବଂ ମୋର ସ୍ତ୍ରୀକୁ ବିଧିବଦ୍ଧ ଭାବରେ ବାବୁଭାଇ ସୋସାଲିଷ୍ଟ ପାର୍ଟିର ସଭ୍ୟଭୁକ୍ତ କଲେ ।

ଜୟପ୍ରକାଶଜୀ ଓଡ଼ିଶା ଆସିଲେ । ଆମେମାନେ ପ୍ରବଳ ଉତ୍ସାହରେ ଲାଗି ପଡ଼ିଲୁ । ସୋସାଲିଷ୍ଟ ପାର୍ଟି ତରଫରୁ ତାଙ୍କ ସ୍ୱାଗତ ଲାଗି ବିପୁଳ ଆୟୋଜନ କରାଗଲା । ମୋର ସ୍ତ୍ରୀ ଡକ୍ଟେରଲର ଘରେ ଘରେ ବୁଲି ଚାନ୍ଦା ଆଦାୟ କଲେ । ଡକ୍ଟେରଲର ଏକ ବିରାଟ ଜନ ସଭାରେ ତାଙ୍କ ହାତରେ ଥଳି ଭେଟି ଦେଲେ । ଶରତକୁମାରୀଙ୍କ କାର୍ଯ୍ୟକୁଶଳତା ଦେଖି ଜୟପ୍ରକାଶଜୀ ସନ୍ତୁଷ୍ଟ ହେଲେ । ବିଭିନ୍ନ ସଭାରେ ତାଙ୍କୁ ଯେଉଁ ପାର୍ସି ଦିଆଗଲା, ସେଥିରେ କୃଷକ ପ୍ରେସ୍ କଣାଗଲା । ପାର୍ଟିର ଅର୍ଥିକ ଅବସ୍ଥା ସୁଧୁରିଲା । ଜନଶକ୍ତି ପୁସ୍ତକାଳୟ ନାମରେ ଏକ ପ୍ରଗତି-ଶୀଳ ପୁସ୍ତକ ଭଣ୍ଡାର ଖୋଲାଗଲା । କିନ୍ତୁ ଆମ ପାର୍ଟିର କର୍ମକର୍ତ୍ତାଙ୍କ ଅବହେଳା ଯୋଗୁଁ ସେ ପୁସ୍ତକ ଭଣ୍ଡାର ଦ୍ୱାରା ପାର୍ଟି ଜମାରୁ ଉପକୃତ ହୋଇପାରିଲା ନାହିଁ ବା କୌଣସି ଅର୍ଥିକ ସହାୟତା ମିଳିଲା ନାହିଁ ।

୧୯୪୮ ମସିହା ପାଦ ବଢ଼େଇଲା । ଜାନୁଆରୀ ୮ ତାରିଖରେ ମଧୁପୁର ହାଉସ୍‌ରେ ନୂଆ ହୋଇ ଆକାଶବାଣୀର ଏକ ଶାଖା ଉଦ୍‌ଘାଟନ ହେଲା । ଶ୍ରୀ ଯଗନ୍ନାଥ ଦାସ ଓଡ଼ିଆ ପ୍ରୋଗ୍ରାମ୍ ପରିଚାଳନା କରୁଥାନ୍ତି । ମୋତେ ଗୋଟିଏ ପାର୍ଟି ଦେଲେ । ଖୁବ ଖୁସି ଲାଗିଲା । ଶଙ୍କିତ ହୃଦୟରେ କଲେ ମଧ ଭଲ ହେଲା ବୋଲି ଯଗନ୍ନାଥ ଦାସ ମୋତେ କହିଲେ । ଏପର୍ଯ୍ୟନ୍ତ ଜଣେ ଗୀତକାର, ସଙ୍ଗୀତ ବିଚାରର ଲେଖକ, ନାଟ୍ୟକାର, ଅଭିନେତା, ବକ୍ତା ହିସାବରେ ମୋର ଆକାଶବାଣୀ କଟକ ଏବଂ ଦୂରଦର୍ଶନ କଟକ ସହିତ ଘନିଷ୍ଠ ସମ୍ପର୍କ ରହିଛି ।

ଜାନୁଆରୀ ୨୯ ତାରିଖରେ ଅନ୍ତର୍ଯ୍ୟାମୀ ପଣ୍ଡା ଓ ଶୋଭାଦେବୀଙ୍କ କନ୍ୟା ଉର୍ବଶୀ (ଗୀତା)ର ବିବାହ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସହିତ କେନ୍ଦୁପାଟଣାରେ ହେଲା । ହରିଦ୍ୱାରର ଗୁରୁକୁଳ ଆଶ୍ରମରେ ପ୍ରାୟ ୧୬ ବର୍ଷ କାଳ ହିନ୍ଦୀ ଏବଂ ସଂସ୍କୃତରେ ଉପାଧି ନେଇ ଗାଁକୁ ଫେରିଥାଏ । ବର ରାମଚନ୍ଦ୍ରପୁରଠାରେ ଶିକ୍ଷକତା କରୁଥିଲା ।

ଆମ ପାର୍ଟିର ବହୁ କର୍ମୀ ଏବଂ ସୁରେନ୍ଦ୍ରବାବୁଙ୍କ ଆତ୍ମୀୟସ୍ୱଜନ ଯୋବ୍ରାରୁ ଗୋଟିଏ ଲଞ୍ଚରେ ବସି କେନ୍ଦ୍ରାପଡ଼ା କେନାଲରେ କେନ୍ଦୁପାଟଣା ଗଲୁ । ଅତି ନିରାଡ଼ମ୍ବର ଭାବରେ ଅଥଚ ବିପୁଳାନନ୍ଦରେ ବିବାହର ସମ୍ପନ୍ନ ହେଲା । ସାରଙ୍ଗଧର ବାବୁ ଏବଂ ନବବାବୁ ମଧ ଯାଇଥିଲେ । କାଳୁ (ବିନାୟକ) କ୍ୟାମେରାଟିଏ ନେଇ ବହୁ ଫଟୋ ଉଠାଇଥାନ୍ତି । ରାତିରେ ସମସ୍ତଙ୍କୁ ହସାଇବାର ପାଳି ପଡ଼ିଲା ମୋ ଉପରେ ।

୩୦ ତାରିଖ ଦିନ ଆକୁଳି ମିଶ୍ରଙ୍କ ତେଲେଙ୍ଗା ବଜାରସ୍ଥ ବାସଭବନକୁ ବରକନ୍ୟାଙ୍କ ସହ ଫେରି ଆସିଲୁ । ଏହିଠୁ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସାନମାଉସୀଙ୍କ ସହ ମୋର ପରିଚୟ ହେଲା । ତାଙ୍କ ସାନ ପୁଅ ବଳୁ କେନ୍ଦୁପାଟଣା ଯାଇଥିଲା । ମୋତେ କେଜାଣି କାହିଁକି ସେ ପିଲାଟି ଭଲ ଲାଗିଲା । ସେ ମଧ ମୋତେ ଭଲପାଇ ବସିଲା । ଶ୍ରେଷ୍ଠ ପିଲାଟିଏ ମୋଠାରୁ ହସଖୁସିର କଥା ଶୁଣି ଏତେ ଆନନ୍ଦିତ ହୋଇଥାଏ ଯେ, ମୋ ପାଖ ଛାଡ଼ୁନ ଥାଏ । ବଳୁ ହିଁ ମୋତେ ମାଉସୀଙ୍କ ସହିତ ପ୍ରଥମ ଚିହ୍ନା କରେଇ ଦେଲା । ମାଉସୀଙ୍କୁ ଦେଖି, ତାଙ୍କ କଥାଶୁଣି ମୋର ପ୍ରାଣ ପୂରି ଉଠିଲା । ତାଙ୍କ ସରଳ ମଧୁର ବ୍ୟବହାର ମୋତେ ମୁଗ୍‌ଧ କରି ଦେଲା । ମୋର ଦେହ ଓ ମନ ତାଙ୍କ ଚରଣ ତଳେ ଲୋଟି ପଡ଼ିଲା । ସେହିଦିନଠାରୁ ମୁଁ ଓ ମୋ ସ୍ତ୍ରୀ ତାଙ୍କର ବଡ଼ ପୁଅ ଓ ବଡ଼ବୋହୂ ହୋଇଗଲୁ । ଏମିତି ତ ସେ ସମସ୍ତଙ୍କୁ ଶ୍ରଦ୍ଧା କରନ୍ତି । ଯୋଗୀ ଭିକାରୀ ତାଙ୍କ ଘରୁ ଖାଲି ହାତରେ ଫେରନ୍ତି ନାହିଁ । ଦାନ

ଦୁଃଖୀଙ୍କ ପାଇଁ ତାଙ୍କ ଦ୍ୱାର ସର୍ବଦା ଉନ୍ମୁକ୍ତ । ଆମକୁ ଅତି ଆଦରରେ, ମମତାରେ ସେ ଗ୍ରହଣ କଲେ । ମଉସାଙ୍କ ସ୍ନେହ ମଧ୍ୟ ଅଫୁରନ୍ତ । ମଉସା ଓ ମାଉସୀ ଦେବ-ପ୍ରତିମ । ପିଲାମାନେ ମଧ୍ୟ ସେମିତି ନିଜ ପରିବାରଠୁ ଅଧିକ ମନେ କରନ୍ତି । ଏ ପରିବାର ସହିତ ନିଜକୁ ମିଶେଇ ଦେବା କମ୍ ସୌଭାଗ୍ୟର କଥା ନୁହେଁ ।

ବରକନ୍ୟାଙ୍କୁ ଘରେଘୁଞ୍ଚ ଖାଇପିଇ ବଜାର ବାଟ ଦେଇ ପାର୍ଟି ଅଫିସକୁ ଫେରୁଛୁ, ହଠାତ୍ ରେଡ଼ିଓରୁ ଶୁଣିଲି ଗାନ୍ଧିଜୀ ଆଉ ଇହଜଗତରେ ନାହାନ୍ତି । ବିରଳା ଭବନରୁ ପ୍ରାର୍ଥନା ସଭାକୁ ଯାଉଥିବାବେଳେ ନାଥୁରାମ୍ ଗଡ଼୍‌ସେ ନାମକ ଜଣେ ଆତତାୟୀର ଗୁଳିଘାତରେ ସେ ଟଳିପଡ଼ିଲେ । ବିଶ୍ୱାସ କରିପାରିଲି ନାହିଁ । ଜାତିର ଜନକ, ସ୍ୱାଧୀନତାର ପୁରୋଧା ମହାମାନବଙ୍କର ଏପରି ଭାବରେ ମୃତ୍ୟୁ ହୋଇପାରେ । ସେ ପୁରାଣର କଥା । ଏମିତି ଦିନେ ଜାରା ଶବରର ନାରାଚରେ ଭଗବାନ ଶ୍ରୀକୃଷ୍ଣ ଟଳି ପଡ଼ିଥିଲେ ।

ରେଡ଼ିଓ ମାଧ୍ୟମରେ ଏ ଖବର ଶୁଣି ସ୍ତବ୍ଧ ଆଉ ଶୋକର ଛାୟା ଖେଳି-ଗଲା । ଏ ଦେଶ, ଏ ଜାତି ଗାନ୍ଧିଜୀଙ୍କୁ ହରାଇ ଅତି ବ୍ୟାକୁଳ ହୋଇ ପଡ଼ିଲା । ଅଶ୍ରୁର ଧାରା ମୁଁ ରୋଧ କରି ପାରିଲି ନାହିଁ । କଟକଠାରେ ତାଙ୍କ ସାନ୍ନିଧ୍ୟରେ ଆସି ମୁଁ ଜାଣିଥିଲି କାହିଁକି ଲୋକେ ତାଙ୍କୁ ମହାତ୍ମା କହନ୍ତି । କାହିଁକି ମୋହନ ଦାସ କରମ୍‌ଚାନ୍ଦ ଗାନ୍ଧୀ ବିଶ୍ୱପୂଜ୍ୟ ଥିଲେ । ଦେଶକୁ ଯିଏ ସ୍ୱାଧୀନ କଲା, ଦାସତ୍ୱରୂପୀ ଶୃଙ୍ଖଳରୁ ଯିଏ ଏ ଜାତିକୁ ମୁକ୍ତ କଲା, ଯାହାର ନିଷ୍ଠା, ଚରିତ୍ରବଳ, ଆତ୍ମତ୍ୟାଗ ବିଦେଶୀ ଶକ୍ତିର ମଥା ନୁଆଁଇ ଦେଲା, ବିଧାତା ପୁଣି ତାଙ୍କ ପାଇଁ ଏମିତି ମୃତ୍ୟୁ ରଚିଥିଲା ?

ବାସ୍ତବିକ ଗାନ୍ଧିଜୀ ବିରାଟ ପୁରୁଷ, ଭାରତ ସ୍ୱାଧୀନତା ଆନ୍ଦୋଳନର ଅଗ୍ନିହୋତ୍ରୀ । ପରାଧୀନ ଭାରତର ସେ ଥିଲେ ଆଶା ଓ ଭରସା । ସେହି ଜ୍ୟୋତି-ର୍ମୟ ପୁରୁଷ ପୁଣି ଜଣେ ଭାରତୀୟ ହାତରେ ନିହତ ହେଲେ । ମୁଁ ଏକା ନୁହେଁ, ସମଗ୍ର ଭାରତ ସେଦିନ କାନ୍ଦିଥିଲା । ନେହେରୁ ଲେଖିଲେ—Light has gone out of our life.—ଅର୍ଥାତ୍ ଆମ ଜୀବନରୁ ଏକ ଜ୍ୟୋତି ଲିଭି ଗଲା । ସମସ୍ତେ ଏକ ମହାମାନବର ମୃତ୍ୟୁରେ ଶୋକମ୍ଲାନ । ମନୀଷୀର ଅଧଃପତନରେ ମର୍ମାହତ ହୋଇ ମନକୁ ମନ ପଚାରିଲି—ଏଡ଼େ ବଡ଼ଲୋକଙ୍କୁ ସେ ହତ୍ୟାକଲା ବା କାହିଁକି ? କାହିଁକି ମନିଷ ମଣିଷକୁ ନିହତ କରେ ? ରାଜନୈତିକ ନେତାମାନଙ୍କ ଆଡ଼ମ୍ବର ପୂର୍ଣ୍ଣ ବିକୃତ-ବିଳାସ ନୁହେଁ, ଦାର୍ଶନିକମାନଙ୍କର ତତ୍ତ୍ୱ କଥା ନୁହେଁ, ଏକ

ମହାନ ଜୀବନର ଅବସାନରେ ପ୍ରାଣର ବେଦନା ନୁହେଁ—ଯାହାଙ୍କୁ ମୁଁ ଏତେ ଭକ୍ତି କରୁଥିଲି, ନିଜ ହୃଦୟରେ ଦେବତାର ସ୍ଥାନ ଦେଇଥିଲି, ତାଙ୍କ ଲାଗି ଅନ୍ତରରେ ପରିପୂର୍ଣ୍ଣ ବେଦନା ସେଦିନ ଜାଗି ଉଠିଥିଲା । ଗାନ୍ଧିଜୀଙ୍କ ମୃତ୍ୟୁ ଭଳି ଏପରି ମର୍ମାନ୍ତିକ ଘଟଣା ଆଉ ଘଟିନି । ଖାଲି ଭଗବାନ ସମସ୍ତଙ୍କ ଅନ୍ତରରେ ଅଛନ୍ତି । ତେବେ ନାଥୁରାମ୍‌ର କାହିଁକି ଏପରି ଭୀମ ମୂର୍ତ୍ତି ? କାହିଁକି ତାର ଏତେ ଭୟାବହ ରକ୍ତ ପିପାସା ?

ହାୟରେ ଦେଶ . ହାୟରେ ଜନତା ! ଗାନ୍ଧିଜୀଙ୍କ ମୃତ୍ୟୁ ପରେ କଂଗ୍ରେସ ମଧ୍ୟରେ ଧୀରେ ଧୀରେ ବିଭେଦର ବୀଜ ବପନ ହେଲା, ଯାହା ଦିନେ ବିରାଟ ବୃକ୍ଷ ହୋଇ ତାର ଶାଖା ପ୍ରଶାଖା ଦେଶମୟ ବିସ୍ତାର କଲା । ସନ୍ତୁଷ୍ଟ ଓ ଅସନ୍ତୁଷ୍ଟ ଗୋଷ୍ଠୀର ସୃଷ୍ଟି କଲା । ପରସ୍ପର ମଧ୍ୟରେ ମନୋମାଳିନ୍ୟ, ମତାନ୍ତର ଓ ମତାନ୍ତର ଜନ୍ମଲାଭ କଲା । ସୌହାର୍ଦ୍ଦପୂର୍ଣ୍ଣ ବାତାବରଣ ଧୀରେ ଧୀରେ ବିଷାକ୍ତ ହୋଇ-ଯିବାକୁ ଲାଗିଲା ।

ଏଠାରେ ଅନ୍ୟ ଏକ ଉଲ୍ଲେଖନୀୟ ଅଥଚ ମର୍ମନ୍ତୁଦ ଏବଂ ହୃଦୟ ବିଦାରକ ଘଟଣା ଲିପିବଦ୍ଧ କରୁଛି । ଯାହା ମୁଁ ନିଜ ଆଖିରେ ଦେଖିଥିଲି, ନିଜ ଅଙ୍ଗେ ନିଭେଇ ଥିଲି ଏବଂ ମୃତ୍ୟୁକୁ ଭୟ ନ କରି ସେବାକୁ ବଡ଼ ଖାଲି ଆଗେଇ ଯାଇଥିଲି । ମୁଁ ଏକା ନୁହେଁ ମୋ ସାଥିରେ ଥିଲେ ଅନେକ କେତେ ଜଣ ବନ୍ଧୁ । ସମସ୍ତଙ୍କ ନାମ ମୋର ସ୍ମରଣ ହେଉନି । ତେବେ ଜଣେ ଗୁଜରାଟି ବନ୍ଧୁ ଥିଲେ ଶାନ୍ତି ଭାଇ ଠକର । ଖାସି ଡରୁଆ । ହଇଜା ନାଁ ଶୁଣିଲେ ଶିହରି ଉଠୁଥିଲେ । କିନ୍ତୁ ଏପରି ଅବସ୍ଥା ହେଲା ଯେ ଶାନ୍ତି ଭାଇ ରୋଗୀ ସେବାରେ ନିଜକୁ ହଜାଇ ଦେଲେ । ଲୋକ ଶୋଷ ଭୁଲି ରୋଗୀଙ୍କର ଅକ୍ଳାନ୍ତ ସେବା କଲେ । ଆଜି ବି ଶାନ୍ତିଭାଇ ଅଛନ୍ତି କଟକରେ ।

ଘଟଣାଟି ହେଉଛି ଅନୁଗୁଳର କିଛି ଦୂରରେ ରନ୍ତଲେଇ ବୋଲି ଗୋଟିଏ ଗାଁ । ତା ନିକଟରେ ଘନ ଜଙ୍ଗଲ । ସେଠାରେ ଅନେକ ପ୍ରକାର ଚେରମୂଳ ମିଳେ, ଯେଉଁଥିରେ କେତେକ ରୋଗ ଆରୋଗ୍ୟ ହୁଏ । ଅନେକ ଲୋକ ତାହା ସଂଗ୍ରହ କରିବା ସକାଶେ ଅସିଥାନ୍ତି । କେତେକ ନୀଚସ୍ୱାର୍ଥ ବ୍ୟବସାୟୀ ଗୋଷ୍ଠିଙ୍କ ମୁଣ୍ଡରେ ଏକ ବୁଦ୍ଧି ଖେଳିଲା । ସେମାନେ ରାତାରାତି ଗୋଟିଏ ଗାଈ ଜଗୁଆଳ ପିଲାକୁ ଲଣ୍ଡାକରି, ଗେରୁଆ ବସ୍ତ୍ର ପିନ୍ଧାଇ, ବେକରେ ରୁଦ୍ରାକ୍ଷ, ତୁଳସୀମାଳି ଇତ୍ୟାଦି ପକାଇ, ତାର ନାମ ନେପାଳୀ ବାବା ଦେଇ ଶୁଆକୁ ପଢାଇବା ଭଳି କେତେକ କଥା ତାକୁ ଶିଖେଇ ଦେଲେ ।

ଦେଶ ଆଡେ ପ୍ରଚାରପତ୍ର ବଣ୍ଟାଗଲା । ଖବରକାଗଜ ମାନଙ୍କରେ ବିଚିତ୍ର କଥା-
ମାନ ପ୍ରକାଶ ପାଇଲା । ଦକ୍ଷିଣ ଭାରତ, ଉତ୍ତର ଭାରତ, ପୂର୍ବ ଭାରତ, ମଧ୍ୟଭାରତର
ଚାରିଆଡ଼େ ତାହା ପ୍ରଚାରିତ ହେଲା । ଆସିଲେ ଗୁଜରାଟୀ, ମରାଠୀ, ହିନ୍ଦୁସ୍ଥାନୀ,
ବିହାରୀ, ମଧ୍ୟପ୍ରଦେଶର ଲୋକ, ତେଲୁଗୁ, ତାମିଲ, କର୍ଣ୍ଣାଟକୀ, ଆସାମୀ, ବଙ୍ଗାଳୀ,
କେରଳୀ, ସବୁ ଆଡ଼ର ଲୋକେ ସକୁଟୁମ୍ବେ । ଗାଡ଼ି, ବସ୍, କାର୍, ଜିପ୍‌ରେ ଆସି
ପୂର୍ଣ୍ଣ ହେଲେ, ଶହ ଶହ, ହଜାର ହଜାର ସଂଖ୍ୟାରେ । ଯାହା ଦିନେ ଗଛ ପଥର
ଅରଣ୍ୟ ଥିଲା, ତାହା ଜନ ଅରଣ୍ୟରେ ପରିଣତ ହେଲା । ଛୋଟିଆ ପୋଖରୀଟିଏ ।
ପିଇବା ପାଣି, ଗାଧୋଇବା ପାଣି, ଲୁଗାଧୁଆ ପାଣି ଓ ଅନ୍ୟାନ୍ୟ ନିତ୍ୟକର୍ମର ପାଣି
ତା' ମଧ୍ୟରେ ହେଲା । ଜିନିଷର ଭାଉ ବଢ଼ିଲା । ପଇସା ଦର ଚେଙ୍କିଲା । ଦି' ପଇ-
ସାର ଦାମ ହେଲା ଦୁଇଟଙ୍କା । ତାହା ମଧ୍ୟ ଅଭାବ ପଡ଼ିଲା । ନେପାଳୀବାବାର ପାଦ
ଛୁଇଁବା ପାଇଁ ଲୋକଙ୍କ ମଧ୍ୟରେ କି ଆଗ୍ରହ, କି ଉତ୍ସାହ, ସେଥିପାଇଁ ପ୍ରତିଯୋଗିତା
ଚାଲିଲା । ଲୋକେ ଭଲକରି ଗଣ୍ଡିଏ ଖାଇ ପାରିଲେ ନାହିଁ, ଭଲ ପାଣି ଟୋପିଏ
ପିଇ ପାରିଲେ ନାହିଁ । ରହିବାର ସ୍ଥାନ ନାହିଁ । ଖରା, କାକର, ବର୍ଷାରେ ଗଛ-
ମୂଳେ ପଡ଼ି ରହିଲେ । ଏ ଭାବ ଅନେକ ଦିନ ଧରି ଚାଲିଲା । ଏତେ ଅସୁବିଧା ସତ୍ତ୍ୱେ
ଲୋକେ ଅବିରାମ ଗତିରେ ଚାଲିଥାନ୍ତି । ଫଳରେ ଦେଖାଦେଲା ବିସୂଚିକା । ଭୀଷଣ
ହଇଜା । ସ୍ୱାସ୍ଥ୍ୟ ବିଭାଗର ଘୋର ଅବହେଳା, ପୋଲିସ୍ ବିଭାଗର ଚରମ ଉଦାସୀ-
ନତା ଫଳରେ ଔଷଧ, ପଥ୍ୟ ବିନା ଶହ ଶହ ଲୋକ ରାସ୍ତାକଡ଼ରେ ଟଳି ପଡ଼ିଲେ ।
ଜୀବନ ବିକଳରେ ଅନେକ ଅନୁଗୁଳରୁ କଟକ ପଳେଇ ଆସିଲେ । ବସ୍, ଟ୍ରେନରେ
ଯିଏ ମରି ଯାଉଥାନ୍ତି ତାଙ୍କୁ ରାସ୍ତାକଡ଼ରେ ଫୋପାଡ଼ି ଦିଆ ଯାଉଥାଏ । କଟକ
ଷ୍ଟେସନ୍‌ରେ ଭୀଷଣ ଭିଡ଼ । ରେଭେନ୍‌ସା କଲେଜ ହତା, କଲେଜ, (ସେତେ-
ବେଳେ ୟୁନିଭରସିଟି ଅଫିସ୍ ଥିଲା) ଡାକବଙ୍ଗଳା ହତାରେ କେତେ ମରୁଥାନ୍ତି,
ତାର କେହି ହିସାବ ରଖିନାହିଁ । ଅନୁଗୁଳରୁ କଟକ ଯାଏ ହା' ହା' କାର ପଡ଼ି-
ଗଲା । ତାଡ଼ା ତାଡ଼ା ନୋଟ୍ କିଏ କୁଆଡ଼େ ନେଇ ଯାଉଥାନ୍ତି । ସୁନା ଅଳଙ୍କାର
ମୁର୍ଦ୍ଦାରମାନଙ୍କ ଦେହରୁ ମେହେନ୍ତରମାନେ ହାତେଇ ଥାନ୍ତି । ସେତେବେଳେ ଜିଲ୍ଲା
ସ୍ୱାସ୍ଥ୍ୟ ବିଭାଗ ଅଫିସର୍ ନାରାୟଣ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ମେରାମୁଣ୍ଡଳି ପର୍ଯ୍ୟନ୍ତ
ଯାଇଥିଲୁ । ଯିଏ ମରିଗଲା ତାର ଶବ କଟକ ନେଇ ଆସୁଥିଲୁ । ଯେ ବଞ୍ଚିଥିଲା
ତାର ସେବା ଶୁଶ୍ରୂଷା କରୁଥିଲୁ ।

ଏମିତି ଅନେକ ଦିନ ଚାଲିଲା । ସ୍ୱାସ୍ଥ୍ୟବିଭାଗର ତତ୍ପରତା ଫଳରେ ମେରା-
ମୁଣ୍ଡଳିଠାରୁ କଟକ ଆସୁଥିବା ଯାତ୍ରୀମାନଙ୍କର ବିସୂଚିକା କିଛିଟା ଉପଶମ ହେଲେ

ମଧ୍ୟ ଅନୁଗୁଳ ଏବଂ ରଣ୍ଡୋଳିଇରେ ସ୍ୱାସ୍ଥ୍ୟ ବିଭାଗର ଚରମ ଅବହେଳା ଫଳରେ ମୃତ୍ୟୁସଂଖ୍ୟା ଦିନକୁ ଦିନ ବଢ଼ିଲା ।

ସେମାନେ ଜୀବନ ବିକଳରେ କଟକ ପଳେଇ ଆସିଲେ ଅତି, କିନ୍ତୁ ମୃତ୍ୟୁ ହାତରୁ ସହଜରେ ରକ୍ଷା ପାଇ ପାରିଲେ ନାହିଁ । ସେତେବେଳର ଦୃଶ୍ୟ ମୋ ଆଖି ଆଗରେ ନାଚି ଉଠିଲେ, ହୃଦୟ ହା' ହା' କାର ହୋଇଉଠେ । ପାଷାଣ ହୃଦୟ ମଧ୍ୟ ତରଳି ଯାଏ । ମା'ର ସ୍ତନରେ ଶ୍ରେଷ୍ଠ ଶିଶୁଟି ମୁହଁ ଲଗେଇଛି, କିନ୍ତୁ ମା' ନାହିଁ ? ତୃଳୀତଳରେ ଯାହାକୁ ନିଦ୍ରା ହେଉ ନ ଥିଲା, ସେ ଧୂଳିଧୂସରିତ । ସ୍ୱାମୀ କୋଳରେ ସ୍ତ୍ରୀ ମୃତ । ସ୍ତ୍ରୀ କୋଳରେ ସ୍ୱାମୀ ଭୂଲୁଣ୍ଠିତ, ଶ୍ମଶାନର ସାକ୍ଷୀ । ଏ ଦୃଶ୍ୟ ବର୍ଣ୍ଣନା କରିବାର ଭାଷା ମୋ ନିକଟରେ ନାହିଁ । କଟକ ଷ୍ଟେସନରୁ ଶବ ବୁହା ଚାଲିଥାଏ ଖାନନଗର ଓ କାଳିଆ ବୁଦାକୁ । ହରିଜନ ଓ ଗରିବ କଟକବାସୀ ସେ ସ୍ଥାନ ମାଡ଼ୁ ନ ଥାନ୍ତି । ମୁଁ ଏବଂ ମୋ ନେତୃତ୍ୱରେ କେତେକ କର୍ମୀ ଜୀବନକୁ ପାଣି ଛଡ଼େଇ ଅନେକ ସେବାକାର୍ଯ୍ୟ କରିଛୁ । ସରକାରୀ କର୍ତ୍ତୃପକ୍ଷ ମଧ୍ୟ ଆମ କାର୍ଯ୍ୟର ପ୍ରଶଂସା କରିଛନ୍ତି । ନିଜର ଗୁଣ ନିଜେ ଗାଇ ହେବା ଅଶୋଭନୀୟ ।

ପୂଜ୍ୟା ମାଳତୀ ଦେବୀ (ନୂମା) ରଣ୍ଡୋଳିଇ ଯାଇ ନେପାଳୀବାବା ଗାଳରେ ଠୋ ଠୋ ଶ୍ରେଣୀଟି ଜ୍ୱ ବୁଢ଼ୀ କରି ନ ଦେଇଥିଲେ, ସ୍ଥିତି ଆହୁରି ବିକଟ ରୂପ ଧାରଣ କରିଥାନ୍ତା । ତଥାପି ଲୋକେ ମରୁଥାନ୍ତି, କିନ୍ତୁ ଆସୁ ଥାଆନ୍ତି । ମାଳତୀ ଦେବୀଙ୍କ ବିରୁଦ୍ଧରେ ସେଠାକାର ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ଏକ ମେଣ୍ଟ ବାନ୍ଧିଲେ । କିନ୍ତୁ ଇଂରେଜ ସରକାର ଗୁଳାଗୁଳି, ଜେଲର ଯିଏ ସମ୍ମୁଖୀନ ହୋଇଛି ତାର ଏମାନେ କଣ କରିବେ ?

ହାଏରେ ଆମ ଲୋକ, ଆମ ସମାଜ, ଆମ ଦେଶ ! ସେମାନଙ୍କ କଥା ଭାବିଲେ ମନରେ ଦୁଃଖ ଆସେ, ଦୟା ବି ଥାଏ ' ସେମାନେ କେତେ ଧର୍ମଭୀରୁ ! କେତେ କୁସଂସ୍କାରଗ୍ରସ୍ତ । କେତେ ସାମାଜିକ ଅନ୍ଧାରରେ ସେମାନେ ପଡ଼ିଚନ୍ତି !

ସେତେବେଳେ ବାଙ୍କିରେ ପାର୍ଟିର ସଙ୍ଗଠନ ଖୁବ୍ ଆଗେଇ ଥିଲା । ତାକୁ ଆହୁରି ସୁଦୃଢ଼ କରିବା ଲାଗି ମୁଁ ବାଙ୍କି ଗଲି । ଗୋକୁଳାନନ୍ଦ ପ୍ରହରାଜ, ଭଗବତ ଚନ୍ଦ୍ର ସାହୁ, ପ୍ରଫୁଲ୍ଲ ଚନ୍ଦ୍ର ନାୟକ, ଡକ୍ଟର ଜଗନ୍ନାଥ ଦାସ, ଶୁକଦେବ ଷଣ୍ଢ, ଗୁମାନ୍ ସିଂ, ଲକ୍ଷ୍ମଣ ତ୍ରିପାଠୀ ଓ ସନ୍ତୋଷ ତ୍ରିପାଠୀ ପ୍ରଭୃତି କର୍ମୀମାନେ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀଙ୍କ ବିରୁଦ୍ଧରେ ମୁଣ୍ଡ ଟେକି ଥାନ୍ତି । ସେମାନଙ୍କର ଅନ୍ୟାୟ, ଅନୀତି

ବିରୁଦ୍ଧରେ ସଙ୍ଗଠ ଆନ୍ଦୋଳନ ଚାଲିଥାଏ । ଫଳରେ ଏମାନଙ୍କ ଉପରେ ସେମାନଙ୍କ ବିଶେଷ ଚକ୍ଷୁ ପଡ଼ିଥାଏ । ନାନା ମାଲି ମକଦ୍ଦମା କରି ପାର୍ଟିର କର୍ମୀମାନଙ୍କୁ ଅଯଥା ହଇରାଣ କରାଯାଉଥାଏ ।

ମୁଁ ଗୋଳାଗଣ୍ଡରେ ପଞ୍ଚାଶ୍ ସ୍ୱେଚ୍ଛାସେବକ ବାହିନୀ ଗଠନ କରି କାର୍ଯ୍ୟର ପରିସରକୁ ଆହୁରି ବ୍ୟାପକ କରିଦେଲି । ଗଠନ ମୂଳକ ଭାବେ କାର୍ଯ୍ୟ କଲେ ଶକ୍ତି ଯେ ବଢ଼େ, ପ୍ରତ୍ୟେକ ତାହା ଅନୁଭବ କଲେ । ଢେଙ୍କାନାଳ ରାଜାର ଭାଇ ଉମପଡ଼ାର ଜମିଦାର ଯେଉଁଠିକାର ଲୋକଙ୍କ ଉପରେ ଯେଉଁ ଅତ୍ୟାଚାର କରୁଥିଲା, ତାହାର ନିରାକରଣ ପାଇଁ ମୋତେ ଉମପଡ଼ା ଯିବାକୁ ପଡ଼ିଲା । ଚକ୍ରଲେଶ୍ୱର ଗ୍ରାମରେ ମୋର ଡେରା ପଡ଼ିଲା । ଚକ୍ରଲେଶ୍ୱର, ଅମରେଶ୍ୱର, କୃଷ୍ଣନଗର, କଇମୁଣ୍ଡି, ବରିପଡ଼ା ପ୍ରଭୃତି ଗ୍ରାମରେ ସଙ୍ଗଠନ ଆରମ୍ଭ ହେଲା । ରାଜା ବିରୁଦ୍ଧରେ "ଉମପଡ଼ା ମାଟି ଡ଼ାକେ" ବୋଲି ଦୁଇଟି ଲେଖା କୃଷକରେ ଲେଖିଲି । ତାହା ସମଗ୍ର ଉମପଡ଼ା ଜମିଦାରୀରେ ବର୍ଣ୍ଣି ହେଲା । ସ୍ଥିର ଜଳ ଯେପରି ଚହଲି ଗଲା । ରାଜା ପ୍ରମାଦ ଗଣିଲା । ଯଜ୍ଞେଶ୍ୱର ନନ୍ଦ ନାମରେ ଏକଦା ଜଣେ ସ୍ୱାଧୀନତା ସଂଗ୍ରାମୀ ଯାହାର ହୀନଚରିତ ଯୋଗେ କଂଗ୍ରେସରୁ ତଡ଼ା ଖାଇଥିଲା, ସେ ସେତେବେଳେ ଜମିଦାରର ପଦଲେହନକାରୀ ରୂପେ ଥାଏ । ସେ ମୋ ବିରୁଦ୍ଧରେ ନାନା ଅପପ୍ରଚାର କଲା । ଦୁଇଟା ମାନହାନି ମକଦ୍ଦମା ଚାଲିଲା । ମୋତେ ଜୀବନରେ ମାରି ଦେବା ଲାଗି ଜମିଦାର ପ୍ରବଳ ଉଦ୍ୟମ କଲା । କିନ୍ତୁ ଈଶ୍ୱର ବଞ୍ଚେଇ ଦେଲେ ।

ପ୍ରଜାମାନଙ୍କର ଅପୂର୍ବ ସଙ୍ଗଠନ ଶକ୍ତି ଦେଖି ଜମିଦାର ଭୟ ପାଇ ଅତ୍ୟାଚାର ବନ୍ଦ୍ କଲା । ମୋ ଉପରେ ଚାଲିଥିବା ମକଦ୍ଦମା ଉଠାଇ ନେଲା । ଲୋକେ ଶାନ୍ତିରେ ନିଃଶ୍ୱାସ ମାରିଲେ । ସେଠାରେ ବିଜୟକେତନ ଉଡ଼ାଇ କଟକ ଫେରି ଆସିଲି । ସୁକଦାର ପୂର୍ବତନ ବିଧାନସଭା ସଦସ୍ୟ ନାରାୟଣ ପତି ଆଜି ସ୍ୱର୍ଗରେ । କିନ୍ତୁ ସେ ଓ ମୁଁ ଉମପଡ଼ାର ପ୍ରତିଟି କୋଣ ବୁଲି ଏପରି ପ୍ରଚାର କଲୁ ଯେ ଲୋକେ ସଙ୍ଘବଦ୍ଧ ହୋଇ ସମସ୍ତ ଅତ୍ୟାଚାର, ଅନାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ସେହିଠାରେ ଥରେ ବାଘ ହାବୁଡ଼ରେ ଏବଂ ଥରେ ବଣୁଆ ହାତୀ କବଳରେ ପଡ଼ି ଈଶ୍ୱରଙ୍କ କୃପାରୁ ଅଳ୍ପକେ ଦୁହିଁଙ୍କର ଜୀବନ ରକ୍ଷା ହୋଇଥିଲା ।

କଟକ ଆସି ସହରର କାଫ୍ଲା ବଜାର, ହରିପୁର, ଉତ୍କଳମଧୁ ବିଦ୍ୟାପୀଠ ପ୍ରଭୃତି ସ୍ଥାନମାନଙ୍କରେ ସ୍ୱେଚ୍ଛାସେବକ ଓ ସେବିକା ବାହିନୀର ଟ୍ରେନିଂ କ୍ୟାମ୍ପ୍ ଖୋଲା ହେଲା । ପରିଚାଳନାର ସମସ୍ତ ଦାୟିତ୍ୱ ମୁଁ ନେଲି ।

ଆଗରୁ କହିଛି ଶ୍ୱଶୁର ଘର ମକଧମା ଗୋଟିଏବେଳେ ପୂର୍ଣ୍ଣ ରୂପରେ ଚାଲିଥାଏ । ସମସ୍ତେ ସମସ୍ତେ ତୋଡ଼ରେ ମୋତେ ଯୋଗ ଦେବାକୁ ପଡୁଥିଲା । ନହେଲେ ମୋର ସ୍ତ୍ରୀ ଏକାକିନୀ କ'ଣ ବା କରିବେ ? ନାନା ଦଳ ହୋଇ ସ୍ୱଣ୍ଡାମାନେ ତାଙ୍କ ଯୋଗର ଉପଭୋଗ କରୁଥାନ୍ତି, ସାହସର ସହିତ ସେ ତଥାପି ତାର ମୁକାବିଲା କରୁଥାନ୍ତି । ଗର୍ଭର ମାଆ ଜନକ ଦନ ବଢ଼ି ଚାଲିଥାଏ । ପାର୍ଟି ଫଣ୍ଡ ସବୁ ମୋତେ ଯାହା ମିଳୁଥିଲା, ତାହା କହୁ ନୁହେଁ । ସମୁଦ୍ରକୁ ଶଙ୍ଖେ ପରି । ତଥାପି କୌଣସି କାର୍ଯ୍ୟରେ ମୁଁ ଅବହେଳା କରୁ ନ ଥାଏ । ଯେଉଁ ଦାୟିତ୍ୱ ମୁଁ ନିଜ ମୁଣ୍ଡ ଉପରେ ନେଇଛି, ତାର ଯେ ମୁଁ କେବେ ଖିଲାପ କରିଛି, ମୋର ଅତି ବଡ଼ ଶତ୍ରୁ ମଧ୍ୟ ତାହା କହିପାରିବେ ନାହିଁ । ସେତେବେଳେ ଶୋଷ୍ୟାଲିଷ୍ଟ ପାର୍ଟି ପ୍ରବଳ ବେଗରେ ଚାଲିଥାଏ ମାତ୍ର ଚାଲିଥାଏ । ଆମର ବହୁ ଯୁବକ ବନ୍ଧୁ କଂଗ୍ରେସ ପରିତ୍ୟାଗ କରି ପୂର୍ଣ୍ଣ ପ୍ରାଣରେ ପାର୍ଟି ସଙ୍ଗଠନରେ ଲାଗିଥାନ୍ତି । କଟକ ଜିଲ୍ଲାର ତିର୍ତ୍ତୋଲ, ସାଲେପୁର, ବାଙ୍କି, ଜଗତସିଂହପୁର, ଗୋବିନ୍ଦପୁର, ଧର୍ମଶାଳା, ବଡ଼ଚଣା, ଭଣ୍ଡାରୀର ଜଟସ୍ୱର୍ଣ୍ଣ ନଗର, ବାଲେଶ୍ୱରର ଶ୍ୟାମନଗର, ବସ୍ତା, ବାଲେଶ୍ୱର ସହର ପ୍ରଭୃତି ସ୍ଥାନମାନଙ୍କରେ ତାହାର ପ୍ରଧାନ କର୍ମସ୍ଥଳୀ ହୋଇଥାଏ ।

ବାଲେଶ୍ୱରର ପାର୍ଟି ସମ୍ମିଳନୀ ଯିଏ ଦେଖିଛି, ସେତେବେଳେ ପାର୍ଟି ସଙ୍ଗଠନ କେତେ ଯେ ସୁଦୃଢ଼ ଥିଲା, ତାହା ସହଜରେ ଅନୁମାନ କରାଯାଇବ । ଦନ ଦନ ଧରି ନାସ୍ତି ଓ ପୁରୁଣା କର୍ମୀମାନେ ସମ୍ମିଳନୀକୁ ମଙ୍ଗଳ କରିବା ଲାଗି ଯେଉଁ ଅପ୍ରାଣ ଚେଷ୍ଟା ଓ କଠୋର ପରିଶ୍ରମ କରିଛନ୍ତି, ତାହା ପାର୍ଟିର ଇତିହାସରେ ଏକ ମାଇଲ ଖୁଣ୍ଟ ହୋଇ ରହିବ । ଶରତକୁମାର, ଶ୍ୟାମଳୀ, ଜଗନ୍ନାଥ, ଗୌର, କୁନ୍ତଳା ପ୍ରଭୃତିଙ୍କ ନାମ ଏଠାରେ ଉଲ୍ଲେଖ ନ କରି ମୁଁ ରହିପାରୁ ନାହିଁ ।

ଏହି ମଧ୍ୟରେ ହାରେକୃଷ୍ଣବାବୁ କଂଗ୍ରେସ ତଥା ଅସେମ୍ବ୍ଲି ସଭାପତିରୁ ଇସ୍ତଫା ଦେଇ ଆମ ପାର୍ଟିରେ ଯୋଗ ଦେଲେ । ତାଙ୍କର ଶୂନ୍ୟସ୍ଥାନ ପୂରଣ ପାଇଁ କଂଗ୍ରେସରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ହେଲା । ଏକ ପକ୍ଷରେ ନାରାୟଣ ବୀରବର ସାମନ୍ତ ଏବଂ ଅନ୍ୟ ପକ୍ଷରେ ନନ୍ଦକିଶୋର ଦାସ । ଏକ ପକ୍ଷରେ କଂଗ୍ରେସର ଅର୍ଥ, ପ୍ରତିପତ୍ତି ଓ ଶାସନକଳର ଅପବ୍ୟବହାର, ଅନ୍ୟପକ୍ଷରେ ନିଷ୍ଠା, ତ୍ୟାଗ ଏବଂ ସେବାର ପରମ୍ପରା । ତତ୍କାଳରେ ଆମଘର (ପଙ୍କଜ ନିବାସ)ରେ ଅନେକ କର୍ମୀ ଆସି ରହିଲେ । ଶରତକୁମାର ସେତେବେଳେ ଯେଉଁ ଶ୍ରମ ସ୍ୱୀକାର କରିଛନ୍ତି, ଯିଏ ତା ଦେଖିଛି ଆଶ୍ଚର୍ଯ୍ୟ ହୋଇଛି । ସବାକୁ ଉଠି ଜଳର ଜଳଖିଆ ସାଙ୍ଗ ୮।୧୦ ଜଣ କର୍ମୀଙ୍କୁ ନେଇ ନୂଆଗାଁରେ ରଥ ନେଇ ରାସ୍ତା ଲାଗି ଗାଁ ଗହଳକୁ ବୁଲି ବୁଲି

ଦିବେ । ପୁଣି ଗତ ୧୨ ଟାରେ ନାହିଁ ୧ଟାରେ ନାହିଁ ଦଳର କର୍ମୀମାନଙ୍କର ଚର୍ଚ୍ଚା କରିବେ । ସେତେବେଳେ ଆମର ମକଦ୍ଦମା ମଧ୍ୟ ଚାଲିଥାଏ । ପଇସାର ଅଣ୍ଟ ଅଭାବ । ତଥାପି ପାର୍ଟି ପାଖରେ ସାହାଯ୍ୟ ମାଗିଁ କେବେ ହାତ ପାତି ନାହିଁ । ଭୋଟର ପୂର୍ବଦିନ ବିଭିନ୍ନ ଗାଁର ଭୋଟର ଝିଅମାନେ ମୋ ସ୍ତ୍ରୀଙ୍କ ନେତୃତ୍ୱରେ ଡଙ୍ଗ୍ରେଲ ଅଭିମୁଖେ ଚାଲିଲେ । ହାତରେ ଝୁହ୍ନଳ, ଚୂଡ଼ା, ପଖିଆ ପୁଡ଼ା, ମୁଖରେ ପାର୍ଟିର ଜୟକାର ଧ୍ୱନିରେ ରାସ୍ତା ମୁଖରିତ ହେଉଥାଏ । ସ୍ୱେଚ୍ଛାସେବକଙ୍କ ହାତରେ ପାର୍ଟିର ପତାକା ଏବଂ ବ୍ୟାଜ । ଜଣେ ନାରୀଙ୍କ ନେତୃତ୍ୱରେ ଏ ବିପୁଳ ସମାବେଶ ଦେଖି କଂଗ୍ରେସ ଲୋକେ ପ୍ରମାଦ ଗଣିଲେ । କୌଶଳରେ ଲୋକ ପଠାଇ ସେମାନଙ୍କ ମଧ୍ୟରୁ କେତେକଙ୍କୁ ପ୍ରଲୋଭିତ କରିବାକୁ ଚେଷ୍ଟା କଲେ । କିନ୍ତୁ ସମସ୍ତ ଉଦ୍ୟମ ବ୍ୟର୍ଥ ହେଲା । ଶରତ ମାଷ୍ଟରଙ୍କଠାରୁ ସେମାନେ ଯେଉଁ ଶିକ୍ଷା ପାଇଥିଲେ ଏତେଶୀଘ୍ର ତାକୁ ଭୁଲିବା ଅସମ୍ଭବ ହୋଇପଡ଼ିଲା ।

ସକାଳେ ଭୋଟ ପାଳି ଆରମ୍ଭ ହେଲା । ଆମ ତରଫରୁ କେତେ ଭୋଟରଙ୍କୁ କଂଗ୍ରେସ କର୍ମୀମାନେ ପ୍ରଲୋଭିତ କରି କ୍ୟାମ୍ପକୁ ନେଇ ଯାଇଥିଲେ । କିନ୍ତୁ ଶରତ ମାଷ୍ଟ ଅତି କୌଶଳ ଭାବରେ କଂଗ୍ରେସ କ୍ୟାମ୍ପରେ ପଶି ସେମାନଙ୍କୁ ନେଇ ଆସିଲେ । ସେତେବେଳେ ମହତାବଙ୍କ ମନ୍ତ୍ରୀମଣ୍ଡଳ ଥାଏ । ଭୋଟରେ ଜିଣିବାକୁ ସବୁ ରକମର ପନ୍ଥା ଅବଲମ୍ବନ କରୁଥିଲେ । ଅବଶ୍ୟ ଏ ଭୋଟରେ ପାର୍ଟି ହାରିଗଲା, କିନ୍ତୁ ଡଙ୍ଗ୍ରେଲ ଅଞ୍ଚଳର ପ୍ରତି ଘରେ ଘରେ ପାର୍ଟିର ବାର୍ତ୍ତା ଏପରି ଭାବରେ ପହଞ୍ଚିଗଲା, ଯାହା ଫଳରେ ପରବର୍ତ୍ତୀ ନିର୍ବାଚନରେ ସଫଳତା ଅତି ସରଳ ଓ ସୁଗମ ହୋଇଗଲା । ଇତି ମଧ୍ୟରେ ଆମ ମକଦ୍ଦମାର (ଯଦିଓ ସନ୍ତୋଷଜନକ ନୁହେଁ) ଏକ ସମାଧାନ ହୋଇଗଲା ।

ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସ୍ତ୍ରୀ ଉର୍ବଶୀ (ଗୀରୁ)ର ଅକାଳ ମୃତ୍ୟୁ ସମ୍ବାଦ ମନରେ ଦାରୁଣ ଆଘାତ ଦେଲା । ମୃତ୍ୟୁ ସମୟରେ ସୁରେନ୍ଦ୍ର ବାବୁ ତାଙ୍କ ପାଖରେ ନ ଥିଲେ । ମୟୂରଭଞ୍ଜ ଜିଲ୍ଲା ଗସ୍ତରେ ଯାଇଥିଲେ । ତାଙ୍କ ପାଖକୁ ପୋଲିସ ୱାରଲେସ ମାଧ୍ୟମରେ ଖବର ଦିଆଗଲା । ସେ ଆସିଲେ । ଅତି ଅସମୟରେ ଗୀରୁ ଭଳି ପିଲା ନିଜର ଏକମାତ୍ର ଶିଶୁ କନ୍ୟାଟିକୁ ଛାଡ଼ି ସ୍ୱର୍ଗଗାମିନୀ ହେବ, ଏହା ମୁଁ କଳ୍ପନା କରି ପାରିଲିନ । ତାପରେ ସୁରେନ୍ଦ୍ର ବାବୁ ଆଉ ବିବାହ କରି ନାହାନ୍ତି । ଝିଅଟିକୁ ମଣିଷ କରିବାରେ ଲାଗିପଡ଼ିଲେ ନିଜର ସ୍ନେହ ମମତା ଢାଳି ଦେଇ ।

୧୯୫୨ ର ସାଧାରଣ ନିର୍ବାଚନ ଲାଗି ପ୍ରସ୍ତୁତ ହେଲୁ । ରଜନୀକାନ୍ତ ଦାସ ଖଡ଼ିବଜାରରୁ ଆସି ଆମ ପାର୍ଟିରେ ଯୋଗ ଦେଲେ । ମୁଁ ମୁଖ୍ୟ ସଂଗଠକ ହେଲି ।

ବାଲିକୁଦାରେ ସମାଜ ପାର୍ଟିର ପ୍ରଚାର ଆରମ୍ଭ ହେଲା । ସଂଗଠନ ଜରିଆରେ ପାର୍ଟିର କାର୍ଯ୍ୟ ଦିନକୁ ଦିନ ଅଗ୍ରଗତି କରିବାରେ ଲାଗିଲା । ରଜନୀବାବୁଙ୍କୁ ଆଖି ଆଗରେ ରଖି ଆସନ୍ତା ନିର୍ବାଚନରେ ପାର୍ଟି ତରଫରୁ ପ୍ରାର୍ଥୀ କରିବାର ଲକ୍ଷ୍ୟନେଇ କର୍ମୀମାନେ ଲାଗିପଡ଼ିଲେ । ବିଭିନ୍ନ ସମସ୍ୟା ହାତକୁ ନଆଗଲା । ଜଗଦ୍‌ଗୃଷ୍ଟୀଙ୍କ ପକ୍ଷ ନେଇ ଆମେ ଲଢ଼ିଲୁ । ବାସୁଦେବ ଦାସ ତହିଁରେ ଅଗ୍ରଣୀ ହେଲେ । କଂଗ୍ରେସର ସେତେ ଶକ୍ତିଶାଳୀ ସଂଗଠନ ନ ଥାଏ । ରଜନୀବାବୁଙ୍କ ଭଳି ଜଣେ କବି, ସୁବକ୍ତା, ଚିନ୍ତାଶୀଳ ଓ ମେଧାବୀ ଯୁବକଙ୍କୁ ପାଇ ସାଥୀମାନଙ୍କ ଉତ୍ସାହ ବହୁ ଗୁଣରେ ବଢ଼ିଗଲା । କିନ୍ତୁ ଶେଷ ମୁହୂର୍ତ୍ତରେ ପାର୍ଟିର କର୍ମକର୍ତ୍ତାମାନେ ତାଙ୍କୁ ପ୍ରାର୍ଥୀ ନ କରି ବସନ୍ତ ସାହୁ ଓକିଲଙ୍କୁ ବାଛିଲେ । ଆମେମାନେ ପାର୍ଟିର ଏ ନିଷ୍ପତ୍ତିରେ ଦୃଢ଼ ବିରୋଧ କଲୁ । ଘୋର ପ୍ରତିବାଦ ଜଣେଇଲୁ । କିନ୍ତୁ କିଛି ହେଲ ନାହିଁ । କଣ ଆଉ କରିବୁ ? ନିଜ ହାତରେ ଯେଉଁ ପାର୍ଟିକୁ ଗଢ଼ିଛୁ, ତାକୁ ଛାଡ଼ି ଦେବୁ ବା କିପରି ? ଦଳର ଶୃଙ୍ଖଳା ମାନି କାମ କଲୁ । ରଜନୀବାବୁ କିନ୍ତୁ ଘୋର ଦୁଃଖରେ ପାର୍ଟି ଛାଡ଼ିଲେ । କଂଗ୍ରେସରୁ ସ୍ୱର୍ଗତ ଭାଗୀରଥି ମହାପାତ୍ର, ସ୍ୱାଧୀନ ପ୍ରାର୍ଥୀ ରୂପେ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏବଂ ଆମ ପାର୍ଟିରୁ ବସନ୍ତକୁମାର ସାହୁ ପ୍ରାର୍ଥୀ ହେଲେ । ନିର୍ବାଚନ ପ୍ରଚାର ଖୁବ୍ ଜୋର୍‌ସୋରରେ ଚାଲିଲା । ମାତ୍ର ୨୦୦ ଭୋଟରେ ପରିଜା ଜିତିଲେ । ତାଙ୍କର ହେଲା ୮୨୦୦ ଭୋଟ, କଂଗ୍ରେସର ୮୦୦୦ ଏବଂ ଆମର ୭୨୦୦ । ଏ ନିର୍ବାଚନରେ ବସନ୍ତ ସାହୁଙ୍କ ଲାଗି ମୋ ସ୍ତ୍ରୀ ବହୁତ ଖଟିଛନ୍ତି ।

ଢେଙ୍କାନାଳରୁ ସାରଙ୍ଗଧରବାବୁ ପାର୍ଲିଆମେଣ୍ଟକୁ ନିର୍ବାଚିତ ହେଲେ । ତାଙ୍କ ସଙ୍ଗରେ ମଧ୍ୟ ଶରତ୍‌କୁମାରୀ ବହୁ ଅଞ୍ଚଳ ବୁଲିଥିଲେ । ତିର୍ତ୍ତୋଲରୁ ନିଶାମଣି ଖୁଣ୍ଟିଆ ନିର୍ବାଚିତ ହେଲେ । ସାଲେପୁରରେ ଦ୍ୱିବେଦୀ ହାରିଗଲେ । ଭୋଟପରେ ବାବୁଭାଇଙ୍କର ଫିଷ୍ଟୁଲା ଅପରେସନ ହେଲା । ଏକନିଷ୍ଠଭାବେ ଦୁଇମାସ ମୁଁ କଟକ ଜେନେରାଲ ହସ୍‌ପିଟାଲର ଜୟପୁର କ୍ୟାବିନରେ ରହି ତାଙ୍କର ସେବା କଲି । ପରେ ପରେ କଳାବିକାଶ କେନ୍ଦ୍ର ଜନ୍ମ ନେଲା । ବାବୁଭାଇ, ମୁଁ, ବାଙ୍କବାବୁ, ବାରିଷ୍ଟର ଗୋବିନ୍ଦ ଦାସ, ଦେବୀପ୍ରସନ୍ନ ପଟ୍ଟନାୟକ ଓ ରାମପ୍ରସାଦ ମହାନ୍ତି ଏହି ୭ଜଣ ତାର ଜନ୍ମଦାତା । ପରେ ପରେ ମନୋରଞ୍ଜନ ଦାସ ଓ ବିଶ୍ୱନାଥ ରାଉ ଏଥିରେ ଯୋଗ ଦେଲେ ।

ଏଥି ମଧ୍ୟରେ ଗୋଟିଏ ନାରୀ ଯିଏକି ମୋତେ ଅତ୍ୟନ୍ତ ଆଦର କରୁଥିଲେ, ମୋର ସ୍ତ୍ରୀ ଥିବା ସତ୍ତ୍ୱେ ମୋତେ ଅତ୍ୟନ୍ତ ସ୍ନେହ ସୁହାଗ କରୁଥିଲେ, ଅତି ଆପଣାର କରିବାକୁ ଏକାନ୍ତ ଚେଷ୍ଟା କରୁଥିଲେ, ମୁଁ ତାଙ୍କୁ ବୁଝିପାରିଲି ନାହିଁ । ବୟସ ୪ବ

ଅବିଶ୍ୱାସର ପ୍ରଶ୍ନ ଏଠି ଉଠି ପାରେନା । ହୁଏତ ସେ ବିରକ୍ତ କି ବୀତସ୍ପୃହ ନୁହନ୍ତି, ବରଂ ପରିହାସପ୍ରିୟ ନୁହେଁ । କିନ୍ତୁ ଏଠିକି କହିବି ସେ ମୋତେ ଏକାନ୍ତ ଆବେଗଭରା ନୟନରେ ଦୃଷ୍ଟି ଦେଇଥିଲେ । ସ୍ନେହ, ପ୍ରେମ, ଶ୍ରଦ୍ଧା ଓ ମମତାରେ ମୋ ପ୍ରାଣକୁ ପରିପୂର୍ଣ୍ଣ କରିବାକୁ ଚେଷ୍ଟା କରୁଥିଲେ । ସେତେବେଳେ ଯୁବକ ଥିଲି, ଶକ୍ତି ଥିଲା, ସାମର୍ଥ୍ୟ ଥିଲା । ଏକ ଅଜଣା ସ୍ରୋତରେ ଭାସିଯିବାର କାମନା ଥିଲା । ସାହସ ଥିଲା । ତା'ର ଯାହା ରୂପ ମୁଁ ଦେଖିଛି, ଏବେ ବି ଅବିଶ୍ୱାସ କରିବାକୁ ଇଚ୍ଛା ହୁଏନା । ଏବେବି ମନୁଷ୍ୟର ମହତ୍ତ୍ୱ ଉପରେ ମୁଁ ଆସ୍ଥାବାନ୍ । ତଥାପି ଯଦି କୌଣସି ଅଳସ ଅବସରରେ ଗୋଟିଏ ରାତିର କଥା ମୋ ସ୍ମୃତିପଟରେ ଭାସି ଉଠେ, ସେତେବେଳେ ନିଜକୁ ବିଶ୍ୱାସ କରିବା ଛଡ଼ା ଅନ୍ୟ କାହାରି ଉପରେ ମୋର ଭରସା ହୁଏ ନାହିଁ । ସେଦିନ ସେ ଯେପରି ମୋ ସହିତ ବ୍ୟବହାର କରିଥିଲା, ତାହା କୌଣସି କାମନାଲିପ୍ସୁ ନାରୀର ଦୃଷ୍ଟି ନୁହେଁ । ବରଂ ମମତା ସେବା, ଏକ ରମଣୀର ଅପୂର୍ବ ପ୍ରତିଛବି । ବିଶ୍ୱାସପ୍ରତି ମୋର ଦସ୍ତା ଆସିଥିଲା । ସେହି ନୀରବ ନିଶୀଥର କଥା ମାନସରେ ମୋର ଭାସି ଉଠିଲେ ମୁଁ ଲଜ୍ଜିତ ହୁଏ । ସେଦିନ ମୋର ମନେ ହୋଇଥିଲା ମୁଁ ନିଃସ୍ୱ ନୁହେଁ ପରିପୂର୍ଣ୍ଣ, ବିଧାତାର ପରମ ଆଶୀର୍ବାଦ ନେଇ ମୋର ଜନ୍ମ ହୋଇଛି । ମୁଁ ଯେ ଚିରଦିନ ମୁଁ ହୋଇ ରହିଛି, କାହାରି ଉତ୍କୋଚ ପ୍ରଲୋଭନ ବା ମାଦକତା ମୋର ମଥା ତଳକୁ ନୁଆଁଇ ଦେଇନାହିଁ— ସେଇଥିପାଇଁ ମୁଁ ଆପଣାକୁ ଭାଗ୍ୟବାନ ମନେ କରୁଛି । ତଥାପି ମୁଁ ତାକୁ ପାଶୋରି ପାରୁନାହିଁ । ଉଷାର ସ୍ନିଗ୍ଧ ଆଲୋକରେ ଦ୍ୱିପ୍ରହରର ନିସ୍ତବ୍ଧତାରେ, ସନ୍ଧ୍ୟାର କଳରୋଳରେ, ରାତ୍ରିର ଅନ୍ଧକାରରେ ଯାହାକୁ କି ଦେଖିଛି, ସେ ଝିଅ, ମାଆ ଭଉଣୀ ଓ ସ୍ତ୍ରୀର ଏକ ପ୍ରାକୃତିକ ସମଷ୍ଟି ।

ନିଜ କଥା ଲେଖିବାକୁ ବସି ମୁଁ ଲଜ୍ଜା ଅନୁଭବ କରୁଛି । ସେଦିନ କେବଳ ଏତିକି ମନେ ହୋଇଥିଲା, ବିଧାତାର ସୃଷ୍ଟିରେ ପୁରୁଷକୁ ସେ ଅନେକ ଭାଗ୍ୟବାନ କରି ପାରିଛନ୍ତି । କିନ୍ତୁ ନାରୀର ସ୍ରଷ୍ଟା ଯେ ବିଧାତା, ସେ ସମଦର୍ଶୀ ମୋଟେ ନୁହନ୍ତି । ଏଇ କଥା ମୋର ମନେ ପଡ଼ି ମୋତେ କଠୋର କରିଛି, ପୁଣି ଆନମନା କରିଛି ।

ଅନେକ ସମୟରେ ଅନେକ କଥା ମୋର ମନେ ପଡ଼େ । ପ୍ରକୃତରେ କଣ ୧୭୫୭ ମସିହାରେ ପଲାସୀରେ ଏକ ଆମ୍ର କାନନରେ ଇଂରେଜମାନେ ଭାରତ ଜୟ କରିଥିଲେ ? ମୁଁ କହିବି ନୁହେଁ । ତାର ବହୁ ବର୍ଷ ପରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସେମାନେ ଶାସନ କ୍ଷମତା ଆମ ହାତକୁ ଦେଲେ ନାହିଁ

ଯେ, ଭାରତକୁ ଭାଗ ଭାଗ କରି ଚାଲିଗଲେ । ତାଙ୍କର ଶିକ୍ଷା, ସଂସ୍କୃତି, ସଭ୍ୟତା ଆମ ଜାତିର ଶିରାପ୍ରଶିରାରେ ଇଣ୍ଟ୍ରାଭେନସ୍ ଇଞ୍ଜେକ୍ସନ୍ ଭଳି ପ୍ରବେଶ କରେଇ ଦେଇଗଲେ । ଆମେ ତାଙ୍କୁ ଅନୁକରଣ କରିବାକୁ ଯାଇ ହନୁକରଣ କଲୁ । ଦେଶଟା ଭିତାଭିତ୍ ହୋଇଗଲା ଇଂରେଜ ସରକାରଙ୍କର ।

ଯେତେବେଳେ ଅହିଂସା ଆନ୍ଦୋଳନ ଗାନ୍ଧିଜୀ ଆରମ୍ଭ କଲେ, ଲୋକେ ବହୁ ସଂଖ୍ୟାରେ ଜେଲ୍ ଯାଉଥିଲେ । ବନ୍ଦେ ମାତରମ୍ ଧ୍ୱନି ଦେଉଥିଲେ । ସୂତା କାଟୁଥିଲେ । ଖଦଡ଼ ପିନ୍ଧୁଥିଲେ । ସମସ୍ତଙ୍କ ଆଖି ଆଗରେ ତ୍ୟାଗର ମହତ୍ତ୍ୱ ଥିଲା । ଅମଳତନ୍ତ୍ର ଭୀତତ୍ରସ୍ତ ହୋଇ ପଡ଼ୁଥିଲା । ଭୋଗର ବାସନା ଆଦୌ ନ ଥିଲା । ମୁଁ ଭାବୁଥିଲି ଦେଶ ସ୍ୱାଧୀନ ହେବ । ସବୁ ସ୍ୱଦେଶୀ ହେବେ । ସାହେବ ତ ଗଲେ । ଏଣିକି ତାଙ୍କର ହୋଟେଲ, ବିଲାତି ମଦ, କ୍ୟାବାରେ, ବଲ୍ ଡ୍ୟାନ୍ସ, ସାଥୀରେ ନେଇଯିବେ । ଏ ଦେଶ ହେବ ଗାନ୍ଧୀର । ମୋଟା ଖାଇବା ଓ ମୋଟା ପିନ୍ଧିବା ହିଁ ଆମର କାମ୍ୟ ହେବ । କିନ୍ତୁ ହେଲା କେଉଁଠି ? ସ୍ୱାଧୀନତା ପୂର୍ବଠାରୁ ସ୍ୱାଧୀନତା ପରର ଅବସ୍ଥା ଆହୁରି ସାଙ୍ଘାତିକ ହୋଇ ଉଠିଲା । ଯେଉଁମାନେ ଶାସନ କ୍ଷମତା ହାତକୁ ନେଲେ, ଭୋଗ ହିଁ ହେଲା ସେମାନଙ୍କର ଜୀବନର ସର୍ବସ୍ୱ । ଦାୟାଦ ହୋଇ ଯେଉଁମାନେ ଆସିଲେ, ସେମାନେ ଗାନ୍ଧୀଙ୍କୁ ଭୁଲିଲେ । ଭାରତୀୟ ପରମ୍ପରାକୁ ପାଶୋରି ଗଲେ । ତ୍ୟାଗର ଶ୍ରୀଖଣ୍ଡିକୁ ଆଗରେ ରଖି ଏ ଦେଶର ଖ୍ରୀଷ୍ଟଭୀରୁ ଜନତା ଜନାର୍ଦ୍ଦନଙ୍କୁ ଭୋଗର ନାଗଚରେ କଳଙ୍କିତ କଲେ । ଶର୍ଙ୍କିତ ବୃନ୍ଦାବନଟର ହସ୍ତରେ ଭାରତର ଲୋକ ପ୍ରତିନିଧିମାନେ ହୋଇଗଲେ କଣ୍ଢେଇର ପୁତ୍ତଳିକା । ଏ ଦେଶରେ ଦିନକୁ ଦିନ ବିଲାତି ମଦ ଦୋକାନ ବଢ଼ି ଚାଲିଛି । ପ୍ରକାଶ୍ୟ ହବାଲୋକରେ ବେଶ୍ୟା ବେଶୀ ମରେ କାରବାର ହେଉଛି । କଂଗ୍ରେସର ବଡ଼ କର୍ତ୍ତା ଆଗରେ ଗାନ୍ଧୀ ଓ ଜବାହାରଲାଲଙ୍କ ପ୍ରତିଛବି ଟଙ୍ଗେଇ ଭିତରେ Wine and womenର କାରବାର ଚଳେଇଛନ୍ତି । ବର୍ତ୍ତମାନ ଶାସନ କର୍ତ୍ତାଙ୍କ ନୀତି ହେଲା କଲେ ବଲେ କୌଶଳେ ଯିମିତି ହେଲେ କ୍ଷମତା କୌଣସିମତେ ହାତରେ ରଖ । ଏଇ କ'ଣ ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମଭୂମି ? ଏଇଥି ପାଇଁ କ'ଣ କ୍ଷୁଦିରାମ୍, ଗାନ୍ଧିଜୀ, ଗୋପବନ୍ଧୁ, ସୁଭାଷଚନ୍ଦ୍ର, ଅରବିନ୍ଦ, ବାଘା ଯତୀନ୍, ଲକ୍ଷ୍ମଣ ନାୟକ ପ୍ରଭୃତି ଅନେକ ଶହୀଦ୍ ହେଲେ ? ଆତ୍ମ ନିବେଦନ କରିଗଲେ ? ସେମାନଙ୍କର ଏତେ ତ୍ୟାଗର ଜ୍ୱଳନ୍ତ ଉଦାହରଣମାନ ନିଜ ଆଖିରେ ଦେଖି ବା ଶୁଣି ଏ ଦେଶବାସୀଙ୍କର କଣ କିଛି ପରିବର୍ତ୍ତନ ହେଲାନାହିଁ ?

ପଛକୁ ଟିକିଏ ଫେରୁଛି । ଭାରତ ଭ୍ରମଣ ସାରି ଯେତେବେଳେ ଫେରିଲି, ହଠାତ୍ ଯେପରି ମନେ ହେଲା, ମୁଁ ସାବାଳକ ହୋଇ ଯାଇଛି । ଏତେ ଦିନ

ଅତଲନ୍ତିକ ଏକ କିଶୋରର ଚକ୍ଷୁ ନେଇ ମୁଁ ସମସ୍ତଙ୍କୁ ଦେଖିଥିଲି । ସେଥିରେ ପରିପୂର୍ଣ୍ଣତା ଆସି ନ ଥିଲା । ଆଜି ଯେପରି ପରମ ପୂର୍ଣ୍ଣତା ଲାଭ କରିଛି ! ନାନା ଅଭିଜ୍ଞତାର ସୁମିଷ୍ଟ ଫଳ ଆସ୍ୱାଦନ କରି ମୁଁ ଯେପରି ଏକ ନୂତନ ପୃଥିବୀରେ ପ୍ରବେଶ କଲି ।

ଈଶ୍ୱରଙ୍କ ଆଶୀର୍ବାଦରେ ମନୁଷ୍ୟର ଏହି ସଂସାରରେ କେତେ ବିଚିତ୍ର ଚରିତ୍ରର ସଂସ୍ପର୍ଶରେ ଆସିଛି । କିନ୍ତୁ ସୁ ଓ କୁ, ନ୍ୟାୟ ଓ ଅନ୍ୟାୟର ଏଇ ଅପରୂପର ପ୍ରଦର୍ଶନୀରେ ସ୍ରଷ୍ଟାର ଯେ କି ପରିକଳ୍ପନା ରହିଛି, ତାହା ଆଜି ମୋ ନିକଟରେ ପରିଷ୍କୁଟ ହୋଇ ନାହିଁ ।

ସମସ୍ତେ ସମସ୍ତେ ଯେବେ ମୋ ଭଳି ବନ୍ଧୁ କର୍ମୀ ଅଛନ୍ତି, ସେଉଁମାନଙ୍କ ପ୍ରତି ଲୋକେ ବଡ଼ ଉଦାସ । ନିଜେ ଦୁଃଖ ସହି ଅନ୍ୟକୁ ସେବା କର, ଭଲ । ଲୋକେ ପ୍ରଶଂସା କରିବେ । ବାହାବା ଦେବେ । କିନ୍ତୁ ବିପଦ ଆପଦ ରୋଗ ଶୋକରେ କେହି ଟିକେ ପାଖରେ ଆସି ଠିଆ ହେବେନି । ସୁଖ ଦୁଃଖରେ କେହି ଆସି ସାନ୍ତ୍ୱନା ଦେବେନି । ସେଥିପାଇଁ ମୁଁ କେବେ ଦୁଃଖ କରିନି ।

ଉତ୍କଳମଣି ଗୋପବନ୍ଧୁ ଦାସ ଏ ଦେଶ ପାଇଁ, ଏ ଜାତି ପାଇଁ ତିଳ ତିଳ କରି ନିଜ ଜୀବନକୁ ଉତ୍ସର୍ଗ କରିଗଲେ । କେତେ ଜଣ ତାଙ୍କର ସ୍ମୃତି ପୂଜା କରୁଛନ୍ତି ? କେତେ ଜଣ ତାଙ୍କର ନାମ ମୁକ୍ତ ପ୍ରାଣରେ ସ୍ମରଣ କରୁଛନ୍ତି ? ଯାହା କିଛି ତାଙ୍କ ପାଇଁ ହେଉଛି, ତାହା 'ସମାଜ ଅନୁଷ୍ଠାନ' ଯୋଗେ । ଯେଉଁମାନେ ତାଙ୍କ ଲାଗି କିଛି କରୁଥିବେ, କେବଳ ସମାଜରେ ନାମ ବାହାରିବା ପାଇଁ । ଏଥିରେ ଆନ୍ତରିକତା ନାହିଁ, ମମତା ନାହିଁ, ନୁହେଁ ତ ସତ ଗୋପବନ୍ଧୁ ଭବନରେ ଜୟନ୍ତୀ ନ ହୋଇ, କଟକ ଟାଉନ୍ ହଲ୍‌ରେ ହୁଅନ୍ତା, ତେବେ କାହିଁ ହୁଅନ୍ତା । ନିବେଦକ ହିସାବରେ ଯେଉଁମାନେ ଦସ୍ତଖତ ଦେଇଥାନ୍ତି, କେତେ ଜଣଙ୍କୁ ଖୋଜି ଦେଲେ ଆଉ ପାଇବ କେହି ଆସନ୍ତି ନାହିଁ । ନିବେଦକ ତାଲିକାରେ ଯେଉଁମାନେ ନାମ ଦେଇଥାନ୍ତି, ତାହା କେବଳ ସମାଜ କାଗଜରେ ପ୍ରକାଶ ପାଇବା ପାଇଁ ।

କଳା ବିକାଶ କେନ୍ଦ୍ର ଓ ପ୍ରଜା ସୋସାଲିଷ୍ଟ ପାର୍ଟି ସହିତ ସାମିଲ ହୋଇ ମୋର କର୍ମମୟ ଜୀବନ ଧୀର ମନ୍ଥର ଗତିରେ ଆଗେଇ ଚାଲିଲା । ଅଧିକାଂଶ ସମୟ ବାଲିକୁଦାରେ ରହୁଥାଏ ।

ଏଥି ମଧ୍ୟରେ ଭଣ୍ଡାରିପୁରର ଚୌଧୁରୀ ବଳରାମ ଦାସ, "କେଦାର ଗୌରୀ" କଥାବସ୍ତୁକୁ ନେଇ ଏକ ଚଳଚ୍ଚିତ୍ର ପ୍ରସ୍ତୁତ କରିବାକୁ ଚେଷ୍ଟା କଲେ । ନିତାଇ

ପାଲିତ୍‌, ଗୁପ୍ତ ଗୌର ଘୋଷ ମୋର ବନ୍ଧୁ । ସେମାନେ ମୋତେ ଥାରବର ଭୂମି-କାରେ ଅଭିନୟ କରିବାର ସୁଯୋଗ ଦେଲେ । କଲିକତାର ବାଗବଜାର ନଗରଠାରେ ଆମେ ଗୋଟିଏ କୋଠା ଭଡ଼ା ନେଇ ସଦଳବଳେ ରହୁଥାଉ । ଦକ୍ଷିଣେଶ୍ୱର ନିକଟରେ ଇଷ୍ଟର୍ଣ୍ଣ ଟକିଜ୍‌ରେ ଆମର ସୁଟିଂ ଚାଲିଥାଏ । ଏଠାକାର ରହଣିକାଳ ମଧ୍ୟରେ ବହୁ ବିଚିତ୍ର ଅଭିଜ୍ଞତା ଅର୍ଜନ କଲି । ମୋତେ ସମସ୍ତେ ଭଲ ପାଉଥିଲେ ସତ କିନ୍ତୁ ମୋ ଆଗରେ କେହି ମନ କଥା ଖୋଲି କହୁ ନ ଥିଲେ । ରଜତ ପଟରେ କେଦାର ଗୌରିଙ୍କ ପ୍ରେମ ରୂପାୟିତ କରିବାକୁ ଯାଇ ଅନେକ ରକ୍ତ ମାଂସ ଦେହରେ ତାହା କରି ବସିଲେ । ଓଡ଼ିଶାରେ ଫିଲ୍ମ ଜଗତରେ ଏ ଦୁର୍ବଳତା ହିଁ ଏପରି ଏକ ଶିଳ୍ପର ଚର୍ଣ୍ଣି ଚିପି ଦେଉଛି । ପ୍ରଯୋଜକଙ୍କ ବଡ ଭାଇ ଠାରୁ ଆରମ୍ଭ କରି ପରିଚାଳକ, ବ୍ୟବସ୍ଥାପକ, ପ୍ରତ୍ୟେକ ପ୍ରେମ କରି ବସିଲେ । ବାଗ୍‌ବଜାର ନଗର କୋଠାଟି ହେଲା ତା'ର ପ୍ରୟୋଗଶାଳା । ଯିଏ ଯେତେ ପାରିଲା ବିଭିନ୍ନ ପ୍ରକ୍ରିୟା ପ୍ରୟୋଗ କଲା । ଏ ସବୁ ଦେଖି ମୁଁ ମର୍ମାହତ ହୋଇ ପଡ଼ିଲି । ଗୋପନରେ ଲୋକ ଲୋଚନ ଅଗୋଚରରେ ଯାହା ଚାଲିଥିଲା, ତାହା କ୍ରମେ ଲୋକଙ୍କ ଆଖି ଆଗକୁ ଆସିଲା । ଅବାଞ୍ଛିତ ପ୍ରେମ ହେଉ କେହି ମନା କରୁନି । ଯିଏ ଯାହାକୁ ଭଲ ପାଉଛି ପାଉ । କିନ୍ତୁ କୁଆଁ କୁଆଁ ରାବ ଦେଉଥିବା ଶିଶୁ ଝିଅଟିକୁ ମାରି ନ ଦିଆଯାଉ ଏହା ଥିଲା ମୋର ମତ । ନିକଟ ଅତୀତରେ ଭଲ ଝିଅ ଏ ରାସ୍ତା ମାଡ଼ିଲେ ନାହିଁ । ଅନ୍ୟ ପ୍ରଦେଶର ଭଦ୍ର ଘରର କନ୍ୟାମାନେ ଫିଲ୍ମରେ ପାର୍ଟ କରିବା ଲାଗି କ୍ୟୁ ଦେଲା-ବେଳେ ଆମେମାନେ ସୁଶ୍ରୀ ଅଭିନେତ୍ରୀ ଖୋଜିବା ଲାଗି queue ଦେଲୁ । କାରଣ ବାବୁଲାଲ ଦୋଷୀଙ୍କର ଗ୍ରାମ୍ୟବାଣୀ ପ୍ରତିଷ୍ଠାନର ପ୍ରଥମ ଫିଲ୍ମ ଲାଗି ଅଭିନେତ୍ରୀ ଖୋଜିବାକୁ ମୁଁ ତାଙ୍କ ସହିତ ସମଗ୍ର ଓଡ଼ିଶା ବୁଲିଛି । କିନ୍ତୁ ସମାଜର ପ୍ରତିବନ୍ଧକ ଏଡ଼େ ଖୁବ୍‌ କମ୍‌ ଝିଅ ଆଗେଇ ଆସିଥିଲେ । ଅବଶ୍ୟ ପରେ ତାଙ୍କର ଅନ୍ୟ ଦୁଇଟି ଫିଲ୍ମ 'ମଥୁରା ବିଜୟ' ଓ 'ଅଷ୍ଟିଚୁର୍ଣ୍ଣାସ୍ୱା'ରେ ସେ ସମସ୍ୟା ଦେଖା ଦେଇନି । ଦଳେ ଦଳେ ଅନେକ ଝିଅ ଆଗଭର ହୋଇଥିଲେ ।

କେଦାର ଗୌରୀ ବିଭିନ୍ନ ପ୍ରେକ୍ଷାଳୟରେ ଚାଲିଲା । ବ୍ୟକ୍ତିଗତ ଭାବରେ ଜଣେ ଦୁଇଜଣ ଅଭିନୟ କଲେ କ'ଣ ହେବ, ପରିଚାଳନା ଓ ଅନ୍ୟାନ୍ୟ କେତେକ ତ୍ରୁଟି ଯୋଗୁ ତାହା ଜନମନ ହରଣ କରି ପାରିଲାନି । ଚୌଧୁରୀ ବଳରାମ ଦାସଙ୍କ ପ୍ରଯୋଜନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ତଥାପି ତାଙ୍କର ଉଦ୍ୟମ ପ୍ରଶଂସନୀୟ, ବରଣୀୟ । ଫିଲ୍ମରେ ପାର୍ଟ କରିବା ଏଇ ମୋର ପ୍ରଥମ । ଦୂରୁ ଦୂରୁ ବୁଲୁରେ ଗଲି । ଅଖା ଚଟରେ ରଙ୍ଗ ବୋଳି, ଝାଡ଼ ବୋଳି ବିରାଟ ପ୍ରାସାଦ ସବୁ ଠିଆ ହୋଇଛି । କେମେରାନ୍ କାଠର ପଟା କୌଣସିମତେ ସେ ସବୁକୁ ଧରି ରଖିଛି ।

ତାହା ଭିତରେ ଭଡ଼ାରେ ଅଣା ଯାଇଥିବା ମଧ୍ୟଯୁଗୀୟ ଆସବାବ୍ ସବୁ ସଜ୍ଜା ଯାଇଥାଏ । ମେକ୍‌ଅପ୍ ରୁମ୍‌ରେ ପେଣ୍ଟିଙ୍ଗ୍ ହୋଇ, ଗେରୁଆ ଲୁଗା ପିନ୍ଧି ଷ୍ଟୁଡ଼ିଓକୁ ଗଲିଲୁ । ବସି ବସି ଅନେକ ସମୟ ପରେ ମୋର ଡାକ ପଡ଼ିଲା । ଗୋଟିଏ ସଟ୍ । ପୁଣି ବସିଥା । ଫିଲ୍ମ ଉଠାଇବା ପୂର୍ବରୁ ଆଲୋକ ସବୁ ଠିକ୍ କରିବାକୁ ହୁଏ । କ୍ୟାମେରା ଦୂରତ୍ୱ ଆର୍ଟିଷ୍ଟମାନଙ୍କୁ ବୁଝାଇ ଦିଆଯାଏ । କ୍ୟାମେରା ବିଷୟରେ ବିଶେଷ ସଚେତନଶୀଳ ନ ହେବା ଲାଗି, ସାବଲୀଳ ଗତିରେ ପାର୍ଟ କରିଯିବା ଲାଗି କୁହାଯାଏ । ଡ୍ରାମା ଭଳି ମୂଳରୁ ଶେଷ ପର୍ଯ୍ୟନ୍ତ ଦୃଶ୍ୟ ବା ଅଙ୍କ ନ ଥାଏ । ସେଟ୍ ଅନୁସାରେ କାର୍ଯ୍ୟ ହୁଏ । ଦିନ ୧୦ଟାରୁ ରାତି ୮ଟା । ବେଳେବେଳେ ସମସ୍ତ ବଢ଼ାଇ ଦିଆଯାଏ । ବଡ଼ ବିରକ୍ତ ଲାଗେ । ହୁଏତ କେତେକ ଭଲ ଦୃଶ୍ୟ ନେବାକୁ ଯାଇ ସମସ୍ତ ବାଧାଗୁଡ଼ିକ ପାଳି ପଡ଼େ ନା । ଗୋଟାଏ ଦୃଶ୍ୟ ନେବାକୁ ଯାଇ ଅନେକ ସମୟ ଲାଗେ । ଏଣେ କ୍ୟାମେରା ଚାଲେ, ତେଣେ ସାଉଣ୍ଡ୍ ଚାଲିଥାଏ । ପରିଚାଳକ quite କହନ୍ତି । ସମସ୍ତେ ନୀରବ । ତାପରେ Take କହନ୍ତି । Film ନିଆଯାଏ । ମନ ଲାଖି ନ ହେଲେ Cut କହନ୍ତି । କ୍ୟାମେରା କଟାଇ ଦିଆଯାଏ । ନେଇଥିବା ଶହ ଶହ ଫିଟ୍ ଫିଲ୍ମ ନଷ୍ଟ ହୋଇଯାଏ । ଫିଲ୍ମ ଭଲ ନ ହେଲେ, Sound ଭଲ ନ ହେଲେ ପୁଣି ନିଆଯାଏ । Director O.K. ନ କହିବା ଯାଏ ସୁଟିଂ ଚାଲିଥାଏ । ଫିଲ୍ମ ନିଆଯାଉଥିବା ବେଳେ ଏକ ବିଚିତ୍ର ଘଟଣା ଘଟିଗଲା । ଗୋଟିଏ ବଙ୍ଗାଳୀ ଝିଅ Extra ରୂପେ ଆସିଥିଲା । କେଜାଣି କାହିଁକି ସେ ମୋ ସହିତ ଆତ୍ମୀୟତା କରିବାକୁ ବସିଲା ! ମୁଁ କିଛି ଭାବି ପାରିଲି ନାହିଁ । ତାର କଥା ମୋତେ ଖୁବ୍ ଆନନ୍ଦ ଦେଲା । ତାର ବ୍ୟବହାରରେ ସେ ମୋତେ ବାନ୍ଧି ରଖିବାକୁ ଚେଷ୍ଟା କଲା । ଏ କଥା ଅନେକଙ୍କ ଆଖିକୁ ଆସିବାରୁ ମୁଁ ସଜାଗ ହୋଇ ଉଠିଲି । ସାବଧାନ ହୋଇଗଲି । ତାପରଠାରୁ ନଜର ଅଭିନୟରେ ଏପରି ଲିପ୍ତ ରହିଲି ଯେ କୌଣସିଆଡ଼େ ମୋ ଦୃଷ୍ଟି ଗଲା ନାହିଁ । ଚୌଧୁରୀ ବଳରାମ ଦାସ ଅତି ଭଦ୍ରଲୋକ ଥିଲେ । ତାଙ୍କ ପ୍ରତି ମୋର ଅତ୍ୟନ୍ତ ଶ୍ରଦ୍ଧା ଥିଲା ।

ଏମିତି ସମସ୍ତ ଆସେ ଯେତେବେଳେ କାହାରିକୁ ହିଂସା କରିବାକୁ ଇଚ୍ଛା ହୁଏନା । ଜଣେ ଜଣେ ଏମିତି ମଣିଷ ଥାଆନ୍ତି ଯେ ସମସ୍ତେ ତାର ମଙ୍ଗଳ କାମନା କରନ୍ତି । ତାର ଭଣ୍ଡାରର ଅନ୍ତସ୍ଥିନ ସୌନ୍ଦର୍ଯ୍ୟ ଦେଖି ଆନନ୍ଦିତ ହୁଅନ୍ତି । ଶ୍ରୀ ବୃଦ୍ଧିର ବାଞ୍ଛା କରନ୍ତି । କିନ୍ତୁ ସେ ପର ବୁଦ୍ଧିରେ ପରିଚାଳିତ ହେଉଥିଲେ । ନ ହୋଇ ରାହିବ ନ ଥିଲା । ତଥାପି ସେ ମୋତେ ଭଲ ଲାଗିଥିଲେ । ସିନେମା ମାନେ ତ ସବୁ ଖରାପ ନୁହେଁ ! ଅସଂଖ୍ୟ ଭଲର ସ୍ରୋତରେ ଗୋଟାଏ ଦୁଇଟା

ଖରାପ ମୃତଦେହ ଯେତେ ଗ୍ରସିଆସେ, ସେଇଟାହିଁ ଆମର ଦୃଷ୍ଟି ଆକର୍ଷଣ କରେ । କିନ୍ତୁ ସାବଧାନୀ ପରିସଂଖ୍ୟାନବିତ୍ଙ୍କ ନିକଟରେ ତାର ସେପରି ମୂଲ୍ୟ ନାହିଁ । ସରୋବରରେ ପଙ୍କ ଅଛି ଏବଂ ସେହି ଦୁର୍ଗନ୍ଧ ପଙ୍କରୁ ଜନ୍ମ ନିଏ ପଦ୍ମ । ପଙ୍କଜ ହୁଏ ତାର ନାମ । ସୌରଭରେ ପ୍ରାଣ ପୁଲକିତ ହୁଏ । ନୟନ ମୁଗ୍ଧ ହୁଏ । କିନ୍ତୁ ପଙ୍କ ? ସେ ଏକ ପ୍ରଶ୍ନବାଚୀ ? ସହଜ ପଥରେ ମହାନ୍‌ଙ୍କୁ ପାଇବାର ଆଶା ଖାଲି ମୂର୍ଖତା ନୁହେଁ ଧୃଷ୍ଟତା ।

ମୋ ଜୀବନରେ ମୁଁ ସବୁଠୁ ବେଶୀ ଜୋର ଦେଇଛି, ମୋ ବିଛଣା ଖଣ୍ଡିକରେ । ନିଜ ହାତରେ ସମସ୍ତ ସଫା କରି ରଖେ, କାହାରିକୁ ଛୁଆଁଇ ଦିଏନା ! ଖରାପ ଖାଇବା ହେଲେ ଚଳିବ, କିନ୍ତୁ ବିଛଣାଟି ଖରାପ ହେଲେ ଚଳିବନି । ମନରେ ବିରାଟ ଅଶାନ୍ତି ରହିଥିବ । ଜୀବନରେ ସବୁଠାରୁ ମୁଖ୍ୟ କେନ୍ଦ୍ର ହେଲା ବିଛଣା । ଏହି ଶଯ୍ୟାରେ ଶୋଇ ଶୋଇ ଆମେ ହସୁ, କାନ୍ଦୁ, ସ୍ୱପ୍ନରେ ବିଭୋର ହୋଇ ଉଠୁ, ବାସର ଶଯ୍ୟା ସଜାଉ । ଏହି ଶଯ୍ୟାରେ ହିଁ ଜନ୍ମ, ଏହି ଶଯ୍ୟାରେ ହିଁ ମୃତ୍ୟୁ । ତେଣୁ ମୋର ସ୍ତ୍ରୀ ଅତି ଯତ୍ନରେ ମୋର ବିଛଣାକୁ ସଜାଇ ଦିଅନ୍ତି । ମୋ ମନ କଥା ସିଏ କେବଳ ଜାଣନ୍ତି ।

ବିରାଟ ନଗର କୋଠାରେ ତାହା ହୋଇ ପାରିଲା ନାହିଁ । ସୁଟିଂରୁ ଫେରି ଟ୍ରାନ୍ତ କ୍ଳାନ୍ତ ଦେହକୁ ମେଲିକି ଦେବାକୁ ସ୍ଥାନ ଥିଲେ ମଧ୍ୟ ଟିକିଏ ନିଶ୍ଚିନ୍ତରେ ଶୋଇବାର ସୁବିଧା ନ ଥିଲା । ଛାଡ଼ନ୍ତୁ ସେ କଥା ।

ଥରେ ମୋର ଜଣେ ବନ୍ଧୁଙ୍କୁ ପ୍ରଶ୍ନ କରିଥିଲି ମୁଁ କେମିତି ? ସେ କହିଥିଲେ ସରଳ, ସହଜ ଅଥଚ ସୁନ୍ଦର । ଏ ପ୍ରଶଂସା ପାଖରେ ମୁଁ ଲଜ୍ଜିତ ହୋଇଥିଲି । କୌଣସି ଦିନ ସ୍ୱ ପ୍ରଶଂସାରେ ମୁଁ ଆତ୍ମହରା ହୋଇନି ।

ଦୁନିଆରେ ଅନେକ ଦେଖିଛି, ଅନେକ ଶିଖିଛି, ଠିକିଛି ମଧ୍ୟ । କିନ୍ତୁ ମୁଁ କହିବି, ମୋ ଅଭିଜ୍ଞତାର ଅନ୍ତନାହିଁ । ମୋର ପରିଚିତ ଏକାନ୍ତ ନିଜର ଲୋକ ସକୌତୁକରେ ସସ୍ନେହରେ କୁହନ୍ତି "ତୁମର ଚଞ୍ଚଳତା ଯାଇନି । କୈଶୋରରୁ ଯୁବତ୍ୱ ଯାଇ ଆସି ପ୍ରୌଢ଼ତ୍ୱ ଟପିଲି । କିନ୍ତୁ ସେହି ସରଳ, ନିଷ୍କପଟ ମନ ନେଇ ରହିଗଲି । ପିଲାଳିଆ ଢଙ୍ଗ ଗଲାନି । ସଂସାରର ପାଠଶାଳାରେ ଏତେ ଶିଖି ମଧ୍ୟ ତମର ସେହି ବାଲ୍ୟ ସୁଲଭ ଚପଳତା ଯାଇନି ।" ମୁଁ ହସେ । ଏ ପ୍ରଶ୍ନର କ'ଣ ବା ଉତ୍ତର ଦେବି ?

ଶୁଣିଛି ନିଭୃତ ମଧୁର ଭାବନାର ଅବସରରେ ପୁରାତନ ଯୁଗର ସ୍ମୃତି ଆସି ଭିଡ଼ କରନ୍ତି । ଏକାନ୍ତ ବିଭୋର ହୋଇ ଚିନ୍ତାରେ ବୁଡ଼ି ରହିବା ଭଳି ସମସ୍ତ

ବା ସୁଯୋଗ ମୋର ନାହିଁ । ତଥାପି ସମସ୍ତ ଅସମୟରେ ଏବଂ କାରଣ ଅକାରଣରେ ଏ ଜୀବନର ବେଦନା ବଧୁର ସ୍ମୃତିର ମେଘଗୁଡ଼ିକ ମୋର ହୃଦୟକୁ ଆଚ୍ଛନ୍ନ କରି ରଖନ୍ତି । କାହିଁକି ଏପରି ହୁଏ ? କିପରି ଏସବୁ ଘଟେ ? ତାହା ଜାଣିବା ଭଳି କୌତୁହଳ ମୋର ନାହିଁ । ତଥାପି ଏତିକି କହିବି ବିଭିନ୍ନ ଲୋକ ଚରିତ୍ରର ସଂସ୍ପର୍ଶରେ ନ ଆସିଥିଲେ, ସେମାନଙ୍କୁ ବୁଝିବାର ଚେଷ୍ଟା କରି ନ ଥିଲେ, ବୋଧେ ଏହି ପୃଥିବୀର ଏ ପାଠଶାଳାରେ ମୋର ଶିକ୍ଷା ଅସମ୍ପୂର୍ଣ୍ଣ ରହିଯାଇଥାନ୍ତା । ମଣିଷର ମନଗହନ ତଳେ ଯେଉଁ ଗୋପନ ମାନବତ୍ୱ ଟିକିକ ଲୁଚି ରହିଛି, ତାକୁ ଚହ୍ନିବାକୁ ହେଲେ, ପଥ କଡ଼ର ପାଠଶାଳାକୁ ଆସିବାକୁ ହୁଏ । ମୁକ୍ତ ଆକାଶ ତଳେ ଛିଡ଼ା ହେବାକୁ ପଡ଼େ । ଏତିକି ମୁଁ ଜାଣିଛି ।

ଗାନ୍ଧିଜୀଙ୍କ ତିରୋଧାନ ପରେ ୧୯୪୮ର ଆଉ ଏକ ଦୁଃଖଦ ଅଥଚ ମର୍ମନ୍ତୁଦ ଘଟଣାକୁ ମୁଁ ପାଶୋରି ପାରି ନାହିଁ । ଏବେ ବି ତାହା ମୋ ମନକୁ ବିହ୍ୱଳ କରିପକାଏ, ପ୍ରାଣରେ ପୀଡ଼ା ଦିଏ ।

ନବକୃଷ୍ଣ ଚୌଧୁରୀ ଏବଂ ମାଳତୀ ଦେବୀ (ନୂମା)ଙ୍କ ଏକମାତ୍ର ପୁତ୍ର ବିନାୟକ (କାଲୁ)ର ଆକସ୍ମିକ ମୃତ୍ୟୁ । ଏତେ ଶାନ୍ତ, ସରଳ, ମେଧାବୀ ଛାତ୍ର ଓ କି ଅପୂର୍ବ ତାର କାର୍ଯ୍ୟ ଦକ୍ଷତା ! ସଦା ହସ ହସ ମୁହଁ । ଅଳ୍ପ ସମୟ ମଧ୍ୟରେ ପରକୁ ଆପଣାର କରିବାର ତାର ଅସାଧାରଣ ଶକ୍ତି ଅନ୍ୟ ପିଲାଙ୍କ ଠାରେ ଖୁବ୍ କମ୍ ଦେଖିଛି । ତା ତୁଣ୍ଡରେ ପାଗଳା ବୈକୁଣ୍ଠ ଭାଇ ଡାକ ମୋତେ ବଡ଼ ଆନନ୍ଦ ଦେଉଥିଲା । ପିଲାଦିନେ ତାକୁ ମୁଁ କେତେ କାଖେଇଛି, କୋଳେଇଛି ଓ ଖେଳେଇଛି ।

ମୁଁ କଟକ ବାହାରେ ଥିଲି, ଆସି ଶୁଣିଲି ପଟାସିୟମ୍ ସାୟନାଇଡ୍‌ର ସଲ୍ୟୁସନ୍ ଖାଇ ତାର ଜୀବନର ଦୀପକୁ ନିଜ ହାତରେ ଲିଭାଇ ଦେଇଛି । ନବବାବୁ ସେତେବେଳେ ରାଜସ୍ୱ ମନ୍ତ୍ରୀ ଥିଲେ । କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ଼ର ସାତ ନମ୍ବର କୋଠିରେ ସେ ରହୁଥିଲେ । ବିନାୟକ ଭଳି ପିଲା ଆତ୍ମହତ୍ୟା କରିପାରିଲା, ଏକଥା କେହି ବିଶ୍ୱାସ କରିପାରିଲେ ନାହିଁ । କିନ୍ତୁ ଏ ପର୍ଯ୍ୟନ୍ତ ତାହାର ମରଣ ଘନ ରହସ୍ୟାବୃତ ହୋଇ ରହିଛି ।

ଯେଉଁଦିନ ଯେଉଁ ସମୟରେ ବିନାୟକର ଶବ ଶ୍ମଶାନକୁ ଗଲା, ଠିକ୍ ସେହିଦିନ ସେହି ସମୟରେ ଗଦାଧର ଦତ୍ତଙ୍କ କନ୍ୟା ମନୀଷାର ମଙ୍ଗଳ ଶଙ୍ଖ ବାଜିଉଠିଲା । ତେଣେ ଧୂଳୁଫଟା ଚନ୍ଦନର ବାସ ଉଠିଲା ବେଳେ ଏଣେ

ଆନନ୍ଦରେ ହୁଳହୁଳି ନାଦରେ ଗଗନ ପବନ ମୁଖରିତ ହୋଇ ଉଠିଥିଲା । ଜଣଙ୍କ ଘରେ ଶୋକ ଓ ବିଚ୍ଛେଦର କୃଷ୍ଣ ଯବନିକା ନଇଁ ଆସିଲା ବେଳେ ଆଉ ଜଣଙ୍କ ଘରେ ମିଳନର ଶୁଭ୍ର ଯବନିକା ଧୀରେ ଧୀରେ ଉଠୁଥିଲା । କି ବିଚିତ୍ର କଣ୍ଟ୍ରାଷ୍ଟ (contrast), ଏ ମୃତ୍ୟୁ ନେଇ କଏ କେତେ ପ୍ରକାରର ଚର୍ଚ୍ଚା କଲେ । କିନ୍ତୁ କୌଣସିଟିର ଭିତ୍ତି ନ ଥିଲା । ଯିଏ ଗଲା ସିଏ ଗଲା । ଯାହାର ଗଲା, ସିଏ ଏକ ଅମୂଲ୍ୟ ସମ୍ପଦ ହରାଇ ବସିଲା । ଦୁର୍ଯୋଗକୁ କାନ ଦେଇ ଲାଭ କ'ଣ ? କାଲୁର ମୃତ୍ୟୁ ସବୁ ମତବାଦର ଲୋକଙ୍କ ମନରେ ଦାରୁଣ ଦୁଃଖ ଦେଇଥିଲା । ନବବାବୁ (ବାପି) ପଥର ପାଲଟି ଯାଇଥିଲେ । ଏତେ କର୍ମତତ୍ପର, ଧୈର୍ଯ୍ୟଶୀଳା ନୁମାଙ୍କର ଆଉ କିଛି ରହିଲା ନାହିଁ । ଏକମାତ୍ର ଦୁଲାଳର ବ୍ୟଥା ତାଙ୍କ ବୟସକୁ ଢେର ବଢ଼ାଇ ଦେଇଥିଲା ।

ଶରତକୁମାରୀ ଖବର ପାଇ ତଣ୍ଡିକୂଲରୁ ଆସିଲେ । ଆମେ ଦୁହେଁ ତାଙ୍କ ପାଖକୁ ଗଲୁ । ନୁ'ମା ଆମ ଦୁହିଁଙ୍କୁ ଦୁଇ ପାଖରେ ବସାଇ କେତେ ଯେ କାନ୍ଦିଲେ ତା'ର ସୀମା ନାହିଁ । ପ୍ରିୟଜନମାନେ ସାନ୍ତ୍ୱନା ଦେବାକୁ ଗଲେ ସେ ବେଶୀ ଅଧୀର ହୋଇ ପଡ଼ୁଥିଲେ । ତାଙ୍କ ଆଖିରୁ ଅବିରତ ଅଶ୍ରୁଧାର ବହିଯାଉଥିଲା । ତାଙ୍କଭଳି ଜଣେ କର୍ମତତ୍ପର ମହିଳା, ଏତେ ଦୂର ଦେହ ଓ ମନରେ ଭାଙ୍ଗି ପଡ଼ିବେ, କେହି କେବେ ତାହା କଳ୍ପନା କରି ନ ଥିଲା । କାଳୁର ମୃତ୍ୟୁ ଚୌଧୁରୀ ପରିବାରରେ ଏକ ଶୋକ ଓ ବିଚ୍ଛେଦର ପରଦା ଟାଣିଦେଲା ।

ସେତିକି ନୁହେଁ, ତନୁର (କୃଷ୍ଣା ଓ ବିଭୂତି ବାବୁ)ଙ୍କ ବଡ଼ ପୁଅ ଅସୀମ୍ ୨୧ ତାରିଖ ଅଗଷ୍ଟ ୮୩ ସାଲରେ ନର୍ଗୁଣ୍ଡି ଠାରେ ଏକ ଟ୍ରେକର୍ ଦୁର୍ଘଟଣାରେ ପ୍ରାଣ ହରାଇଲା । ଅତି ଦୁଃଖଦ ଓ ମର୍ମନ୍ତୁଦ ସେ ମୃତ୍ୟୁ । ବାପାଙ୍କୁ ଦିଲ୍ଲୀ ଯିବା ଲାଗି ଭୁବନେଶ୍ୱର Air Portରେ ଛାଡ଼ି ଆତ୍ମୀୟସ୍ୱଜନଙ୍କ ବାରଣ ସତ୍ତ୍ୱେ ଅନୁଗୁଳ ଫେରୁଥିଲା । ହଠାତ୍ ଏକ ଟ୍ରକ୍ ସହିତ ଧକ୍କା ହେଲା । ପାଣି ପାଣି ବୋଲି ଚିତ୍କାର କରୁଛି, କେହି ନାହିଁ ତା ପାଟିରେ ପାଣି ଟୋପେ ଦେବା ପାଇଁ । ଜଣେ ଭଦ୍ରଲୋକ କାର୍‌ରେ ଯାଉଥିଲେ । ସେ ଏ ଅବସ୍ଥା ଦେଖି ତାକୁ କଟକ ବଡ଼ ଡାକ୍ତରଖାନାକୁ ଆଣିଲେ । ସେଠି ମଧ୍ୟ ବିଧିବଦ୍ଧ ଚିକିତ୍ସା ହୋଇ ପାରିଲା ନାହିଁ । ଘୋର ଅବହେଳାରେ ସେ ଚିରଦିନ ପାଇଁ ଆଖି ବୁଜିଲା । ଅଳ୍ପ ଦିନ ପୂର୍ବରୁ ତାର I. Sc. ପରୀକ୍ଷାର ଫଳାଫଳ ପ୍ରକାଶ ପାଇଥିଲା । ପ୍ରଥମ ୧୦ ଜଣଙ୍କ ମଧ୍ୟରେ ସେ ଥିଲା । ଯାହା ହେଉ ଅନେକ ଅନୁସନ୍ଧାନ ପରେ ତାର ମୃତ ଦେହ ଡାକ୍ତରଖାନାରୁ ଉଦ୍ଧାର କରାଯାଇଥିଲା । ବାଖରାବାଦରେ ଶୋକର ଛାୟା ଖେଳି ଯାଇଥିଲା । ମୁଁ

ଏବଂ ଶରତ୍ କୁମାରୀ ବାଖରବାଦ ବସାକୁ ଯାଇଥିଲୁ । ବିଭୂତି ବାବୁ ଟିକେ ଧୈର୍ଯ୍ୟ ଧରିଥାନ୍ତି । କିନ୍ତୁ ତାଙ୍କୁ ଦେଖିଲେ ମଣିଷ ଅତ୍ୟନ୍ତ ଦୁଃଖିତ ଓ ବ୍ୟଥିତ ହୋଇ ପଡ଼ିବ । କିଛି ସମୟ ସେଠାରେ ରହି ଆଖିର ଲୁହ ଆଖିରେ ମାରି ଭାରାକ୍ରାନ୍ତ ହୃଦୟରେ ସେଠାରୁ ଫେରିଲୁ ।

ସେହିପରି ମନ ମୋହନ ଚୌଧୁରୀ (ବୁଲୁଭାଇ)ଙ୍କର ଏକମାତ୍ର ପୁଅ "ନାନା" ଇଙ୍ଗଲଣ୍ଡର ଉଚ୍ଚତର ଶିକ୍ଷା ପାଇବାକୁ ଯାଇ ଏକ ମୋଟର୍ ଦୁର୍ଘଟଣାରେ ଆମେରିକାରେ ପ୍ରାଣ ହରାଇଲେ । ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ ଏବଂ ସର୍ବତ୍ୟାଗୀ ଚୌଧୁରୀ ପରିବାର ପ୍ରତି ବିଧାତାର ଏ କି ନିଷ୍ଠୁର ପରିହାସ, ଏ କି ଅବିଚାର ! ତାହା କଳ୍ପନା କଲେ ଦେହ ରୋମାଞ୍ଚିତ ହୁଏ । ମନ ଅସୀମ ବ୍ୟଥାରେ ଭାଙ୍ଗିପଡ଼େ ।

ଏଥର ମୁଁ ଆଉ ଜଣଙ୍କ ନାମ ଅତି ଶ୍ରଦ୍ଧାର ସହ ସ୍ମରଣ କରୁଛି । ସେ ହେଉଛି ସୀତା ସାହୁ । ବର୍ତ୍ତମାନ ଶୈଳବାଳା ମହିଳା ବିଦ୍ୟାଳୟର ଅଧ୍ୟାପିକା । ଘନଶ୍ୟାମ ସାହୁ Advocateଙ୍କ ସ୍ତ୍ରୀ, ପୁଅ ଝିଅ ଦୁଇଟି । ବାଦାମବାଡ଼ିରେ ବିରାଟ କୋଠା । ଖୁବ୍ ଭଲରେ ଅଛି । କିନ୍ତୁ ସେ ଯେପରି ନିଜକୁ ତିଳ ତିଳ କରି ଜାଳି ଏକ ସଙ୍କଳ୍ପ ନେଇ ପାହାଚ ଉପରେ ପାହାଚ ଚଢ଼ି ଉନ୍ନତିର ଶୀର୍ଷ ସ୍ଥାନରେ ପହଞ୍ଚିଛି, ତାହା ପ୍ରତ୍ୟେକ ଝିଅର କରଣୀୟ, ବରଣୀୟ ଓ ଗ୍ରହଣୀୟ । ସେ ସ୍ୱାମୀ ସନ୍ତାନ ସହ ସୁଖରେ ରହୁ—ଏହା ମୋର ଓ ମୋ ସ୍ତ୍ରୀଙ୍କର ଅନ୍ତରର କାମନା ।

ଥରେ ଭୀଷଣ ବେମାର ପଡ଼ିଲି । ପାଖରେ ପଇସାଟିଏ ନାହିଁ, କି ଉଠିବାର ଶକ୍ତି ମଧ୍ୟ ନାହିଁ । ସେ ମୋର ଯାହା ସେବା କରିଛି, ଏବେ ବି ମୁଁ ତାହା ମମତାର ସହିତ ମନେ ରଖିଛି । ଘୋର ଅଭାବ ବେଳେ ଟ୍ୟୁସନ୍ କରି ସେ ମୋ ଲଗି ପଥ୍ୟ ଓ ଔଷଧ ଯୋଗାଇଛି । ସମୟେ ସମୟେ ମୁଁ ନିଜକୁ ବଡ଼ ସ୍ୱାର୍ଥପର ବୋଲି ଭାବେ । ମୋର କର୍ମମୟ ଜୀବନର ସଙ୍କୀର୍ଣ୍ଣ ପୃଥିବୀରେ ଯେଉଁମାନେ ଥରେ ପଦାର୍ପଣ କଲେ, ସେମାନଙ୍କ ସୁଖ ଦୁଃଖର ସୁଦୀର୍ଘ ବିବରଣୀ ମୋତେ ଭଲ ଲାଗୁ କି ନ ଲାଗୁ ସେମାନେ ମୋର ଆତ୍ମୀୟ । ସେଇମାନଙ୍କ ଲଗି ମୁଁ କିଛି କରିନାହିଁ । ସେମାନଙ୍କ ଠୁ ଅନେକ ନେଇଛି । ପ୍ରତିଦାନରେ ମୋଠୁ ସେମାନେ କିଛି ପାଇ ନାହାନ୍ତି । କେବଳ ଏ ଜୀବନୀ ଲେଖୁଛି, ସେମାନେ ଏହାକୁ ପଢ଼ି ମୋତେ ଅନ୍ତରରେ ଟିକଏ ସ୍ଥାନ ଦିଅନ୍ତୁ, ମୋର ସ୍ୱାର୍ଥପରତାକୁ ଟିକଏ ପାଶୋରି ଦିଅନ୍ତୁ ।

୧୯୫୫ ମସିହା ସେପ୍‌ଟେମ୍ବର ୭ ତାରିଖ । ଏକ ପ୍ରଳୟଙ୍କରୀ ଦିନ । ତାର ଦୁଇ ଚାରି ଦିନ ପୂର୍ବରୁ ଘୋର ବର୍ଷା ହୋଇ ତିର୍ତ୍ତୋଳର ଆଖପାଖ ଗାଁ ଗୁଡ଼ିକରେ ଜମି ପାଣିରେ ବୁଡ଼ି ଯାଇଥାଏ । ହିଡ଼ ବାଡ଼ ଦେଖାଯାଉ ନ ଥାଏ । ପାଲଧୁଆ ଗ୍ରାମ ଠାରେ ହରିପୁର ଅଞ୍ଚଳର କେତେକ ଗ୍ରାମବାସୀ ଅଳକା ନଈ ଉପରେ ଗୋଟିଏ ବିରାଟ ବନ୍ଧ କରିବା ଫଳରେ ଟିକିଏ ପାଣିହେଲେ ତିର୍ତ୍ତୋଳ, ଏରସମା, ବାଲିକୁଦା ଆଦିର ବହୁ ଗ୍ରାମ ଜଳମଗ୍ନ ହୁଏ । ଗ୍ରାମବାସୀ ବହୁତ ଦୁର୍ଦ୍ଦଶା ଭୋଗନ୍ତି । ସରକାରଙ୍କ ପାଖରେ କେତେ ଆବେଦନ ନିବେଦନ କରି ସମସ୍ତ ବ୍ୟର୍ଥ ହୋଇଥାଏ । ଅପର ପକ୍ଷ ବେଶ ଶକ୍ତିଶାଳୀ । ଏ ପକ୍ଷର ସମସ୍ତ ଉଦ୍ୟମକୁ ପଣ୍ଡ କରି ଦେଉଥିଲେ । ସେ ଯାହା ହେଉ, ମୋ ସ୍ତ୍ରୀଙ୍କ ଠାରୁ ଚିଠି ଖଣ୍ଡେ ପାଇ ସେହି ପାଣି କାଦୁଅରେ ଉଠିପଡ଼ି ତିର୍ତ୍ତୋଳର ଏକ ଛୋଟିଆ ଗାଁ ବରମପୁରରେ ପହଞ୍ଚିଲି । ଯେଉଁଠି ଆମେ ଗତ ୮ । ୯ ବର୍ଷ ହେଲା ରହୁଥିଲୁ ।

ସେଦିନ ୧୯୫୫ ମସିହା ସେପ୍‌ଟେମ୍ବର ୫ ତାରଖ । ୭ ତାରଖଟି ସୁରୁ-ଖୁରୁରେ କଟିଲା । ୭ ତାରଖ ଦିନ ୧୧ଟା ବେଳେ ଦେଖିଲୁ ହଂସୁଆ ନଈରେ ଖୁବ୍ ପ୍ରବଳ ବେଗରେ ପାଣିର ସୁଅ ଛୁଟିଛି ! ଦେଖୁ ଦେଖୁ ତାର କଳେବର ବୃଦ୍ଧି ହେଲା । କେତେ ଗଛ, ଘରଦ୍ୱାର, ମଶାଣିର ପୋଡ଼ା କାଠ ହେଂସ କଡ଼ାଇ ଭାସି ଯାଉଛି, ସମୁଦ୍ର ଅଭିମୁଖେ । ଦେଖୁ ଦେଖୁ ୪ଟା ସୁଦ୍ଧା ହଂସୁଆ ନଈର ଦୁଇ କୂଳ ଲଙ୍ଘି ପାଣି ଗାଁ ଭିତରେ ପଶିଲା । ଅନେକ ଘର ବାଡ଼ ଭାଙ୍ଗିଲା । କେତେ ଘର ଟଳି ପଡ଼ିଲା । ତିର୍ତ୍ତୋଳ ଦାଣ୍ଡରେ ବିଶେଷ କରି ବରହମପୁରରେ ପାଣିର ସୁଅ ପଡ଼ିଲା । ଘଟଣା କିଛି ବୁଝି ହେଉ ନ ଥାଏ । ଅପରାହ୍ନ ୫ଟାରେ ଖବର ଆସିଲା ଦଳେଇ ଘାଇ ଭାଙ୍ଗି ମାଛଗାଁ କେନାଲ ଓ ମାଛଗାଁ ରାସ୍ତାକୁ ଅନେକ ଦୂରକୁ ପେଲି ଦେଇଛି । ତିର୍ତ୍ତୋଳ ଥାନା ନାହିଁ । ଗୋବିନ୍ଦପୁର, ଜଗତ୍‌ସିଂହପୁର ଓ ବାଲିକୁଦା ଥାନାର ବହୁତ ଅଞ୍ଚଳକୁ ବୁଡ଼େଇ ରଖିଛି ।

ବୁଢ଼ାମାନେ କହୁଥିଲେ ମାଳିକା କହୁଛି: "ଦଳେଇଘାଇ ଭାଙ୍ଗିବ । ତିନି ଗୋଡ଼ିଆ କୁମ୍ଭୀର, ଚିତଳ ମାଛ, ରାଘବ ବାଳିଆ, ଶାରଳା ଠାକୁରାଣୀଙ୍କୁ ଦର୍ଶନ କରିବେ । କଳିଯୁଗ ଶେଷ ହେଲା ଜାଣ ।" ନାନା ଗଳ୍ପ, ଗୁଜବ ଲୋକମାନଙ୍କୁ ଭୀତତ୍ରସ୍ତ କରିଦେଲା । ପ୍ରକୃତରେ ଏ ତିନୋଟି ଜନ୍ତୁ ଶାରଳା ମା'ଙ୍କୁ ଦର୍ଶନ କରିଥିଲେ କି ନା କହିହେବନ । କିନ୍ତୁ ଶାରଳା ଦେବୀଙ୍କ ଚନ୍ଦନ ପୋଖରୀରେ ବନ୍ୟାଜଳ ପଶି ତାକୁ ଉବୁଟୁବୁ କରୁଥିଲା । ନାଳବର ପାଖ ପୋଲରେ ଦୁଇ ତିନୋଟି ବଡ଼ ବରଗଛ ଅଟକି ନ ଯାଇଥିଲେ, ଆମ ଅଞ୍ଚଳକୁ ଦଳେଇ

ଯାଇ ପାଣି ଅହରହ ଧ୍ୱସ୍ତ ବିଧ୍ୱସ୍ତ କରିଦେଉଥାନ୍ତି । ଘର ଭାଙ୍ଗିଲା, ଫସଲ ସବୁ ଧୋଇଗଲା । ଲୋକେ ପ୍ରମାଦ ଗଣିଲେ । ଆମ ଘରେ ଆସି ଅନେକ ଆଶ୍ରୟ ନେଲେ । ଦାଣ୍ଡରେ, ବାଡ଼ିରେ ପାଣି । ସମସ୍ତେ ଶଙ୍କାକୁଳ । ପାଳ କରି ପହଁରି ଦେଉଥାନ୍ତି । ପାଣି ବୁହାଉଥାନ୍ତି । ଲୋକଙ୍କ ଦୁରବସ୍ଥା ଦେଖି ନ ପାରି ସେହି ପାଣିରେ ପହଁରି ବାଲିକୁଦା ଅଭିମୁଖେ ଚାଲିଲି । ବାଲିକୁଦା ହାଇସ୍କୁଲରେ ଅନେକ ଲୋକ ଜମିଥାନ୍ତି । ହେଡ୍‌ମାଷ୍ଟରେ ଓ ଅନ୍ୟମାନେ ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲେ—ତୁମେମାନେ ସମସ୍ତେ ଭଲ ଅଛ ତ ? ଆମେ ତ ଭାବୁଥିଲୁ ତଣ୍ଡିକୂଳ ନିଶ୍ଚିହ୍ନ ହୋଇଯାଇଛି ବୋଲି । ମୁଁ କହିଲି—"ଈଶ୍ୱରଙ୍କ କୃପାରୁ କୌଣସିମତେ ବଞ୍ଚି ଯାଇଛୁ । କିନ୍ତୁ ଲୋକେ ଭୋକ ଉପାସରେ ପଡ଼ିଛନ୍ତି । ସେମାନଙ୍କ ଦୁରବସ୍ଥା ଦେଖି ନ ପାରି ମୁଁ ନିଜ ଜୀବନକୁ ପାଣି ଛଡ଼େଇ ଏତେ ଦୂରରୁ ବହୁ କଷ୍ଟରେ ଆସିଛି । ଆପଣମାନେ ସେମାନଙ୍କର ସାହାଯ୍ୟ କରନ୍ତୁ । କିଛି ଦିନ ବଞ୍ଚେଇ ରଖନ୍ତୁ ସେମାନଙ୍କୁ ।"

ହେଡ୍‌ମାଷ୍ଟରଙ୍କ ଅଧ୍ୟକ୍ଷତାରେ ଏକ ରିଲିଫ୍ କମିଟି ଗଠନ କରାଯାଇଥାଏ । ଛାତ୍ରମାନେ ଅନେକ ଗ୍ରାମ ବୁଲି, ଅନେକ ଚାଉଳ, ନଡ଼ିଆ, ଚୁଡ଼ା, ସଂଗ୍ରହ କରିଥାନ୍ତି । ହେଲିକପ୍‌ଟର୍ ଏବଂ ଉଡ଼ାଜାହାଜରୁ ମଧ୍ୟ ଚାଉଳ, ଲୁଗା ବସ୍ତା ପଡ଼ିଥାଏ । ସେମାନେ ମୋର ନିବେଦନ ଫଳରେ ଚାଉଳ, ଚୁଡ଼ା, ଲୁଗା ବିତରଣ ଲାଗି ଦୁଇଟି ଡଙ୍ଗାରେ ପଠାଇଲେ । ହାଇସ୍କୁଲ ଶିକ୍ଷକ ଶ୍ରୀ ନରୋତ୍ତମ ବାବୁ ଏବଂ ଦୁଇଜଣ ଛାତ୍ର ସ୍ୱେଚ୍ଛା ସେବକଙ୍କୁ ନେଇ ତଣ୍ଡିକୂଳ ଅଭିମୁଖେ ଚାଲିଲୁ । ରାତିରେ ପହଞ୍ଚିଲୁ ଆମଘରେ । ଦୁଇ ତିନି ଦିନ ହେଲା ବହୁ ଲୋକଙ୍କ ଘରେ ଚୁଲି ଜଳି ନାହିଁ । ସକାଳୁ ସମସ୍ତଙ୍କୁ ଜାତି, ବର୍ଣ୍ଣ ନିର୍ବିଶେଷରେ ସାହାଯ୍ୟ ଦିଆଗଲା । ସାତ ଦିନ ଲାଗି ଲୋକେ ଆଶ୍ୱସ୍ତ ହେଲେ । ପୁଣି ଥରେ ବାଲିକୁଦାରୁ ସାହାଯ୍ୟ ଆସି ପହଞ୍ଚିଲା । ଏଥର ତିନୋଟି ଡଙ୍ଗାରେ । ଯେତିକି ଲୋଡ଼ା । ସରକାରୀ ରିଲିଫ୍ କ୍ୟାମ୍ପ୍ ମଣିଜଙ୍ଗା ଡାକ ବଙ୍ଗଳାରେ ଖୋଲା ଯାଇଥାଏ । ଏ ଅଞ୍ଚଳରେ ଲୋକେ ବହୁଥର ମଣିଜଙ୍ଗା ଯାଇ ଫେରି ଆସିଥାନ୍ତି । ତତ୍କାଳୀନ ୟୁନିୟନ୍ ପ୍ରେସିଡେଣ୍ଟ୍ ଦାମ ମହାପାତ୍ରଙ୍କୁ ସାଥିରେ ନେଇ ମୋତେ ଯିବାକୁ ପଡ଼ିଲା । ଅଫିସର୍ ଅଳ୍ପ ସମୟ ମଧ୍ୟରେ ମୋ କଥା ଶୁଣି ମୁଗ୍‌ଧ ହେଲେ । ହିସାବ କରି ଲୋକମାନଙ୍କୁ ଚାଉଳ, ନୂଆ ଲୁଗା ଇତ୍ୟାଦ ଦିଆଗଲା । ଆଉ ୧୫ ଦିନ ଲାଗି ସାହାଯ୍ୟର ବ୍ୟବସ୍ଥା କରି ଆସିଲି । ତା ପରେ ସାଇକେଲ୍ ଖଣ୍ଡେ ଧରି କଟକ ଗଲି । କଲିକତାର ମାରୱାଡ଼ି ରିଲିଫ୍ ସୋସାଇଟିକୁ ଯାଇ ତାଙ୍କ କର୍ମକର୍ତ୍ତାଙ୍କ ସହ

କଥା ହେଲି । ସେମାନେ ମୋ କଥାରେ ପ୍ରଭାବିତ ହୋଇ ଅନେକ ଗୁଡ଼ାଏ ଜିନିଷ ଟ୍ରକରେ ନାଲିବର ଯାଏ ପଠେଇଲେ । ସେଠାରୁ ଆମେ ବ୍ୟବସ୍ଥା କରି ସାମଗ୍ରୀମାନ ଡଙ୍ଗାରେ ନେଇ ଆସିଲୁ । ଆମ ଘରେ କ୍ୟାମ୍ପ ହେଲା । ସ୍ୱେଚ୍ଛାସେବକ ଦୁଇଜଣଙ୍କ ଖାଦ୍ୟପେୟର ଆୟୋଜନ ଆମେ କଲୁ । ଯିଏ ଆସିଲେ ଆମ ଘରେ ହିଁ ସେମାନଙ୍କୁ ଠାବ ମିଳିଲା । ମାରଓ୍ୱାଡ଼ିମାନେ ଆମଘରକୁ କେନ୍ଦ୍ର କରି ଏରସମା, ବାଲିକୁଦା, ଝଟିଣ୍ଡୋଳର ବହୁ ଦୁଃସ୍ଥ ଲୋକଙ୍କୁ ଲୁଗା, କଡ଼େଇ, ଡେକ୍‌ଚି, ଚାଉଳ, ବାସନ କୁସନ, ଡ଼ାଲି ତେଲ ଇତ୍ୟାଦି ବାଣ୍ଟିଲେ । ସ୍ୱଚ୍ଛଳ ଲୋକ ମଧ୍ୟ ନେବାକୁ କୁଣ୍ଠାବୋଧ କଲେନି ।

ବେସରକାରୀ ରିଲିଫ୍ କମିଟି ତରଫରୁ ସ୍ୱର୍ଗୀୟ ନୀଳମଣି ପ୍ରଧାନ ଆସି ଆମ ଘରେ ପହଞ୍ଚିଲେ । ଅନାଥିନୀ ବିଧବାମାନଙ୍କୁ ସେ ଟଙ୍କା ଆକାରରେ ଅନେକ ସାହାଯ୍ୟ କଲେ । ଗୋଟିଏ ପୋଖରୀ ଓ ବନ୍ଧ ଲାଗି ଟଙ୍କା ମଞ୍ଜୁର କରି ଥିଲେ । ସବୁ ଆମ ଜରିଆରେ ବଣ୍ଟାଗଲା । ତାପରେ କାଶୀ ବିଶ୍ୱନାଥ ରିଲିଫ୍ ସୋସାଇଟି ମଧ୍ୟ ଅନେକ ଦିନ ଧରି ସାହାଯ୍ୟ ବଣ୍ଟନ କଲେ । ବାଲିକୁଦାରୁ ମଧ୍ୟ ସରକାରୀ ସାହାଯ୍ୟ ଆସି ପହଞ୍ଚିଲା ।

ବନ୍ୟା ପରେ ସରକାରଙ୍କ ତରଫରୁ ଲୋକଙ୍କୁ ତଗାବୀ ଋଣ, ଘରଭଙ୍ଗା ଋଣ, ଜମି ଉନ୍ନୟନ ଆଦି ଲାଗି ବହୁତ ଟଙ୍କା ଋଣ ଆକାରରେ ଦିଆଗଲା । ସୁବିଧାବାଦୀ, ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀଙ୍କ ମେଳା ବାଲିକୁଦା ଡାକବଙ୍ଗଳାରେ ଲାଗିଗଲା । ଗରିବଙ୍କ ନାଁରେ ଧୋବ ଧାଉଳିଆମାନେ ନାନା ପେଞ୍ଚ କରି, ଜାଲ ଦସ୍ତଖତ କରି, ଜାଲ୍ ଟିପ ଚିହ୍ନ ମାରି, ଚାଉଳ, ଲୁଗା, ଟଙ୍କା ଆତ୍ମସାତ୍ କଲେ । ଥାନାରୁ ଚାଉଳ ପାଇ ବାହାରେ ବିକି ହେଲା । ଧରପଗଡ଼ କଲେ ମଧ୍ୟ କିଛି ପ୍ରତିକାର ହେଲା ନାହିଁ । ରିଲିଫ୍ ଅଫିସର ଦେବତା ପରି ପୂଜା ପାଇଲେ ।

ଡକ୍ଟର ପରିଜା ସେତେବେଳେ M. L. A. ଥାନ୍ତି । ତାଙ୍କର ଯିଏ ନୋମିନି ହେଲେ ତାଙ୍କ ଘରେ ମିଲ୍‌କ୍ ପାଉଡ଼ର, ବଟର୍ ଅଏଲ, ସବୁ ଚାଉଳ ଓ ଗହମ ଭରିଗଲା । ଦୁଃସ୍ଥ ଲୋକଙ୍କ ପାଇଁ ଆସିଥିବା ଲୁଗାପଟା ସୁସ୍ଥ ଲୋକେ ଭୋଗିଲେ । ବଟର ଅଏଲରେ ମାଲପୁଆ ଛାଣି, ମିଲ୍‌କ୍ ପାଉଡ଼ର୍‌ରେ ଖିରିକରି ରିଲିଫ୍ ଅଫିସରଙ୍କୁ ପୂଜାକରି ଧନ୍ୟ ହେଲେ । ସାହାଯ୍ୟ ନାମରେ ଦୁର୍ନୀତିର ସ୍ରୋତ ବହି ଚାଲିଲା । ପ୍ରତିବାଦ ବା ବିରୋଧର ଫଳ କିଛି ହେଲା ନାହିଁ ।

ଗନ୍ଧର୍ବଙ୍କ ପାଇଁ ଆସୁଥିବା ଧନରେ ନାଟ ଆଖଡ଼ାଟିଏ ମୁଣ୍ଡ ଟେକିଲା । ଅପର୍ଯ୍ୟାପ୍ତ ପଇସା ନାଟ୍ୟାଙ୍କ ପିଣ୍ଡ୍ରା ଖର୍ଚ୍ଚ ହେଲା । କେତେ ଲେଖିବି ? ଲେଖିଲେ ପୋଥିଟିଏ ହେବ । କର୍ମୀମନ ତ ! ଏସବୁ ଅନ୍ୟାୟ ଅନୀତି ସହ୍ୟ ହେଉ ନ ଥାଏ ।

ମୁଁ ଜଣକୁ ଜାଣେ, ଯିଏ ଅର୍ଦ୍ଧାସନ, ଅନଶନରେ ଦିନ କାଟୁଥିଲା, ଘରେ ହାଣ୍ଡି ମାଙ୍କଡ଼ଚଲ୍ଲା ମାରୁଥିଲା । ଦଳେଇ ଘାଇର କୃପାରୁ ତା ଦେହରେ ଚର୍ବି ଲାଗିଲା । ଘରର ଅବସ୍ଥା ବଦଳିଲା । ଜମି କଣା ହେଲା । ସ୍ତ୍ରୀ ସୁନା ଅଳଙ୍କାର ପିନ୍ଧିଲେ । ହାୟରେ ଏ ଦେଶ ! ହାଏରେ ଏ ଜନତା !! ତୁମ ମୁଣ୍ଡରେ ନଡ଼ିଆ ଭାଙ୍ଗି ଧୋବ ଧଉଳିଆ ଏମିତି ଗଳୁଥିବେ, ଆଉ ଚିର ଦିନ ତୁମେ ଏମିତି ହା ହୁତାଶ ଭିତରେ ଥିବ ! ୧୯୫୭ ମସିହା ପର୍ଯ୍ୟନ୍ତ ଏ ଲୀଳା ହେଲା ।

ଧୀରେ ଧୀରେ ନିର୍ବାଚନ ପାଖେଇ ଆସିଲା । ଦଳେଇ ଘାଇର ଆଳରେ କଂଗ୍ରେସ ଲୋକେ ନିର୍ବାଚନ ଜିଣିବା ଲାଗି ଅଣ୍ଟା ଭିଡ଼ିଲେ । Advocate ବସନ୍ତ ସାହୁ ଆମ ପାର୍ଟିରୁ ବାହାରି ଯାଇ କଂଗ୍ରେସରେ ମିଶିଲେ । ଆମ ଲୋକେ ଭାଙ୍ଗି ପଡ଼ିଲେ । ମୋ ଭଳି ଜଣେ ସାଧାରଣ କର୍ମୀକୁ ଠିଆ କଲେ ଏ ଯୁଦ୍ଧରେ । ବାଲିକୁଦା ନିର୍ବାଚନ ମଣ୍ଡଳୀରେ କଂଗ୍ରେସର ତରଫରୁ ବସନ୍ତ କୁମାର ସାହୁ, ଗଣତନ୍ତ୍ରରୁ ରତ୍ନାକର ସାହୁ, ସ୍ୱାଧୀନ ପ୍ରାର୍ଥୀ ରୂପେ ଯଥାକ୍ରମେ ମଧୁସୂଦନ ବଶ୍ୱାଳ, ରାଜକିଶୋର ଦାସ ଓ ଧୀନମଣି ଲେଙ୍କା ପ୍ରାର୍ଥୀ ହେଲେ । ଆମ ପାର୍ଟି ତରଫରୁ ସାରଙ୍ଗଧର ଦାସଙ୍କୁ ପ୍ରାର୍ଥୀ କରାଗଲା ଲୋକସଭାକୁ । ତାଙ୍କ ବିରୁଦ୍ଧରେ ନିତ୍ୟାନନ୍ଦ କାନୁନଗୋ କଂଗ୍ରେସ ତରଫରୁ ଠିଆ ହେଲେ । ସମ୍ବଳହୀନ ଅବସ୍ଥାରେ ଆମ କର୍ମୀମାନେ ମନପ୍ରାଣ ଦେଇ ଲାଗିପଡ଼ିଲେ । ବିପିନ୍ (ମୋ ସାନଭାଇ) ନିର୍ବାଚନର ମୁଖ୍ୟ ଦାୟିତ୍ୱ ନେଲା । ମୋର ପ୍ରିୟ ଚନ୍ଦନ (ହରିହର କାନୁନ୍‌ଗୋ) ଯିଏ କି ଆଜି ସ୍ୱର୍ଗରେ, ବାସୁବାବୁ (ଭିଣୋଇ), କୃଷ୍ଣଭାଇ, ଶ୍ରୀକ୍ଷେତ୍ର ମହେଶ୍ୱର, ପର୍ଶୁ, ମାଧବ, ବ୍ରଜ, ଅକ୍ଷୟ, ବଳରାମ, ଗୋବିନ୍ଦ, ବଂଶୀ, ଅକାରଣ, ନାରଣ, ନେହାନନ୍ଦ ବାବୁ, ବିଷ୍ଣୁ ପାଲ, ବୈରାଗୀ ପଣ୍ଡା ପ୍ରଭୃତି ଏବଂ ରେଡ଼ହୁଆ, ଜାମୁଗାଁ, ଡ଼େଉଳ ଓ ଓଷାକଣାର ଯୁବକମାନେ ମନ ପ୍ରାଣ ଦେଇ ଲାଗି ପଡ଼ିଲେ । ଲକ୍ଷଣ୍‌ପୁରର ବୈରାଗୀ ଚରଣ ସ୍ୱାଇଁ, କାର୍ତ୍ତିକ ଚରଣ ମହାନ୍ତି, ମାଧବ-ବାବୁ, କୈଳାସ ସିଂହ ଏବଂ ପତର ନମ୍ବର ସୁଦର୍ଶନ୍ ପୋଦନାର ଭାଇମାନଙ୍କର ଅବଦାନ ମୁଁ ସଦାସର୍ବଦା ମନେ ରଖିଛି । ମୋ ସ୍ତ୍ରୀଙ୍କର ସଙ୍ଗଠନ ଶକ୍ତି, କାର୍ଯ୍ୟ-କୁଶଳତା, କର୍ମତତ୍ପରତା ସମସ୍ତଙ୍କୁ ମୁଗ୍‌ଧ କରିଥିଲା, ଚକିତ କରିଥିଲା ।

ଆମ କର୍ମୀମାନଙ୍କ କଠୋର ଶ୍ରମ, ଶୁଭେଚ୍ଛୁମାନଙ୍କର ପରମ ଆଶୀର୍ବାଦ, ସମସ୍ତଙ୍କର ମଙ୍ଗଳ କାମନା ମୋତେ ଯଶସ୍ୱୀ କଲା । ମୁଁ ଆଜି ସେମାନଙ୍କୁ ମୁକ୍ତ ପ୍ରାଣରେ ଗଭୀର କୃତଜ୍ଞତା ଜଣାଉଛି । ଏ ବିଜୟ ଜଣେ କର୍ମୀର ବିଜୟ, ସ୍ୱାଧୀନତା ପାଇଁ ଜୀବନ ପଣ କରି ଲଢ଼ିଥିବା ଜଣେ ସୈନିକର ପୁରସ୍କାର ବୋଲି ମନେ କଲି । M. L. A. ହୋଇ କୌଣସି ଦିନ ମୁଁ ମୋ ନିର୍ବାଚନ ମଣ୍ଡଳୀକୁ ଭୁଲିନାହିଁ, ମୋ ଲୋକଙ୍କୁ ପାଶୋରି ନାହିଁ । ଆସେମ୍ବ୍ଲିରେ ସେମାନଙ୍କ ଅସୁବିଧା ପ୍ରଶ୍ନୋତ୍ତର ଛଳରେ କହୁଛି । କାଟ ପ୍ରସ୍ତାବରେ ଦେଇଛି, ବକ୍ତୃତା ଦେଇ ମନ୍ତ୍ରୀମାନଙ୍କ ଦୃଷ୍ଟି ଆକର୍ଷଣ କରିଛି । ପୁଣି ଗାଁକୁ ଫେରି ଆସି ଆଇନ୍ କାନୁନ୍ ଯାହା ହେଲା, ଲୋକମାନଙ୍କୁ ବୁଝାଇଛି । ଲୋକମାନଙ୍କ ଠାରୁ ମୁଁ ଯେ ଦୂରେଇ ହୋଇ ରହିଗଲି, ଯେତେବଡ଼ ଶତ୍ରୁ ହେଉ ପଛକେ ଏକଥା ଭରସି କହିପାରିବ ନାହିଁ ।

୧୯୫୭ ମସିହାରେ ଏମ୍. ଏଲ୍. ଏ. ଥିଲାବେଳେ କୋଦଳା ପଞ୍ଚାୟତର ନଳାଙ୍ଗ ଗ୍ରାମଟି ପୋଡ଼ିଯାଇଥିଲା । ଖବରପାଇ ସେଠାକୁ ଯାଇ ସେମାନଙ୍କ ଦୂରବସ୍ଥା ଦେଖି ଆଉ ଧୈର୍ଯ୍ୟ ଧରି ରହିପାରିଲିନି । କଟକ ଫେରି ଆସିବାକୁ ବାବୁ ଭାଇଙ୍କୁ କହିଲି । ସେ ତାଙ୍କର ବିଶିଷ୍ଟ ବନ୍ଧୁ ବି. କେ. ସେଠଙ୍କୁ (ବାବୁଲାଲ୍ ସେଠ୍) କହି ସମସ୍ତ ବ୍ୟବସ୍ଥା କରିଦେଲେ । ଗାଡ଼ି ମଧ୍ୟ ମିଳିଗଲା । ଲୁଗା, ଅଟା, ଚାଉଳ, ଡାଲି, ସାଗୁ, ଦିଆସିଲି ଇତ୍ୟାଦି ନେଇ ମୁଁ ଏବଂ ବି. କେ. ସେଠ୍ ଗାଡ଼ିରେ ବାହାରିଲୁ ନଳାଙ୍ଗ । ଠିକ୍ ସମୟରେ ପହଞ୍ଚିଲୁ । ଏତେ ଦୁଃଖରେ ମୋତେ ଦେଖି ଲୋକମାନଙ୍କର ଆନନ୍ଦ କହିଲେ ନ ସରେ । ବି. କେ. ସେଠ୍ ତାଙ୍କର ଏବଂ ମୋର ଖାଇବା ସାଥିରେ ନେଇଥିଲେ । ସେଠି ପାଣି ବି ସେ ଛୁଇଁଲେ ନାହିଁ । ଲୋକେ ଖୁବ୍ ଭଲ କ୍ଷୀର ଏବଂ ଭଲ ବସାଦହି ଆଣି ଦେଲେ ମଧ୍ୟ ସେ ଗ୍ରହଣ କଲେନି । ସେମାନଙ୍କ ଦୁର୍ଦ୍ଦଶା ଦେଖି ସେ ଏତେ ମ୍ରିୟମାଣ ହୋଇପଡ଼ିଥିଲେ ଯେ ଯାହା ସାଥିରେ ଆଣିଥିଲେ ତା ମଧ୍ୟ ଖାଇବାକୁ ଇଚ୍ଛା ପ୍ରକାଶ କଲେନି, ତଥାପି ମୋ ଅନୁରୋଧରେ ସେ ଖାଦ୍ୟ ଗ୍ରହଣ କଲେ । ସୁରୁଖୁରୁରେ ଗ୍ରାମବାସୀମାନଙ୍କ ସହଯୋଗରେ ବଣ୍ଟନ ପର୍ବ ସମାପ୍ତ ହେଲା । କଟକ ଫେରୁ ଫେରୁ ସନ୍ଧ୍ୟା ହୋଇଗଲା । କିନ୍ତୁ ବି. କେ. ସେଠ୍ ଟିକିଏ ବିରକ୍ତ ନ ହୋଇ ବରଂ ସେ ଯାହା କରିଛନ୍ତି ସେଥିଲାଗି ଆତ୍ମ ସନ୍ତୋଷ ଲାଭ କରିଥିଲେ ।

ପୁଣି ଥରେ ଗଳଦାଣ୍ଡ ଗାଁ ପୋଡ଼ିଗଲା । ସମାଜ ସମ୍ପାଦକ ରାଧାନାଥ ସେତେବେଳେ ଶିକ୍ଷାମନ୍ତ୍ରୀ ଥିଲେ । ତାଙ୍କଠାରୁ ଟ ୫୦୦ ଙ୍କା ନେଇ ଗଳଦାଣ୍ଡ ଖର୍ଚ୍ଚରେ ବାଣ୍ଟିଥିଲି । ସେହି ରାଧାନାଥ ବାବୁଙ୍କ ଯୋଗେ ଅଙ୍ଗେଶ୍ୱର ପଣ୍ଡା

ହାଇସ୍କୁଲ ପ୍ରତିଷ୍ଠା ହେବା ସମ୍ଭବ ହୋଇଛି ମୋ ଅମଳରେ । ଅନନ୍ତଶ୍ଵର ପଣ୍ଡାଙ୍କ ମହାନ୍ ଆଜି ସ୍ଵର୍ଗରେ । କିନ୍ତୁ ତାଙ୍କର ଅଯାଚିତ ଦାନ ତାଙ୍କୁ ଅମର କରି ରଖିବ ।

ତୃତୀ ଘଟଣାଟି ଯାହା ମୋର ଅମଳରେ ହେଲା । ତାହାନ୍ତୁ ଅଞ୍ଚଳକୁ ନଅ ଦେବାକୁ ମୁଁ ଲାଗି ପଡ଼ି କରିଥିଲି । ମାତ୍ରାଙ୍ଗା—ବୋଲକଳା ରାସ୍ତା ପକ୍କା କରିବା ମୋର ବେସରକାରୀ ପ୍ରସ୍ତାବ ଲକ୍ଷେସୁରେ ଉଠିଲା । ମନ୍ତ୍ରୀ ବାଧ୍ୟ ହୋଇ ୨୨ଲକ୍ଷ ଟଙ୍କା ମଞ୍ଜୁର ହେଲା ବୋଲି ସଭା ମଧ୍ୟରେ ଘୋଷଣା କଲେ । ଜଳ ପାଇଁ କିମ୍ବା ମୋ ପରିବାର ପାଇଁ ମୁଁ କିଛି ରଖିନି । ଆସେମ୍ବ୍ଲି ସଭ୍ୟ ରୂପେ ଯେତେବେଳେ ସେତେ ଦୁଇ ଶତ ଟଙ୍କା ମାସିକ ଭତ୍ତା ପାଉଥିଲି, ସୋସାଲିଷ୍ଟ ପାର୍ଟି ୧୨୫ ଟଙ୍କା ରଖି ଆମକୁ ମାତ୍ର ୭୫ ଟଙ୍କା ଦେଉଥିଲା । ବିଧାନସଭାର ଦୈନିକ ଭତ୍ତା ଟ ୧୨.୫୦ ଲୋକଙ୍କ ପିଲ୍ଲା ଖର୍ଚ୍ଚ ହେଉଥିଲା । ପ୍ରତିଦିନ ୧୦।୧୫ ଜଣ ଲୋକ ମୋ ବସାରେ ଆସି ରହୁଥିଲେ । ମୋ ସ୍ତ୍ରୀ ଅତି ଆନନ୍ଦରେ ସେମାନଙ୍କୁ ରାନ୍ଧି ବାଢ଼ି ଖୁଆଉ ଥିଲେ । ମୋ ଠାରୁ ଅନେକ ପଇସା ନେଇ ରିକ୍ସା ଭଡ଼ା କରି ଖଣ୍ଡଗିରି ଓ ଲିଙ୍ଗରାଜ ଦର୍ଶନ କରିବା ଲାଗି ଯାଉଥିଲେ । କେହି କେହି ମୋଟର ଭଡ଼ା ବି ନେଉଥିଲେ । ସେଥିଲାଗି ମୋ ମନରେ ଦୁଃଖ ନ ଥିଲା । ସେମାନଙ୍କ ପଇସା ସେମାନେ ନେଲେ; ସେଥିପାଇଁ ମୁଁ ଆଜି ଆନନ୍ଦିତ । ଏପରିକି ମୁଁ ମୋ ସ୍ତ୍ରୀଙ୍କ ହାତରେ ଏକକାଳୀନ ୧୦ଟି ଟଙ୍କା ମଧ୍ୟ ଦେଇ ପାରି ନ ଥିଲି । ବିଧାନସଭା ସଭ୍ୟ ହିସାବରେ ଭୁବନେଶ୍ଵର ରହଣୀ କାଳ ମଧ୍ୟରେ ମୋର ବାପା, ମା, ପିଲା କୁଟୁମ୍ବଙ୍କୁ ମୁଁ ଥରଟିଏ ଲିଙ୍ଗରାଜ ଦର୍ଶନ କରାଇ ପାରି ନାହିଁ କିମ୍ବା ଆସେମ୍ବ୍ଲି ଦେଖାଇ ପାରି ନାହିଁ । ଅନ୍ୟମାନେ ସକୁଟୁମ୍ବ ଆସି ମୋ ବସାରେ ରହିଛନ୍ତି । ଏପରିକି ଭୋଟ୍‌ବେଳେ ଯେଉଁମାନେ ମୋର ଘୋର ବିରୋଧୀ ଥିଲେ, ସେମାନେ ମୋର ଅନୁପସ୍ଥିତିରେ ମୋ ବସାରେ ଖାଇଛନ୍ତି । ଦିନେ ଦୁଇଦିନ ନୁହେଁ, ୫।୭ ଦିନ ରହି ଫୁର୍ତ୍ତି କରି ଯାଇଛନ୍ତି । ମୋ ସ୍ତ୍ରୀଙ୍କ ଠାରୁ ଟଙ୍କା ଧାର ନେଇ ଆଉ ଫେରାଇ ନାହାନ୍ତି । ଥରେ ଅଶୋକାଷ୍ଟମୀରେ ପ୍ରାୟ ୮୪ ଜଣ ଲୋକ ଆସି ପହଞ୍ଚିଥିଲେ । ମୋ ସ୍ତ୍ରୀ ଅତି ଆନନ୍ଦରେ ରାନ୍ଧି ବାଢ଼ି ସେମାନଙ୍କୁ ପରଷି ଥିଲେ । ମୁଁ କର୍ମୀ, କର୍ମ ହିଁ ମୋର ଏକାନ୍ତ କାମ୍ୟ । କୌଣସି ଦିନ ଅର୍ଥ ପ୍ରତି ମୋର ଲାଳସା ନ ଥିଲା କିମ୍ବା M. L. A. ହୋଇ ମଧ୍ୟ ମୋର ରହିଲା ନାହିଁ ।

ଏ ନିର୍ବାଚନରେ ମୁଁ ଏମିତି ଗୁଡ଼ିଏ ବନ୍ଧୁ ପାଇଲି ଯାହାଙ୍କ ମୋର ପର ଜୀବନରେ ପରମ ସହାୟକ ହେଲେ । କେଶବ ବାବୁ, ମନମୋହନ ବାବୁ, ସ୍ଵର୍ଗୀୟ ଜଗବନ୍ଧୁ ବାବୁ, ଉପେନ୍ଦ୍ର ମିଶ୍ର, ବାବୁଲାଇ ପ୍ରଭୃତି ମୋର ଚିର ସ୍ମରଣୀୟ ହୋଇ

ରହିବେ । ବାଲିକୁଦା ହାଇସ୍କୁଲର ଶିକ୍ଷକ ଓ ଛାତ୍ରମାନେ, ଅଳଣାହାଟ ହାଇସ୍କୁଲର ଛାତ୍ରମାନେ, ଅକାବଲ ମାଇନର ସ୍କୁଲର ଛାତ୍ର ଓ ଶିକ୍ଷକମାନେ, ମାଛଗାଁ ଓ ବୋରିକିନାର ପିଲାମାନଙ୍କୁ ମୁଁ ପାଶୋରି ପାରିବି ନାହିଁ । ବିଭିନ୍ନ ନିମ୍ନ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ସ୍କୁଲର ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନେ ସେମାନଙ୍କର ବାପ ମା'ଙ୍କୁ ବାଧ୍ୟ କରାଇ ମୋତେ ଭୋଟ୍ ଦିଆଇଛନ୍ତି । ଆମର ଅର୍ଥ ନ ଥିଲା କି ଆମର କର୍ମୀ ନ ଥିଲେ । ଯେଉଁ କେତେ ଜଣ ଲାଗିପଡ଼ି କାମ କରିଥିଲେ; ସେମାନେ ଆଜି ମୋ ନିକଟରେ ବରଣୀୟ । ସେମାନଙ୍କୁ ମୁଁ ଆଜି କିଛି ଦେଇ ପାରିନାହିଁ, କିନ୍ତୁ ସେମାନଙ୍କଠୁଁ ନେଇଛି । ବୈକୁଣ୍ଠ ନାଥ ମହାନ୍ତି ଏକ ବ୍ୟକ୍ତି ବିଶେଷ । ପାର୍ଟି ଭିତର'ର କୌଣସି ସ୍ୱତନ୍ତ୍ର ସତ୍ତା ନ ଥିଲା । ଯେଉଁ ପ୍ରଜା ସୋସାଲିଷ୍ଟ ପାର୍ଟିକୁ ସେମାନେ ଆଦରି ନେଇଥିଲେ, ତା'ର ପତାକା ସେମାନେ ଉଚ୍ଚରେ ତୋଳି ଧରିଲେ । ଏ ଗୌରବ, ଏ ଅଭିମାନ ଏକା ମୋର ନୁହେଁ । ଅସଂଖ୍ୟ ଅବହେଳିତ, ନିଷ୍ପେଷିତ ଜନତାର, ସମଗ୍ର ବିରୋଧୀ ଶକ୍ତିର । ମୁଁ ପ୍ରତ୍ୟେକଙ୍କୁ ଗଭୀର ଶ୍ରଦ୍ଧାର ସହ ସ୍ମରଣ କରୁଛି । ଛୋଟ ଠୁ ବଡ଼ ପର୍ଯ୍ୟନ୍ତ ମୁଁ ସମସ୍ତଙ୍କ ପାଖରେ କୃତଜ୍ଞତା ଜଣାଉଛି ।

ଏ ନିର୍ବାଚନରେ ମୁଁ ଓମକଣା ମହେଶ୍ୱରଙ୍କୁ ଆବିଷ୍କାର କଲି । ସେତେବେଳେ ସେ ବାଲିକୁଦା ହାଇସ୍କୁଲରେ ଦଶମ ଶ୍ରେଣୀରେ ପଢୁଥିଲେ । ପିଲାଟି ବେଳରୁ ତାଙ୍କର ଲେଖିବାର ଓ କହିବାର ଅଭ୍ୟାସ ଥିଲା । ସେତେବେଳେ ତାଙ୍କର କବିତା ନିୟମିତ ଭାବେ ମୀନାବଜାରରେ ପ୍ରକାଶ ପାଉଥିଲା । ଅତି ଅଳ୍ପ ଦିନ ମଧ୍ୟରେ ସେ ମୋ ମନ ଜିଣିନେଲେ । କେଜାଣି କାହିଁକି ସେ ବି ମୋତେ ନିଜର ବଡ଼ଭାଇ ବୋଲି ଭକ୍ତି କଲେ ଓ ଭଲ ପାଇଲେ । ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ଅପୂର୍ବ ସଙ୍ଗଠନ କରି ସେ ଯେପରି ଭାବେ ଆମ ଦଳକୁ ଲୋକଙ୍କୁ ଟାଣି ଆଣିଲେ, ତାହା ଦେଖି ସମସ୍ତେ ଚକିତ ହେଲେ । କଂଗ୍ରେସ୍ ଲୋକେ ପ୍ରମାଦ ଗଣିଲେ । ଧୀରେ ଧୀରେ ମୋ ଜୀବନ ସହିତ, ମୋ କାର୍ଯ୍ୟ ପ୍ରଣାଳୀ ସହିତ ଏକ ସୂତ୍ରରେ ବାନ୍ଧି ହୋଇ ପଡ଼ିଲେ । କଟକରେ ତାଙ୍କର I. A. ପଢ଼ିବାର ବ୍ୟବସ୍ଥା ମୁଁ କରିଦେଲି । B. A. ଓ M. A ରେ ଦ୍ୱିତୀୟ ଶ୍ରେଣୀ ଲାଭ କରି ସରକାରୀ ଚାକିରି କଲେ । ପରେ ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକରେ ଅଧ୍ୟାପକ ହେଲେ । ମୋର ଅତି ଆଦରର ସେ ଛୋଟ ଭାଇ । ବନ୍ଧୁ ଓ ପରାମର୍ଶଦାତା । ଛୋଟ ପିଲାଙ୍କ ଲାଗି ସେ ଅନେକ ବହି ଲେଖିଛନ୍ତି । ଏକମାତ୍ର ଶିଶୁ ପତ୍ରିକା 'ମନପବନ'ର ସେ ବର୍ତ୍ତମାନ ସୁଯୋଗ୍ୟ ସମ୍ପାଦକ । ଅତି ଆଦରଣୀୟା 'ହର୍ଷ' ତା'ର ଧର୍ମ ପତ୍ନୀ । ଘରଦ୍ୱାର କରି

କଟକରେ ବର୍ତ୍ତମାନ ଅତି ଆନନ୍ଦରେ ଅଛନ୍ତି । ମୋ ହାତଗଢ଼ା ଶରତ ବିଶ୍ୱାଳର ଭଉଣୀ ହର୍ଷ ।

କେବଳ ମୋର କଥା ଲେଖି ବସିଲି । କିନ୍ତୁ 'ଲଣ୍ଡା ଦେହୁରୀ' କଥା ତ କିଛି ଲିପିବଦ୍ଧ କଲିନି । କୃଷକର ଛଦ୍ମବେଶୀ 'ଲଣ୍ଡା ଦେହୁରୀ' ଅତି ଆଦରର ଭକ୍ତ ଭାଜନ ଆମର ଅଜା ସାରଙ୍ଗଧର ଦାସ । ଏ ଲୋକସଭା ନିର୍ବାଚନରେ ସେ ହାରିଗଲେ ମଧ୍ୟ ହାରିବା ଆଗରେ ସେ ଦୁଃଖ କରି ନାହାନ୍ତି କି ଭାଙ୍ଗି ପଡ଼ି ନାହାଁନ୍ତି । ନିର୍ବାଚନରେ ଅଧିକ ପରିଶ୍ରମ କରିବା ଫଳରେ ତାଙ୍କର ସ୍ୱାସ୍ଥ୍ୟ ହାନି ହେଲା । ବାଧ୍ୟ ହୋଇ କଟକ ନର୍ସିଂ ହୋମ ରେ ସେ ଆଶ୍ରୟ ନେଲେ । ୧୯୫୭ ମସିହା ଅଗଷ୍ଟ ମାସରେ ତାଙ୍କ ପେଟରେ ଅସ୍ତ୍ରୋପଚାର ହେଲା । ଅପରେସନ୍ ଖବର ପାଇ ମୁଁ ଓ ଶରତ କୁମାରୀ ଡାକ୍ତରଖାନାରେ ହାଜର ହେଲୁ । ଚେତା ଆସିବା ପର୍ଯ୍ୟନ୍ତ ତାଙ୍କ ପାଖରେ ବରାବର ଥିଲୁ । ପ୍ରତିଦିନ ମଧ୍ୟ ତାଙ୍କ ପାଖକୁ ଯାଉଥିଲୁ । ଶରତକୁମାରୀ ତାଙ୍କ ଦେହ ମୁଣ୍ଡରେ ହାତ ବୁଲାଇ ନେଉଥିଲେ । ମୁଣ୍ଡ ଆଉଁସି ଦେଉଥିଲେ । ଅଜା ବହୁତ ଆଶୀର୍ବାଦ କରୁଥିଲେ । ଘରକୁ ସେ ଜୋର୍ କରି ଆମକୁ ପଠେଇ ଦେଲେ । ଟିକିଏ ଆରୋଗ୍ୟ ହୋଇ ସେ ବରାବର ଆମ ପାଖକୁ ଚିଠି ଦେଉଥିଲେ ! କିନ୍ତୁ କିଏ ଜାଣିଥିଲା ଯେ ୧୯୫୭ ସେପ୍ଟେମ୍ବର ୧୮ ତାରିଖରେ ହର୍ଟ ରୋଗରେ ତାଙ୍କର ଜୀବନ ପ୍ରଦୀପ ନିର୍ବାପିତ ହୋଇଯିବ ! ଏକ ମହାନ୍ ବ୍ୟକ୍ତିତ୍ୱର ଅବସାନ ଘଟିବ, ଯିଏ କି ତିଳ ତିଳ କରି ଏ ଦେଶ ଏ ଜାତି ପାଇଁ ନିଜର ସର୍ବସ୍ୱ ନିଃଶେଷ କରିଥିଲେ । ସାରଙ୍ଗଧର ଦାସ ଏକାକୀ ଗୋଟିଏ ଇତିହାସ । ତାଙ୍କ ଚରିତ୍ରର ପଟାନ୍ତର ନାହିଁ । ଆମେରିକାରେ ସର୍ବୋଚ୍ଚ ଶିକ୍ଷା ପାଇ ଆମେରିକୀୟ ପତ୍ନୀ ଲାଭ କରି, ବିଦେଶରେ ଅଜସ୍ର ଅର୍ଥାଗମର ପନ୍ଥା ଥାଇ ମଧ୍ୟ ଶେଷରେ ନିଃସ୍ୱ ହୋଇ ଚାଲିଗଲେ । ତାଙ୍କର ସମସ୍ତ ସମ୍ପତ୍ତି ସେ ପ୍ରଜା ସୋସାଲିଷ୍ଟ ପାର୍ଟିକୁ ଦାନ କରିଦେଇଥିଲେ । ଆଜି ତାଙ୍କ ମୃତ୍ୟୁ ପରେ ତାଙ୍କ ଜନ୍ମ ସ୍ଥାନ ହରେକୃଷ୍ଣପୁର ଓ ଅନ୍ୟ ସ୍ଥାନର ଜମିବାଡ଼ି ନେଇ ମାଲି ମକଦମା ଲାଗିଛି ।

କ୍ଷମତାର ମୋହ, ଉଚ୍ଚ ପଦ ପଦବୀର ଲାଳସା ତାଙ୍କୁ ପ୍ରଲୋଭିତ କରି ପାରିନି ନାହିଁ । ଲଣ୍ଡା ଦେହୁରୀ ଶେଷରେ ନିଜେ ଲଣ୍ଡା ହୋଇ ସମସ୍ତଙ୍କୁ ଲଣ୍ଡା କରି ଚାଲିଗଲେ । ସାରଙ୍ଗଧରଙ୍କ ସ୍ଥାନ ପୂରଣ କଲା ପରି ପୁଅ ଯେଉଁଦିନ ଜନ୍ମ ଗ୍ରହଣ କରିବ, ସେଦିନ ମୁଁ ଜାଣିବି, ତାହା ଏ ଦେଶ ଓ ଜାତିର ଭାଗ୍ୟ ।

ମୁଁ ଆଉ ଜଣଙ୍କ ନାମ ଅତି ଭକ୍ତିର ସହ ସ୍ମରଣ ନ କଲେ ଏ ଜୀବନୀ ଅସମ୍ପୂର୍ଣ୍ଣ ହୋଇଯିବ । ସେ ମୋର ମାଉସୀ ଅପା । ଦୁର୍ଗାଚରଣ ଦାସଙ୍କ ପତ୍ନୀ ।

ମୋ ବଡ଼ ଭଉଣୀ ସୁଲୋଚନା, କବି ନିର୍ମଳା ଦେବୀ । ୧୯୪୪ରେ ତାଙ୍କ ସହି ମୋର ଭେଟ ହୁଏ । ମୁଁ ଯେତେବେଳେ ଜେଲ୍‌ରୁ ଫେରି ନିଜ ଗାଁରେ ରହୁଥାଏ । ତାଙ୍କ ପଞ୍ଚମ ପୁତ୍ର ମନମୋହନ (ଟିକି)ର ଖେଳୁ ଖେଳୁ ଗୋଡ଼ ଭାଙ୍ଗିଗଲା । ଏଠି ସେ ଆରୋଗ୍ୟ ହୋଇ ପାରିଲା ନାହିଁ ! ଡାକ୍ତରମାନେ ମତ ଦେଲେ ଯେ ଗୋଡ଼ କାଟି ଦିଆଯିବ । ସେ ମାନ୍ଦ୍ରାଜ ଗଲା । ଷ୍ଟାନ୍‌ଲେ ହସ୍‌ପିଟାଲରେ ସେ ଡାକ୍ତର କନ୍ନିଙ୍କ ଚିକିତ୍ସାରେ ରହିଲା । ପିଲାଟିର ଯତ୍ନ ନେବାଲାଗି ଯେଉଁମାନେ ଏଠାରୁ ଗଲେ, ସେମାନେ ନିଜ ଯତ୍ନରେ ଲାଗି ପଡ଼ିଲେ । ମୋର ଅପା କେଉଁଠୁ ଯେମିତି ମୋ କଥା ଜାଣି, ମୋତେ କଣିଆରୁ ଡକାଇ ଆଣିଲେ ଏବଂ ମାନ୍ଦ୍ରାଜ୍ ଯିବାଲାଗି ଅତି ଶଙ୍କିତ ହୃଦୟରେ କହିଲେ । ତାଙ୍କର ସ୍ୱର୍ଗୀୟ ମମତା ଆଗରେ ମୋ ମୁହଁ ଖୋଲିଲା ନାହିଁ । ସେତେବେଳେ ଦ୍ୱିତୀୟ ମହାସମରର ପରବର୍ତ୍ତୀ ଅବସ୍ଥା । ଗାଡ଼ିରେ ଆଲୁଅ ନ ଥାଏ । ଘରରେ ଛାତିରେ କେହି ଚୁଲି ବସାଇଦେଲେ ଜାଣିବା ମୁସ୍କିଲ । ବହୁ କଷ୍ଟରେ ଯାଇ ମାନ୍ଦ୍ରାଜରେ ପହଞ୍ଚିଲି । ପ୍ରାୟ ୩ ମାସ ପର୍ଯ୍ୟନ୍ତ ଟିକି ପାଖରେ ରହି ତାର ସେବା ଯତ୍ନ କରି, ସେ ସମ୍ପୂର୍ଣ୍ଣ ଆରୋଗ୍ୟ ହେବାରୁ ତାକୁ ସାଥିରେ ନେଇ ଫେରିଲି । ସେହି ଦିନୁ ସେ ପରିବାରର ମୋ ଉପରେ ଭାରି ଭରସା । ଆଜି ତାଙ୍କର ପିଲାମାନେ ଏ ରାଜ୍ୟରେ ତଥା ବାହାରେ ଉଚ୍ଚ ପଦରେ ପ୍ରତିଷ୍ଠିତ ଥିଲେ ମଧ୍ୟ ମୋତେ ବଡ଼ ମାମୁଁ ବୋଲି ଡାକନ୍ତି, ଭକ୍ତି ଦେଖାନ୍ତି, ସମ୍ମାନ ଦିଅନ୍ତି । ମୋର ଅପା ମୋତେ ସମୟେ ସମୟେ ତାଙ୍କ ପାଖକୁ ଯିବାକୁ କହନ୍ତି । କିନ୍ତୁ କର୍ମ ଜଞ୍ଜାଳରେ ବ୍ୟସ୍ତ ରହି ମୋତେ ସମୟ ଓ ସୁଯୋଗ ମିଳେନା । ତଥାପି ଯେଉଁଠି ଦେଖନ୍ତି, ଅତି ସ୍ନେହରେ କୁଶଳ ମଙ୍ଗଳ ପଚାରନ୍ତି । ଦେହରେ ହାତ ବୁଲେଇ ଆଉଁସି ଦିଅନ୍ତି । ମୁଣ୍ଡରେ ହାତ ରଖି ଆଶୀର୍ବାଦ କରନ୍ତି । କାହିଁକି ତାଙ୍କର ଘରକୁ ଯାଏ ନା ବୋଲି ମୃଦୁ ଭର୍ତ୍ସନା କରନ୍ତି । ମୋ ପାଖରେ ଏତିକି ହିଁ ଯଥେଷ୍ଟ । ମୋ ସମ୍ବଳ ଓ ସାଇତା ଧନ । ତାଙ୍କର ପୁଅ ଟିକି, ଯାହା ପାଇଁ ମୁଁ ଅନେକ କଷ୍ଟ କଲି, ଦିନ ମାସ କାଳ ଏକନିଷ୍ଠ ଭାବରେ ଜଗିରହି ତାକୁ ଆରୋଗ୍ୟ କରି ଆଣିଲି, ସେ ପ୍ରଫେସରପଡ଼ା ପୈତୃକ ପାଇଥିବା କୋଠା-ରେ ଥାଏ । ମୁଁ ତା ପାଖକୁ ଗୋଟିଏ ଜରୁରୀ କାର୍ଯ୍ୟନେ ଥରେ ଲୁହେଁ ଦିନ ଥର ଯାଇ ନିରାଶରେ ଫେରିଛୁ । ସେ ଘରେ ଥାଇ ଚାକର ହାତରେ ଖବର ପଠେଇଛୁ, ବର୍ତ୍ତମାନ ଦେଖା ହୋଇ ପାରିବ ନାହିଁ । କୃତଘ୍ନତା ଆଉ କାହାକୁ କହନ୍ତି ? ଟିକିର ବ୍ୟବହାର ମୋ ଛାତିରେ ଏକ ଗଭୀର ଦାଗ କାଟି ଦେଇଛି ।

ଆସେମ୍ବ୍ଲି ସଭ୍ୟ ଥିବାବେଳେ କଂଗ୍ରେସ୍ ଦଳରେ ଯୋଗ ଦେବାକୁ, ଘର ପୁଅ ଘରକୁ ଫେରି ଆସିବାକୁ ମୋତେ ବହୁ ପ୍ରଲୋଭନ ଦେଖା ଯାଇଥିଲା ।

କିନ୍ତୁ ଭଗବାନ୍ ସେ ଯାତ୍ରାରୁ ମୋତେ ରକ୍ଷା କରିଥିଲେ । ରାଜନୈତିକ ମୃତ୍ୟୁ ମୋର ହୋଇ ନାହିଁ । କାରଣ, ସେତେବେଳେ ମହତାବ୍ ମନ୍ତ୍ରୀମଣ୍ଡଳ ଦୋଦୁଲ୍ୟମାନ ଅବସ୍ଥାରେ ଥାଏ । କମ୍ୟୁନିଷ୍ଟ ଓ ଝାଡ଼ଖଣ୍ଡ ଦଳକୁ ଟଙ୍କା ଦେଇ ନିଜ ଅକ୍ତିଆରରେ ରଖାଯାଇଥାଏ । ଗଣତନ୍ତ୍ର ଦଳରେ ମଧ୍ୟ ଅର୍ଥର ଲୋଭ ଦେଖାଇ କେତେକଙ୍କୁ କଂଗ୍ରେସ୍‌ରେ ମିଶାଇ ଦିଆଯାଉଥାଏ । ଜଣେ କମ୍ୟୁନିଷ୍ଟ ସଭ୍ୟ ଅର୍ଥ ନେଇ କଂଗ୍ରେସ୍‌ରେ ମିଶିଗଲେ । କେବଳ ଆମ ପାର୍ଟିରୁ କାହାକୁ ନେଇ ପାରିଲେ ନାହିଁ । ବହୁତ ସାଧ୍ୟ, ସାଧନା କରାଯାଇଛି । କିନ୍ତୁ ସବୁ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଛି ।

ଗୁପ୍ତ ଗୌର ଘୋଷ ମୋର ପରମ ବନ୍ଧୁ । ସେ ମୋତେ ଖୁବ୍ ଭଲ ପାଆନ୍ତି । ତାଙ୍କ ପରିବାର ଆମର ଅତି ଆପଣାର ଭଳି । ତାଙ୍କ ଘରକୁ ଲାଗି ଆମ ପାର୍ଟି ଅଫିସ୍ । ସେ ତାଙ୍କ ନିର୍ମିତ 'ମା' ଫିଲ୍‌ମରେ ପାର୍ଟ କରିବା ଲାଗି ମୋତେ ଅନୁରୋଧ କଲେ । M. L. A ଥାଇ ମଧ୍ୟ ବଡ ବଜାରରେ ମୁଣ୍ଡରେ ଜୋକର୍ ଟୋପି ଦେଇ, ଗୋଡ଼ରେ ଘୁଙ୍ଗୁର ବାନ୍ଧି, ଅଦ୍ଭୁତ ପୋଷାକ ପିନ୍ଧି "ଜୟ ଜୟ ରାଇ ଆଖିର ଅଞ୍ଜନ" ଗୀତ ବୋଲି ନାଚିଛି । ମୋର ଅଭିନୟ ସମସ୍ତଙ୍କୁ ଭଲ ଲାଗିଥିଲା । ଯିଏ ଦେଖିଛି, ସେ ପ୍ରଶଂସା କରିଛି ।

ବର୍ତ୍ତମାନ ଯେଉଁଠି କଳାବିକାଶ କେନ୍ଦ୍ର ମୁଣ୍ଡ ଟେକି ଉଠିଛି, ସେ ଜାଗାଟି ମାତ୍ର ଗୋଟିଏ ଟଙ୍କାରେ ଦିଆଯାଇଥିଲା । ସେତେବେଳେ ମହତାବ୍ ଥାଆନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ ଅମର ସିଂହ ଥାଆନ୍ତି କଟକ ଜିଲ୍ଲା ମାଜିଷ୍ଟ୍ରେଟ । ବହୁ ଚେଷ୍ଟା, ବହୁତ ଉଦ୍ୟମ ଓ ବହୁତ ସ୍ଥାନ ଦେଖିବା ପରେ ଏହି ସ୍ଥାନଟିକୁ ଆମେ ଠିକ୍ କଲୁ । ସେ ଦୁହିଁଙ୍କୁ ଆମେ ଭୁଲିବାର ନୁହେଁ । କଳାବିକାଶ କେନ୍ଦ୍ରର ଇତିହାସରେ ସେ ଦୁହିଁଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବା ଉଚିତ । କୋଠା ତିଆରି ପାଇଁ ଉଦ୍ୟମ ଚାଲିଲା । ବାବୁଲାଇ ତାକୁ ପୂର୍ଣ୍ଣାଙ୍ଗ କରିବାକୁ ଶପଥ ନେଲେ । ପ୍ରଥମ ମହଲା ନ ହେବା ପର୍ଯ୍ୟନ୍ତ ସେ ଗୋଡ଼ରେ ଚପଲ ପିନ୍ଧିଲେ ନାହିଁ, ଗଦିରେ ଶୋଇଲେ ନାହିଁ । ଦିଲ୍ଲୀରୁ ଆରମ୍ଭ କରି ଦୌଲତାବାଦ ପର୍ଯ୍ୟନ୍ତ ସାଧାରଣ ଲୋକ, ବ୍ୟବସାୟୀ, କର୍ମଚାରୀ, ବିଭିନ୍ନ ସ୍ତରର ଲୋକଙ୍କ ଠାରୁ ଆରମ୍ଭକରି ଏମ୍ ଏଲ୍. ଏ ଓ ମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସେ ଓ ମୁଁ ଯାଇଛୁ । ଓଡ଼ିଶାରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠିକୁ କି ଆମେ ଦୁହେଁ ନ ଯାଇଛୁ । ଆଗ୍ରହରେ ଯିଏ ଯାହା ପାରିଛନ୍ତି, ମୁକ୍ତ ହସ୍ତରେ ଦାନ କରିଛନ୍ତି । ତାପରେ ବାବୁଲାଇ ବମ୍ବେ

ଗଲେ । ସେଠାରୁ ପ୍ରାୟ ୪୦ ହଜାର ଟଙ୍କା ଚାନ୍ଦା ଆସିବା ପରେ ପ୍ରଥମ ମହଲଟି ପୂର୍ଣ୍ଣାଙ୍ଗ ହେଲା । ତାକୁ ଉଦ୍‌ଘାଟନ କଲେ ତତ୍କାଳୀନ କେନ୍ଦ୍ର ସାଂସ୍କୃତିକ ମନ୍ତ୍ରୀ ହୁମାୟୁନ କବୀର । ବିଶ୍ୱନାଥ ସେତେବେଳେ ତାଙ୍କର ଶପଥ ଭଙ୍ଗ କଲେ । ସେତେବେଳେ ମୋ ସ୍ତ୍ରୀ ଶରତ୍‌କୁମାରୀ ଘରରେ ତାଙ୍କୁ ଖାଦ୍ୟ ପରିବେଷଣ କଲେ । ସମସ୍ତେ ଆମକୁ କହୁଥିଲେ 'ରାମଲକ୍ଷ୍ମଣ ଯୋଡ଼ି' । ଯେଉଁଠିକୁ ଯାଉଛୁ, ଦୁହେଁ ସାଙ୍ଗ ହୋଇ ଯାଉଛୁ । ଯାହା କରୁଛୁ ମିଳିମିଶି କରୁଛୁ । ଜଣେ ଲେଖକ ବନ୍ଧୁ ଗୋଦାବରୀଶ ରାୟ ଲେଖିଥିଲେ—'ବାବୁଲାଲ ଓ ବଇରାଗି ଦୁଇଜଣ ଯାକ କଳାବିକାଶ କେନ୍ଦ୍ରର ଉତ୍ସର୍ଗୀକୃତ ଆତ୍ମା ।' ଏବେ ବି ସେ ଓ ମୁଁ ଦୁହେଁ ଘନିଷ୍ଠ ବନ୍ଧୁ । କେହି କାହାକୁ ଛାଡ଼ିନୁ । କଳାବିକାଶ କେନ୍ଦ୍ରର ସାଂସ୍କୃତିକ କାର୍ଯ୍ୟରେ ମନପ୍ରାଣ ଦେଇ ଆମେ ଆଗେଇ ଚାଲିଛୁ ।

ଭାରତୀୟ ସଙ୍ଗୀତ ନାଟକ ଏକାଡେମୀ ତରଫରୁ ଓଡ଼ିଶାର ଆଦିବାସୀ ନୃତ୍ୟ ଓ ଗୀତର ଗବେଷଣା ଲାଗି ଅର୍ଥ ମିଳିଲା । ବିଭିନ୍ନ ଜିଲ୍ଲାକୁ ଯାଇ ଆଦିବାସୀ ବହୁଳ ଅଞ୍ଚଳ ବୁଲି ସେ ସବୁ ସଂଗ୍ରହର ବ୍ୟବସ୍ଥା ହେଲା । ପ୍ରଥମେ ପାଞ୍ଚୋଟି ଜିଲ୍ଲା ହାତକୁ ନେଲୁ । ସମ୍ବଲପୁର, ବଲାଙ୍ଗୀର, ଫୁଲବାଣୀ, କଳାହାଣ୍ଡି ଓ କୋରାପୁଟ । କଳାହାଣ୍ଡି ଓ କୋରାପୁଟର ପୂର୍ଣ୍ଣଦାୟିତ୍ୱ ମୋ ଉପରେ ପଡ଼ିଲା । ମୁଁ ଆଗରୁ ଯାଇ କଳାହାଣ୍ଡିର ଲୋକସମ୍ପର୍କ ବିଭାଗ ଅଫିସର ଏକଦା ଆମର ସମାଜବାଦୀ ବନ୍ଧୁ ବିଶ୍ୱନାଥ ସି (ବର୍ତ୍ତମାନ ସକୁଟୁମ୍ବେ ଆମେରିକାରେ), ଏବଂ ସେଠାକାର ଜିଲ୍ଲା ମାଜିଷ୍ଟ୍ରେଟ୍ ଏବଂ କୋରାପୁଟର ଲୋକ ସମ୍ପର୍କ ଅଫିସର ଶ୍ରୀ ସମର ବଲ୍ଲଭ ପଟ୍ଟନାୟକ (ବର୍ତ୍ତମାନ ରାଜ୍ୟପାଳ ଅଫିସ୍‌ରେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ)ଙ୍କ ଘରେ ହଠାତ୍ ପହଞ୍ଚିଗଲି । ସମ୍ପୂର୍ଣ୍ଣ ଅପରିଚିତ ମୁଁ । ଉଦ୍ଦେଶ୍ୟ କହିବା ପରେ ମୁଁ କଳାବିକାଶ କେନ୍ଦ୍ରରୁ ଆସିଛି ଶୁଣି ସେ ଖୁବ୍ ଆନନ୍ଦିତ ହେଲେ ଏବଂ ଗବେଷଣାର ସମସ୍ତ ବ୍ୟବସ୍ଥା କରିଦେବାର ନିର୍ଭର ପ୍ରତିଶ୍ରୁତି ମଧ୍ୟ ଦେଲେ । ସେ ଓ ତାଙ୍କ ସ୍ତ୍ରୀଙ୍କ ଆତିଥ୍ୟ ମୁଁ ପାଶୋରି ପାରିବିନି । ଜିଲ୍ଲା ମାଜିଷ୍ଟ୍ରେଟ୍ ଜଗନ୍ନାଥ ଦାସଙ୍କ ସହ ମଧ୍ୟ ସାକ୍ଷାତ କରାଇ ଦେଲେ । ସବୁ ରକମର ସହାୟତା ଦିଆଯିବ ବୋଲି ଜବାବ ଦେଲେ । କଟକ ଫେରି ଆସିଲି, ଦଳବଳ ନେଇ ପ୍ରଥମେ କଳାହାଣ୍ଡି ଗଲି । × × ×

× × × × ମୋର M. L. A. ଥିବା ବେଳର ସବୁଠାରୁ ଉଲ୍ଲେଖନୀୟ ଘଟଣା ହେଉଛି, ଗୋଠଦା ମଠର ଆନ୍ଦୋଳନ । କାମୁକ ମଠ ମହନ୍ତ ଏବଂ ତାର ବଡ଼ଭାଇ ସଦାଶିବ ପଶୁପାଳକ ସେ ଅଞ୍ଚଳରେ ଆତଙ୍କ ସୃଷ୍ଟି କରିଥା'ନ୍ତି । ଯିଏ ଟିକିଏ ମୁଣ୍ଡ ଟେକିଲା, ତାକୁ ଯେ କୌଣସି ଉପାୟରେ ଦବାଇ

ଦିଆଯାଉଥାଏ । ସାମରଥ ବୋଲି ଜଣେ ଗରିବ ବ୍ରାହ୍ମଣ ଉପରେ ଅତ୍ୟାଚାର ଚାଲିଲା । କାରଣ ତାଙ୍କର ସ୍ତ୍ରୀ ଥିଲା ଅତ୍ୟନ୍ତ ସୁନ୍ଦରୀ । ତାଙ୍କର ୮୦ ବର୍ଷର ବୃଦ୍ଧ ପିତାଙ୍କୁ ଅପମାନ ଦିଆଗଲା । ସେ ମୋ ପାଖକୁ ଆସିଲେ । ମୁଁ ପୋଲିସ୍‌ର ଦୃଷ୍ଟି ଆକର୍ଷଣ କଲି । ସରକାରଙ୍କୁ ଲେଖିଲି । କୁଆଡ଼ୁ କିଛି ହେଲା ନାହିଁ । ବରଂ ତା'ର ଓଲଟା ଫଳ ଫଳିଲା । ତତ୍କାଳୀନ ଏଣ୍ଡାଓମେଣ୍ଟ୍ କମିଶନର୍‌ଙ୍କ ଘରକୁ ଦୁଇ ପ୍ରହରରେ ମଠରୁ ମାଛ ଠୁ ଆରମ୍ଭ କରି ହରେକ୍ ଜିନିଷ ବୁହା ଚାଲିଲା । ମଠ ପୋଖରୀର ଖଜୁରି ଓ ରେହୁ ବଡ଼ ଠୁ ଟ୍ରେଟ ଯାଏ ସମସ୍ତଙ୍କ ମୁହଁବନ୍ଦ୍ କରିଦେଲା । ଯିଏ ଟିକିଏ ପ୍ରତିବାଦ କଲା, ତା ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଗଲା । ଯେଉଁଠି ସମଗ୍ର ଶାସନ କଳ ଅନ୍ୟାୟ ସପକ୍ଷରେ, ମୁଁ ବା ଏକାକୀ କ'ଣ କରିପାରେ ? ତଥାପି ଏ ଅତ୍ୟାଚାରର ପ୍ରତିକାର ଲାଗି ଉଣ୍ଡାଭିଡ଼ିଲି । ଗାଁ ଗାଁରେ ଲୋକମାନଙ୍କୁ ସଙ୍ଗଠିତ କଲି । ମଠକୁ ଲାଗି ଗୋଟିଏ ପଡ଼ିଆରେ ମୋ ସହକର୍ମୀଙ୍କୁ ନେଇ ଏକ ସଭା କଲି । ଆଖପାଖର ଗ୍ରାମାଞ୍ଚଳରୁ ବହୁ ଲୋକ ସଭାରେ ଯୋଗଦେଲେ । ମଠ ମହନ୍ତ ନିଜେ ଓ ତା ଭାଇ ପଶୁପାଳକ କେତେ ଗୁଣ୍ଡାଙ୍କୁ ମଦ ପିଆଇ ମୋ ସଭା ଭାଙ୍ଗିବାକୁ, ମୋତେ ଜୀବନରେ ମାରି ଦେବାକୁ ଆପ୍ରାଣ ଚେଷ୍ଟା କଲେ । ସଦାଶିବ ପଶୁପାଳକ ନିଜେ ଗୋଟିଏ ଶାବଳ ଧରି ମୋ ମୁଣ୍ଡରେ ପ୍ରହାର କଲା ବେଳକୁ ଜଣେ ଭାଇ ଧରିପକାଇଲେ । ତାଙ୍କ ହାତ ଫାଟିଗଲା, କିନ୍ତୁ ମୋ ଜୀବନ ରକ୍ଷା ହେଲା । ସେଠି ଯେତେ ଲୋକଥିଲେ, ଯଦି ଆମେ ଟିକିଏ ଆଖି ମାରି ଦେଇଥାନ୍ତୁ, ତେବେ ଗୁଣ୍ଡାଙ୍କର ସତ୍ତା ନ ଥାଆନ୍ତା । ତଥାପି ଆମେ ଧୈର୍ଯ୍ୟ ହରା ହେଲୁ ନାହିଁ । ଆମ ଲାଇଟ୍ ଭାଙ୍ଗି, କର୍ମୀମାନଙ୍କୁ ମାଡ଼ଦେଇ, ଢେଲା ଓ ବାଲି ବୃଷ୍ଟି କରି ମହନ୍ତ ଓ ତା ଭାଇ ଘରବରେ ଫେରିଗଲେ । ଆମେ ସେହି ଦିନ ସେହି ଲୋକଙ୍କୁ ନେଇ ଆଉ ଗୋଟିଏ ଗାଁରେ ସଭା କଲୁ । ଚାରିଆଡ଼େ ଗ୍ରାମର ଯୁବକମାନେ ଆମକୁ ଜଗି ରହିଲେ । କିନ୍ତୁ ମୁଁ ସେମାନଙ୍କୁ ଉତ୍ତେଜିତ ନ ହେବା ଲାଗି ପରାମର୍ଶ ଦେଲି । ତହିଁ ଆର ଦିନ ନାଉଗାଁ ହାଟରେ ବିଭିନ୍ନ ଗ୍ରାମବାସୀଙ୍କୁ ନେଇ ମଠ ବିରୁଦ୍ଧରେ ଏକ ବିରାଟ ସଭା ହେଲା । ମଠର ବ୍ୟବସ୍ଥା ଏଣ୍ଡାଓମେଣ୍ଟ ହାତକୁ ନେବାକୁ ବହୁ ମତରେ ପ୍ରସ୍ତାବ ଆସିଲା । ସଭା ସ୍ଥଳରେ ମୋ କାନରେ ପଇସାଏ ଦୁଇ ପଇସା କରି ପ୍ରାୟ ୧୦୦ ଟଙ୍କାରୁ ଊର୍ଦ୍ଧ୍ୱ ଆଦାୟ ହେଲା । ମଠର ମହନ୍ତ ଓ ତା ଭାଇର ଅତ୍ୟାଚାର ବିରୁଦ୍ଧରେ ଚାଲିଲା ବିରାଟ ଅଭିଯାନ । ସବୁଥିରେ ଜନତାର ବିଜୟ ହେଲା । ଅତ୍ୟାଚାରୀଙ୍କର ଦମ୍ଭ ଓ ବଳ ମାଟିରେ ଲୀନ ହୋଇଗଲା । ନାଉଗାଁ ଅଞ୍ଚଳର ଲୋକଙ୍କର ଧୈର୍ଯ୍ୟ ଓ ସାହସ ପ୍ରଶଂସନୀୟ । କୃଷକରେ ତାଙ୍କ ନାମରେ ଏକ ଲେଖା ବାହାରି ଥିବାରୁ ମଠ ମହନ୍ତ ମୋ

ବନ୍ଧୁଙ୍କରେ ଓ ତତ୍କାଳୀନ କୃଷକର ସମ୍ପାଦକ (ପରେ ଶିକ୍ଷା ଓ ସ୍ୱାସ୍ଥ୍ୟମନ୍ତ୍ରୀ) ଶ୍ରୀ ପବିତ୍ର ମୋହନ ପ୍ରଧାନଙ୍କ ବିରୁଦ୍ଧରେ ଏକ ମାନହାନି ମକଦ୍ଦମା କଲେ । Advocate ବସନ୍ତ କୁମାର ସାହୁ ତାଙ୍କ ପକ୍ଷରେ ଓକିଲ ଏବଂ ଆମ ପକ୍ଷରୁ ଶ୍ରୀ ସୋମନାଥ ମହାପାତ୍ର ଏବଂ ପରେ ଶ୍ରୀ ବ୍ରଜବନ୍ଧୁ ବିଶ୍ୱାଳ ମକଦ୍ଦମା ଲଢ଼ିଲେ । ଶେଷରେ ଆମେ ଜୟଲାଭ କଲୁ । ଏହି ମକଦ୍ଦମାରେ ଲଢ଼ିବା ପାଇଁ ସୋମନାଥ ବାବୁ ଓ ବ୍ରଜ ବାବୁ ପଇସାଟାଏ ସୁଦ୍ଧା ନେଇ ନାହାନ୍ତି, ବରଂ ଦେଇଛନ୍ତି । ସେ ଦୁହିଁଙ୍କୁ ମୁଁ ପ୍ରାଣର କୃତଜ୍ଞତା ଜଣାଉଛି । ସେହି ଦିନଠାରୁ ବ୍ରଜବାବୁ ମୋର ପରମ ବନ୍ଧୁ ହୋଇଗଲେ ।

ମହତାବ୍ ମନ୍ତ୍ରୀମଣ୍ଡଳ ମଝିରେ ଇସ୍ତଫା ଦେଲେ । କିନ୍ତୁ ତତ୍କାଳୀନ ରାଜ୍ୟପାଳ ଶ୍ରୀ ଠକ୍‌କରଙ୍କ ଦୟାରୁ ପୁଣି ଗାଦିରେ ବସିଲେ ।

ମଝିରେ ମୋର ପେଟ ଭୀଷଣ ଖରାପ ହେଲା । ଏତେ ଜୋର୍‌ରେ ମାରେ ଯେ ମୋତେ ପାଗଳ କରିଦିଏ । ଆଉ ପେଟର ଅସହ୍ୟ ଯନ୍ତ୍ରଣା ସହି ନ ପାରି Cuttack General Hospitalର କନକା Cottageରେ ଆଶ୍ରୟ ନେଲି । ପ୍ରାୟ ୭ମାସ ରହିଲି । ଡାକ୍ତର ଶରତ ଚନ୍ଦ୍ର ମିଶ୍ର ମୋର ଚିକିତ୍ସକ ଥାଆନ୍ତି । ଏଇଠି ସ୍ତ୍ରୀ ରୋଗ ବିଶେଷଜ୍ଞ D. R. Pattanaikଙ୍କ ସହ ମୋର ବନ୍ଧୁତ୍ୱ ହୁଏ । ପ୍ରତିଦିନ ସେ ମୋ ପାଖକୁ ଆସି ମୋତେ ଦେଖିଯାଉଥିଲେ । ମନସ୍ୱୀ ଡଃ କୁଳମଣି ମିଶ୍ରଙ୍କ ପୁଅ ଡଃ ଶାରଦା ଚରଣ ମିଶ୍ର ମଧ୍ୟ ପ୍ରତିଦିନ ମୋ ଖବର ବୁଝୁଥିଲେ । ଶତ୍ରୁଘ୍ନମାଷ୍ଟ ମୋ ପାଖେ ପାଖେ ବରାବର ରହୁଥିଲେ । ଏତିକିବେଳେ ସାନପୁଅ ବିନୋଦର ଭୀଷଣ ଟାଇଫଏଡ୍ ହେଲା । ସେ ମଧ୍ୟ ଆସି ମୋ ପାଖରେ ରହିଲା । ବହୁ କଷ୍ଟରେ ତାକୁ ଆରୋଗ୍ୟ କରାଗଲା । ବାପା ଓ ବୋଉ ମଝିରେ ମଝିରେ ଆସି ବୁଲିଯାଉଥାଆନ୍ତି । ତେବେ ଆନନ୍ଦ ବୋଲି ଜଣେ ପିଲା, ତା'ଘର ଗୋବିନ୍ଦପୁର ଟୋଲା, ସେ ମୋର ବହୁ ସେବା କରିଛି । ମୁଁ ତାକୁ ଭୁଲି ପାରିବି ନାହିଁ । ମୁଁ ମଧ୍ୟ ତାର ଅନ୍ନ ସଂସ୍ଥାନର ବ୍ୟବସ୍ଥା କରି ଦେଇଛି । ଜମିବାଡ଼ି କିଣି ଭଲ ଘରକରି କରି ଅତି ଆନନ୍ଦରେ ରହିଛି । ମୋର ଅସୁସ୍ଥତା ବେଳେ ଅନେକ ବନ୍ଧୁ ଆସି ମୋତେ ଦେଖି ଯାଇଛନ୍ତି । ଡାକ୍ତରଖାନାର ବହୁ ନର୍ସ ଓ ବେହେରା ମୋର ସେବା କରିଛନ୍ତି । ବାସ୍ତବିକ ମୁଁ ସେମାନଙ୍କ ନିକଟରେ ଋଣୀ ।

ଡାକ୍ତରଖାନାରେ ମୋର ଦୀର୍ଘ ରହଣୀକାଳ ମଧ୍ୟରେ ଅନେକ ନର୍ସ ଯାଇଛନ୍ତି ଆସିଛନ୍ତି । କିନ୍ତୁ ଜଣଙ୍କର ସ୍ମୃତି ମୋ ମନରେ ଉଜ୍ଜ୍ୱଳ ହୋଇ ରହିଛି । ତାର ନାମ ମନୋରଞ୍ଜନୀ । ତା'ର ଆଦର ଯତ୍ନ ଓ ସେବାରେ ମୋତେ ଓ ମୋ

ସ୍ତ୍ରୀକୁ ଯେ କିଣି ନେଇଥିଲା । ଆମେ କଲିକତା କଲେଜରେ ଥିବା ପର୍ଯ୍ୟନ୍ତ ସେ ପ୍ରତିଦିନ ଆସିବ, ମଜା ଗପ କରିବ । ଭଲ ଭଲ ଜିନିଷ ରାନ୍ଧିବାର ବ୍ୟବସ୍ଥା କରିବ । ନିଜେ ମଧ୍ୟ ରାନ୍ଧି ବସିବ । ଗଭୀର ଶ୍ରଦ୍ଧାରେ ନିଜେ ଖାଇବ ଓ ଆମକୁ ମଧ୍ୟ ଖୁଆଇବ । ସୁଶ୍ରୀ ସଭ୍ୟା, ଖ୍ରୀଷ୍ଟିୟାନ୍ ଝିଅଟିଏ । କିନ୍ତୁ ଆଚାର, ବିଚାର, ବ୍ୟବହାର ଓ ଭଦ୍ରତାରେ କୌଣସି ହିନ୍ଦୁ ଝିଅଠାରୁ ଊଣା ନ ଥିଲା । ମୋ ପାଖରେ ତାର ସଙ୍କୋଚ କିମ୍ବା ଭୟ ନ ଥିଲା । ନିଜ ମା' ପେଟର ଭାଇ ଭଉଣୀ ବୋଲି ସେ ଆମ ଦୁହିଁଙ୍କୁ ଦେଖୁଥିଲା । ସେବିକା (ନର୍ସ) ମାନଙ୍କ ନାମରେ ଲୋକମାନେ ନାନା ପ୍ରକାର ଗୁଜବ ରଟାନ୍ତି, ଏଣୁତେଣୁ କଥା କୁହନ୍ତି । କିନ୍ତୁ ମୁଁ ଯେ ସବୁ ବିଶ୍ୱାସ କରେ ନି । ହୁଏତ ହୋଇ ପାରିଥିବ, କିନ୍ତୁ ମନୋରଞ୍ଜନୀ ତାର ବ୍ୟତିକ୍ରମ ।

ତା'ର ଭକ୍ତି ଓ ଭଲ ପାଇବାକୁ କେତେ ବନ୍ଧୁ ଅନ୍ୟ ପ୍ରକାରର ଚିହ୍ନଣ କରିଥିଲେ । କିନ୍ତୁ ମୁଁ କହିବି ଆମ ଦୁହିଁଙ୍କର ସମ୍ପର୍କ ଅତି ପବିତ୍ର ଓ ନିର୍ମଳ ଥିଲା । ଏବେ ବି ସେ ମୋତେ ମନେ ରଖିଛି । ମଝିରେ ମଝିରେ ଚିଠି ପତ୍ର ଦେଉଥିଲା । ସୁବିଧା ପାଇଲେ ମୁଁ କଟକରେ ଥିଲେ ମୋତେ ଦେଖା କରି ଯାଉଥିଲା ଏବଂ ମୋର ଭଲ ମନ୍ଦ ବୁଝୁଥିଲା ।

ହସ୍‌ପିଟାଲ୍ ଛାଡ଼ିବା ପୂର୍ବଦିନ ସେ ମୋ ଠାରୁ ବିଦାୟ ନେବାକୁ ଆସିଥିଲା । ବିଦାୟ ବେଳେ ମୁଁ ମୋର ଆଖିର ଜଳକୁ ବାଧା ଦେଇ ପାରିଲି ନାହିଁ । ନୟନର ଅଶ୍ରୁ ଜଳରେ ନିଜକୁ ପ୍ଳାବିତ କରିବା ହୁଏତ ପୁରୁଷଙ୍କର ଶୋଭନୀୟ ନୁହେଁ, ପାଠକଙ୍କ ନିକଟରେ ଅତି ମାତ୍ରାରେ କୋମଳ ବୋଲି ମନେ ହୁଏ । କିନ୍ତୁ ମୁଁ କିପରି ବୁଝେଇବି ଯେ ଜଣେ ଅପରିଚିତାର ଅଯାଚିତ ପ୍ରୀତି ଓ ସେବା ମୋତେ ରୋଗମୁକ୍ତ କରିବାରେ ସାହାଯ୍ୟ କଲା ? ମୋ ଜୀବନକୁ ସଜୀବ ଓ ସରସ କରିଗଲା ?

୧୯୬୧ ମସିହା ଜାନୁୟାରୀ ୪ । ୫ରେ କଟକ ଜିଲ୍ଲା P. S. P, ସମ୍ମିଳନୀ ଆମ ଗାଁ ମୁଣ୍ଡ ଈଶ୍ୱରପୁର ପଡ଼ିଆରେ ହେଲା । କଟକ ଜିଲ୍ଲା ଓ ବାହାରର ମୁଖ୍ୟ ନେତାମାନେ ସେଠାକୁ ଆସିଥିଲେ । ଆମ ଅଞ୍ଚଳର ପ୍ରତ୍ୟେକ ଗ୍ରାମବାସୀ ନିଜ ଶକ୍ତିମତେ ସାହାଯ୍ୟ କରି ସମ୍ମିଳନୀକୁ ସାଫଲ୍ୟମଣ୍ଡିତ କରିଥିଲେ । ସେଇଠି ମୋର ଚିହ୍ନିନ (ହରିହର କାନୁନ୍‌ଗୋ), ପ୍ରଥମ ହୋଇ ପାର୍ଟି ସଭ୍ୟ ଶ୍ରେଣୀଭୁକ୍ତ ହେଲେ । ବସିନ ମୋର ସାନଭାଇ ସବୁ ବୁଝୁଥାଏ । ସମ୍ମିଳନୀର ସମସ୍ତ ଦାୟିତ୍ୱ ସେ ନେଇଥିଲା । ମୁଁ କେବଳ ନାମକୁ ମାତ୍ର ସାକ୍ଷୀ ହୋଇଥିଲି । ଶେଷ ଦିନ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସଭାପତିତ୍ୱରେ ବହୁ ଲୋକ ସମାଗମରେ ଏକ ବିରାଟ

ସଭା ହେଲା । ନିତ୍ୟାନନ୍ଦ ମହାନ୍ତି (ନିତଭାଇ) କଂଗ୍ରେସ୍‌ରେ ଥିଲେ ମଧ୍ୟ ସେ ଆମର ନେତୃବର୍ଗଙ୍କୁ ଖାଦ୍ୟୋପସ୍ଥରେ ଏପରି ଆପ୍ୟାୟିତ କଲେ ଯେ ସମସ୍ତେ ଏଥିରେ ସନ୍ତୁଷ୍ଟ ହେଲେ ମଧ୍ୟ କେତେ କଂଗ୍ରେସ୍ ଲୋକ ତାଙ୍କ ଉପରେ ଅସନ୍ତୁଷ୍ଟ ହେଲେ । ଅତି ନୀଚ ସ୍ତରର ରାଜନୀତି ଏ । ଅତିଥି ସେବା ଆମର ଧର୍ମ ଓ କର୍ମ । ସେ ଯେ-କୌଣସି ଦଳର ଲୋକ ହୁଅନ୍ତୁ ନା କାହିଁକି, ସେଠି ରାଜନୀତିର ବିଚାର ହେବା ଉଚିତ୍ ନୁହେଁ ।

୧୯୬୧ ଜାନୁୟାରି ୧୬ ତାରିଖରେ ନୂଆ ଆସେମ୍ବ୍ଲି ଗୃହ ଉଦ୍‌ଘାଟନ କରାଗଲା ସେତେବେଳର ଉପରାଷ୍ଟ୍ରପତି ରାଧାକୃଷ୍ଣନ୍‌ଙ୍କ ଦ୍ଵାରା । ଆମେ ୧୬ ତାରିଖ ଦିନ ଗୃହରେ ପ୍ରବେଶ କଲୁ । ୧୬ ତାରିଖରେ ଇତି ଶ୍ରୀ ହେଲା । କଂଗ୍ରେସ୍ ଓ ଗଣତନ୍ତ୍ରର ମିଳିତ ମନ୍ତ୍ରୀମଣ୍ଡଳ ଭାଙ୍ଗିଦେବାକୁ ବିଜୁ ପଟ୍ଟନାୟକଙ୍କର ଅଦମ୍ୟ ଚେଷ୍ଟା ଚାଲିଲା । ମହତାବ୍ ବାବୁ ଯେଉଁମାନଙ୍କୁ କ୍ଷୀର ଓ କଦଳୀ ଖୁଆଇ ପୋଷିଥିଲେ, ସେହିମାନେ ହିଁ ତାଙ୍କ ମୁଣ୍ଡରେ ଚୋଟ ବସେଇଲେ । ମିଳିତ ମନ୍ତ୍ରୀ-ମଣ୍ଡଳ ଭାଙ୍ଗି ଗଲା । ମଧ୍ୟବର୍ତ୍ତୀ କାଳୀନ ନିର୍ବାଚନ ଲାଗି ପ୍ରସ୍ତୁତି ଚାଲିଲା । ବିଭିନ୍ନ ଦଳ ସଜବାଜ ହେଲେ ଲଢ଼େଇ ପାଇଁ । ବାଲିକୁଦାରୁ ମୁଁ ପୁଣି P. S P.ର ପାର୍ଥୀ ହେଲି । କଂଗ୍ରେସ୍ ତରଫରୁ ପ୍ରାର୍ଥୀ ଥିଲେ ଜଣେ କଂଗ୍ରେସ୍ ବିରୋଧୀ ଲୋକ ଯିଏ କି ଗତଥର ନିର୍ବାଚନ ବେଳେ କଂଗ୍ରେସ୍‌କୁ ଦୁର୍ନାମ କରିଥିଲେ, ସ୍ଵର୍ଗତ ପଣ୍ଡିତ ପଢ଼ିହାରୀଙ୍କ ପରି ଜଣେ ନିଷ୍ଠାପର ଜନସେବୀଙ୍କୁ ଜନସାଧାରଣଙ୍କ ଆଗରେ ଅପମାନିତ କରିଥିଲେ । ଏ କ୍ଷେତ୍ରରେ ଆମର କେତେକ କର୍ମୀ ଯୋଗ୍‌ଦେଲେ । କେତେକ ଶୁଭେଚ୍ଛୁ ଆତ୍ମଗୋପନ କଲେ । କେତେକଙ୍କୁ ଉତ୍କୋଚରେ ବଶୀଭୂତ କରାଗଲା । ଦକ୍ଷିଣ ବାଲିକୁଦା ଓ ଉତ୍ତର ବାଲିକୁଦାର ସୃଷ୍ଟି ହେଲା । ଶେଷରେ ମଧୁ ବାରିକଙ୍କୁ କେତେକ ଠିଆ କରାଇ ମୋ ଭୋଟ୍‌କୁ ଭାଗ ଭାଗ କରାଇବାର ବ୍ୟବସ୍ଥା କରାଗଲା । ଶରତ୍‌କୁମାରୀ ସାଂଘାତିକ ବେମାର ପଡ଼ିଲେ । ମୋର ଡାହାଣ ହାତ ବିପିନ, ସୁଦକ୍ଷ ସେନାପତି ସରପଞ୍ଚ ଥାଇ କେତେକ ଅବାଞ୍ଛିତ କାମ କରୁଛି ବୋଲି ଲୋକେ ଦୁଆ ଉଠାଇଲେ । ତା'ର ଖରାପ ପ୍ରଭାବ ମଧ୍ୟ ଆମ ପାର୍ଟି ଉପରେ ପଡ଼ିଲା । ଚାରି ବର୍ଷ ପୂର୍ବେ ଯେଉଁ ଗ୍ରାମମାନେ ମୋତେ ସାହାଯ୍ୟ କରି-ଥିଲେ, ଆଜି ନାନା କାରଣ ଯୋଗେ ସେମାନେ ଧରାଛୁଆଁ ଦେଲେ ନାହିଁ । ତେଣେ କଂଗ୍ରେସ୍‌ର କ୍ଷମତା, ପ୍ରତିପତ୍ତି ଓ ଅର୍ଥ ଲୋକଙ୍କୁ କାବୁ କଲା । ମୁଁ ହାରିଗଲି । ବିଜୁ ପଟ୍ଟନାୟକଙ୍କର ଅମୋଘ ଅସ୍ତ୍ର ନିକଟରେ ପାର୍ଟିର ମହା ମହା ଯୋଦ୍ଧାମାନେ ଟଳି ପଡ଼ିଲେ । ବିଧାତା ମୋର ସବୁଆଡ଼ୁ ପ୍ରତିକୂଳ ହେଲା । କେବଳ ମୁଁ ନୁହେଁ,

ଆମ ପାର୍ଟିର ନିଶାମଣି ଖୁଣ୍ଟିଆ, ବାଙ୍କବିହାରୀ ଦାସ, ରବୀନ୍ଦ୍ର ମୋହନ ଦାସ, ପବିତ୍ର କିଶୋର ଦାସ ପ୍ରଭୃତି ମହାରଥୀଙ୍କର ପରାଜୟ ହେଲା । କିନ୍ତୁ ମୁଁ ହତାଶ ହୋଇନି । ମନରେ ଅବସାଦ ଭାବ ଆଣିନି । ମୋର ବନ୍ଧୁମାନଙ୍କ ମନରେ ନୈରାଶ୍ୟ ଆସିଲେ ମଧ୍ୟ ମୁଁ ଭାଙ୍ଗି ପଡ଼ିନି ।

କଳାବିକାଶ କେନ୍ଦ୍ରକୁ ଫେରି ଆସିଲି । ଘରଟିଏ ପାଇଲି । ପୂର୍ଣ୍ଣ ସମୟ ଦେଇ କେନ୍ଦ୍ରର କାର୍ଯ୍ୟରେ ଆତ୍ମନିୟୋଗ କଲି । ସେତେବେଳେ ମୋର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନ ଥିଲା । ଅନେକ ସମୟରେ ଅଭାବ ଅନଟନ ମୋତେ ବ୍ୟସ୍ତ କରି ପକାଉଥିଲେ ମଧ୍ୟ ସେସବୁକୁ ଯଥାସମ୍ଭବ ଆୟତ୍ତକୁ ଆଣି ମୁଁ ସର୍ବଦା କେନ୍ଦ୍ର କାର୍ଯ୍ୟରେ ନିଜକୁ ନିୟୋଜିତ କରି ରଖିଥାଏ ।

୧୯୭୮ର ଶେଷଆଡ଼କୁ ଲୋକସଭା ନିର୍ବାଚନର ଆୟୋଜନ ହେଲା । କଳାବିକାଶ କେନ୍ଦ୍ରରୁ କିଛିଦିନ ଛୁଟି ନେଇ ମୁଁ ପୁଣି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲି । କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ ଦ୍ୱିବେଦୀ ଓ ସଦର ନିର୍ବାଚନ ମଣ୍ଡଳୀ ତରଫରୁ ନିଶାମଣି ଖୁଣ୍ଟିଆ, ତାଙ୍କ ପ୍ରତିଦ୍ୱନ୍ଦୀ ଯଥାକ୍ରମେ ହେଲେ ସୁରେନ୍ଦ୍ର ନାଥ ମହାନ୍ତି ଓ ନିତ୍ୟାନନ୍ଦ କାନୁନଗୋ । ମୁଁ ଓ ମୋର କର୍ମୀମାନେ ମନପ୍ରାଣ ଦେଇ ଖଟିଲୁ । ହୃତ ଗୌରବ ଫେରାଇ ଆଣିବା ପାଇଁ ସାଧ୍ୟମତେ ଶକ୍ତି ଓ ସମୟ ଦେଲୁ । କିନ୍ତୁ ବିଜୟ ପାଇଲୁ ନାହିଁ । ସେ ବେମାର ପଡ଼ିଲା । ତାର କର୍ମକୁଶଳତା ଏ ଲଢେଇରେ କେତେ ଯେ ଦରକାର ତାହା ସମସ୍ତେ ଉପଲବ୍ଧି କଲେ ମଧ୍ୟ ଅନ୍ୟ ଉପାୟ ନଥିଲା । ପୁଣି ଝଙ୍କାର ସ୍ରୋତ ଛୁଟିଲା । ପୁଣି ଏକ ଅବାଞ୍ଛିତ ଲୋକ ଯିଏକି ଥରେ ନୁହେଁ, ଅନେକଥର ନିଜ ଭୋଟରଙ୍କୁ ଧୋକ୍କା ଦେଇଛି, ତାର ବିଜୟ ଲାଗି ଯେତେ ଦୁର୍ନୀତିପରାୟଣ ଝାଉଟର ଏକଯୁଟ ହେଲେ । ଦିନେ ଯିଏ ଗାଁ ମାଡ଼ିନି ନାହିଁ, ଧୂଳିମାଟି କାଦୁଅ ରାସ୍ତାରେ ଯାହାଙ୍କର କୋମଳ ଚରଣ ପଡ଼ିଲେ ବାଧେ, ଲୋକସେବକର ପତ୍ନୀ ବୋଲାଇ ଯିଏ ଦୋତାଲା କୋଠା ଉପରେ ଦୁଗ୍ଧଫେନନିଭ ଶଯ୍ୟାରେ ଶୋଇ କାହାଠୁ କେତେ ମାଣ ଆଣିବାର ସ୍ୱପ୍ନ ଦେଖୁଥିଲେ, ସେପରି ମହିଳା କର୍ମୀମାନେ ପ୍ରାର୍ଥୀଙ୍କ ତରଫରୁ ପୁରୀରୁ ମହାପ୍ରସାଦ ଆଣି ସରଳା ନିରୀହା ଗ୍ରାମ୍ୟ ନାରୀମାନଙ୍କୁ ଇତଃସ୍ତତ କରିବାର ଚେଷ୍ଟା କଲେ । ଗରିବ ମଳିମୂଣ୍ଡିଆଙ୍କୁ ଯିଏ ଦେଖିଲେ ଦୂର୍ ଦୂର୍ କରନ୍ତି, ସେମାନେ ତାଙ୍କୁ ଆଲିଙ୍ଗନ କଲେ । ତାଙ୍କ ସହ ଯାଇ, ପଙ୍ଗତ ବସିଲେ । ପୁଣି ଏକ ଐନ୍ଦ୍ରଜାଲିକ ଭୋଜବାଜି ସୃଷ୍ଟି ହେଲା । ନିରୀହ ଶିକ୍ଷକମାନଙ୍କୁ ବଦଳିର

ଧମକ ଦିଆଯାଇ, ସ୍ୱକଣ୍ଠରୁ ବକ୍ତୃତାର କଣ୍ଠାର ଚମକ ଦେଖାଇ, କଂଗ୍ରେସ ତରଫରୁ ପ୍ରଚାର କରିବାକୁ ଜୋର ଦିଆଗଲା । ସେମାନଙ୍କ ଇଚ୍ଛା ବିରୁଦ୍ଧରେ କେତେକଙ୍କ ପ୍ରତିବାଦ ସତ୍ତ୍ୱେ ନାନା ପ୍ରସ୍ତାବ ପକାଇ ଏପରି ଏକ ଚକ୍ରବ୍ୟୂହ ରଚନା କରାଗଲା, ଯାହାକୁ ଭେଦ କରିବାର ଶକ୍ତି ଖୁଣ୍ଟିଆଙ୍କର ନଥିଲା । ତଥାପି ସେ ଚକ୍ରବ୍ୟୂହ ଭେଦ କରିଯାଇଥିଲେ । କିନ୍ତୁ ଫେରିବାର ପଥ ଥିଲା ତାଙ୍କୁ ଅଜଣା । ସେ ଶତ୍ରୁମାନଙ୍କଦ୍ୱାରା ଆକ୍ରାନ୍ତ ହେଲେ । ଅଭିମନ୍ୟୁ ହାରିଗଲା ସତ· କିନ୍ତୁ ତାର ବୀରତ୍ୱ, ତାର ସମର କୌଶଳ ମହାଭାରତରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବାଭଳି ନିଶାମଣିଙ୍କ ଜନପ୍ରିୟତା, ଅଦ୍ଭୁତ ସଙ୍ଗଠନ ଶକ୍ତି ସମସ୍ତଙ୍କୁ ଚକିତ କଲା । ସେ ଯାହା ଭୋଟ ପାଇଥିଲେ, ତାହା ତାଙ୍କ ଦଳ ପ୍ରତି ସ୍ନେହ, ଶ୍ରଦ୍ଧା ଓ ବିଶ୍ୱାସର ପରିଚାୟକ ।

କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀକୁ ବିଜୁ ପଟ୍ଟନାୟକ ନିଜର ବୋଲି ଧରି ନେଇଥିଲେ । ସୁରେନ୍ଦ୍ର ଦ୍ୱିବେଦୀଙ୍କୁ ପରାସ୍ତ କରିବା ଲାଗି ତାଙ୍କ ତୂଣୀରରେ ଯେତେ ଶର ଥିଲା ତାହା ପ୍ରୟୋଗ କଲେ । ଶେଷରେ ଭୋଟ ଗଣତି ବେଳକୁ ଅଫିସରଙ୍କୁ ହାତ କରିବାକୁ ମଧ୍ୟ ଚେଷ୍ଟା କରିଥିଲେ । ତାଙ୍କ ତୁଣ୍ଡରେ ମଧ୍ୟ କୁହାଇ ଦେଲେ ଯେ ସୁରେନ୍ଦ୍ର ମହାନ୍ତି ଜିତିଗଲେ । କିନ୍ତୁ ବିଧାତାର ବିଚାର ଅନ୍ୟ ପ୍ରକାର ହେଲା । ଏକ ଆଜନ୍ମ ଦେଶପ୍ରେମୀ, ବିପ୍ଲବୀର ନିଷ୍ଠା, ସାଧୁତା ଏବଂ ତ୍ୟାଗ ନିକଟରେ କୌରବଦଳ ମଥା ଅବନତ କରି ରକ୍ତନଦୀ ସନ୍ତରଣ କରି ପଳାଇଲେ । ତଥାପି ତାଙ୍କ ସଭ୍ୟ ପଦରୁ କାଢ଼ି ଦେବା ପାଇଁ ନିର୍ବାଚନ ମକଦ୍ଦମା ରୁଜୁ କଲେ । ବର୍ଷ ବର୍ଷ ଧରି ତାହା ଚାଲିଲା । ସରକାରଙ୍କ ଖଜଣାଘରୁ ବହୁ ଅର୍ଥ ବ୍ୟୟ ହେଲା । ବହୁ ବିଚାରକ ଆସିଲେ ଓ ଗଲେ । N C. Chattarjeeଙ୍କ ଭଳି ବିଖ୍ୟାତ ବାରିଷ୍ଟର ମଧ୍ୟ ଦ୍ୱିବେଦୀଙ୍କ ପାଇଁ ଲଢ଼ିଲେ । ତା ବ୍ୟତୀତ ତାଙ୍କର ଅନେକ ଶୁଭେଚ୍ଛୁ ଆଡ୍‌ଭୋକେଟ୍ ଦିନ ଦିନ ଧରି ଏ ମକଦ୍ଦମା ଚଳାଇଲେ । ଶେଷରେ ସତ୍ୟର ହିଁ ଜୟ ହେଲା । ମାନସରୋବରରୁ ଶକ୍ତି ସଞ୍ଚୟ କରି ଆସିଥିବା ଦୁର୍ଯ୍ୟୋଧନର ହେଲା ଊରୁଭଙ୍ଗ ।

୧୯୫୭ ମସିହାରେ ମୋ ସାନଭାଇ ବଖ୍ତିୟାର ଲାହୋରୁ ଫେରିଲା । ' କୋଳରେ ତାଙ୍କର ସାନ ପୁଅଟି । ତାର ନାମ ଦେବାବ୍ରତ ବାବୁଲି । ଅରୁ ବୋଉ ଦେଲେ ବିନୋଦ । ବର୍ତ୍ତମାନ ସେ ପୋଷ୍ଟାଲ ଅଡ଼ିଟ୍‌ରେ ଚାକିରି କରୁଛି । ସ୍ତ୍ରୀ କନ୍ୟା ସହ ନିଜ ଶ୍ୱଶୁର ଘର ବାର୍ଣ୍ଣି ସାହିରେ ଭଲରେ ଅଛି ।

୧୯୬୨ ମସିହାରେ କୁନ (ବସନ୍ତ ସ୍ମୀ) ଜଣିଅରୁ ଆସି ତଣ୍ଡିକୂଳରେ ଥାଏ। ସେଠାରେ ତାର ଗୋଟିଏ ପୁଅ ହେଲା। କିନ୍ତୁ ହାୟ ! ପିଲାଟି ଅଳ୍ପ ଦିନ ରହି ଚାଲିଗଲା। ତାପରେ ବସନ୍ତକୁ ୱାର୍କସର୍କାର ରୂପେ ଢଣ୍ଡୋଲ ନିକଟବର୍ତ୍ତୀ ବାଲି-ପାଟଣାରେ ଏକ ଚାକିରି ମିଳିଲା। ସେଠାରେ ତା'ର ଗୋଟିଏ ଝିଅ ହେଲା। ତାର ନାମ ପୁଷ୍ପାଞ୍ଜଳି।

୧୯୬୨ ମସିହା ଅକ୍ଟୋବର ମାସ ପାଖେଇ ଆସିଲା। ବାବୁଭାଇ ଦଶହରା ପୂଜା ଛୁଟିରେ ତଣ୍ଡିକୂଳ ଯିବା ପାଇଁ ଇଚ୍ଛା ପ୍ରକାଶ କଲେ। ମୋ ମନ ନାଚି ଉଠିଲା। ବିଶ୍ୱାସ କରିପାରିଲି ନାହିଁ। ଏ ବର୍ଷା ଦିନେ ତଣ୍ଡିକୂଳ ପରି ସୁଦୂର ବସ୍ତିନ ଗ୍ରାମକୁ ବାବୁଭାଇ ଯିବେ କେମିତି ? ତଥାପି ନାଲିବର ପାଖକୁ ଡଙ୍ଗା ଆଣିବାକୁ ଶରତ୍ କୁମାରୀଙ୍କୁ ଲେଖିଲି। ନିର୍ଦ୍ଦିଷ୍ଟ ଦିନରେ ଗୌରୀ ଶଙ୍କର ପାର୍କରୁ ବସ୍‌ରେ ଚଢ଼ି ନାଳିବରରେ ହାଜର ହେଲୁ। ବେନ୍‌ଜା ସାଥିରେ କେତେ କ'ଣ ଖାଇବା ଜିନିଷ ନେଇଥାନ୍ତି। କନ୍ଦରପୁରରୁ ଖିରମୋହନ ଏବଂ ଜୟପୁରରୁ ପାଟ-କପୁରା କଦଳୀ କିଣିଲୁ। ଡଙ୍ଗା ଠିକ୍ ସମୟରେ ଯାଇ ପହଞ୍ଚିଲା। ନଦୀ ସ୍ରୋତର ଅନୁକୂଳରେ ଡଙ୍ଗା ଭାସି ଚାଲିଥାଏ। ଖାଇବା ସଙ୍ଗେ ସଙ୍ଗେ ହସ ଖୁସିରେ ମଜା ଗପରେ ଆମେ ମଧ୍ୟ ଭାସି ଯାଉଥାଉ। ବାବୁଭାଇଙ୍କୁ ବଡ଼ ଆନନ୍ଦ ଲାଗୁଥାଏ। ବେନ୍‌ଜା ମଧ୍ୟ ବଡ଼ ଖୁସି ହେଉଥାନ୍ତି। ଡଙ୍ଗାରେ ଏପରି ଭାବରେ ଯିବା ଏହି ତାଙ୍କର ପ୍ରଥମ। ବେନ୍‌ଜା ଏ ଯାତ୍ରାରେ ଶଙ୍କିତ ଓ ପୁଲକିତ ହେଉଥାନ୍ତି। ସନ୍ଧ୍ୟା ପୂର୍ବରୁ ଆମ ଘାଟରେ ଡଙ୍ଗା ଲାଗିଲା। ଶରତକୁମାରୀ ଖବର ପାଇ ଏ ବୁଢ଼ୀଙ୍କୁ ପାଛୋଟି ନେଇ ଗଲେ। ତାଙ୍କ ଗୋଡ଼ ତଳେ ପଡ଼ୁ ନଥାଏ। ବାବୁଭାଇଙ୍କ ଘରେ ଆମେ କେତେଥର ଅତିଥି ହୋଇଛୁ। କିନ୍ତୁ ସେ ସସ୍ତ୍ରୀକ ଆସି ଏଠାରେ ଅତିଥି ହେବା କମ୍ ଗୌରବର କଥା ନୁହେଁ। ପାଞ୍ଚଦିନ ବାବୁଭାଇ ଆମ ଘରେ ରହିଲେ। ଦଶହରା ସେଇଠି କଟିଲା। ଶରତ୍‌କୁମାରୀ ଆମ ଓଡ଼ିଆ ଘରର ଯେତେ ପ୍ରକାର ପିଠାପଣା ଅଛି, ସବୁ ତିଆରି କରି ଖୋଇଲେ। ଦଶହରା ଦିନ କେତେ ପ୍ରକାରର ତରକାରୀ, ଖିରି, ଖେଚେଡ଼ି କରି ପରଶିଲେ। ବାସ୍ତବିକ ଏଭଳି ସ୍ୱୀକୃତି ପାଇ ମୁଁ କୌଣସି କଥାକୁ ଖାତର କରିନାହିଁ। ଫେରିବାବେଳେ ବଳଦ ଗାଡ଼ିରେ କାଦୁଅ-ପଡ଼ା ପର୍ଯ୍ୟନ୍ତ ଆସିଲୁ ଏବଂ ସେଠୁ ବସ୍‌ରେ କଟକ ଆସିଲୁ। ବାବୁଭାଇ ଓ ବେନ୍‌ଜା ତଣ୍ଡିକୂଳ ଯାଇ ଅପାର ଆନନ୍ଦ ଅନୁଭବ କଲେ ବୋଲି ମୋତେ କହିଲେ।

ସେହିବର୍ଷ ଅକ୍ଟୋବର ୧୬ ତାରିଖରେ ଆନ୍ତଃ ଏସିଆ ଖାଦ୍ୟ ସମ୍ମିଳନୀ ଭୁବନେଶ୍ୱରରେ ବସିଥାଏ। ଏସିଆର ବିଭିନ୍ନ ଦେଶରୁ ବହୁ ପ୍ରତିନିଧି ଆସିଥାନ୍ତି।

ସେମାନଙ୍କ ସମ୍ମାନ ଉଦ୍ଦେଶ୍ୟରେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ସରକାରଙ୍କ ତରଫରୁ ହୋଇଥାଏ । ତା'ର ଦାୟିତ୍ୱ ନେଇଥାଏ କଳାବିକାଶ କେନ୍ଦ୍ର । ମୁଁ ପିଲାମାନଙ୍କ ସହ ଭୁବନେଶ୍ୱର ବାହାରିଲି । ଦେଖିଲି ଗୋଟିଏ କିଶୋର ମୋ ଅପେକ୍ଷାରେ ଠିଆ ହୋଇଛି । ତାର ନାମ ଶରତ । ଘର ତଣ୍ଡିକୂଳ, ଘରର ସ୍ଥିତି ତା ଜନ୍ମା ଦେଇ ମୁଁ ଭୁବନେଶ୍ୱର ବାହାରିଗଲି । ରାତି ପ୍ରାୟ ୯/୧୦ଟା ବେଳେ ଫେରିଲି । ଶରତ କବାଟ ଖୋଲିଲା । ତଣ୍ଡିକୂଳର ପିଲା ସେ । ଅଥଚ ମୁଁ ଏତେ ଦିନ ତଣ୍ଡିକୂଳରେ ଥାଇ ତା ବିଷୟରେ ବିଶେଷ କିଛି ଜାଣି ନ ଥିଲି । ମଝିରେ ସେ ଥରେ ମାଟ୍ରିକ୍ ପଢ଼ୁଥିବାବେଳେ ଆସିଥିଲା । ମାଟ୍ରିକ୍ ପରେ ତା ପାଇଁ ମୁଁ କିଛି କରିବି ବୋଲି ପ୍ରତିଶ୍ରୁତି ଦେଇଥିଲି ।

ଶରତ ମୋ ପାଖରେ ରହିଗଲା । ସେ ଏଇଠି ରହି I. A. ପର୍ଯ୍ୟନ୍ତ ପଢ଼ିଲା । ରାଧାନାଥ ଟ୍ରେନିଂ କଲେଜରେ ସେତେବେଳେ ବୈଦ୍ୟନାଥ ରଥ ପ୍ରିନ୍‌ସିପାଲ୍ ଥିଲେ । ତାଙ୍କୁ କହି ମୁଁ ଟାଇପିଷ୍ଟ ଚାକିରି କରାଇ ଦେଲି । ତା ଭଉଣୀ ହର୍ଷିକୁ ମହେଶ୍ୱର ବାବୁଙ୍କ ସହିତ ମୁଁ ଓ ମୋ ସ୍ତ୍ରୀ ମିଶି ବିଭାଘର କରେଇ ଦେଲୁ । କଳାବିକାଶ କେନ୍ଦ୍ରର ଇତିହାସରେ ଯାହା ହୋଇ ନ ଥିଲା, ତାହା ହେଲା । ଅର୍ଥାତ୍ କଳାବିକାଶ କେନ୍ଦ୍ରର ହଷ୍ଟେଲରେ ବର ଓ କନ୍ୟା ପକ୍ଷ ରହି ବିବାହ କର୍ମ ଓ ଭୋଜି ଭାତ ସବୁ ସେଇଠି ହେଲା ।

ବିଭିନ୍ନ କ୍ଷେତ୍ରରେ କାମ କରି ଆଜି ଯେ କେବଳ ମଣିଷ ଚହ୍ନିବାର ଦୁର୍ଲଭ ସୁଯୋଗ ମୁଁ ପାଇଛି, ତା ନୁହେଁ, ଆତ୍ମୀୟ ଆବିଷ୍କାରର ଆନନ୍ଦ ମଧ୍ୟ ମୋତେ ମିଳିଛି । ଅପରିଚିତ ଏ ପୃଥିବୀରେ କୌଣସି ଦିନ ମୁଁ ନିଃସଙ୍ଗ ବୋଲି ଭାବିନାହିଁ । ଏକାକୀ ବୋଲି ମନେ କରିନାହିଁ । ଅନେକ ତାଙ୍କର ସ୍ନେହ ମମତା ଏବଂ ଭକ୍ତିର ଡାଲି ନେଇ ଆଗେଇ ଆସିଛନ୍ତି । ମୁଁ ଧନ୍ୟ ହୋଇଛି ।

ବିପିନ୍‌ର ଦେହ ହଠାତ୍ ବ୍ୟସ୍ତ ହୁଏ । କେତେକ କାରଣ ହେତୁ ଏବଂ ନାନା କାର୍ଯ୍ୟର ଚାପରେ ପଡ଼ି ମୁଁ ତାକୁ ଦେଖି ପାରିଲି ନାହିଁ । କଟକ ହସ୍‌ପିଟାଲ୍‌କୁ ଦେଖି ଆସିଲି । ଦେଖିଲି ଅତ୍ୟନ୍ତ ଦୈନ୍ୟ ଅବସ୍ଥା । ବ୍ରେନ୍‌ରେ Tumour ହୋଇଛି । ମୋତେ ଦେଖି ତା ଆଖିରୁ ଲୁହ ଝରି ପଡ଼ିଲା । ମୁଁ ମଧ୍ୟ ଅଶ୍ରୁ ସମ୍ବରଣ କରି ପାରିଲି ନାହିଁ । ନିଜକୁ ଶତ ଧିକ୍‌କାର ଦେଲି । ସେ ମୋ ଲାଗି ଏତେ କଲା, ମୁଁ ନିଷ୍ଠୁର ତା ପାଇଁ କ'ଣ କଲି ? ସାମାନ୍ୟ ମିଥ୍ୟା ଅଭିମାନରେ ସ୍ୱାଇକୁ ମୋର ପର କରିଦେଲି ? ମନରେ ଅନୁଶୋଚନା ଆସିଲା ।

ଘୋର ଅନୁତାପର ଅଗ୍ନିରେ ମୁଁ ଦଗ୍ଧ ହେଲି । ଡାକ୍ତରଙ୍କ ପରାମର୍ଶ ନିଆଗଲା । ଭେଲୋରର ବ୍ୟତୀତ ଅନ୍ୟ କେଉଁଠି ଏ ରୋଗ ଭଲ ହେବ ନାହିଁ ବୋଲି ସେମାନେ ମତ ଦେଲେ । ଅତି ସାଙ୍ଘାତିକ ରୋଗ । କଟକରେ ତାର ଚିକିତ୍ସାର ବ୍ୟବସ୍ଥା ନାହିଁ । ଅବଶ୍ୟ ବର୍ତ୍ତମାନ ହେଲାଣି । ସେତେବେଳେ ବୀରେନ୍ ମିତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ସେ ମୋତେ ଖୁବ ଭଲ ପାଉଥିଲେ । ତାଙ୍କୁ ସବୁ କଥା କହିବାରୁ ସରକାରଙ୍କ ତରଫରୁ ସମସ୍ତ ଖର୍ଚ୍ଚ ବହନ କରାଯିବ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲେ । ଭେଲୋର ଯିବାର ସମସ୍ତ ବ୍ୟବସ୍ଥା କରି ଆସିଲି । କିନ୍ତୁ ଘରେ କେହି ମଙ୍ଗିଲେ ନାହିଁ । ବୀରେନ୍ ମିତ୍ର ସିନା ଭେଲୋର ଯିବାର ସମସ୍ତ ବ୍ୟବସ୍ଥା କରିଦେବେ, କିମ୍ବା ଡାକ୍ତରଖାନାରେ ଆଡ୍‌ମିସନ୍ କରାଇ ଦେବେ, କିନ୍ତୁ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ତୁଲାଇବ କିଏ ? ଆମର ସେପରି ଶକ୍ତି ଓ ସାମର୍ଥ୍ୟ ନ ଥାଏ । ନାନା ଆଲୋଚନା ପରେ ହୋମିଓପାଥି ଚିକିତ୍ସା ଚାଲିଲା । ମୋର ଦାଦା, ଖୁଡ଼ି, ଭାଉଜ, ତା'ର ଅନେକ ସେବା କରିଛନ୍ତି । ଚିତ୍ରୁନ ବସାରେ ସେ ଥାଏ । ଧୀରେ ଧୀରେ ଦୃଷ୍ଟି ଶକ୍ତି ହରାଇ ବସିଲା । ଲୋକ ଚିହ୍ନି ପାରିଲାନି ସେ । ସମସ୍ତ ପରିବାର ତା'ର ଚିକିତ୍ସା ଲାଗି ସର୍ବସ୍ୱାନ୍ତ ହୋଇଗଲେ । ତା ଇଚ୍ଛାକ୍ରମେ ତାକୁ ବାବୁଜୀଇଙ୍କ କାରରେ କଣିଆ ଆଣିଲି । ସେଠୁ ସେ ଦା ଗାଁ ଗଲା । କିନ୍ତୁ ହାୟ ! ବାପା, ମା', ସ୍ତ୍ରୀ, ଝିଅଟିଏ ଓ ଏକମାତ୍ର ପୁଅକୁ ଶୋକ ସାଗରରେ ଭସାଇ ଦେଇ ୧୯୬୩ ମାର୍ଚ୍ଚ ପହିଲାରେ ଏ ସଂସାରରୁ ବିଦାୟ ନେଲା । ତାର ମୃତ୍ୟୁ ଖବର ମୁଁ କଟକରେ ପାଇ ତହିଁ ଆରଦିନ ଦା ଗାଁ ଗଲି । କାହାକୁ ସାନ୍ତ୍ୱନା ଦେବି ? କ'ଣ କହିବି ? କାନ୍ଦି କାନ୍ଦି ଫେରିଲି । ମୋର ଡାହାଣ ବାହୁ ଖସି ପଡ଼ିଲା । ମୋର ଏକ ସୁଯୋଗ୍ୟ ସେନାପତି ଓ ସୁଯୋଗ୍ୟ ସଙ୍ଗଠକ ଚିର ଦିନ ପାଇଁ ମୋର ପାଖରୁ ଅନ୍ତର ହୋଇଗଲା । ତା ପରିବାର ଲାଗି ମୁଁ କିଛି କରି ପାରିଲି ନାହିଁ । ନିଜର ନାନା ଅସୁବିଧା, ବାଧାବିଘ୍ନ ମୋତେ ବିବ୍ରତ କଲା । ତାହାର ଚିନ୍ତାରେ ମୁଁ ମ୍ରିୟମାଣ ହୋଇ ପଡ଼ିଲି । ତା'ର ପିଲାମାନଙ୍କ ଲାଗି ମୋର ଯେତେ କର୍ତ୍ତବ୍ୟ ଓ ଦାୟିତ୍ୱ ଥିଲେ ମଧ୍ୟ ମୁଁ କିଛି କରିପାରିଲି ନାହିଁ । ପରିସ୍ଥିତି ଯେ ମୋତେ କୁଆଡ଼ୁ ଆଣି କୁଆଡ଼େ ପକାଇଲା, ତାହା ଭାବିଲେ ମୁଁ ବ୍ୟଥା ବୋଧ କରେ । ମୋ ମନ ବିକଳ ହୋଇ ଉଠେ । ବିପିନ୍‌ର ମୃତ୍ୟୁପରେ ବାଲିକୁଦାରେ ପ୍ରଜା-ସୋସାଲିଷ୍ଟ ପାର୍ଟି ପଙ୍ଗୁ ହୋଇଗଲା । ସେ କ୍ଷତି ପୂରଣ ହେବାର ନୁହେଁ । ଯାହା ଯାଇଛି, ତାକୁ ଫେରି ପାଇବା ବିଧାତାର ଅଭିପ୍ରେତ ନୁହେଁ ବୋଲି ମନକୁ ସାନ୍ତ୍ୱନା ଦେଇ ରହିଲି ।

ମୂଳରୁ ମୁଁ କଳାବିକାଶ କେନ୍ଦ୍ରର ପ୍ରତିଷ୍ଠାତା ସଭ୍ୟ ରହିଛି । ମ୍ୟାନେଜିଂ କମିଟି ଓ ଟ୍ରଷ୍ଟ ବୋର୍ଡ଼ର ସଭ୍ୟ ମଧ୍ୟ ରହିଛି । ୧୯୭୩/୭୪ ଦୁଇବର୍ଷ Joint Secretary ରହିଲି । ଏବେ ବି ପରିଚାଳନା ସମିତିର, ଟ୍ରଷ୍ଟ ବୋର୍ଡ଼ର ଓ ଫାଉଣ୍ଡେସନ୍ ଟ୍ରଷ୍ଟରେ ସଭ୍ୟ ହୋଇ ରହିଛି । ଯେତେବେଳେ ସମୟ ପାଇଛି, କେନ୍ଦ୍ରର କାର୍ଯ୍ୟ କରିଛି । ଏବେ ମଧ୍ୟ କରୁଛି । ବର୍ତ୍ତମାନ ମୁଁ ପ୍ରଥମ ଯୁଗ୍ମ ସମ୍ପାଦକ । କେନ୍ଦ୍ରକୁ ମୋର ଜୀବନର ଏକ ଅଙ୍ଗ ବୋଲି ଭାବି ନେଇଛି । ଏ କେନ୍ଦ୍ରର ଗଠନରେ ଅନ୍ୟ ମାନଙ୍କ ସହ ମୁଁ ଶ୍ରମ ଦେଇଛି, ସମୟ ଦେଇଛି । ଏମ. ଏଲ୍. ଏ. ଥାଇ ଅର୍ଥ ଦେଇଛି । କେନ୍ଦ୍ରର ଶିକ୍ଷକ, ଶିକ୍ଷୟିତ୍ରୀ, ଛାତ୍ରଛାତ୍ରୀ ଓ କର୍ମଚାରୀ ବୃନ୍ଦ ଓ କେନ୍ଦ୍ର ସହ ସମ୍ପୃକ୍ତ ଥିବା ପ୍ରତ୍ୟେକ ବ୍ୟକ୍ତି ମୋର ଅତି ଆପଣାର । କେନ୍ଦ୍ରକୁ ମୁଁ ସବୁଠୁ ମୁଖ୍ୟ ସ୍ଥାନ ଦେଉଥିବେଳେ ଅନ୍ୟକୁ ଗୌଣ ମନେ କରିଛି । ଯଦିଓ ପରିସ୍ଥିତିର ଚାପରେ ପଡ଼ି କେତେବ କେମିତି ପାରିବାରିକ ଚିନ୍ତା ମୋତେ ବିବ୍ରାନ୍ତ କରିଛି, ତଥାପି ମୁଁ କେନ୍ଦ୍ରକୁ ଭଲ ପାଇଛି । କେନ୍ଦ୍ରର ପ୍ରତ୍ୟେକ ଧୂଳିକଣା ସହ ମୁଁ ସଂପୃକ୍ତ, ପ୍ରତ୍ୟେକ ଇଟାଖଣ୍ଡ ସହ ମୋ ସ୍ମୃତି ଜଡ଼ିତ । କେନ୍ଦ୍ରର ପ୍ରତିବର୍ଷ Journal ପ୍ରକାଶ ପାଏ । ବିଜ୍ଞାପନ ଆଣିବା ଦାୟିତ୍ୱ ମୋ ଉପରେ ଥାଏ । ସେଇଥିରୁ ପ୍ରାୟ ପାଞ୍ଚ ହଜାର ପର୍ଯ୍ୟନ୍ତ ଟଙ୍କା ମିଳେ । ମୁଁ ନିଜେ ବୁଲି ବୁଲି ବିଜ୍ଞାପନ ଆଣେ, ବିଲ୍ ବାଣ୍ଟେ ଓ ଟଙ୍କା ଆଣେ । ଅବଶ୍ୟ ମୋତେ ଅନ୍ୟ କେତେକ ସାହାଯ୍ୟ କରୁଥିଲେ । କିନ୍ତୁ ପ୍ରଧାନ ଦାୟିତ୍ୱ ଥିଲା ମୋର ।

୧୯୬୪ ମସିହାରେ ଅରବିନ୍ଦ ମାଟ୍ରିକ୍ ପାସ୍ କରି କଟକରେ ମୋ ପାଖରେ ରହି Stewart Sc. Collegeରେ ପଢ଼ିଲା ।

୧୯୬୩ ମସିହା ୨୦ ତାରିଖରେ ଚୀନାମାନେ ଭାରତ ଆକ୍ରମଣ କଲେ । ମ୍ୟାକ୍ ମୋହନ ଲାଇନ୍ ଟପି ସେମାନେ ନେଫା, ବମଡ଼ିଲା ଆଡ଼େ ଧାଡ଼ି ଦେଲେ । ଭାରତ ବାଧ୍ୟ ହୋଇ ଯୁଦ୍ଧରେ ପଶିଲା । ଏ ଦେଶ, ଏ ଜାତିର କୋଣେ କୋଣେ ସଂଗ୍ରାମର ତୂରୀ ବାଜି ଉଠିଲା । ପୁଣି ମୋ ପ୍ରାଣରେ ଜାଗି ଉଠିଲା କବିତ୍ୱ । ମୁଁ ପୁଣି କଲମ ଧରି ଲେଖିଲି ଦେଶାତ୍ମବୋଧ ସଙ୍ଗୀତ । ଆକାଶବାଣୀ ମାଧ୍ୟମରେ ତାହା ପ୍ରଚାରିତ ହେଲାନାହିଁ । ମୋର କର୍ମୀମାନେ ପୁଣି ଲୋକଙ୍କ ପାଖକୁ ଫେରି ଆସିଲେ । ତାଙ୍କ ସୁଖ ଦୁଃଖରେ ଭାଗୀଦାର ହେବାପାଇଁ ମୋ ପ୍ରାଣ ବ୍ୟାକୁଳ ହୋଇ ପଡ଼ିଲା । ସେତିକି ବେଳେ ବାଲିକୁଦା ବାଲସାହିର ବାସୁବାବୁ (ବାସୁଦେବ ଦାସ) ଛାତ୍ର ଆନ୍ଦୋଳନ ସହ ଜଡ଼ିତ ବୋଲି ପୋଲିସ୍ ଅଭିଯୋଗ କରି ନାନା ଦଫାରେ ପକାଇ କଟକ ଜେଲରେ ଆଣି ରଖିଲେ । ପରେ ତାଙ୍କୁ ଜାମିନ୍‌ରେ ଛାଡ଼ିଦେଲେ ।

ଏଥିପୂର୍ବରୁ ମାଛଧରା ଆନ୍ଦୋଳନ ନେଇ ମିଛ କେସ୍‌ ପୋଲିସ୍‌ କରି ମୋର ଚନ୍ଦନ ହରିହର କାନୁନ୍‌ଗୋଙ୍କୁ ଗିରଫ୍‌ କରିଥାନ୍ତି । ତାଙ୍କ ସହିତ ସମସ୍ତ ଇଣ୍ଟେପୁର ବାସୀଙ୍କୁ ମଧ୍ୟ ହଇରାଣ କରିଥାନ୍ତି । ମୋର ମଧ୍ୟ ଗିରଫ ପରୱାନା ବାହାରିଥାଏ । ଅଳକା ନଈକୁ ଜଟରଙ୍ଗ୍ କର୍ପୋରେସନ୍‌ ନେବା ଫଳରେ ସର୍ବତ୍ର ବିଦ୍ୱେଷ ଓ ଉତ୍ତେଜନା ସୃଷ୍ଟି ହୋଇଥାଏ । ହରିବାବୁଙ୍କ ନେତୃତ୍ୱରେ ସେ ଆନ୍ଦୋଳନ ଆରମ୍ଭ ହୋଇଥାଏ । ସାହସୀ ଇଣ୍ଟରପୁର ବାସୀ ଲୋକମାନେ ତାଙ୍କ ପଛରେ ଠିଆ ହୋଇଥାନ୍ତି । ଜଣାମଣି ଖୁଣ୍ଟିଆ ଆସି ଥରେ ଦୁଇ ଥର ସଭା କରିବା ପରେ ସେମାନଙ୍କ ସାହସ ଆହୁରି ବଢ଼ି ଯାଇଥାଏ ।

ମୁଁ ପୁଣି ଥରେ ଫେରି ଆସିଲି ଜଳକର ଆନ୍ଦୋଳନକୁ । ତାହାକୁ ଆମେ ତେଜେଇ ରଖିଲୁ । ଲୁଚଛପି ଲୋକଙ୍କୁ ଡରେଇ ଧରେଇ ଜଳକର ଆଦାୟ କଲେ ସୁଦ୍ଧା ଆମେ ଗାଁ ଗାଁରେ ବୁଲି ବନ୍ଦ୍‌ କଲୁ । ଏ ସନ୍ଧାନ୍ତରେ ବାଲିଗୁଡା ହାଟରେ ସୁରେନ୍ଦ୍ର ଦ୍ୱିବେଦୀଙ୍କର ଏକ ବିରାଟ ସାଧାରଣ ସଭା ହେଲା । ମୁଁ ସେ ସଭାରେ ସଭାପତିତ୍ୱ କରିଥିଲି । ଦୀର୍ଘ ତିନିଘଣ୍ଟା ଧରି ସନ୍ତୁଷ୍ଟ ଜନତା ତାଙ୍କ କଥା ଶୁଣିଛନ୍ତି, ଗୁଣିଛନ୍ତି । ଏପରି ସଭା କେବଳ ୧୯୫୧ ମସିହାରେ ଥରେ ହୋଇଥିଲା । ଏ ଧରଣର ବିରାଟ ଜନସମାଗମ କଂଗ୍ରେସ୍‌ ଲୋକଙ୍କ ଈର୍ଷାର ବସ୍ତୁ ହେଲା । ସେମାନେ ବିଜୁ ପଟ୍ଟନାୟକଙ୍କୁ ଆଣି ସଭା କରାଇଲେ । କିନ୍ତୁ ସମସ୍ତ ବ୍ୟର୍ଥତାରେ ହିଁ ପର୍ଯ୍ୟବସିତ ହେଲା ।

ଆମ କେତେ ଜଣଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ବାବୁଲାଲ ଓଝା ଚଳଚ୍ଚିତ୍ର ନିର୍ମାଣରେ ବ୍ରତୀ ହେଲେ । ତାଙ୍କ ଅନୁଷ୍ଠାନର ନାମ ହେଲା ଗ୍ରାମ୍ୟବାଣୀ ଅନୁଷ୍ଠାନ । ତାଙ୍କର ପ୍ରଥମ ଚଳଚ୍ଚିତ୍ର ହେଲା 'ଅମଡ଼ାବାଟ' । ତାପରେ 'ଅଭିନେତ୍ରୀ' । ପରେ ପରେ 'ଅଦିନ ମେଘ' ଚିତ୍ର ସେ ନିର୍ମାଣ କଲେ । ମୋ ଶକ୍ତି ମତେ ମୁଁ ତାଙ୍କୁ ଆର୍ଥିକ ଓ ମାନସିକ ସାହାଯ୍ୟ ଦେଇଛି । କିନ୍ତୁ ଅତି ଦୁଃଖର କଥା, ଜଣେ ଅଭିନେତା ହିସାବରେ ମୋତେ ତାଙ୍କ ଚିତ୍ରରେ ଅଭିନୟ କରିବାର ସୁଯୋଗ ଦିଆଗଲା ନାହିଁ କିମ୍ବା କୃତଜ୍ଞତା କଲମରେ ମୋର ନାମ ରହିଲା ନାହିଁ । ଅବଶ୍ୟ ଅଦିନ ମେଘର 'ଏଇ ଆମ ଗାଁ' ଗୀତଟି ସମସ୍ତଙ୍କ ମନକୁ ଛୁଇଁଲା । ତାପରେ 'ମଥୁରା ବିଜୟ'ରେ ମୋ ଲେଖା ଗୀତ ଗାଇ ଭିକାରୀ ବଳ ପୁରସ୍କୃତ ହେଲେ । ଅର୍ଦ୍ଧିକୃତାସ୍ଥାରେ ମଧ୍ୟ "ଆସ କିଏ ଖାଇବ ହୋ ଆମ ରାଜାବାବୁଙ୍କର ଖାନା" ଏବଂ ଇନ୍‌କିଲାବ୍‌ ଜିନ୍ଦାବାଦ୍‌ ଗୀତ ଦୁଇଟି ସର୍ବଜନ ପ୍ରଶଂସିତ ହୋଇଥିଲା ।

୧୯୭୪ରେ ମୁଁ କେନ୍ଦ୍ରରୁ କିଛି ଦିନ ଛୁଟି ନେଇ ବାବୁଭାଇଙ୍କ ଅନୁରୋଧ କ୍ରମେ ଶ୍ରୀସ୍ୱାବାଣୀ ପ୍ରତିଷ୍ଠାନ ସହିତ ସମ୍ପୃକ୍ତ ହେଲି । ଫିଲ୍ ସାଥୀରେ ବିଭିନ୍ନ ସିନେମା ହଲ୍ ବୁଲିଲି । ମାଇକ୍‌ରେ 'ଅମଡ଼ା ବାଟ'ର ସ୍ତବ ଗାନ କଲି । ରାତି ୧ଟା ପର୍ଯ୍ୟନ୍ତ ଅନିଦ୍ରା ରହି ଦର୍ଶକଙ୍କୁ ଗଣିଲି । କେଉଁ କ୍ଲାସ୍‌ରେ କେତେ ଟିକେଟ୍ କଟା-ଗଲା, ତା'ର D. C. R. (Daily Collection Report) ଅଫିସ୍‌କୁ ପଠାଇଲି ।

ମୁଁ ଯେ ଦିନେ ଲୋକ ପ୍ରତିନିଧି ଥିଲି, ତାହା ଭୁଲିଗଲି ଏବଂ କାହା ଆଗରେ ପ୍ରକାଶ କରିବାକୁ ଲଜ୍ଜା ଅନୁଭବ କଲି । ଏତିକିବେଳେ ଛାତ୍ର ଆନ୍ଦୋଳନ ହେଲା । ଏହି ଫିଲ୍ମ କାମରେ ବ୍ୟସ୍ତ ଥାଇ ମୁଁ ମୋର ବୈପ୍ଳବିକ ଜୀବନର ଯବନିକା ଟାଣିଲି ।

## ଦୁସ୍ଥ କଳାକାର ଓ କଳାବିତ୍‌ମାନଙ୍କୁ ସାହାଯ୍ୟ

ଶିଳ୍ପୀ ବି. ବର୍ମା :

କଳାବିକାଶ କେନ୍ଦ୍ର ଗଢ଼ା ହେବାର କିଛିଦିନ ପରେ ଆମେ ସ୍ଥିର କଲୁ, ସଙ୍ଗୀତ, ନୃତ୍ୟ ଛଡ଼ା ଅନ୍ୟ ଏକ ମହତ୍ ଉଦ୍ଦେଶ୍ୟ ନେଇ କାମ କରିବା । କେତେ ଜଣ ଦୁସ୍ଥ କଳାକାରଙ୍କୁ ପ୍ରଥମେ ଆର୍ଥିକ ସାହାଯ୍ୟ ଦେବା । ଶିଳ୍ପୀ ବି: ବର୍ମା, କବି ପଦ୍ମଚରଣ ପଟ୍ଟନାୟକ, ଗଣକବି ବୈଷ୍ଣବ ପାଣି, କବି ବାଳକୃଷ୍ଣ ମହାନ୍ତି ଅତି ଦୁରବସ୍ଥାରେ ଥାଆନ୍ତି । ପ୍ରଥମେ ଏଇ ଗୁଣିଜଣଙ୍କୁ ହିଁ ଯାହା ପାରୁ ସାହାଯ୍ୟ କରିବା । ବାବୁଭାଇ ଏବଂ ମୁଁ ଚାନ୍ଦା ଆଦାୟରେ ବାହାରି ପଡ଼ିଲୁ । ଏ ମହତ୍ ଉଦ୍ଦେଶ୍ୟ ନେଇ ଯାହା ପାଖରେ ଠିଆ ହେଲୁ ସେ ଅତି ଆନନ୍ଦରେ ସାହାଯ୍ୟ ଦେଲେ । ପ୍ରାୟ ୩୦୦୦ ଟଙ୍କା ପର୍ଯ୍ୟନ୍ତ ଅତି ଅଳ୍ପ ଦିନରେ ସଂଗ୍ରହ କରି ପ୍ରଥମେ ବି: ବର୍ମାଙ୍କ ମେହେନ୍ଦ୍ରପୁର ଘରକୁ ଗଲୁ । ସେ ଅତ୍ୟନ୍ତ ରୋଗଗ୍ରସ୍ତ ବୋଲି ଶୁଣି-ଥିଲୁ । ବାବୁଭାଇ କେବେ ତାଙ୍କୁ ଥରେ ଦେଖିଥିଲେ । କିନ୍ତୁ ମୁଁ ତାଙ୍କୁ ଅନେକ ଥର ଦେଖିଛି ଏବଂ ତାଙ୍କ ସହିତ ମିଶିଛି । ତାଙ୍କ ଗ୍ରାମ କୃଷ୍ଣପୁର ସ୍ୱାଧୀନତା

ଆନ୍ଦୋଳନର ଏକ ପୀଠସ୍ଥଳୀ ଥିଲା । ପଲ୍ଲୀ କବି ନନ୍ଦକିଶୋର ବଳ ବି ଏହି-ଠାରେ ଜନ୍ମଗ୍ରହଣ କରିଥିଲେ । ସ୍ୱାଧୀନତା ସଂଗ୍ରାମୀ ସଚ୍ଚିଦାନନ୍ଦ ଜେନା, ରାଜେନ୍ଦ୍ର ବର୍ମା, ହରିଭାଇ, ହେମନ୍ତଭାଇ ପ୍ରଭୃତିଙ୍କର ଏ ଜନ୍ମଭୂମି ଏବଂ କର୍ମ-ଭୂମି । ବାଃ ବର୍ମା ସେଇ ବଂଶର । ବାଃ ବର୍ମାଙ୍କୁ ଦେଖି ମୋ ପ୍ରାଣ ବ୍ୟଥାରେ ଭରିଗଲା । ବେଦନାର ଅଶ୍ରୁ ମୋ ଆଖିରୁ ଝରି ପଡ଼ିଲା । ଅତି ସୁନ୍ଦର ତାଙ୍କ ଦେହରେଖ । ବେଶି ଗୋରା ଓ ଟିକେ କଳାକୁ ଏକାଠି ଫେଣ୍ଟିଦେଲେ ଯାହାହେବ ସେମିତ ବର୍ଣ୍ଣ ବ. ବର୍ମାଙ୍କର । ମୁଣ୍ଡର କେଶଗୁଡ଼ିକ କୁଞ୍ଚୁକୁଞ୍ଚିକା । ମଝିରେ ଶିରି ପଡ଼ିଛି । ଆଖିରେ ପୁରୁଣା ଫ୍ରେମର ଚଷମା । ବନାରସୀ ଶିଲ୍କର ପଞ୍ଜାବୀ ଓ ଶାନ୍ତିପୁରି ଧୋତି ପରିଧେୟ । ଗୋଡ଼ରେ ଅତି ଦାମିକା ହାପ୍ ସୁ । ଯାହା ଦେହରେ କିଛି ହେଲେ ମଇଳା ଲାଗେନା, ଅତି ଫିଟ୍ ଫାଟ୍, ସେ ଆଜି ଦାରିଦ୍ର୍ୟ କଷ୍ଟରେ କଙ୍କାଳସାର ହୋଇ ପଡ଼ିଛନ୍ତି । ଜଳଉଦରୀ ବେମାରି ତାଙ୍କର ସର୍ବନାଶ କରିଛି । ଆଖି ଭିତରକୁ ପଶି ଯାଇଛି । ଗୋଡ଼ହାତ ସରୁ ସରୁ । ଗ୍ରୀବା ହାଡ଼ ଗଣି ହୋଇଯାଉଛି । କାଶ ଅନବରତ ଚାଲିଛି । ଏ କଣ ସେହି ଶିଳ୍ପୀ ଯାହାଙ୍କର ଅଙ୍କିତ 'ପଲ୍ଲୀ ବଧୂ' ଚିତ୍ରଟି ଲକ୍ଷ୍ନୌ କଂଗ୍ରେସର ପ୍ରଦର୍ଶନୀରେ ମୋ ଉପସ୍ଥିତିରେ ଶହ ଶହ ସ୍ତ୍ରୀ ପୁରୁଷ ଦେଖି ମୁଗ୍ଧ ହୋଇଥିଲେ ! ତିହରି ଗଡ଼ୱାଲର ରାଜା ଯେଉଁ ଛବିକୁ ଚଢ଼ାଦାମ୍ ଦେଇ କିଣିନେବାକୁ ଅତ୍ୟନ୍ତ ବ୍ୟାଗ୍ର ଥିଲେ ! କିନ୍ତୁ ସେ ତାଙ୍କୁ ବିକ୍ରୟ କରିବାକୁ ଅସ୍ୱୀକାର କରି ଲେଖିଥିଲେ—"ପଲ୍ଲୀବଧୂ ମୋର ମାନସୀ କନ୍ୟା । ତେଣୁ ତାହା ବିକ୍ରି ହେବ ନାହିଁ ।" ଏ କଣ ସେହି ?

ବହୁଦିନ ତଳେ ସ୍ୱର୍ଗୀୟ ରାମାନନ୍ଦ ଚଟ୍ଟୋପାଧ୍ୟାୟଙ୍କ ସମ୍ପାଦନାରେ ବଙ୍ଗ-ଳାରେ ବହୁ ଆଦୃତ ମାସିକ ପତ୍ରିକା ପ୍ରବାସୀ ଏବଂ Modern Review ପ୍ରକାଶ ପାଉଥିଲା । ସେଥିରେ ବାଃ ବର୍ମାଙ୍କର "ପଲ୍ଲୀବଧୂ" ଚିତ୍ରଟି ଶ୍ରୀ ଚଟ୍ଟୋପାଧ୍ୟାୟ ଛପାଇ ଦେଇଥିଲେ । ତାକୁ ଦେଖି ଅନେକ ତ ପ୍ରଶଂସା କରିଥିଲେ, କିନ୍ତୁ ବିଶ୍ୱ-କବି ରବୀନ୍ଦ୍ର ନାଥ ଓଡ଼ିଶାର ଏ ଶିଳ୍ପୀର ଅସାମାନ୍ୟ ଶିଳ୍ପ ପ୍ରତିଭା ଦେଖି ଚକିତ ହୋଇ ଯାଇଥିଲେ । ସେହି ଖ୍ୟାତନାମା ଶିଳ୍ପୀର ଆଜି ଏ କି ଅବସ୍ଥା ! ଅକାଳରେ ଜରା ଜର୍ଜରିତ, ଅଭାବଗ୍ରସ୍ତ । ଆର୍ଥିକ ଅନଟନ ତାଙ୍କୁ ଅକ୍ଟୋପାସ ପରି ଗ୍ରାସ କରି ତାଙ୍କର ସମସ୍ତ ଶକ୍ତି ଓ ସମ୍ବଳକୁ ନିଃଶେଷ କରି ଦେଇଛି । ବାବୁଭାଇ ଏସବୁ ଦେଖି ଦୁଃଖରେ ଭାଙ୍ଗି ପଡ଼ିଲେ । ୧୧୦୦ ଟଙ୍କା ଦେଇ ଆଉ କିଛି ପରେ ଦେବୁ କହି ଚାଲି ଆସିଲୁ ।

କେନ୍ଦ୍ର ତରଫରୁ ଭାରତ ସରକାରଙ୍କୁ ଏ ବୃଦ୍ଧ ଜଣଙ୍କୁ ମାସିକ ଆର୍ଥିକ ସାହାଯ୍ୟ ଦେବାକୁ ଖୁବ୍ ଲେଖାଲେଖି ଚାଲିଲା । କିନ୍ତୁ ଅମଲାତନ୍ତ୍ରର ନାଲିଫିତା

କାରସାଦି ହେତୁ ସାହାଯ୍ୟ ଆସି ପହଞ୍ଚିବା ବେଳକୁ ଶିଳ୍ପୀଙ୍କର ଜୀବନ ପ୍ରଦୀପ ନିର୍ବାପିତ ପ୍ରାୟ ।

ଏତେବଡ଼ ଶିଳ୍ପୀର ମହତ୍ତ୍ୱ କେହି ବୁଝିଲେ ନାହିଁ । ଓଡ଼ିଶାରେ ଜନ୍ମ ନ ହୋଇ ବି: ବର୍ମା ଯଦି ଭାରତର ଅନ୍ୟ କୌଣସି ସ୍ଥାନରେ ଜନ୍ମ ନେଇଥାନ୍ତେ, ତେବେ ଲୋକେ ତାଙ୍କୁ ଉପଯୁକ୍ତ ସମ୍ମାନ ଦେଇଥାନ୍ତେ । ତାଙ୍କ ପ୍ରତିଭାର ପୂଜା କରିଥାନ୍ତେ । ମୋ ଜାଣିବାରେ ତାଙ୍କ ନାମରେ କୌଣସି ଅନୁଷ୍ଠାନ ହୋଇନାହିଁ । ଇତିହାସରେ କୌଣସି ନା ରହିନାହିଁ । ଶିଳ୍ପୀ ବିମ୍ବାଧର ବର୍ମା ଲୋକଙ୍କର ସ୍ମୃତିର କେଉଁ ଅତଳ ଗର୍ଭରେ ଲୀନ ହୋଇ ଯାଇଛନ୍ତି । ବର୍ଷକେ ଥରେ ଅନ୍ତତଃ ତାଙ୍କର ସ୍ମୃତି ସଭାଟିଏ ହେଉନ ।

**କବି ପଦ୍ମଚରଣ ପଟ୍ଟନାୟକ :**

ସେହିପରି ପୁରୀର କବି ପଦ୍ମଚରଣ ପଟ୍ଟନାୟକ । ପୁରୀର କାହିଁକି ସମସ୍ତ ଓଡ଼ିଶାର ସେ—ଯାହାଙ୍କର କବି ପ୍ରତିଭା ଅନନ୍ୟ, ଅନବଦ୍ୟ, ଯାହାଙ୍କର କବିତାର ଗୁଞ୍ଜନରେ ପ୍ରାଣରେ ଶିହରଣ ଆସୁଥିଲା, ଯାହାଙ୍କର ପଦ୍ମପାଖୁଡ଼ା ଗୋଟି ଗୋଟି ଖୋଲି ଜନମାନସ ହରଣ କରୁଥିଲା—ସେ ମଧ୍ୟ ଉପେକ୍ଷିତ ଅବସ୍ଥାରେ ପଡ଼ିଥିଲେ । ସହାୟ ନାହିଁ, ସମ୍ବଳ ନାହିଁ । ତାଙ୍କ କାବ୍ୟକୁ ଲୋକେ ପଢ଼ୁଥିଲେ । କିନ୍ତୁ କବି କିଏ ଚିହ୍ନି ନ ଥିଲେ । ତାଙ୍କ ନିକଟକୁ ମୁଁ ଓ ବାବୁଲାଲ ଯାଇ ଯତ୍କି-ଞ୍ଚିତ୍ ଅର୍ଥ ଦେଲାବେଳେ, ସେ କହିଥିଲେ "ଓଡ଼ିଶାରେ କବି ହୋଇ ଜନ୍ମିବା ବରଦାନ ନୁହେଁ ଅଭିଶାପ । ତଥାପି ମୋର ଗର୍ବ ଯେ, ମୋ କବିତା-ପଦ୍ମର ସୌରଭରେ ଓଡ଼ିଶା ସୁରଭିତ ଓ ଆମୋଦିତ ।" ତାଙ୍କପାଇଁ ମଧ୍ୟ ଭାରତ ସରକାର କିଛି ଅର୍ଥର ବ୍ୟବସ୍ଥା କରିଥିଲେ । କିନ୍ତୁ ଅଳ୍ପ କିଛି ଦିନ ସେ ତାହା ପାଇ ଚିରଦିନ ପାଇଁ ଇହଧାମ ତ୍ୟାଗ କରିଥିଲେ । ସ୍ୱର୍ଗଦ୍ୱାରଠାରେ ତାଙ୍କର ଜୁଇ ଜଳି-ଉଠିଲା । ଏପରି ଏକ ଯୁଗସ୍ରଷ୍ଟା କବିଙ୍କପାଇଁ ଗୋଟିଏ ସ୍ମୃତି ସଭା ବି ହେଲାନାହିଁ, ଆଜି ସେ କାହାର ମନତଳେ ଯେତେବେଳେ ଉଙ୍କି ମାରୁନାହାନ୍ତି, ତେବେ ଇତିହାସରେ କାହିଁକି ତାଙ୍କ ନାଁ ରହିବ ? ତାଙ୍କ ପାଇଁ କିଛି କରିବାର ତ ଦୂରର କଥା, ଦୁଇ ବିନ୍ଦୁ ଅଶ୍ରୁ କେହି ଢାଳି ନାହାନ୍ତି ।

ଆମେ କଳାବିକାଶ କେନ୍ଦ୍ରରେ ତାଙ୍କ ମୃତ୍ୟୁ ଖବର ପାଇ ଏକ ଶୋକସଭା କରିଥିଲୁ ।

**କବି ବାଳକୃଷ୍ଣ ମହାନ୍ତି :**

କବି ବାଳକୃଷ୍ଣ ମହାନ୍ତି ନିଜର ଗୋଟିଏ ନାଟ୍ୟଦଳ ଗଢ଼ି ବହୁ ଅର୍ଥ ଉପାର୍ଜନ କରିଥିଲେ । କିନ୍ତୁ ଶେଷ ଜୀବନରେ ଅତି ଦୁଃସ୍ଥ ଓ ଦୁଃସହାୟ ହୋଇ ପ୍ରାଣତ୍ୟାଗ କଲେ । ଗଣକବି ବୈଷ୍ଣବ ପାଣି ବହୁ ଗୀତିନାଟ୍ୟ ରଚନା କରିଥିଲେ ସତ୍ୟ, କିନ୍ତୁ ତାଙ୍କ ଲେଖାଗୁଡିକ କେବଳ ସଙ୍ଗୀତବହୁଳ ଥିଲା । କବି ବାଳକୃଷ୍ଣ ମହାନ୍ତି ଗୀତ ସଙ୍ଗେ ସଙ୍ଗେ ତାଙ୍କ ଲେଖାରେ କଥା ବା ଯାତ୍ରା ଭାଷାରେ ବଚନିକା ଯୋଗଇଲେ ଏବଂ ତାହା ବେଶ୍ ଜନପ୍ରିୟ ହୋଇଥିଲା । ସେ ମଧ୍ୟ ତାଙ୍କ ଯାତ୍ରା ଦଳରେ ନୂଆ ନୂଆ ବାଦ୍ୟଯନ୍ତ୍ର ଯଥା, କ୍ଲାରିଓନେଟ୍, କେରନେଟ୍ ଓ ବିଗୁଲ୍ ପ୍ରଭୃତି ଆଣି ପୂରେଇଲେ ।

ତାଙ୍କ ଲିଖିତ ଅମର ବିଳାସ, ଶୁଶିଳ ମାଳତୀ, ଶ୍ୱେତ ବସନ୍ତ, ବାଣା-ପରାଜୟ, କେଦାର ଗୌରୀ ଆଦି ଗୀତାଭିନୟ ଗୁଡିକ କେବଳ ଓଡ଼ିଶାରେ ନାହିଁକି କଲିକତା, ଜାମ୍‌ସେଦ୍‌ପୁର ଓ ଅନ୍ୟ ଉପାନ୍ତ ଅଞ୍ଚଳରେ ଖୁବ୍ ଆଦୃତ ଓ ପ୍ରଶଂସିତ ହୋଇଥିଲା । ଓଡ଼ିଶାର ସମସ୍ତ ଗଡ଼ଜାତରେ ନିଜ ଦଳନେଇ ବୁଲିଥିଲେ । ରାଜା ମହାରାଜାମାନେ ତାଙ୍କୁ ଖୁବ୍ ସମ୍ମାନ ଦେଖାଇଥିଲେ । କିନ୍ତୁ କେଜାଣି କାହିଁକି ସେବେଳର କଳାହାଣ୍ଡି ମହାରାଜାଙ୍କ ବିଷ ଦୃଷ୍ଟିରେ ପଡ଼ି ସଟହରା ହୋଇ ସେ ଦଳବଳ ନେଇ କଟକ ପଳାଇ ଆସିଥିଲେ । କବି ନିଜେ ଏକଥା କହିଛନ୍ତି । ବାମନ ଏବଂ ପାଣ୍ଡୁ ଏ ଦୁହେଁ ଥିଲେ ତାଙ୍କ ଦଳର ପ୍ରାଣକେନ୍ଦ୍ର । ରାଜାଙ୍କର ଗୋଟିଏ ଯାତ୍ରା ଦଳଥିଲା । ସେ ଚାହୁଁଥିଲେ ଏ ଦୁହିଁଙ୍କୁ ତାଙ୍କ ପାଖରେ ରଖିବେ । କିନ୍ତୁ ବାଳକୃଷ୍ଣ ମହାନ୍ତି ପରିଷ୍କାର ଭାବରେ ତାଙ୍କୁ ମନା କରିଦେଲେ । ଫଳରେ ତାଙ୍କର ଶେଷ ଚକ୍ଷୁରେ ପଡ଼ି ସବୁଗୁଡି ଆସିବାକୁ ବାଧ୍ୟ ହେଲେ ।

ତେଣୁ ଫେରି ସେ ଆଉ ଯାତ୍ରାଦଳ ନ ଗଢ଼ି ଧାର ଉଧାର କରି ଥିଏଟର କଲେ । ଏହି ଥିଏଟର ହିଁ ତାଙ୍କର କାଳ ହେଲା । ଯାହା କମେଇଥିଲେ ସବୁ ସେଥିରେ ଖମେଇ ଦେଲେ । ଶେଷରେ ନିଜ ପିଲାଙ୍କ ପାଇଁ ମଧ୍ୟ କିଛି ରଖିଗଲେ ନାହିଁ । ତାଙ୍କ ପୁଅ ବିଷ୍ଣୁ ଆମ କଳାବିକାଶ କେନ୍ଦ୍ରର ଗୁରୁ ଥିଲେ । ବର୍ତ୍ତମାନ ବମ୍ବେ କ ଦଲ୍ଲୀରେ ଓଡ଼ିଶୀ ନୃତ୍ୟର ଗୁରୁହୋଇ ବେଶ୍ ରୋଜଗାର କରୁଛନ୍ତି ।

ବୈଷ୍ଣବ ପାଣି ଓ ବାଳକୃଷ୍ଣ ମହାନ୍ତିଙ୍କର ମୋଟେ ପଡ଼ୁ ନ ଥିଲା । ବାଳକୃଷ୍ଣ ମହାନ୍ତି ଲେଖିଲେ ବୈଷ୍ଣବ ପାଣିଙ୍କ ବିରୁଦ୍ଧରେ 'ପାଣି ଧୋବଣି' ଫାର୍ଶ

ଆଉ ବୈଷ୍ଣବ ପାଣି ଲେଖିଲେ ବାଳକୃଷ୍ଣ ମହାନ୍ତିଙ୍କ ବିରୁଦ୍ଧରେ 'ନାଟୁଆ ମହାନ୍ତି' ଫାର୍ସ ।

୧୯୩୧ ମସିହାର କଥା । ଏକାଦିନେ ବାଳକୃଷ୍ଣ ମହାନ୍ତି ଅଭିନୟ କଲେ "ପାଣି ଧୋବଣୀ" ଫାର୍ସ ଚୌଧୁରୀ ବଜାରର ଚନ୍ଦନ ପଡ଼ିଆରେ । ଆଉ ବୈଷ୍ଣବ ପାଣି ବିନୋଦ ବିହାରୀ ଠାରେ କଲେ "ନାଟୁଆ ମହାନ୍ତି" ଫାର୍ସ । ସେ କହିଲେ ପାଣି ଏ କହିଲେ ନାଟୁଆ ମହାନ୍ତି । ମୋର ସ୍ପଷ୍ଟ ମନେଅଛି ମୁଁ ଏଠୁ ସେଠିକି ସେଠୁ ଏଠିକି ହେଉଥାଏ । ଫାର୍ସ ମଧ୍ୟ ବେଶ୍ ଜମି ଉଠିଥାଏ । ଏଇ ଦୁଇ ଜଣଙ୍କ ଯୋଗେ ଚୌଧୁରୀ ବଜାର ଓ ବାଲୁବଜାର ମଧ୍ୟରେ ଝଗଡ଼ା ମଧ୍ୟ ଲାଗିଯାଇଥିଲା । ଛାଡ଼ନ୍ତୁ ସେସବୁ ।

ବାଳକୃଷ୍ଣ ମହାନ୍ତିଙ୍କୁ ମଧ୍ୟ କଲାବିକାଶ କେନ୍ଦ୍ର ତରଫରୁ ୫୦୦୦ଙ୍କା ସାହାଯ୍ୟ ଦିଆଯାଇଥିଲା । ଭାରତ ସରକାରଙ୍କଠାରୁ ଅର୍ଥ ସାହାଯ୍ୟ ଆସୁ ଆସୁ ଚିରଦିନ ପାଇଁ କବି ନୟନ ମୁଦ୍ରିତ କରିଥିଲେ । ଏକ ଅମ୍ଳାନ ପ୍ରତିଭା ମ୍ଳାନ ହୋଇ ଗାଁ ଶ୍ମଶାନରେ ଭସ୍ମରେ ପରିଣତ ହୋଇଗଲା । ଇତିହାସରେ ତାଙ୍କ ନାମ ନ ରହିଲେ ମଧ୍ୟ ପଲାସୋଲରେ, ଅର୍ଥାତ୍ ତାଙ୍କ ଗାଁ ମାଟିରେ ପ୍ରତିବର୍ଷ ତାଙ୍କର ଜୟନ୍ତୀ ପାଳନ କରାଯାଏ । ମହାଭାଗ୍ୟର କଥା, କିଛି ନ ହେଲେ ଅନ୍ତତଃ ବର୍ଷରେ ଥରେ ତାଙ୍କୁ ସ୍ମରଣ କରାଯାଉଛି, ତାଙ୍କ ପ୍ରତିଭାର ପୂଜା ହେଉଛି ।

ତାଙ୍କ ଲେଖା ଗୁଡ଼ିକରୁ କେତେ ଖଣ୍ଡ ବହୁ ଗୋପାଳ ଶ୍ରେଷ୍ଠଗାୟକ ପରମ ସୁନ୍ଦର କଣ୍ଠ ସଜାଡ଼ି ଦେଇଥିବାରୁ ଆକାଶବାଣୀ ମାଧ୍ୟମରେ ପ୍ରାୟ ଶୁଣିବାକୁ ମିଳୁଛି । ତାହା ଲୋକଙ୍କୁ ତୃପ୍ତି ଓ ଆନନ୍ଦ ଦେଉଛି ।

## ଗଣକବି ବୈଷ୍ଣବ ପାଣି :

ବହୁ ଅନୁସନ୍ଧାନ ପରେ ଗଣକବି ବୈଷ୍ଣବ ପାଣିଙ୍କ ଠିକଣା ଦାସରଥି ପୁସ୍ତକାଳୟରୁ ପାଇଲୁ । ତାଙ୍କର ପ୍ରାୟ ସମସ୍ତ ପୁସ୍ତକ ଦାସରଥି ପୁସ୍ତକାଳୟ ଛପେଇଛି । ଏପରି ସମୟ ଆସିଛି ଯେ ମାତ୍ର ଆଠଟି ଟଙ୍କା ନେଇ ବୈଷ୍ଣବ ପାଣି ରାତାରାତି ଖଣ୍ଡେ ଗୀତିନାଟ୍ୟ ଲେଖିଯାଇଛନ୍ତି । ଆମ ଚିଠିପାଇ କେନ୍ଦ୍ରକୁ ଆସିଲେ । ସେତେବେଳେ କେନ୍ଦ୍ର ଗଙ୍ଗା ମନ୍ଦିରରେ ଚାଲୁଥାଏ । ସେ ଆଣ୍ଠୁ ଲୁଗା ଧୋତି, ଫତେଇ ପିନ୍ଧି, କାଖରେ ବଟୁଆ, କାନ୍ଧରେ ପାଚିଲା ଗାମୁଛା ପକାଇ ଆସିଥିଲେ । ଚନ୍ଦାମୁଣ୍ଡ, ବୟସ ହୋଇଗଲାଣି କିନ୍ତୁ ଅଣ୍ଟା ନଇନି । ଆସିବା ସଙ୍ଗେ ସଙ୍ଗେ ଗୋଟିଏ ଗୀତ ରତନାକର ଗାଇ ଗଲେ । କଥା କଥାକେ ମୁଁ ତାଙ୍କୁ ସୋନ୍‌ପୁର କଥା ମନେ

ପକେଇ ଦେଲି । ବୃଦ୍ଧା ଅତୀତର ସେଇ ୧୭।୧୮ ବର୍ଷ ତଳକୁ ଫେରିଗଲେ । ମୁଁ ମଧ୍ୟ । ଭାରତ ଭ୍ରମଣ ଉଦ୍ଦେଶ୍ୟରେ ଯାଇ ଆମେ ସୋନ୍‌ପୁର ସହରରେ ପହଞ୍ଚି ଥାଉ । ଆମର ଦୁଇ ତିନି ଦିନ ଆଗରୁ ବୈଷ୍ଣବ ପାଣି ଗୋଟିଏ ଯାତ୍ରା ଦଳନେଇ ପହଞ୍ଚିଥାନ୍ତି । ସେତେବେଳେ ସେ ଅଞ୍ଚଳ ବଡ଼ ଦୁର୍ଗମ ଓ ଅଗମ୍ୟ ଥିଲା । ରାଜାଙ୍କ ତରଫରୁ ଯଦିଓ ପକ୍‌କା ସଡ଼କ ତିଆରି ହୋଇଥିଲା, ତଥାପି ବଣଜଙ୍ଗଲ ଓ ହିଂସ୍ରଜନ୍ତୁ ଭରା ଅଞ୍ଚଳକୁ ଆମର ଏଠାରୁ କେହି ଯିବାକୁ ସାହସ କରୁ ନ ଥିଲେ । କିନ୍ତୁ ମାରୱାଡ଼ିମାନେ ବହୁ ପୂର୍ବରୁ ସେଠାରେ ସ୍ଥାୟୀ ବସ ବାସ କରିସାରିଥିଲେ । ବୈଷ୍ଣବ ପାଣିଙ୍କ ଦଳ ଯେଉଁ ଧର୍ମଶାଳାରେ ରହୁଥିଲେ, ଆମେ ଯାଇ ସେ ଧର୍ମଶାଳାରେ ଠିକ୍ ସେମାନଙ୍କ ଘରକୁ ଲଗି ଗୋଟିଏ ଘରେ ରହିଲୁ । ପାଣି କହୁଥାନ୍ତି ଆରେ ପିଲାଏ ତିନିଦିନ ଆସି ହେଲା । କେହି ବିଶ୍ୱାସ କରୁନାହାନ୍ତି ବୈଷ୍ଣବ ପାଣି ସୋନ୍‌ପୁର ଆସିଛୁ ବୋଲି । କ'ଣ କରିବା ? କେତେ ଦିନଦିନି ହାତରୁ ଖାଇବା ? ଢୋଲକଟାଏ ନିଅ, ଝାଞ୍ଜ ହଲେ ନିଅ, ହାରମୋନିୟମ୍‌ଟା ଜଣେ କାନ୍ଧରେ ପକାଅ । ଏହି ଗୀତଟି ଗାଇବ । ଏବେବି ସେ ଗୀତର କେଇପଦ ମୋର ମନେ ଅଛି ।

ସୋନପୁର ବାସୀ ଭାଇଭଉଣୀ
ମନ ଦେଇ ଶୁଣ ମୋହର ବାଣୀ
ଆସିଛୁ ଏଠାକୁ ବୈଷ୍ଣବ ପାଣି
ନେବ ନାହିଁ ଟଙ୍କା ପଇସା ଗୁଣି
ଦେଖାଇବ ଗୀତାଭିନୟ ଠାଣି ।

ବାଜା ବାଜୁଥାଏ । ସ୍ୱର ଧରି ଗାଇଜଣ ବୋଲୁଥାନ୍ତି । ଆମେ ଯାଇ ସେଠାରେ ଠିଆହେଲୁ । ବୈଷ୍ଣବ ପାଣିଙ୍କୁ ନମସ୍କାର କଲୁ । ସେ ଆଶ୍ଚର୍ଯ୍ୟ ହୋଇ ଆମ ଆଡ଼କୁ ଚାହିଁଲେ । ଆମେ କଟକରୁ ଆସିଛୁ ଓ ପଦବ୍ରଜରେ ଭାରତ ଭ୍ରମଣ କରୁଛୁ ବୋଲି କହିଲୁ । ସବୁକଥା ତାଙ୍କଠାରୁ ଶୁଣିଲୁ । ରାଜା ନ ଥାନ୍ତି, ସେଦିନ ଆମର ଦେୱାନଙ୍କୁ ସାକ୍ଷାତ କରିବାର କଥା । ଆମେ କହିଲୁ ଆପଣ ଚିନ୍ତା କରନ୍ତୁ ନାହିଁ । ଆମର ପଛେ କିଛି ନ ହେଉ ଆପଣଙ୍କର ସମସ୍ତ ବ୍ୟବସ୍ଥା ଦେୱାନଙ୍କୁ କହି କରିଦେବୁ ।

ନିର୍ଦ୍ଦିଷ୍ଟ ସମୟରେ ଦେୱାନଙ୍କ ସହିତ ଆମର ସାକ୍ଷାତ ହେଲା । ସେ ରାଜ-ଅତିଥି ଶାଳାରେ ରହିବାର ଆମର ସମସ୍ତ ବ୍ୟବସ୍ଥା କରିଦେଲେ । ବୈଷ୍ଣବ ପାଣିଙ୍କ କଥା କହିବାରୁ ସେ ସାଙ୍ଗେ ସାଙ୍ଗେ ପାଣିଙ୍କ ନାଟକ ପ୍ରଦର୍ଶନର

ଆୟୋଜନ କଲେ । ଦେଓ୍ୱାନଙ୍କ ଆଦେଶରେ ଖାଇବାର ରସଦ୍ ଏବଂ ପୂଜାଘର ସ୍ୱରର ସ୍ଥଳରେ ଧର୍ମଶାଳା । ବଢ଼ିଆ ଖାଇବା ପିଇବା ହେଲା । ଆମେ ମଧ୍ୟ ସେଠାରେ ପଡ଼ର ପକାଇଲୁ । ରାତିରେ ଉଆସର ଅଗଣାରେ ହେଲା 'ଧ୍ରୁବ' ନାଟକ ।

ପ୍ରାରମ୍ଭରେ ବୈଷ୍ଣବ ପାଣି ସୋନପୁରର ରାଜା, ଦେଓ୍ୱାନ ଓ ଅନ୍ୟାନ୍ୟ କର୍ମଚାରୀ ତଥା ସୋନପୁରର ଅଧିବାସୀମାନଙ୍କ ଉଦ୍ଦେଶ୍ୟରେ ଏକ ସଙ୍ଗୀତ ରଚନା କରି ଏପରି ଦରଜ ଦେଇ ଗାଇଲେ ଯେ ଖାଲି ତାଳି ଉପରେ ତାଳି ଉଠୁଥାଏ ।

ନାଟକ ଚାଲିଲା । ଯେତେବେଳେ ଧ୍ରୁବ, ରାଜା ଉତ୍ତାନପାଦଙ୍କ କୋଳରେ "ବାପା ବାପା" କହି ବସିପଡ଼ିଲା, ସେତେବେଳେ ସାନରାଣୀ ସୁରୁଚୀ ରାଜାଙ୍କ କୋଳରୁ ଧ୍ରୁବକୁ ଟାଣି ନେଇ ତଳେ ପକେଇ ଦେଇ ଗୋଇଠା ଉପରେ ଗୋଇଠା ଚାପୁଡ଼ା ମାରି କହିଲା "ଆଗେ ମର୍, ପରେ ମୋ ଗର୍ଭରୁ ଜନ୍ମହେଲେ ଯାଇ ରାଜାଙ୍କ କୋଳରେ ବସିବୁ ।" ଅନବରତ ମାଡ଼ ଚାଲିଥାଏ । ଧ୍ରୁବ "ବାପା ବାପା" କହି ଚିତ୍କାର କରୁଥାଏ । ରାଜା ରାଣୀର ଡରରେ ତାକୁ କୋଳକୁ ନେଉ ନ ଥାନ୍ତି । ଏ ଦୃଶ୍ୟରେ ଦର୍ଶକମାନେ ଉତ୍ତ୍ୟକ୍ତ ଓ ଉତ୍ତେଜିତ ହୋଇ ପଡ଼ିଲେ । ସ୍ତ୍ରୀ ଲୋକଙ୍କ ଆଖିରେ ଲୁହ । ଦର୍ଶକମାନଙ୍କ ମଧ୍ୟରେ ବସିଥିଲେ ସେଠାକାର ସବ୍ଇନ୍ସପେକ୍ଟର ଅଟର ଅଲ୍ଲୀ । ସେ ସମ୍ଭାଳି ନପାରି ଛୁଟିଗଲେ ପେଣ୍ଡାଲ ପାଖକୁ । ହାତରେ ରୁଲ୍ ବାଡ଼ି । କହିଲେ ହରାମ୍‌ଜାଦୀ, ବାଲ୍ଲକା ଉପର୍ ଇତ୍‌ନା ଜୁଲୁମ୍ ? ଶାଲୀ କୋ ଫାଡ଼୍ ଦୁଙ୍ଗା । ଏତିକ କହି ସୁରୁଚୀ-ବେଶୀ ଅଭି-ନେତାଙ୍କୁ ପିଟିବାକୁ ଯେମିତି ଚମକି ଯାଇଛନ୍ତି, ସ୍ୱରଆଡ଼େ ହଇଚଇ ପଡ଼ିଗଲା । ଦୁଇ ଚାରିଜଣ ତାଙ୍କୁ ମାଡ଼ି ବସି କହିଲେ "ମୁନସୀ ବାବୁ ଆପଣ ଏ କଣ କରୁ-ଛନ୍ତି ? ଏ ଯେ ଅଭିନୟ । ସତ ନୁହେଁ ।" ତଥାପି ଅଟର ଅଲ୍ଲୀ କହୁଥାନ୍ତି "ମୋତେ ଛାଡ଼ ମୁଁ ଆଜ ତାକୁ ସାବାଡ଼୍ କରି ଦେବ ।" ସ୍ୱରଆଡ଼େ ପାଟିତୁଣ୍ଡ ଆରମ୍ଭ ହୋଇଗଲା । ଦେଓ୍ୱାନ ସାହେବଙ୍କ ହସ୍ତକ୍ଷେପ ଫଳରେ ସେ ନିଜ ଅବସ୍ଥା ବୁଝିପାରିଲେ । ନଚେତ୍ କଣ ଯେ ସେଦିନ ହୋଇଥାନ୍ତା କେହି କହିପାରିବ ନାହିଁ । ପ୍ରକୃତରେ ସେ ଅଭିନୟ ଏତେ ଚିତ୍ତାକର୍ଷକ ହୋଇଥିଲା ଯେ ଲୋକେ ନିଜକୁ ମଧ୍ୟ ଭୁଲିଯାଇଥିଲେ ।

ତିନିଦିନ ମହଲରେ ଅଭିନୟ ହେଲା । ତାହା ଦେଖି ସୋନପୁରରେ ବୈଷ୍ଣବ ପାଣିଙ୍କ ଆଦର, ସମ୍ମାନ ଖୁବ୍ ବଢ଼ିଗଲା । ଏଣିକି ସ୍ୱରଆଡ଼ୁ ଅଭିନୟ କରିବାର ନିମନ୍ତ୍ରଣ ଆସିଲା ବୋଲି ଶୁଣିଲୁ । ବହୁ ଅର୍ଥ ମଧ୍ୟ ଉପାର୍ଜନ କରିଥିଲେ ।

ସେତେବେଳେ ଗାଡ଼ିକର ଜାଗାମନ ୪୦ କି ୫୦ ଟଙ୍କା ଥିଲା । ବର୍ତ୍ତମାନ ଯାହାର ମୂଲ୍ୟ ୧୦୦୦ । ୨୦୦୦ ଟଙ୍କା ସହିତ ସମାନ ହେବ ।

ବୈଷ୍ଣବ ପାଣିଙ୍କୁ ମଧ୍ୟ କଳାବିକାଶ କେନ୍ଦ୍ର ତରଫରୁ ଏକହଜାର ଟଙ୍କା ସାହାଯ୍ୟ ଦିଆଯାଇଥିଲା । ପରେ ଭାରତ ସରକାରଙ୍କର ସାହାଯ୍ୟ ଦେଢ଼଼ଶହ ଟଙ୍କା ଦୁଇ ତିନି ମାସ ପର୍ଯ୍ୟନ୍ତ ପାଇଥିଲେ । ତାପରେ ବୈଷ୍ଣବ ପାଣି ଇହଜଗତରୁ ବିଦାୟ ନେଲେ ।

ଯେଉଁ ଗଣ କବିଙ୍କର ରଚନା ହଜାର ହଜାର ଦର୍ଶକଙ୍କୁ ହସେଇ ଥିଲା, କାନ୍ଦେଇ ଥିଲା, ମନେଇଥିଲା, ଚକ୍ଷୁ ଫିଟେଇ ଥିଲା ସେ ଆଉ ରହିଲେନି । କିନ୍ତୁ ତାଙ୍କର ଲେଖାଗୁଡ଼ିକ ଆଜି ସବୁଠାରେ ଅଭିନୀତ ହେଉଛି । ପ୍ରତ୍ୟେକ ପୂରସ୍କାର ବିତରଣୀ ସଭାରେ, ଓଡ଼ିଶାର ସବୁ ସ୍ଥାନରେ ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ ଦେଖିବାକୁ ମିଳୁଛି । ପାଣି ନାହାନ୍ତି କିନ୍ତୁ ତାଙ୍କର ବାଣୀ ଅଛି ।

ପ୍ରତିବର୍ଷ ତାଙ୍କ ଜନ୍ମସ୍ଥାନ କୋଠପଦା, କୃତାଙ୍ଗ, ମାହାଙ୍ଗା, କଟକ ଏବଂ ଓଡ଼ିଶାର ବିଭିନ୍ନ ସ୍ଥାନରେ ଜନ୍ମ ଜୟନ୍ତୀ ପାଳନ କରାଯାଉଛି । ଏଥିରୁ ଜଣାଯାଉଛି ଯେ ବୈଷ୍ଣବ ପାଣି ଜନଜୀବନରେ କେତେ ବଡ଼ ସ୍ଥାନ ଅଧିକାର କରିଥିଲେ । ତାଙ୍କ ଲେଖାଗୁଡ଼ିକ ଚିର ଅମର ହୋଇ ରହିଛି । ଆକାଶବାଣୀ ଓ ଦୂରଦର୍ଶନରେ ତାଙ୍କ ଲିଖିତ ଗୀତାଭିନୟ ଗୁଡ଼ିକ ପ୍ରାୟ ଦେଖିବାକୁ ଓ ଶୁଣିବାକୁ ମିଳେ । ସେହିପରି ବରିଷ୍ଠ ଛଉନୃତ୍ୟ ବିଶାରଦ ବନବିହାରୀ ପଟ୍ଟନାୟକ ଏବଂ ବାର୍କିର ମାଧବ ମିଶ୍ରଙ୍କୁ କେନ୍ଦ୍ର ତରଫରୁ କିଛି ସାହାଯ୍ୟ ଦିଆଯାଇଥିଲା ।

ବଙ୍ଗପ୍ରଦେଶରେ ଭ୍ରମଣ କରୁଥିବା ବେଳେ (ସେତେବେଳେ ତାହା ଅବିଚ୍ଛେଦ୍ୟ ଥିଲା ।) ବହୁ ପ୍ରଖ୍ୟାତଯଶା ଔପନ୍ୟାସିକଙ୍କ ଉପନ୍ୟାସ ପଢ଼ିବାର ସୁବିଧା ଓ ସୁଯୋଗ ପାଇଥିଲି । ତେବେ ସମସ୍ତଙ୍କ ମଧ୍ୟରୁ ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଲେଖା ମୋ ଉପରେ ଗଭୀର ପ୍ରଭାବ ପକାଇ ଥିଲା । ଏ ପର୍ଯ୍ୟନ୍ତ ସେସବୁ ମୋ ହୃଦୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଶରତଚନ୍ଦ୍ର ଯେପରି ମୋର ଅତି ପ୍ରିୟ, ଅତି ଆପଣାର, ବହୁ ଦିନର ପରିଚିତ । ସମାଜର ପ୍ରତ୍ୟେକ ସ୍ତରର ଲୋକଙ୍କ ମନକୁ ଛୁଇଁଲା ପରି ସେ ତାଙ୍କର ଲେଖନୀ ଚାଳନା କରି ଯାଇଛନ୍ତି, ଯାହା ଅନବଦ୍ୟ, ଅପୂର୍ବ, ନିଜ ମହିମାରେ ମହିମାନ୍ୱିତ, ନିଜ ଗର୍ବରେ ଗୌରବାନ୍ୱିତ । ମୋ ମତରେ ମଣିଷ ପ୍ରତି ମଣିଷ ଏତେ ଦରଦୀ, ମରମୀ ହୋଇପାରେ

ତା ମୁଁ କଳ୍ପନା କରି ପାରି ନ ଥିଲି । ଶରତ ଚନ୍ଦ୍ରଙ୍କ ରଚନାବଳୀ ମୋତେ ଏତେ ଭଲ ଲାଗେ ଯେ ମୁଁ ଭାଷାରେ ତାକୁ ବର୍ଣ୍ଣନା କରିପାରିବି ନାହିଁ । ମୋ ଦୃଷ୍ଟିରେ ସେ ଅଦ୍ୱିତୀୟ, ଅନନ୍ୟ । ସେ ସମାଜର ଜନଜୀବନର ଧାରାକୁ ଯେପରି ତନ୍ନ ତନ୍ନ କରି ବିଶ୍ଳେଷଣ କରିଛନ୍ତି ତାର ପଟାନ୍ତର ନାହିଁ । ଆଜି ବି ତାହା ନୂତନ, ନବୀନ । ବିଶେଷ କରି ନାରୀ ଜାତି ପ୍ରତି ସେ ସବୁବେଳେ ଅତ୍ୟନ୍ତ ସଚେ-ତନଶୀଳ ଓ ସମ୍ବେଦନଶୀଳ ହୋଇ ଉଠିଛନ୍ତି । ନାରୀ ଯେ ଯେ କେବଳ ଭୋଗ୍ୟ ବସ୍ତୁ,ସେ ତାଙ୍କର କୌଣସି ବହିରେ ତା ଉଲ୍ଲେଖ କରି ନାହାନ୍ତି । ଭାରତୀୟ ନାରୀଙ୍କୁ ଜନନୀ, ଜାୟା, ତନୟା ଓ ବଧୂ ଭାବରେ ପ୍ରମାଣ କରିବାକୁ ଯାଇ ସେ ଏକ ସାମାଜିକ ବିପ୍ଳବ ସୃଷ୍ଟି କରି ଅଛନ୍ତି । ସେଇଥି ପାଇଁ ତାଙ୍କ ଜୀବନୀ "ଶ୍ରୀକାନ୍ତ"ରେ ରାଜଲକ୍ଷ୍ମୀ ଜଣେ ନର୍ତ୍ତକୀ ବୋଲି ବର୍ଣ୍ଣନା କରିଛନ୍ତି ସତ୍ୟ, କିନ୍ତୁ କେଉଁଠି ହେଲେ ସେ ବେଶ୍ୟା, ପତିତା କିମ୍ବା ବାରବନିତା ବୋଲି ଲେଖି ନାହାନ୍ତି । ସେ ଦାନଶୀଳା, ଦୟାବତୀ, ଏକାନ୍ତ ମମତାମୟୀ ମହିଳା ବୋଲି ବର୍ଣ୍ଣନା କରିଛନ୍ତି । ସେଇଥି ପାଇଁ ସେ ଶେଷ ଜୀବନରେ ତା ହାତରେ ନିଜକୁ ସମର୍ପଣ କରି ଦେଇଛନ୍ତି । ତାଙ୍କ ଲିଖିତ ରାମେର ସୁମତି, ଅରକ୍ଷଣୀୟା, ବଡ଼ ଦିଦି, ପରିଣୀତା, ମେଜ୍ ଦିଦି, ଚରିତ୍ରହୀନ, ଦେବଦାସ, ବିପ୍ରଦାସ, ଶ୍ରୀକାନ୍ତ ପ୍ରଭୃତି ଉପନ୍ୟାସମାନଙ୍କରେ ସେ ନାରୀ ସମାଜକୁ ଅପୂର୍ବ-ଶ୍ରୀରେ ମଣ୍ଡିତ କରିଛନ୍ତି । ତାଙ୍କ ଦୃଷ୍ଟିକୋଣରୁ ଭାରତୀୟ ନାରୀ ଜାତି ପ୍ରତି ଅତି ଦରଦୀ, ଅତି ସ୍ନେହପ୍ରବଣ ହୋଇ ଉଠିଛି । ନାରୀର ମର୍ଯ୍ୟାଦାବୋଧ ଓ ନାରୀର ସମ୍ମାନକୁ ସେ ଅତି ଉଚ୍ଚରେ ତୋଳି ଧରିଛନ୍ତି ।

ଭାରତର ପ୍ରାୟ ସମସ୍ତ ଭାଷାରେ ତାଙ୍କର ବହି ଅନୁଦିତ ହୋଇ ବହୁ ସଂସ୍କରଣ ନିଃଶେଷ ହୋଇଯାଇଛି । ଓଡ଼ିଆରେ ମଧ୍ୟ ତାଙ୍କ ଲିଖିତ ଅନେକ ଉପ-ନ୍ୟାସ ଅନୁବାଦ କରାଯାଇଛି । ଚଳଚ୍ଚିତ୍ରରେ ମଧ୍ୟ ଅନେକ ବହି ତାଙ୍କର ରୂପାୟିତ ହୋଇଛି । ତାଙ୍କ ଲିଖିତ "ଦେବଦାସ" ଉପନ୍ୟାସକୁ ଚିତ୍ରରୂପ ଦେଇ ପ୍ରମୋଥେଶ୍ ବଡ଼ୁଆ ଆଜି ସ୍ୱର୍ଗରେ ରହିଲେ ମଧ୍ୟ ଏ ପର୍ଯ୍ୟନ୍ତ କେହି ତାଙ୍କୁ ବିସ୍ମରଣ ହୋଇ ନାହାନ୍ତି ।

ଶରତ ଚନ୍ଦ୍ରଙ୍କୁ ଦୂରରୁ ଏବଂ ଅତି ନିକଟରୁ ଦେଖିବାର ସୌଭାଗ୍ୟ ମୋତେ ମିଳିଛି । ପଦ ବ୍ରଜରେ ଭାରତ ଭ୍ରମଣ କରିବା ବେଳେ କାଞ୍ଚନ ପଡ଼ାର ରେଲ୍‌ୱେ ଇନ୍‌ଷ୍ଟିଚ୍ୟୁଟ୍‌ରେ ତାଙ୍କ ସହିତ ସାକ୍ଷାତର ଅପୂର୍ବ ସୁଯୋଗ ମିଳିଗଲା । ସେଠାକାର ଏକ ସାହିତ୍ୟ ସଭାରେ ସେ ସଭାପତିତ୍ୱ କରିବାକୁ ଆସିଥିଲେ । ଆମେ ଓଡ଼ିଶାରୁ

ଆସିଛନ୍ତି ଏବଂ ପଦବ୍ରଜରେ ଭାରତ ଭ୍ରମଣ କରୁଛନ୍ତି ଜାଣି ସେ ଖୁବ୍ ଖୁସି ହୋଇ କହିଲେ "ତୁମେଯା ଆମାକେ ଦେଖ୍ତେ ଏସେଛୋ ନା ଆମାର କାଛ୍ଥେକେ ଆର୍ଓକଛୁ ଚାଓ ?" ମୁଁ କହିଲି "ଆମରା ଦେବଦାସେର୍ ଲେଖକ୍ ଔପନ୍ୟାସିକ ଶରତ ଚଟ୍ଟୋପାଧ୍ୟାୟଙ୍କୁ କେ ଦେଖ୍ତେ ଆସିନି । ଆମାରା ଏସେଛି "ପଥେର୍ ଦାବୀ"ର ଲେଖକ୍ ବିପ୍ଲବୀ ସବ୍ୟସାଚୀ କେ ଦର୍ଶନ୍ କରତେ । ଉନାର ମୁଖ୍ଥେକେ କଛୁ ଶୁନ୍ତେ ।" ସିଏ ଭଲ ଖିଲ୍ ଖିଲ୍ ହୋଇ ହସି ଉଠି ମୋ ପିଠି ଆଉଁସେଇ କହିଲେ "ଖୁବ୍ କଥା ବଲ୍ତେ ଜାନୋ ତୋ ତୁମେରା ଓଡ଼ିଆ । ଆମାର ଲେଖା ବହି ପଢ଼ କି ?" "ପ୍ରାୟ ସବ୍ ପଢ଼େଛି", ମୁଁ କହିଲି । ଆନନ୍ଦିତ ହେଲେ ଏଇଆ ଭାବି ଯେ ତାଙ୍କ ଲେଖାଗୁଡ଼ିକୁ କେବଳ ବଙ୍ଗାଳି ନୁହଁନ୍ତି ଅନ୍ୟ ଭାଷାଭାଷୀ ମାନେ ମଧ୍ୟ ପଢ଼ନ୍ତି ଏବଂ ତାର ବିଶ୍ଳେଷଣ କରନ୍ତି ।

ଆମ୍ବଗୋଲା ମଣିଓଡ଼ି ଏ । ବୟସ ହୋଇଲାଣି, ଶୁଭ୍ର ଫେଡ଼ ଧୋତି, ଶୁଭ୍ର ପଞ୍ଜାବୀ ପରିଧେୟ । ମୁଣ୍ଡର ବାଳଗୁଡ଼ିକ ଅବିନ୍ୟସ୍ତ । କଳାଧଳା ମିଶା ଫୁରଫୁର ହୋଇ ଉଡ଼ୁଥାଏ । ତେଲ କି ପାଣିଆ ବାଜେନି ବୋଧହୁଏ । ଚଟି ଚପଲ ହଳେ ପାଦରେ । ପୁରୁଣା ଧଳାଫ୍ରେମର ଚଷମା ଆଖିରେ । ମୁଁ କହିଲି "ଆମରା କଂଗ୍ରେସ କର୍ମୀ ବହୁବାର ଜେଲ୍ ଗେଛି । ବେତାଘାତ୍ତ ଖେଏଛି । ଅନେକ ନିର୍ଯ୍ୟାତନୋ ସହ୍ୟ କରେଛି । ଅଜ୍ଓ ଚଲ୍ଛୋ କିନ୍ତୁ ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ୍ ବନ୍ଦ୍ କରେଦିଲେନ୍ ।" ସେଇ ଜନ୍ୟ ଆମରା ଭାରତ୍ତବର୍ଷ କେ ଏକଟୁ ଦେଖ୍ତେ ବେରିଏଛି ପାଏ ହେଣ୍ଟେ । ଆମାଦେର୍ ପରମ ସୌଭାଗ୍ୟ ଯେ ଆକସ୍ମିକ ଭାବେ ଆପ୍ନାର୍ ଚରନ୍ ଦର୍ଶନ କରେ ଧନ୍ୟ ହଲମ୍ ।"

ଅତି ସ୍ନେହରେ ଆମକୁ କୁଣ୍ଢାଇ ପକାଇ କହିଲେ "ତୁମ୍ରା ଦେଶ ପ୍ରେମୀ, ସ୍ୱଦେଶଭକ୍ତ, ଜେନେ ଆମି ଅତ୍ୟନ୍ତ ଖୁସି ହଏଛି । ଦେଶ୍ କେ ଭାଲୋବାସୋ । ମାତୃଭୂମି କେ ପ୍ରେମ୍ କରୋ । ଏଇ ଦେଶ୍ କେ ଭାଲୋ ବେସେ କତ ଯୁବକ ଯେ ରକ୍ତ ଦାନ କର୍ଲେ ତାର ହିସାବ କି କେଉ ରେଖେଛେ ? ଖୁଦୀରାମ୍, ପ୍ରଫୁଲ୍ଲ ଚାକି, ଯତୀନ୍ ଦାସ, କାନ୍ହାଇଲାଲ୍, ବାଘା ଯତୀନ୍, ବିଣା ଦାସ୍, ବାରିନ୍ ଘୋଷ, ଚନ୍ଦ୍ରଶେଖର ଆଜାଦ୍, ଭଗତ୍ ସିଂ, ରାଜ୍‌ଗୁରୁ, ସୁକଦେବ, ବଟୁକେଶ୍ୱର ଦତ୍ତ, ସୂର୍ଯ୍ୟ ସେନ୍ (ମାଷ୍ଟରଦା) ପ୍ରଭୃତି । ପଞ୍ଜାବରେ ଦେଶେର୍ ମାନୁଷ ଉପଲବ୍ଧି କରେଛିଲ ଯେ ଅରବିନ୍ଦହିଁ ଏ ବିପ୍ଲବେର୍ ଏ ଆନ୍ଦୋଳ୍ନେର୍ ଆଦିଗୁରୁ । ପଥପ୍ରଦର୍ଶକ । ଅଜ୍ ପଣ୍ଡିଚେରୀ ଅଧ୍ୟାତ୍ମିକବାଦ୍ ପ୍ରଚାର କରଛେ ଶୁନଛି । ଆମି ଆଶୀର୍ବାଦ କର୍ଛି ତୋମାଦେର୍ ଏ ଯାତ୍ରା ସଫଲ୍ ହୋକ୍ ।"

ଆମର ଧାରଣା ଥିଲା ଯେ ଶରତ ଚନ୍ଦ୍ର କେବଳ ମନୁଷ୍ୟ ଚରିତ୍ର ଅଧ୍ୟୟନ କରିଛନ୍ତି । କିନ୍ତୁ ତାହା ନୁହେଁ । ସେ ଜଣେ ମହାନ୍ ବିପ୍ଳବୀ ତାହା ଉପଲବ୍ଧି କଲୁ । ତା ନ ହୋଇଥିଲେ ପଥେର୍ ଦାବୀ ପ୍ରକାଶ ପାଇ ପାଇ ତାହା ଇଂରେଜ ସରକାରଙ୍କ ଦ୍ୱାରା (Proscribe) ବାଜ୍ୟାପ୍ତ ହୋଇ ନ ଥାନ୍ତା ।

ପଦସ୍ପର୍ଶ କରି ବିଦାୟ ନେଇଥିଲୁ । ମୁକ୍ତ ପ୍ରାଣରେ ସେ ଆଶୀର୍ବାଦ କରିଥିଲେ ।

ଓଡ଼ିଆ ହୋଇ ଜଣେ ବଙ୍ଗାଳି ଔପନ୍ୟାସିକ ଶରତ ଚନ୍ଦ୍ରଙ୍କୁ ଏତେ ପ୍ରଶଂସା କରିଛି ବୋଲି କେହି ଯେପରି ନଭାବନ୍ତୁ ଯେ ମୁଁ ଓଡ଼ିଆ ଲେଖକମାନଙ୍କୁ ଅଶ୍ରଦ୍ଧା କରୁଛି ବା ନ୍ୟୂନ ଦୃଷ୍ଟିରେ ଦେଖୁଛି । ମୁଁ ଯାହା ଉପଲବ୍ଧି କରିଛି, ଯାହା ଅନୁଭବରେ ଆସିଛି ତାହା ମୋ ଜୀବନୀରେ ଲିପିବଦ୍ଧ କରିଛି ମାତ୍ର । ଓଡ଼ିଶାର ପ୍ରତ୍ୟେକ କବି, ଔପନ୍ୟାସିକ, ନାଟ୍ୟକାର, ଗୀତକାର, ପ୍ରାବନ୍ଧିକ, ସାହିତ୍ୟିକ, ସମସ୍ତେ ମୋର ଅତି ପ୍ରିୟ, ଅତି ଆପଣାର । ସେମାନେ ମୋର ପ୍ରଣମ୍ୟ, ନମସ୍ୟ ପୁଣି ସେମାନେ ମୋର ସ୍ନେହଶ୍ରଦ୍ଧାର ପାତ୍ର । ତେଣୁ ଶରତ ଚନ୍ଦ୍ରଙ୍କୁ ମୋର୍ ଗୁରୁ କରି ନାରୀ ଜାତିକୁ ମୁଁ କେବେ ହେଲେ ଅମର୍ଯ୍ୟାଦା କରିନ କିମ୍ବା ହୀନ ଦୃଷ୍ଟିରେ ଦେଖିନାହିଁ । ନାରୀର ସମ୍ମାନ, ନାରୀର ଗୌରବ ମୋର ସମ୍ବଳ, ସହାୟ ସବୁ-କିଛି । ରାଜନୀତି କ୍ଷେତ୍ରରେ କିମ୍ବା ସାମାଜିକ କ୍ଷେତ୍ରରେ କି ପାରିବାରିକ କ୍ଷେତ୍ରରେ ଯାହା ସମ୍ପର୍କରେ ଆସିଛି ସମସ୍ତେ ମୋ ପ୍ରତି ଦରଦୀ ଓ ସମ୍ବେଦନଶୀଳ ହୋଇଛନ୍ତି ।

ମୋର ପୂଜ୍ୟା ମାଉସୀ ବସନ୍ତ ଦେବୀ (ସ୍ୱର୍ଗୀୟ ଡ: କୁଳମଣି ମିଶ୍ରଙ୍କ ସ୍ତ୍ରୀ) ମୋତେ ଓ ମୋର ସ୍ତ୍ରୀକୁ ପୁଅ ଓ ପୁତ୍ରବଧୂ ରୂପେ ଅଧିକ ସ୍ନେହ ଓ ଆଦର କରନ୍ତି । ତାଙ୍କ ମମତାର ତୁଳନା ନାହିଁ । ଆର ଜନ୍ମରେ ହୁଏତ ଜନ୍ମିତ ମା ଥିଲେ, ଏ ଜନ୍ମରେ ମାଉସୀ । ଜନ୍ମକଲା ମା ଠୁଁ ବଳି ।

ସ୍ୱର୍ଗୀୟା ପୂଜ୍ୟା ରମା ଦେବୀ, ମାଳତୀ ଦେବୀ (ନୁମା), ସରଳା ଦେବୀ, ଶୋଭା ମାଉସୀ (ଗୀତୁବୋଉ), ମୀର ଅପା (ନିର୍ମଳା ଦେବୀ), ସ୍ୱର୍ଗୀୟା ସୁନାମଣି ଦେବୀ ପ୍ରଭୃତିଙ୍କ ଚରଣରେ ନିଜର ପ୍ରଣତି ଜଣାଉଛି । ସେହିପରି ଭଗ୍ନୀ ସ୍ଥାନୀୟା ଚୁନୀ ଅପା, (ଅନ୍ନପୂର୍ଣ୍ଣା ଦେବୀ), ମଙ୍ଗଳା ଦିଦି (ଆଜି ସ୍ୱର୍ଗରେ), ଗୋଦାବରୀ ଅପା, ସୁମିତ୍ରା ଭାଉଜ,ବେଲ ଅପା, ଆହୁରି ଅନେକଙ୍କୁ ମୁଁ ଭକ୍ତି କରୁଛି । ଶ୍ରେଷ୍ଠ ଭଉଣୀ ଜ୍ୟୋତ୍ସ୍ନା ମିଶ୍ର, କରୁଣା ମିଶ୍ର, ସୁଷମା ଦେବୀ, ଶୈଳ (ପଦ୍ମଚରଣ ସାମନ୍ତ ସିଂହାରଙ୍କ

ସ୍ତ୍ରୀ), ଶୈଳ (ରବି ମିଶ୍ରଙ୍କ ସ୍ତ୍ରୀ), ବୁବୁ, ଚନ୍ଦ୍ର, ମାଳ, କିରଣ, ଉମା, ଗୀତୁ (ଆଜି ସ୍ୱର୍ଗରେ), ବୈଦେହୀ, ସାବିତ୍ରୀ, ଇନ୍ଦିରା ଦେବୀ, ମାନ୍ଦାର, ଫନି, ସୁଧା, ଶାନ୍ତି, ଶାନ୍ତିସୁଧା (ଆଜି ସ୍ୱର୍ଗରେ) ଙ୍କର, ସ୍ନେହ ପ୍ରଭୃତିଙ୍କ ସୁହାଗ, ସମ୍ଭ୍ରମ ମମତା ମୁଁ ପାସୋରି ପାରିନି । ସମସ୍ତଙ୍କର ମୁଁ ମୂଲ୍ୟାୟନ କରି ପାରିନି । ମୋ ମନ ତରାଜୁରେ ଓଜନ କଲାବେଳେ କେହି ଉପରକୁ ଉଠି ନାହିଁ କି ତଳକୁ ଖସି ନାହିଁ । ନିଜନିଜ ଗୁଣରେ ପ୍ରତ୍ୟେକ ମସ୍ୱସ୍ୱୀ ଏବଂ ପ୍ରତ୍ୟେକ ସମ୍ମାନିତା । ଏମାନଙ୍କ ମୋର ପିଲ୍ଲ ଦିନର ପାଳସ୍ମୃତି ଶ୍ରୀ ସ୍ମୃତିକ ଅପା ମୋ ମନ ଆକାଶରେ ଏକ ଧ୍ରୁବତାରା ହୋଇ ରହିଛି ।

ଏତେ ସତ୍ତ୍ୱେ ମୁଁ ୧୯୩୮ ମସିହାରେ ବରି ଗଳି ବାଟରେ କୋଡ ପୁରର ଆରପଟେ ବ୍ରହ୍ମଣୀନଦୀ କୂଳରେ ଗଡ଼ଜଳିଆ ଆମ୍ବତୋଟା ଫାଙ୍କରେ ଶୋଭତାଳ ହାତରେ ଯେଉଁ ପଲ୍ଲୀ ବାଳାଟିକୁ ଦେଖିଥିଲି, ଦୀର୍ଘ ୪୭ ବର୍ଷ ବିତ ଯାଇଥିଲେ ମଧ୍ୟ, ମୋର ପ୍ରୌଢ଼ତ୍ୱ ଟପି ଯାଇଥିଲେ ମଧ୍ୟ ସେହି ୧୭ । ୧୭ ବର୍ଷ ଝିଅଟିର ଲାବଣ୍ୟ, ତାର ଅପୂର୍ବ ରୂପରାଶିକୁ ଏ ପର୍ଯ୍ୟନ୍ତ ପାଶୋରି ପାରିନି । ତାହା ମୋ ମନରେ ଅମ୍ଳାନ ସ୍ମୃତି ହୋଇ ରହିଛି । ମୋ ଆଖି ଆଗରେ ସେ ସେମିତି ଷୋଡ଼ଶୀ କନ୍ୟା ଭଳି ଏବେବି ଠିଆ ହୋଇଛି ।

୧୯୭୪ ମସିହା ଜାନୁଆରୀରେ କଳାବିକାଶ କେନ୍ଦ୍ର ତରଫରୁ ଗୋଟିଏ ସାସ୍କୃତିକ ଦଳ ଦିଲ୍ଲୀ ଗଲେ, ୨୬ ତାରିଖ ସାଧାରଣ ତନ୍ତ୍ର ଦିବସରେ ଯୋଗ ଦେବା ପାଇଁ । ଦଳର ନେତୃତ୍ୱ ନେବାର ଭାର ମୋ ଉପରେ ପଡ଼ିଲା । ଝିଅଗୁଡ଼ିଏ ମଧ୍ୟ ଯାଉଥାନ୍ତି । ସେମାନଙ୍କ ଦାୟିତ୍ୱ ନେଲେ ମୋ ସ୍ତ୍ରୀ ଶରତ୍ କୁମାରୀ । ଆମ ଦଳ ବିଶେଷ କୃତିତ୍ୱ ଅର୍ଜ୍ଜନ କଲା । ତତ୍କାଳୀନ ରାଷ୍ଟ୍ରପତି ଗିରିଧାକୃଷ୍ଣନ୍‌ଙ୍କ ଠାରୁ ଆଶୀର୍ବାଦ, ପ୍ରତିରକ୍ଷା ମନ୍ତ୍ରୀ ଚୌହାନ୍‌ଙ୍କ ଠାରୁ ଶୁଭେଚ୍ଛା, ଦିଲ୍ଲୀ ନାଗରିକ ସମିତି ଠାରୁ ପ୍ରଶଂସା ଏବଂ ଦିଲ୍ଲୀ ଆନ୍ତର୍ଜାତିକ ସାସ୍କୃତିକ ସଂଘ ପକ୍ଷରୁ ଘନ ଘନ କରତାଳି ଓ ପ୍ରେରଣା, ଉତ୍କଳ ସମାଜ ଠାରୁ ଅକୁଣ୍ଠିତ ସ୍ନେହ, ଶ୍ରଦ୍ଧା ଲଭିକରି ବିଜୟ ଗର୍ବରେ ଫେରିଲୁ । ଦିଲ୍ଲୀ ଯାତ୍ରାର ଅନୁଭୂତି ଲେଖି ବସିଲେ ପ୍ରାଣରେ ଅପୂର୍ବ ପୁଲକ ଜାଗେ ।

୧୯୭୪ ଜାନୁଆରୀ ୧୮ ତାରିଖ ରାତି, ପୁରୀ ଏକ୍ସପ୍ରେସରେ ଆମେ ବାହାରିଲୁ । ତହିଁ ଆର ଦିନ ସକାଳେ ହାଓଡ଼ାରେ ପହଞ୍ଚିଲୁ । ସେହିଦିନ ରାତିରେ ଦିଲ୍ଲୀ ମେଲ୍‌ରେ ଦିଲ୍ଲୀ ଅଭିମୁଖେ ଯାତ୍ରାକଲୁ । ରାତାରାତି ବଙ୍ଗ ବିହାର ଅନେକ ସ୍ଥାନ ପାରି ହୋଇଗଲୁ । ପାଟନାରେ ପହଞ୍ଚିଲୁ ଦିନ ୧୧ଟାରେ । ଏତିକି ଶସ୍ୟ

ଶ୍ୟାମଳା ଭୂମି ଦୃଷ୍ଟିଗୋଚର ହେଲା । ଏହାର ପରେ ଉତ୍ତର ପ୍ରଦେଶ । ରାସ୍ତାର ଦୁଇପଟେ ଘନ ସବୁଜ ମଟର, ସୋରିଷ, ଗହମ, ବାଜରା କ୍ଷେତ ଲମ୍ବି ଯାଇଛି ଦୂରକୁ ଦୂରକୁ । ମଝିରେ ମଝିରେ ଛୋଟ ଛୋଟ ଗ୍ରାମମାନ ପଡ଼ୁଥାଏ । ମନରେ ଅପୂର୍ବ ପୁଲକ । ବନାରସ୍ ପାଖେଇ ଆସିବାରୁ କାଶୀ ପିଠାପୀଠ ଓ କାଶୀ ବରକୋଳି ଦୃଷ୍ଟିଗୋଚର ହେଲା । ହସ ଖୁସିରେ ମଜା ଗପକରି, ତାସ୍ ଖେଳି ଚାଲିଥାଉ । ଜାନୁଆରୀ ୧୯ ତାରିଖରେ ଦିଲ୍ଲୀ ଷ୍ଟେସନ୍‌ରେ ପହଞ୍ଚିଲୁ । ଦେଶରକ୍ଷା ବିଭାଗ ଦ୍ୱାରା ସମସ୍ତଙ୍କ ଆୟୋଜନ କରାଯାଇଥାଏ । ତାଲକୋଟ୍ରା ଗାର୍ଡ଼େନ୍‌ରେ ଆମର ଶିବିର ପଡ଼ିଥାଏ । ବିଭିନ୍ନ ପ୍ରଦେଶରୁ ସ୍କାଉଟ ଦଳ ଆସିଥାନ୍ତି । ଆମ ଦଳରେ ଛୋଟ ଛୋଟ ଝିଅପିଲାଙ୍କ ଥାନ୍ତି । ରହିବାର, ଖାଇବାର ଅତି ଚମତ୍କାର ବ୍ୟବସ୍ଥା । ଦିଲ୍ଲୀର ଦର୍ଶନୀୟ ସ୍ଥାନମାନ ବୁଲିବାର ସମସ୍ତ ବ୍ୟବସ୍ଥା ହୋଇଥାଏ । ପ୍ରତିଦିନ National Stadiumରେ ରିହର୍‌ସାଲ ହୁଏ ।

ଭୀଷଣ ଶୀତ ସତ୍ତ୍ୱେ ଆମ ପିଲାମାନେ ଯେଉଁ ଶୃଙ୍ଖଳା ଓ ସମୟାନୁବର୍ତ୍ତିତା ଦେଖାଇଛନ୍ତି, ତାହା ସମସ୍ତଙ୍କୁ ମୁଗ୍ଧ ଓ ଚମତ୍କୃତ କରିଥିଲା ।

ସମୟେ ସମୟେ ଭାବେ ଟଙ୍କା ପାଇଁ ଶସ୍ତା କ୍ୟାରିଅର୍ ଏଇ କ'ଣ ସବୁଠୁଁ ବଡ଼ ? ନିଜ ତ୍ୟାଗ ଓ ସାଧନାର କ'ଣ କୌଣସି ମୂଲ୍ୟ ନାହିଁ ? ମନେପଡ଼ିଲା ପୁଣି ପୁରୁଣା କଥା ! ଭାରତ ଭ୍ରମଣରୁ ମୁଁ ଯେତେବେଳେ ଫେରିଲି, ସେତେବେଳେ ମୋର ସ୍ୱାସ୍ଥ୍ୟ ଅତି ସୁନ୍ଦର ଥିଲା । ମୁଁ ସତେଜ ଥିଲି । ସୁଖୀଥିଲି । ଯିଏ ଦେଖୁଥିଲା ସିଏ ମୁଗ୍ଧ ହୋଇଯାଉଥିଲା । କୈଶୋର ଯାଇ ତାରୁଣ୍ୟ ଆସିଥାଏ । ସେତେବେଳେ ମୋର ଜଣେ ସହକର୍ମୀ, ଏହି କଟକ ସହରରେ ତାଙ୍କ ଘର । ୧୯୩୦ରୁ ୧୯୩୩ ପର୍ଯ୍ୟନ୍ତ ଏକା ସାଙ୍ଗରେ ଆନ୍ଦୋଳନ କରିଥିଲୁ । ଜେଲ୍ ଯାଇଥିଲୁ । ସେ ମୋତେ ମୋର ଭ୍ରମଣ ପରେ ତାଙ୍କ ଘରକୁ ଡାକିନେଲେ । ତାଙ୍କ ଘରେ ମା' ଭଉଣୀ ମୋତେ ଅତି ଆନନ୍ଦରେ ଗ୍ରହଣ କଲେ । ଯତ୍ନରେ ଖୁଆଇଲେ । ନିଜ ପରିବାରର ଜଣେ ବୋଲି ମନେ କଲେ । କଟକରେ ଥିବା ଯାଏଁ ମଝିରେ ମଝିରେ ତାଙ୍କ ଘରକୁ ଯାଏ । ଏହି ଯିବାଟି ମୋର କାଳହେଲା । କେତେବେଳେ ଭଉଣୀଟି ମୋତେ ଭଲପାଇ ବସିଲା, ତା ମୁଁ ଜାଣେ ନା । ତେବେ ମୁଁ ଲକ୍ଷ୍ୟ କରେ ସେ ମୋତେ ଦେଖିଲେ ଆଗେ ଯେପରି ମିଶୁଥିଲା ତାଠୁଁ ବେଶୀ ମିଶୁଛି । ଯେପରି ଦୂରେଇ ହେଉଥିଲା ସେପରି ଦୂରେଇ ରହୁନି । ଯେପରି ମୋ ପାଖରେ ସହଜ, ସରଳ ହେବାପାଇଁ ଯାଇ ଧରାପଡ଼ିଯାଉଛି । ଜୀବନରେ ଅନେକଙ୍କୁ ମୁଁ ଭଲପାଇଛି । ଶ୍ରଦ୍ଧା କରିଛି । ତା ପ୍ରତିବଦଳରେ ଅନେକଙ୍କଠୁଁ ଅନେକ କିଛି

ପ୍ରତିଦାନ ପାଉଛୁ । କିନ୍ତୁ ଭଲ ପାଇବା ଗୋଟିଏ କଥା ଏବଂ ଯୁବତୀ କୁମାରୀ ଝିଅକୁ ପ୍ରେମ କରିବା ଆଉ ଗୋଟିଏ କଥା । ଆଜି ମୁଁ ବି କହୁଛି, ଏହି ପ୍ରେମ ପଥରେ ମୁଁ କୌଣସି ଦିନ ପଥିକ ହୋଇ ପାରିଲିନି । ବୋକା ଖାତାରେ ବରାବର ମୋ ନା ରହିଗଲା । ମୋର ସେ ବନ୍ଧୁଙ୍କର ଚଳାଚଳ ଖୁବ୍ ଭଲ । ସମ୍ଭ୍ରାନ୍ତ ବଂଶର ପରିବାର । ମୁଁ ଆଜି ଏଠାରେ ତାଙ୍କ ନାମ ପ୍ରକାଶ କରିବାକୁ କୁଣ୍ଠାବୋଧ କରୁଛି । ମୋ ଠାରୁ ସମାଜରେ ତାଙ୍କ ସ୍ଥାନ ବେଶି ଉଚ୍ଚରେ । ବହୁ ଲୋକଙ୍କ ଗାଡ଼ି ଆସି ତାଙ୍କ ଦୁଆର ମୁହଁରେ ଲଗେ । ପ୍ରାୟ ଦୁଇଦିନ ମଧ୍ୟରେ ତାଠାରୁ ସୁନ୍ଦର ଓ ସ୍ୱଚ୍ଛ ଅକ୍ଷରରେ ଚିଠି ଆସେ । କିନ୍ତୁ କ'ଣ ଉତ୍ତର ମୁଁ ଦେବି ? ମୋତେ ପ୍ରେମ ନିବେଦନ କରିଆସେ ନା । ମୋ ଜୀବନ କଟିଛି ଜେଲ୍‌ରେ, ବଣ ପାହାଡ଼ରେ, ପଲ୍ଲୀପ୍ରାନ୍ତରରେ । ତା ଛଡ଼ା ମୁଁ ପ୍ରେମ କରିବାରେ ମଧ୍ୟ ଅଭ୍ୟସ୍ତ ନୁହେଁ । ନିଜକୁ ନିଜେ ମଧ୍ୟ ଧିକ୍‌କାର କଲି । "ଦୁନିଆରେ ସମସ୍ତେ ଝିଅମାନଙ୍କୁ ପ୍ରେମ କରୁଛନ୍ତି, ଭଲ ପାଉଛନ୍ତି, ତୁ ଏଡ଼େ ଅପଦାର୍ଥ" ? କ'ଣ କରିବି ? ପ୍ରମାଦ ଗଣିଲି । ବନ୍ଧୁଙ୍କ ଘରକୁ ଯିବା ବନ୍ଦ୍ କରିଦେଲି । କିନ୍ତୁ ସେଠାରୁ ଚିଠି ଆସିବା ବନ୍ଦ୍ ହେଲାନି । ଭୟହେଲା ଯଦି କିଏ ଦେଖେ, ବା କାହା ହାତରେ ପଡ଼ିଯାଏ, ତେବେ ମୋ ଚରିତ୍ରବନ୍ତ ଓ ସାଧୁତା ସବୁ ଯିବ । ତଥାପି ସେ ପରିବାରର ମମତା ମୋତେ ଆକର୍ଷଣ କରି ରଖିଥିଲା । ସେମାନଙ୍କର ସ୍ନେହ ଶ୍ରଦ୍ଧା ଓ ସେହି ଝିଅଟିର ଅନୁରାଗ ନିକଟରେ ମୁଁ ପରାସ୍ତ ହୋଇଗଲି । ତାଙ୍କ ଘରକୁ ପୁଣି ଯିବା ଆସିବା କଲି । ନିଜର ସମସ୍ତ ଭଲ ପାଇବା, ପ୍ରେମ ଓ ହସ ଖୁସି ସବୁ ତା ନିକଟରେ ଅଜାଡ଼ି ଦେଲି । ଦୁହେଁ ଦୁହିଁଙ୍କୁ ଗୁଡ଼ିଏ ଦଣ୍ଡେ ରହିପାରିବୁ ନାହିଁ, ଏହି ଗଭୀର ସତ୍ୟକୁ ଆମେ ବରାବର ଅନୁଭବ କଲୁ । କିନ୍ତୁ ତାହା ବେଶୀ ସମୟ ରହିଲାନି । କିନ୍ତୁ ତାର ମା' ଭାଇ ମୋତେ ସ୍ନେହ କରୁଥିଲେ ମଧ୍ୟ ଯାହାର କୋଠାଅଛି, ଗାଡ଼ିଅଛି, ଅଚଳାଚଳ ସମ୍ପତ୍ତି ଅଛି, ତା'ର ହାତରେ ତାକୁ ଟେକି ଦେଲେ । ଝିଅଟି ତାର ମନର କଥା ସେମାନଙ୍କ ନିକଟରେ ପ୍ରକାଶ କରିଥିଲା । କିନ୍ତୁ ସବୁ ବ୍ୟର୍ଥ ଓ ଅକାରଣ ହେଲା । ଆଖିର ଲୁହ ଆଖିରେ ମାରି ହୃଦୟକୁ ଟାଣ କରି ସବୁ ଦେଖିଲି, ଶୁଣିଲି ଓ ସହିଲି । ଜୀବନ ଏକାଙ୍କୀର ନିର୍ମମ ରୋମାଞ୍ଚ (Romance) ସେହି ଗୋଟିଏ ଦୃଶ୍ୟରେ ଶେଷ ହେଲା । କମେଡ଼ି ହେଲା ଟ୍ରାଜେଡ଼ି । ଆଉ ତାର ଯବନିକା ଉଠିନି । ଆଦି ଯେଉଁଠି ଅନ୍ତ ସେଇଠି ।

ପଛ କଥା ମନେ ପଡ଼ିଲା — ୧୯୫୫ ଜାନୁଆରୀରେ କଲିକତାରେ ବିଖ୍ୟାତ C. L. T. (Children's Little Theater)ରେ ଅଂଶ ଗ୍ରହଣ କରିବାପାଇଁ କଳାବିକାଶ କେନ୍ଦ୍ରର ପିଲମାନେ ଗଲେ । ତାଙ୍କ ସହିତ ଯାଇଥିଲି । ପିଲାମାନେ

ନିଜର ଅପୂର୍ବ ନୃତ୍ୟ କୌଶଳ ଦେଖାଇ ପୃଥିବୀର ବିଖ୍ୟାତ ନୃତ୍ୟବିଦ୍ ଉଦୟ ଶଙ୍କର ତଥା ଅମଳା ଶଙ୍କରଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେଲେ । ସ୍କୁନିଭରସିଟି ଇନଷ୍ଟି-ଚ୍ୟୁଟ୍‌ରେ ପ୍ରବାସୀ ଓଡ଼ିଆମାନଙ୍କ ଦ୍ୱାରା ଏକ ଶିଳ୍ପୀ ସମ୍ବର୍ଦ୍ଧନା ଉତ୍ସବରେ ମୋତେ ହାସ୍ୟରସ (Cari Cature) ପରିବେଷଣ କରିବାକୁ ପଡ଼ିଲା । ସଭାପତି ଥା'ନ୍ତି ନାଟ୍ୟସାରଥୀ ଅର୍ଣ୍ଣିମା କୁମାର ଘୋଷ । ମୋର ଅଭିନୟ ଦେଖି ଅତ୍ୟନ୍ତ ଖୁସି ହୋଇ ସେ ମୋତେ "କୌତୁକ ସମ୍ରାଟ୍" ଉପାଧି ଦେଲେ, ଉପସ୍ଥିତ ଜନତା, ଆମ ଓଡ଼ିଆ ଓ ବଙ୍ଗାଳୀ ଭାଇ ଭଉଣୀମାନେ ଅତି ଶ୍ରଦ୍ଧାର ସହ ତାକୁ ସମର୍ଥନ କଲେ । ପୁଷ୍ପମାଳାରେ ମୋ ସର୍ବାଙ୍ଗ ମଣ୍ଡି ଦେଲେ । ଏ ଗୌରବ, ଏ ସମ୍ମାନ, ଏ ସ୍ମୃତି ମୁଁ ପାଶୋରି ପାରିବି ନାହିଁ ।

ମୁଁ ପୁଣି ୧୯୬୪ ମସିହାକୁ ଫେରି ଆସୁଛି । ସେହି ବର୍ଷର ମାର୍ଚ୍ଚ ୨୯ ତାରିଖରେ ମୁଁ ଘରୁ କଟକ ଫେରିଲି । ଷ୍ଟେସନ୍‌ରୁ ମୁଁ ଓ ମୋର ଜଣେ ବନ୍ଧୁ ବସ୍‌ରୁ ଓହ୍ଲାଇ ସାଇକେଲ୍‌ରେ ଆସୁଥିଲୁ । ମଙ୍ଗଳାବାଗ୍ ନିକଟରେ ଗୋଟିଏ ଜିପ୍ ରହିଥିଲା । ସେପଟୁ ଗୋଟିଏ ବଳଦ ଗାଡ଼ି ଆସି ମୋତେ ଧକ୍‌କା ଦେଇ ଚାଲିଗଲା । ମୁଁ ଗୋଟିଏ ସିମେଣ୍ଟ୍ ବୋର୍ଡ଼ଏ ଗାଡ଼ି ତଳେ ପଡ଼ିଗଲି । ଅଳ୍ପକେ ମୁଁ ବଞ୍ଚିଗଲି । ଗାଡ଼ି ମୋ ବାମ ଗୋଡ଼ର ଆଙ୍ଗୁଠି ଉପରେ ଚଢ଼ି ଚାଲିଗଲା । ଲୋକେ ସେ ଗାଡ଼ିବାଲାକୁ ଧରି ମାରି ଧରି କଲେ । ମୁଁ ଏପରି କରିବାକୁ ମନାକଲି । ୮ ଦିନ ପର୍ଯ୍ୟନ୍ତ ମୁଁ ମେଡ଼ିକାଲ୍‌ରେ ରହି କଳାବିକାଶ କେନ୍ଦ୍ର ଫେରି ଆସିଲି । ସେଠି ପ୍ରାୟ ମାସେ ପର୍ଯ୍ୟନ୍ତ ଶଯ୍ୟାଶାୟୀ ହୋଇ ରହିଲି । ମହେଶ୍ୱର ଶରତ ଓ ବାବାଜୀ ମୋତେ ବହୁତ ସେବା କରିଛନ୍ତି । ଶିବବାବୁ କମ୍ପାଉଣ୍ଡର ମୋର ପରମ ବନ୍ଧୁ ଭଳି ଦୁଇବେଳା ଆସି ଡ୍ରେସିଂ କରି ଯାଆନ୍ତି । ତାଙ୍କୁ ଭୁଲିବାର ନୁହେଁ । ତାଙ୍କ ଋଣ ଶୁଝିବାର ନୁହେଁ ।

ସମୟ ଏମିତି ଆସିଛି, ହାତରେ ପଇସାଟିଏ ନାହିଁ, ଅଭାବ ଅନଟନ ଅକ୍ଟୋପାସ୍ ପରି ଘେରିଛି ଚାରିଆଡ଼ୁ । ଦିନେ ଦୁଇଦିନ ଉପବାସ ବି ରହିଛି । କିନ୍ତୁ କାହାର ପାଖରେ ନିଜର ଦୁରବସ୍ଥା ନେଇ ବାହୁନି ନାହିଁ । ଭିକ୍ଷା ଝୁଲିନେଇ ଠିଆହୋଇ ନାହିଁ । ଏମିତି ଦିନେ ଦୁଇଦିନ ନ ଖାଇ ନ ପିଇ ଜଣେ ଥିଲାବାଲା ବନ୍ଧୁଙ୍କ ଘରକୁ ଯାଇଥିଲି କିଛି ସାହାଯ୍ୟ ଆଶାରେ, ଯାହାଙ୍କ ପ୍ରାଣକୁ ମୁଁ ଶକ୍ତି, ସେବା ଓ ସମୟ ଦେଇ ଫେରାଇ ଆଣିଥିଲି । କିନ୍ତୁ ସେ ମହାଶୟ ଘରେ ଥାଇ ଚାକର ହାତରେ ମନା କରିଦେଲେ ଯେ ବାବୁ ନାହାନ୍ତି ବୋଲି । ତାଙ୍କ ଚାକର ବୁଢ଼ା କ'ଣ ଭାବିଲା କେଜାଣି ତାର ଶୋଇବା ଘରକୁ ଡାକିନେଲା । ଦଉଡ଼ିଆ ଖଟ ପକାଇ ଦେଇ ମୁହଁ ହାତ ଧୋଇବାକୁ ପାଣିଦେଲା । ସବୁ ଚୂଡ଼ା, କଦଳୀ, ଚିନି,

ଓ କ୍ଷୀର ନେଇଆସିଲା । ବସି ବସି ଖୁଆଇଲା । ଖାଇ ସାରିବା ପରେ କହିଲା— "ବାବୁ ବଡ଼ ଲୋକମାନେ ମଣିଷକୁ ଚିହ୍ନି ପାରନ୍ତି ନାହିଁ । ମୁଁ ତୁମ ମୁହଁ ଦେଖି ଚିହ୍ନିଛି, ତୁମେ ଦିନେ ବଡ଼ ହେବ, ସମାଜରେ ସମ୍ମାନ ପାଇବ, କେତେଲୋକ ତୁମ ନିକଟକୁ ସାହାଯ୍ୟ ପାଇବା ଆଶାରେ ଆସିବେ । ଅର୍ଥ ନ ପାଇ ପାର, କିନ୍ତୁ ପ୍ରଶଂସା ପାଇବ । ମୋର ଗୋଟିଏ କଥା ମନେ ରଖିବ ବାବୁ, ଏପରି ଲୋକଙ୍କ ପାଖ କେବେ ମାଡ଼ିବ ନାହିଁ ।" ବାସ୍ତବିକ ସେହିଦିନ ଏହି କେଇପଦ କଥା ଶୁଣି ଆଖିର ଲୁହକୁ ସମ୍ବରଣ କରି ପାରିଲି ନାହିଁ । ଦୁନିଆରେ ପାଣ୍ଡୁ ଦାସ ଭଳି ମଣିଷ ଥାଇ ପାରନ୍ତି ଭାବି, ଆଶ୍ଚର୍ଯ୍ୟ ହେଲି । ସେ ପୁଣି କହିଲା—'ବାବୁ ତୁମ ସହିତ ମୋର ଦେଖା ହୋଇପାରେ ବା ନ ହୋଇପାରେ । କିନ୍ତୁ ଉପରେ ଯିଏ ଅଛନ୍ତି, ସିଏ ସବୁବେଳେ ଦେଖୁଛନ୍ତି । ତାଙ୍କୁ ସବୁବେଳେ ଧ୍ୟାନ ରଖ । ଧର୍ମରେ ତୁମର ମତି ରହୁ । ସତ୍ୟ ପଥରେ ଚାଲ ।' ମୋତେ ସେ ଆଉଁସି ଦେଲା । ମୋ ହାତରେ ଦୁଇଟି ଟଙ୍କା ଗୁଞ୍ଜି ଦେଲା ।

ସେ ଦିନର କଥା ମନେ ପଡ଼ିଲେ ଆଜି ମୋ ନୟନରୁ ଅଶ୍ରୁର ଧାର ବହିଯାଏ । ମୁଁ ଅନ୍ୟମନସ୍କ ହୋଇପଡ଼େ । ଗରିବ ପାଣ୍ଡୁ ଦାସର କଥା, ତାର ମୁହଁ ଆଜି ବି ମୋତେ ସଜାଗ କରେ ।

ସଂସାରର ଦୀର୍ଘତମ ପଥ ଅତିକ୍ରମ କରି କେତେ ଐଶ୍ୱର୍ଯ୍ୟ, କେତେ ଚାକଚକ୍ୟର ଅତ୍ୟୁଜ୍ଜ୍ୱଳ ସମାବେଶ ଦେଖିଲି । ଦିନେ ବୁଢ଼ାର ଭବିଷ୍ୟତ ବାଣୀ ସଫଳ ହେଲା । ଖ୍ୟାତି, ପ୍ରତିଷ୍ଠା, ପ୍ରତିପତ୍ତି ଅର୍ଜନ କଲି ସତ, କିନ୍ତୁ ସୁଖ, ସମ୍ପଦ, ସ୍ୱାଚ୍ଛନ୍ଦ୍ୟ ମୋ ଠାରୁ ବରାବର ଦୂରରେ ରହିଲା ।

ସମାଜରେ ଯେଉଁମାନେ ପ୍ରଣମ୍ୟ, ଭାବୀ କାଳ ପାଇଁ ଯେଉଁମାନେ ଇତିହାସ ସୃଷ୍ଟି କରୁଛନ୍ତି, ଶିକ୍ଷା, ଶିଳ୍ପ, ବିଜ୍ଞାନ, ସାହିତ୍ୟ ସାହାଯ୍ୟରେ ଯେଉଁମାନେ ବ୍ୟାଧି ହାତରୁ ଅନାଗତ ଯୁଗକୁ ମୁକ୍ତ ରଖିବାକୁ ଚେଷ୍ଟା କରୁଛନ୍ତି, ସେମାନଙ୍କ ଠାରୁ ପାଣ୍ଡୁ ଦାସର ମହତ୍ତ୍ୱ ଆଜି ମୋ ହୃଦୟରେ ଧ୍ରୁବତାରା ପରି ଉଜ୍ଜ୍ୱଳ ହୋଇ ରହିଛି ।

ଏଇ ପୃଥିବୀ ଦିନେ କେତେ ସୁନ୍ଦର ବୋଲି ମନେ ହେଉଥିଲା । ପୃଥିବୀର ମଣିଷକୁ ମୁଁ ଶ୍ରଦ୍ଧା କରୁଥିଲି । ସ୍ନେହ କରୁଥିଲି । ମନୁଷ୍ୟ ହୃଦୟରେ ଦେବତା ଅଛନ୍ତି ବୋଲି ବିଶ୍ୱାସ କରୁଥିଲି । କିନ୍ତୁ ଏହାପରେ ମୋର ହଠାତ୍ ମନେ ହେଲା ମୁଁ ଗୋଟିଏ ଗର୍ଦ୍ଦଭ । ସଂସାରରେ ଏତେ ଆଘାତ ପାଇ ମଧ୍ୟ ମୋର ଶିକ୍ଷା ଶେଷ ହୋଇନାହିଁ । ମୋର ଜ୍ଞାନ ଚକ୍ଷୁ ଉନ୍ମିଳନ ହୋଇନି । ଶପଥ ନେଲି,

ମୋତେ ଏସବୁରୁ ଶିକ୍ଷା ନେବାକୁ ହେବ । ଭବିଷ୍ୟତ ପାଇଁ ଅତି ସାବଧାନତାର ସହ ଯାତ୍ରା କରିବାକୁ ହେବ ।

ତାଛଡ଼ା, ମନୁଷ୍ୟ ପ୍ରତି ବିଶ୍ୱାସ କମ୍ । ମୋର କୌଣସି କଷ୍ଟ ହୋଇନି । କେବଳ ମନେ ହୋଇଛି, ଏ ସ୍ୱାର୍ଥନ୍ଧ ପୃଥିବୀରେ ମୋର କେହି ନାହିଁ । ମୋର ନିଜର ବୁଦ୍ଧି ଦେଇ, ତ୍ୟାଗ ଦେଇ ବଞ୍ଚିବାକୁ ପଡ଼ିବ । ନିଜ ପଥ ବାଛି ନେଇ ଆଗେଇ ଯିବାକୁ ହେବ । ଜୀବନର ସମସ୍ତ ଆନନ୍ଦ ଆୟୋଜନରେ ମୋତେ ବାଧ୍ୟ ହୋଇ ଅଂଶ ଗ୍ରହଣ କରିବାକୁ ପଡ଼ିବ ।

ଧୀର ମନ୍ଥର ଗତିରେ ଜୀବନର ରଥଚକ୍ର ଗଡ଼ି ଚାଲିଲା । ଏଥିମଧ୍ୟରେ ଜଳକର ଆନ୍ଦୋଳନ କଂଗ୍ରେସ ସରକାର ବିରୁଦ୍ଧରେ ଏକ ଆହ୍ୱାନ ହେଲା । ମାତ୍ର ୧୨ ଟଙ୍କା ୧୨ ପଇସା ଯୋଗେ ଜଗତ୍‌ସିଂହପୁର ପଣସପଡ଼ା ହରି ସାହୁଙ୍କ ଗାଈ ବାଛୁରୀ ନିଲାମ କରିନେଲେ, ତତ୍କାଳୀନ ଜଗତ୍‌ସିଂହପୁର ତହସିଲର ତହସିଲଦାର । ପାର୍ଟି ଏହି ସୁଯୋଗ ଖୋଜୁଥିଲା । ଏହି ଗାଈ ନିଲାମକୁ ଭିତ୍ତିକରି ପ୍ରବଳ ଆନ୍ଦୋଳନ ଚାଲିଲା । ଜଳକର ଅଫିସ ସମ୍ମୁଖରେ ପ୍ରାୟ ୪୨ ଦିନ କାଳ ଶାନ୍ତିପୂର୍ଣ୍ଣ ସତ୍ୟାଗ୍ରହ ହେଲା । ଆବାଳ ବୃଦ୍ଧ ବନିତା ସେଥିରେ ହସି ହସି ଯୋଗ ଦେଲେ । ମୁଁ, କଣ୍ଡୁରୀ ମଲିକ ଓ ଲୋକନାଥ ଗୁପ୍ତ ତହିଁର ନେତୃତ୍ୱ ନେଲୁ । ପ୍ରତ୍ୟେକ ସ୍ତ୍ରୀ ପୁରୁଷ ଫୁଲମାଳ ପିନ୍ଧି, ମୁଣ୍ଡରେ ସିନ୍ଦୂର ଚନ୍ଦନ ମାରି ତହସିଲ ଅଫିସ ଆଗରେ ଧାରଣା ଦେଉଥିଲେ । କେତେକ ମହିଳା ନିଜର କୋଳର ଶିଶୁକୁ ଧରି ଅଞ୍ଚଳ ଅଫିସ ଆଗରେ ବହୁତ ସମୟ ଧରି ବସି ରହୁଥିଲେ । ପ୍ରତ୍ୟହ ବିଭିନ୍ନ ଅଞ୍ଚଳରୁ ଜଳକର ବିରୋଧୀ ଧ୍ୱନି ଦେଇ ସତ୍ୟାଗ୍ରହୀମାନେ ଆସୁଥିଲେ । ମୋର ସ୍ତ୍ରୀ ଶରତକୁମାରୀ ମଧ୍ୟ ତହିଁରେ ବିଶେଷ ଅଂଶ ଗ୍ରହଣ କରିଥିଲେ । ସତ୍ୟାଗ୍ରହ ପ୍ରାୟ ୪୨ ଦିନ ଚାଲିଲା ପରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ଏକ ସନ୍ତୋଷଜନକ ସମାଧାନର ପ୍ରତିଶ୍ରୁତି ଦେବାରୁ ସତ୍ୟାଗ୍ରହ ଭଙ୍ଗ ହେଲା । ଏ ସତ୍ୟାଗ୍ରହରେ ଲୋକଙ୍କ ମନରେ ଯେଉଁ ପ୍ରବଳ ଉତ୍ସାହ ଉତ୍ତେଜନା ଦେଖା ଦେଇଥିଲା, ପରେ ତାହା ବିଶେଷ କାମରେ ଲାଗିଲା । ୧୯୬୭ର ନିର୍ବାଚନରେ କଣ୍ଡୁରୀ ବାବୁ ପୂର୍ଣ୍ଣାଂଶରେ ଏବଂ ମୁଁ କେତେକାଂଶରେ ତହିଁଯୋଗେ ଫଳପ୍ରଦ ହେଲୁ ।

୧୯୬୭ର ନିର୍ବାଚନ ଲାଗି ପ୍ରସ୍ତୁତି ଚାଲିଲା । ଧୀରେ ଧୀରେ ନିର୍ବାଚନ ପାଖେଇ ଆସିଲା । ଏ ନିର୍ବାଚନରେ ଜଗତ୍‌ସିଂହପୁର ଥାନାର ପାଞ୍ଚଟି ପଞ୍ଚାୟତ, ଯାହା ପୂର୍ବରୁ ବାଲିକୁଦା ନିର୍ବାଚନ ମଣ୍ଡଳୀରେ ଥିଲା, ତାହା ଗୋବିନ୍ଦପୁରକୁ

ଗଲା । ଗୋବିନ୍ଦପୁରର କେତୋଟି ପଞ୍ଚାୟତ ଜଗତ୍‌ସିଂହପୁର ଆସିଲା । ଜଗତ୍‌ସିଂହପୁରର ପାଞ୍ଚୋଟି ପଞ୍ଚାୟତ ବାଲିକୁଦା ଆସିଲା । ଆମପକ୍ଷେ ତାହା ଅତ୍ୟନ୍ତ ଅନୁକୂଳ ହେଲା । ପୂର୍ବରୁ ଶ୍ରୀ ଲୋକନାଥ ରାୟ, ଶ୍ରୀ ମାଧବାନନ୍ଦ ପାଳ, ଶ୍ରୀ ଧୂଳେଶ୍ୱର ପାଳ, ଶ୍ରୀ ଗୁଣନିଧି ପାଳ, ଶ୍ରୀ କଣ୍ଡୁରୀ ଚରଣ ମହାନ୍ତି, ଶ୍ରୀ ହରିହର ସିଂହ ପ୍ରଭୃତି ଏ ଅଞ୍ଚଳରେ ପାର୍ଟିକୁ ଜୀବନ୍ତ କରି ରଖୁଥିଲେ । ଶ୍ରୀ ରାୟଙ୍କ ନେତୃତ୍ୱ, ତାଙ୍କର ଅସାଧାରଣ ସଙ୍ଗଠନ ଶକ୍ତି, ବୁଦ୍ଧିମନ୍ତ କର୍ମୀମାନଙ୍କର ପ୍ରାଣକୁ ଓ ଗ୍ରାମବାସୀଙ୍କର ଅନ୍ତରକୁ ସତତ ଉଦ୍‌ବୁଦ୍ଧ କରି ରଖୁଥିଲା । ତାରି ଫଳରେ ପାର୍ଟି ଏ ଅଞ୍ଚଳରେ ନିର୍ବାଚନରେ ବହୁ ସଂଖ୍ୟକ ଭୋଟ ପାଇଥିଲା । ଏ ନିର୍ବାଚନରେ ଏକ ପକ୍ଷରେ କଂଗ୍ରେସର ପ୍ରାର୍ଥୀ ଶ୍ରୀ ନିତ୍ୟାନନ୍ଦ ମହାନ୍ତି, ଜଗତ୍‌ସିଂହପୁରର ଶ୍ରୀ ରଘୁନାଥ ମହାପାତ୍ର ସ୍ୱତନ୍ତ୍ର ଦଳର ପ୍ରାର୍ଥୀ ଥିଲେ । ସେମାନଙ୍କ ଜିପ୍, ଅଜସ୍ର ଲୋକବଳ, ଅର୍ଥବଳ ଆଗରେ ଆମ କର୍ମୀମାନେ ଶଙ୍କିତ ହେଉଥିଲେ ମଧ୍ୟ ସେମାନଙ୍କର ମନବଳ ଭାଙ୍ଗି ନଥିଲା । ଭଙ୍ଗା ସାଇକେଲ କେତେଖଣ୍ଡି ନେଇ ସେମାନେ ଯେପରି ଖଟିଛନ୍ତି, ତାର ପଟାନ୍ତର ନାହିଁ । ଚନ୍ଦନ, ବାପୁବାବୁ, ପଣ୍ଡିତ, ଧର୍ମାନନ୍ଦ ଦାସ, ବୈରାଗୀ ପଣ୍ଡା, ଅନାଦିଚରଣ ରାଉତରାୟ ପ୍ରଭୃତି ଜୀବନମୂର୍ଚ୍ଛା କରି ଏ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେଲେ । ଅସଂଖ୍ୟ ଗ୍ରାମର ଛାତ୍ରଛାତ୍ରୀ, ଯୁବକ ସମସ୍ତ ମାୟା ମମତାକୁ ପଛକୁ ପକାଇ ପାର୍ଟି ପାଇଁ ଖଟିଛନ୍ତି । ମୋର ସ୍ତ୍ରୀ ଯେପରିଭାବେ ଗ୍ରାମେ ଗ୍ରାମେ ବୁଲି ସ୍ତ୍ରୀ ପୁରୁଷମାନଙ୍କୁ ମତାଇଛନ୍ତି, ତାହା ମିଁ ଏ ଦେଖିଛି, ମନ ପ୍ରାଣରେ ଖୁସି ହୋଇଛି । ସେ ଯେଉଁ ଗ୍ରାମକୁ ଯାଇଛନ୍ତି, ସେ ଗ୍ରାମର ଲୋକମାନେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା କରିଛନ୍ତି । ତାଙ୍କ କଥା ଶୁଣି ମୁଗ୍ଧ ହୋଇଛନ୍ତି ଏବଂ ଆମକୁ ଭୋଟ ଦେବା ଲାଗି ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି । ପରବର୍ତ୍ତୀ ଦିନମାନଙ୍କରେ କଂଗ୍ରେସ ଓ ସ୍ୱତନ୍ତ୍ର ଦଳର ପ୍ରଚାର, ଟଙ୍କା ପ୍ରଲୋଭନ କିଛି କାମରେ ଆସିନାହିଁ । ଆମର ବିଜୟ ହେଲା । ପାର୍ଟି ଜୟଯୁକ୍ତ ହେଲା । ଏ ବିଜୟ ମୋର ନୁହେଁ । ଅସଂଖ୍ୟ ଶୁଭେଚ୍ଛୁ, ଭାଇ ଭଉଣୀ, ଯୁବ ସମ୍ପ୍ରଦାୟ, ଛାତ୍ରଛାତ୍ରୀଙ୍କର । ଯଦି ଏଥିରେ କେହି ଗୌରବର ଅଧିକାରୀ, ତେବେ ସେହିମାନେ । ସେହିମାନେ ହିଁ ସମ୍ବଳ, ସହାୟ, ସବୁକିଛି । ମୁଁ ମୁକ୍ତ ପ୍ରାଣରେ ମୋର ଅଜସ୍ର କର୍ମୀ, ବନ୍ଧୁ, ଅସଂଖ୍ୟ ସ୍ୱଜନଙ୍କୁ, ଯୁବ ଓ ଛାତ୍ର ସମାଜକୁ ମୋର ବିନମ୍ର ପ୍ରଣତି ଜଣାଉଛି । ସେହିମାନଙ୍କ ଯୋଗେ ମୁଁ ଆଜି M. L. A. । ସବୁବେଳେ ଈଶ୍ୱରଙ୍କୁ ଡାକେ, ହେ ପ୍ରଭୁ । ସେହିମାନଙ୍କ ସେବା କରିବାରେ ସାହସ ଓ ଶକ୍ତି ମୋତେ ଦିଅ । ଗତ ଭୋଟରେ ମୁଁ ପ୍ରାୟ ଦୁଇ ହଜାର ଭୋଟରେ ପରାସ୍ତ ହୋଇଥିଲି, କିନ୍ତୁ ଏଥର ଏଗାର ହଜାର ଭୋଟରେ ଜିତିଲି । ୧୯୬୭ରେ

ଆମ ପାର୍ଟିର ବିପୁଳ ବିଜୟ ସମସ୍ତଙ୍କୁ ଚକିତ କଲା । ଶ୍ରୀ ଦ୍ୱିବେଦୀ ୧୯୬୨ ଲୋକସଭା ନିର୍ବାଚନରେ ୭୦ ହଜାର ଭୋଟରେ ଜିତିଥିଲେ । କିନ୍ତୁ ଏଥର ଏକଲକ୍ଷ ଦଶ ହଜାର ଭୋଟ ପାଇ ତାଙ୍କ ତ୍ୟାଗ, କର୍ମତତ୍ପରତା ଏବଂ ନେତୃତ୍ୱର ପରିଚୟ ଦେଲେ ।

କେତେଜଣ କଂଗ୍ରେସ ଲୋକଙ୍କ କୁଚକ୍ରାନ୍ତ ଫଳରେ ମୂଳଦୁଆ ପଡ଼ି ରହିଥିବା ବାଲିକୁଦା ହାଇସ୍କୁଲ ପୂର୍ଣ୍ଣାଙ୍ଗ ହୋଇପାରୁ ନ ଥିଲା । ମୁଁ M. L. A. ଥିବାବେଳେ ସେତେବେଳେ D. P. I. ଥିଆନ୍ତି ବୈଦ୍ୟନାଥ ରଥ । ତାଙ୍କୁ ଧରି ହାଇସ୍କୁଲକୁ ପୂର୍ଣ୍ଣାଙ୍ଗ କଲି । ସେ ମୋତେ ଖୁବ୍ ସ୍ନେହ କରୁଥିଲେ । କଳିଙ୍ଗ ବିଜ୍ଞାନ ଜେନ୍ଦ୍ରର ସେ ମଧ୍ୟ ଥିଲେ ଜଣେ ଏକାନ୍ତ ଶୁଭେଚ୍ଛୁ । ସେ ଚେଷ୍ଟା କରି ନ ଥିଲେ ହୁଏତ ବାଲିକୁଦା ହାଇସ୍କୁଲ ସେମିତି ରହିଯାଇଥାନ୍ତା । ବୈଦ୍ୟନାଥ ବାବୁ ଆଜି ପରଲୋକରେ । କିନ୍ତୁ ତାଙ୍କର ଅବଦାନ ବାଲିକୁଦାବାସୀ ଭୁଲିବା ଉଚିତ ନୁହେଁ । ମୋତେ ବା କିଏ ମନେ ରଖିଛି ?

ମୋ ଜୀବନରେ ଆଉ ଏକ ଦୁଃଖର ଘଟଣା ଘଟିଲା ଯାହାକି ବିଧିବିଧ କର୍ମପ୍ରବାହରେ ବିଘ୍ନ ସୃଷ୍ଟି କରିଦେଲା । ୧୯୬୮ ଜୁନ୍ ୧୩ ତାରିଖରେ ମୁଁ ତିର୍ତ୍ତୋଲ ଯାଇଥାଏ । ସେଦିନ ଥାଏ ପହିଲି ରଜ । ହଠାତ୍ ଉଚ୍ଚ ରକ୍ତଚାପ ରୋଗ ମୋତେ ଆକ୍ରାନ୍ତ କଲା । ମୁଁ ବେହୋସ ହୋଇ ପଡ଼ିରହିଲି । ମୋର ସ୍ତ୍ରୀ ଅତି ଧୈର୍ଯ୍ୟଶୀଳା ହେଲେ ମଧ୍ୟ ଅତି ଦୁଃଖରେ ରାତିଟି କଟାଇଲେ । ଭୋରରୁ ବଳଦ ଗାଡ଼ିରେ ପଡ଼ି ଜଗତ୍‌ସିଂହପୁର ଆସିଲି । ଯେଉଁ ଶରତ ପାଇଁ ମୁଁ ଅନେକ କିଛି କରିଛି, ସେ ଖବର ପାଇ ମଧ୍ୟ ମୋତେ ଦେଖିବାକୁ ଟିକେ ଆସିଲେ ନାହିଁ । କଳିଙ୍ଗରୁ ବାବୁ ମୋତେ ଦେଖିଲେ; ବ୍ଲଡ୍‌ପ୍ରେସର ବୋଲି ଚିହ୍ନଟ କଲେ । ବାବୁ ଭାଇଙ୍କୁ ଫୋନ ହେଲା । ସେ ତାଙ୍କ ଗାଡ଼ି ପଠାଇଲେ । ଆଗମରେ ମୁଁ କଟକ General Hospitalକୁ ଆସିଲି । ସେଠି ସାଧାରଣ ଓ୍ୱାର୍ଡ଼ରେ ରହି ଚିକିତ୍ସିତ ହେଲି । ପରେ ପରେ ନର୍ସିଂହୋମ ମିଳିଲା । ବିଧାନସଭା ସଭ୍ୟ ଥିବାରୁ ସମସ୍ତ ସୁବିଧା ସୁଯୋଗ ପାଇଲି । Nursing Homeରେ ପ୍ରାୟ ଏକମାସରୁ ଅଧିକ ରହିଲି । ଏହି ସମସ୍ତ ମଧ୍ୟରେ ଡାକ୍ତର, ନର୍ସ, ବେହେରାମାନଙ୍କ ଅକ୍ଳାନ୍ତ ସେବା ଓ ଯତ୍ନ ମୁଁ ଭୁଲି ପାରିବି ନାହିଁ । ବିଶେଷ କରି ସର୍ବଶ୍ରୀ ଆଦିକନ୍ଦ ସ୍ୱାଇଁ, ଜଗତ୍‌ବନ୍ଧୁ ମହାନ୍ତି, ବସ୍ତ୍ରୁଚରଣ ମିଶ୍ର ଓ ସୁବାଷଚନ୍ଦ୍ର ମହାନ୍ତି ପ୍ରଭୃତିଙ୍କ ନାମ ମୁଁ ଶ୍ରଦ୍ଧାର ସହିତ ସ୍ମରଣ କରୁଛି । ଆଦିକନ୍ଦ ବାବୁ ଏପର୍ଯ୍ୟନ୍ତ ମୋର ପରିବାରର ଚିକିତ୍ସକ ହୋଇ ରହିଛନ୍ତି । ତାଙ୍କର ସ୍ନେହ ପାଶୋରିବାର ନୁହେଁ । ଟିକିଏ କ'ଣ ହେଲେ ଆମେ ତାଙ୍କ ପାଖକୁ ଯାଉ । ସେ ଅତି ଆଗ୍ରହର ସହ ଆମର

ସ୍ୱାସ୍ଥ୍ୟ ପରୀକ୍ଷା କରନ୍ତି । ପରାମର୍ଶ ଦିଅନ୍ତି । ଔଷଧ ଲେଖି ଦିଅନ୍ତି । ପଇସା ଦେଲେ ବିନମ୍ର ସହ ମନା କରିଦିଅନ୍ତି । ଏପରି ଅନେକ ଡାକ୍ତର ଅଛନ୍ତି, ଯେଉଁମାନେ କି ପଇସା ପାଇଁ ପାଗଳ । ଅର୍ଥ ହିଁ ତାଙ୍କର ସର୍ବସ୍ୱ—ଲୋକଙ୍କର ସ୍ୱାର୍ଥ ବା ସ୍ୱାସ୍ଥ୍ୟ ନୁହେଁ । କିନ୍ତୁ ଆଦିକନ୍ଦବାବୁ ତାହାର ବ୍ୟତିକ୍ରମ । ଏପରି ଆଉ ଜଣେ ଡାକ୍ତର ହେଉଛନ୍ତି ଶରତଚନ୍ଦ୍ର ମିଶ୍ର । ଦେବୋପମ ବ୍ୟକ୍ତି । ମୋର ପେଟ ବେମାର ବେଳେ ମୋ ପାଇଁ ଯାହା କରିଛନ୍ତି, ମୁଁ ଏ ଜୀବନରେ ସେ ଋଣ ସୁଝିପାରିବି ନାହିଁ ।

ହସ୍‌ପିଟାଲ୍‌ରେ ସାମାନ୍ୟ ସୁସ୍ଥ ହୋଇ ଭୁବନେଶ୍ୱର M. L. A. କ୍ୱାର୍ଟରରେ ରହିଲି । ଫୋନ୍ ମୋର ନ ଥିଲା, ଲଗିଲା । କିନ୍ତୁ କିଛିଦିନ ପରେ ଏଠାରେ ମୋର ସ୍ୱାସ୍ଥ୍ୟ ପୁଣି ଖରାପ ହେଲା । ଡାକ୍ତର ବାନାର୍ଜୀ, ଭୁବନେଶ୍ୱରରେ ଯିଏ ମୋର ଚିକିତ୍ସକ ଥିଲେ, ପରାମର୍ଶ ଦେଲେ କଟକ ଯିବା ପାଇଁ । ମୁଁ ମଧ୍ୟ ତାହା ଚାହୁଁଥିଲି । ବାବୁଭାଇଙ୍କ ସଙ୍ଗେ ପରାମର୍ଶ କରି କଟକ ଆସି କଳାବିକାଶ କେନ୍ଦ୍ରରେ ଗୋଟିଏ ଘରେ ରହିଲି । ବିଚିତ୍ରାନନ୍ଦ ପଟ୍ଟନାୟକ ଆମ ବଡ଼ରୋଡ଼ଙ୍କର ଇଞ୍ଜିନିୟର ଥିଲେ । ଅତି ଅମାୟିକ, ସ୍ନେହୀ, ଭଦ୍ରବ୍ୟକ୍ତି ଥିଲେ ସେ । ମୋ ପ୍ରତି ତାଙ୍କର ଭକ୍ତି ଅତିମାତ୍ରାରେ ଥିଲା । ସେ ଆଜି ସ୍ୱର୍ଗରେ । କିନ୍ତୁ ନିଜ ଗାଡ଼ିରେ ମୋର ସମସ୍ତ ସାମଗ୍ରୀ ସହ ଯେପରିଭାବେ ମୋତେ ଆଣି କଟକରେ ଛାଡ଼ି ଦେଇ-ଗଲେ, ଆଜି ବି ତାଙ୍କର ସେ ଉପକାର ମୁଁ ଗଭୀର ଶ୍ରଦ୍ଧାପୂର୍ଣ୍ଣ ଚିତ୍ତରେ ସ୍ମରଣ କରୁଛି ।

କଟକରେ ମଧ୍ୟ ମୋ ସ୍ୱାସ୍ଥ୍ୟ ଭଲ ରହିଲାନି । ହସ୍‌ପିଟାଲରୁ ବସା, ବସାରୁ ହସ୍‌ପିଟାଲ, ଏହିପରିଭାବେ ମୋର ଜୀବନଧାରା ବହି ଚାଲିଲା । ମୁଁ ଶ୍ରାନ୍ତ କ୍ଳାନ୍ତ ହୋଇପଡ଼ିଲି । ମନରେ ହତାଶ ଭାବ ଆସିଲା । ଜୀବନ ପ୍ରତି ବିତୃଷ୍ଣା ଜାତ ହେଲା । ଭାବିଲି ଆଉ ବଞ୍ଚିବି ନାହିଁ । କିନ୍ତୁ ସେ ଯାତ୍ରାରୁ ରକ୍ଷାକଲେ ଭଗବାନ ଶ୍ରୀ ଶ୍ରୀ ସତ୍ୟସାଇ ବାବା । ମୁଁ ଓ ମୋର ସ୍ତ୍ରୀ ଆତ୍ମନିବେଦନ କଲୁ । ସର୍ବସ୍ୱ ତାଙ୍କ ଚରଣ ତଳେ ଅର୍ପଣ କରିଦେଲୁ । ପରିବାରର ସମସ୍ତ ଦାୟିତ୍ୱ ତାଙ୍କର । ପ୍ରତି ମୁହୂର୍ତ୍ତରେ ଯେପରି ଆମେ ତାଙ୍କ ମଧୁର ସ୍ପର୍ଶ ଅନୁଭବ କଲୁ । ତାଙ୍କ ଶୁଭାଶୀଷ ଧାରା ଯେପରି ଆମ ଶିରରେ ଝରି ପଡ଼ିଲା । ବାବାଙ୍କ କଥା ଭାବି ଭାବି ଶରତକୁମାରୀ ବେଳେବେଳେ ଭାବାବେଶରେ ନିମଗ୍ନ ହୋଇ ଉଠନ୍ତି । ଆଖିରୁ ଧାର ଧାର ଅଶ୍ରୁ ବୋହିଯାଉଥାଏ । ଆତ୍ମପର ସବୁ ପାଶୋରି ଦିଅନ୍ତି । ବାବାଙ୍କ ନାମ ସ୍ମରଣ କରି ସେ ଅଭିଭୂତ ହୋଇପଡ଼ନ୍ତି ।

କେନ୍ଦ୍ରରେ ୧୯୭୩ ଡ଼ିସେମ୍ବର ପର୍ଯ୍ୟନ୍ତ ଥିଲୁ । ଏଥି ମଧ୍ୟରେ ୧୯୭୨ ଅକ୍ଟୋବର ମାସରେ ହଠାତ୍ ବାବାଙ୍କର ଶ୍ରୀଚରଣ ଦର୍ଶନର ପରମ ସୁଯୋଗ

ଜୁଟିଥିଲା । ଗାଡ଼ିରେ ରିଜର୍ଭେସନ ନାହିଁ, ଟଙ୍କା ପଇସା ନାହିଁ, ଯିବାର ମଧ୍ୟ ପ୍ରସ୍ତୁତି ନାହିଁ । କିନ୍ତୁ ଚାଲିଲୁ ପୁଟପାର୍ଥି ଅଭିମୁଖେ । ଜନତା ଏକ୍ସପ୍ରେସ କେବଳ ମୋତେ ବା ମୋ ସ୍ତ୍ରୀଙ୍କୁ ନୁହେଁ, ଗୋବିନ୍ଦ ଏବଂ ତାଙ୍କର ସ୍ତ୍ରୀ, ରାଜେନ୍ଦ୍ର, ଶାନ୍ତ, କେଦାରବାବୁ ଓ ଆହୁରି ଅନେକଙ୍କୁ ନେଇ ଆଗେଇ ଚାଲିଲା ଦ୍ରୁତଗତିରେ । ଆନ୍ଧ୍ରପ୍ରଦେଶର ତାଳ, ନାରକେଳ, ଆମ୍ବ ବୃକ୍ଷକୁ ଚିରି ବାଷ୍ପୀୟ ଶକଟ ଧାଇଁଥାଏ । ରାତିଟି ଟ୍ରେନରେ କଟିଲା । ସକାଳ ଦଶଟାରେ ବଜୱାଡ଼ା ଷ୍ଟେସନରେ ସମସ୍ତେ ଓହ୍ଲାଇଲୁ । ସେଠି ସ୍ନାନ ଭୋଜନ ସାରି ଗୁଣ୍ଟୁରୁ ପ୍ୟାସେଞ୍ଜରରେ ବସି ଗୁଣ୍ଟୁରୁ ଷ୍ଟେସନରେ ପହଞ୍ଚିଲୁ । ଗୁଣ୍ଟୁରରୁ ଗୁଣ୍ଟାକେଲ ଏକସ୍‌ପ୍ରେସ ଧରିଲୁ । ଏଠି ମଧ୍ୟ Reservation ନାହିଁ । ଯିଏ ଯାମୁଣ୍ଡା ଖଣ୍ଡେ ପାରିଦେଲା, ସେ ବେଞ୍ଚଟା ତାର । ଅନଭିଜ୍ଞ ଓଡ଼ିଆମାନେ ସମସ୍ତ ସୁଖ ସୁବିଧାରୁ ବଞ୍ଚିତ ହୋଇ କୌଣସିମତେ ମୁଣ୍ଡ ଗୁଞ୍ଜିଲେ । ଯିବାକୁ ତ ହେବ । ସବୁ ସେହି ସତ୍ୟସାଇ ବାବାଙ୍କ ଲୀଳା । ଅସହ୍ୟ ଗରମ । ଗାଡ଼ିର ଭିଡ଼, ଜନସାଧାରଣର ଧକଡ଼ ଚକଡ଼ । ହଠାତ୍ ମୋ ଦେହ ବ୍ୟସ୍ତ ଲାଗିଲା । ପ୍ରେସର ବଢ଼ିଲା । ମୋ ସ୍ତ୍ରୀ ବିପଦ ମଣିଲେ । ମୋର ବନ୍ଧୁ ଗୋବିନ୍ଦ, କେଦାର ପ୍ରଭୃତି ପ୍ରମାଦ ଗଣିଲେ । ଏକ ଧ୍ୟାନରେ ସତ୍ୟସାଇ ବାବାଙ୍କୁ ଧ୍ୟାନ କରି ମୋ ସ୍ତ୍ରୀ ବସିଥାନ୍ତି । ତାଙ୍କ ଶ୍ରୀଚରଣତଳେ ସମସ୍ତ ସମର୍ପି ମୋ ମୁଣ୍ଡକୁ କୋଳରେ ରଖିଥାନ୍ତି । ଆଖିରୁ ଧାର ଧାର ଲୁହ ବହି ଯାଉଥାଏ । ରାତି ପ୍ରାୟ ଦୁଇଟା ହେବ, ଗୋଟିଏ ମସ୍ତବଡ଼ ପ୍ରଜାପତି ଉଡ଼ିଆସି ମୋ ଶରୀରପଟେ ଘୁରିଗଲା । ମୋ ସ୍ତ୍ରୀଙ୍କ ଆଗରେ ବାରମ୍ବାର ଘୁରିଲା । ତାଙ୍କର ଧ୍ୟାନ ଭାଙ୍ଗିଗଲା । ଦେଖିଲେ ପ୍ରଜାପତିଟି ଆମକୁ ଛାଡ଼ି କୁଆଡ଼େ ଯାଉ ନାହିଁ । କିଛି ସମୟ ଉଡ଼ି ଉଡ଼ି ପୁଣି ବାହାରକୁ ଚାଲିଗଲା । ତା ପରେ ପରେ ମୁଁ ଟିକିଏ ଆରାମ ଅନୁଭବ କଲି । ଆଖି ଖୋଲିଲି । ଶୋଷ ହେଲା । ପାଣି ଟୋପେ ମାଗିଲି । ଗାଡ଼ି ଦ୍ରୁତ ଗତିରେ ଚାଲିଥାଏ । ପାଣି ପିଇସାରି ଅତ୍ୟନ୍ତ ଆଶ୍ୱସ୍ତ ଅନୁଭବ କଲି । ଭୋକ ମଧ୍ୟ ହେଲା । ସାଥିରେ କଲଖିଆ ଥିଲା । ସ୍ତ୍ରୀ ଦେଉଥାନ୍ତି, ମୁଁ ଖାଉଥାଏ । ଯେଉଁଠି ଗାଡ଼ି ଅଟକୁ ଥାଏ, ଗୋବିନ୍ଦ ବାବୁ ଓ କେଦାର ବାବୁ ଆସି ମୋ ଖବର ବୁଝୁଥାନ୍ତି । ତାପରେ ଶୋଇପଡ଼ିଲି । ନିଦ ଭାଙ୍ଗିଲା ଗୁଣ୍ଟାକଲ ଷ୍ଟେସନରେ । ଶ୍ରୀ ଶ୍ରୀ ସତ୍ୟସାଇ ବାବାଙ୍କ ଚରଣତଳେ ସମସ୍ତ ସମର୍ପି ଦେଇ ଗାଡ଼ିରୁ ଓହ୍ଲାଇଲି । ସାଥୀମାନେ ଟିକିଏ ଆଶ୍ୱସ୍ତ ହେଲେ । ପ୍ରାୟ ଦିନ ୮ଟାରେ ଗାଡ଼ି ଯାଇ ପହଞ୍ଚିଲା ଗୁଣ୍ଟାକଲ ଜଙ୍କସନ୍‌ରେ । ନିତ୍ୟକର୍ମ ସାରି ଇଡ଼୍‌ଲି ଓ ଉପମାର ସଦ୍‌ବ୍ୟବହାର କରି ଧରମାବରମ୍ ବଗିରେ ବସିଲୁ । ଆହୁରି ଅନେକ ସାଇପ୍ରେମୀ ଅନ୍ୟାନ୍ୟ ରାଜ୍ୟରୁ ଆସିଥିଲେ । ଆମ ସହିତ ମଧ୍ୟ କେତେକ ପୁରୁଣା ସାଇଭକ୍ତ ଥିଲେ । ଭଜନ କୀର୍ତ୍ତନ ଚାଲିଲା । ସମସ୍ତେ ସତ୍ୟସାଇ ପ୍ରେମରେ

ବିଛୋର । ବାଟରେ ଅନନ୍ତପୁର ଜିଲ୍ଲାର ହେଡ଼୍‌କ୍ୱାର୍ଟର ପଡ଼ିଲା । ମଝିରେ ମଝିରେ ସୁଦୂରବ୍ୟାପୀ ଅଙ୍ଗୁର ଉଦ୍ୟାନ ଦେଖି ମୋ ମନ ମୁଗ୍‌ଧ ହୋଇଯାଉଥାଏ । ଜଣେ ବନ୍ଧୁ ଯାଇ ମହିଳା ମହାବିଦ୍ୟାଳୟ ଚିହ୍ନାଇ ଦେଲେ । ଧରମାବରମ୍ ଷ୍ଟେସନରେ ସ୍ନାନାଦି ସାରି ନେଲୁ । ଟାଙ୍ଗାରେ ଗଲୁ ଧରମା'ବରମ୍ ଟାଉନ କୁ । ମୁସଲମାନ ଅଧ୍ୟୁଷିତ ଧରମାବରମ୍ ଟାଉନ୍‌ରେ ଅନ୍ୟ କାହାର ପ୍ରଭାବ ନାହିଁ । ତେଣୁ ଷ୍ଟେସନରୁ ସହର ୫ କି. ମି. ଦୂର ସେହି ମୁସଲମାନ ଟାଙ୍ଗାବାଲାମାନେ ହିଁ ନେବେ । ଅନ୍ୟ ଟାଉନ୍ ବସ କମ୍ପା ଉକ୍‌ସାରେ ଯିବାକୁ ହେଲେ ଏ ମୁସଲମାନ ଟାଙ୍ଗାବାଲା ନେବେନି । ଯାହା ଭଡ଼ା ମାଗିବେ, ତାହା ଦେବାକୁ ବାଧ୍ୟ ।

ଧରମାବରମ୍ ଟାଉନ୍‌ଟି ଧୂଳିଧୂସରିତ ହେଲେ ମଧ୍ୟ ଖାଇବା ଲାଗି ସୁରୁଚିପୂର୍ଣ୍ଣ ହୋଟେଲ ଅଛି । କଦଳୀ, କମଳା, ଅଙ୍ଗୁର ପ୍ରଭୃତି ପ୍ରଚୁର ପରିମାଣରେ ମିଳେ । ମୁଢି, ସରୁ ଚୁଡ଼ା, ଦହି ଇତ୍ୟାଦି ମଧ୍ୟ ଖୋଜିଲେ ମିଳେ । ଗୋଟିଏ ଟାଉନ୍ ବସ୍ ଓ ଗୋଟିଏ ଜିପ୍ ଠିକ୍ କରି ମଧ୍ୟାହ୍ନ ୪ଟାରେ ପୁଟପାର୍ଥି ଆମର ପବିତ୍ର ତୀର୍ଥସ୍ଥାନରେ ପହଞ୍ଚିଲୁ । ହଜାର ହଜାର ଭକ୍ତଙ୍କ ସମାଗମରେ ସେ ସ୍ଥାନଟି ସରଗରମ ହୋଇଉଠୁଥାଏ । ଖଜୁରି ପଟି କିଣି, ଯିଏ ଯେଉଁଠି ପାରିଲା ଲୁଗାପଟା ରଖି ପଡ଼ିଯାଇଥାନ୍ତି, ବ୍ୟବସ୍ଥିତ ଭାବରେ । ଲକ୍ଷାଧିକ ଲୋକ ସମବେତ ହୋଇଥିଲେ ମଧ୍ୟ କେଉଁଠି କିଛିଏ ହେଲେ ବିଶୃଙ୍ଖଳା ନାହିଁ । ସର୍ବତ୍ର ନୀରବତା । ଜୋତାଗୁଡ଼ିକ ଗୋଟିଏ ସ୍ଥାନରେ ବ୍ୟବସ୍ଥିତ ଭାବରେ ଅଛି । ସେଠି ସ୍ୱେଚ୍ଛାସେବକମାନେ ସଜାଗ ଅଛନ୍ତି । କିଏ କେହି ଜୋରରେ କଥା କହିଲେ, ସଙ୍ଗେ ସଙ୍ଗେ Volunteerମାନେ କହିଦେବେ, Silence please ।

ଆମେ ଯେଉଁଦିନ ପୁଟାପର୍ତ୍ତିରେ ପହଞ୍ଚିଲୁ, ସେଦିନ ଦୁର୍ଗାଷ୍ଟମୀ । ଅରୁବୋଉ (ମୋ ସ୍ତ୍ରୀ) ଶପଥ କରିଥାନ୍ତି, ବାବାଙ୍କ ଶ୍ରୀଚରଣ ଦର୍ଶନ ନକଲା ପର୍ଯ୍ୟନ୍ତ ଜଳସ୍ପର୍ଶ କରିବେନି । ବାବା ଯେଉଁ ବାଟ ଦେଇ ସଭା ମଣ୍ଡପକୁ ଯିବା ଆସିବା କରନ୍ତି, ସେଇଠି ସେ ଏକାନ୍ତ ଚିତ୍ତରେ ବସିଥିଲେ । କିନ୍ତୁ ବାବା ତାଙ୍କ ଆଡ଼େ ନ ଚାହିଁ ସିଧା ମଣ୍ଡପକୁ ଚାଲିଗଲେ । ଅରୁ ବୋଉ ହତାଶ ହୋଇ ମଧ୍ୟ ଦର୍ଶନର ଆଶା ଛାଡ଼ିନଥାନ୍ତି । ବାବା ଥରେ ସଭା ସ୍ଥାନକୁ ଗଲେ ଫେରନ୍ତିନି । କିନ୍ତୁ ଭକ୍ତର ଭଗବାନ ଯିଏ, ସିଏ କ'ଣ ତାର ଆକୁଳ ପ୍ରାର୍ଥନା ଶୁଣି ରହିପାରିବେ ? ଦୁଇ ତିନି ମିନିଟ ପରେ ଫେରି ଆସି ଶରତକୁମାରୀଙ୍କୁ କହିଲେ—"ଉଠୋ ' ଯାଓ ! ଖାନା-ପିନା କରୋ ।" ଶରତ କୁମାରୀ ଚାହିଁ ଦେଖିଲେ ତାଙ୍କର ଇଷ୍ଟ ଦେବତା ସମ୍ମୁଖେ ଉଭା । ଜୀବନ ଧନ୍ୟ ହେଲା । ଚକ୍ଷୁ ପବିତ୍ର ହେଲା । ଯାହା ଚାହୁଁଥିଲେ, ତାହା

ପାଇଲେ । ନଇଁପଡ଼ିଲା ତାଙ୍କ ମଥା ତାଙ୍କ ଶ୍ରୀଚରଣତଳେ । ମୁଣ୍ଡ ଉଠାଇ ଦେଖନ୍ତି ତ ବାବା ନାହାଁନ୍ତି । ଆମର ରହଣୀସ୍ଥଳକୁ ଫେରିଗଲେ । ଆଖିରେ ଆନନ୍ଦାଶ୍ରୁ । ମନରେ ପୁଲକ । ସର୍ବାଙ୍ଗରେ ଶିହରଣ ।

ତହିଁ ଆରଦିନ ନବମୀ । ଯଥାରୀତି ହୋମାଦି ଚାଲିଥାଏ । ବାବା ଆସିଲେ ଯଜ୍ଞ ସ୍ଥଳକୁ । ବାଟରେ ବସିଥାନ୍ତି ମୋର ସ୍ତ୍ରୀ । ତାଙ୍କ ଶ୍ରୀଚରଣତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସ୍ୱହସ୍ତରେ ବାବା ଉଠେଇନେଲେ ତାଙ୍କୁ । ଦର୍ଶନ ପରେ ରହଣିସ୍ଥାନକୁ ଯିବାକୁ ନିର୍ଦ୍ଦେଶ ଦେଲେ । ଶରତକୁମାରୀ ବୁଝିପାରିଲେ ନାହିଁ । ସ୍ୱେଚ୍ଛାସେବିକାମାନେ ତାଙ୍କୁ ଇଣ୍ଟରଭ୍ୟୁ ହଲକୁ ନେଇଗଲେ । ବାବା ଯଜ୍ଞସ୍ଥଳରୁ ଫେରି ଭକ୍ତମାନଙ୍କୁ Interview ଦେଲେ । ସେମାନଙ୍କର ମନର କଥା ବୁଝିଲେ । ଅରୁବୋଉକୁ ଦୁଇଖଣ୍ଡ ଶାଢ଼ୀ ଦେଲେ । ଖଣ୍ଡେ ତାଙ୍କର ନିଜ ଲାଗି ଏବଂ ଅନ୍ୟ ଖଣ୍ଡେ ଆମର ଭାବୀ କୁଳବଧୂ ପାଇଁ । ଯାହା ପାଇଁ ଆମେ ଅନେକ ପ୍ରତୀକ୍ଷା କରିଥିଲୁ । ସେ ବାବାଙ୍କ ଅପାର କରୁଣାରୁ ଯାହାକୁ ଖୁଜୁଁ ଥିଲୁ, ତାକୁ ବୋହୂ ରୂପେ ପାଇଲୁ । ଏବେ ବି ସେହି ଶାଢ଼ୀ ଦୁଇଖଣ୍ଡକୁ ସଯତ୍ନରେ ରଖା ଯାଇଛୁ ।

ଆଜି ଦଶହରା । ପ୍ରଶାନ୍ତି ପୁଟ୍ଟାପର୍ତ୍ତିର ପ୍ରଶାନ୍ତି ନିଲୟମ୍ ସବୁ ନଡ଼ିଆ ପତ୍ରରେ ଏବଂ ପୁଷ୍ପରେ ଅପୂର୍ବ ଭାବରେ ସଜାସଜି ଚାଲିଥାଏ । ସକାଳେ ତାହାକୁ ଦେଖିଲେ କେହି ଚିହ୍ନିପାରିବେ ନାହିଁ, ଏ ସେହି ପ୍ରଶାନ୍ତି ନିଲୟମ୍ ବୋଲି । ବିଚିତ୍ର ଶୋଭା ସମ୍ଭାରରେ ଭରି ହୋଇଛୁ । ସର୍ବତ୍ର ଉତ୍ସାହ, ଉଦ୍ଦୀପନା । କିନ୍ତୁ ନୀରବତା । ଯିଏ ଯାହାର କାର୍ଯ୍ୟରେ ଲାଗି ପଡ଼ିଥାନ୍ତି । ସମସ୍ତେ କାର୍ଯ୍ୟ ମଗ୍ନ । କିଏ କାହାକୁ ନିର୍ଦ୍ଦେଶ ଦେଉଛି, ଜଣାପଡ଼ୁ ନଥାଏ । ସର୍ବୋପରି ଜଣଙ୍କ ଇଙ୍ଗିତ ଲକ୍ଷ ଲକ୍ଷ ଲୋକଙ୍କୁ ପରିଚାଳିତ କରୁଥାଏ । ପ୍ରତ୍ୟହ ଭୋର ୪ଟାରେ ନଗର ସଙ୍କୀର୍ତ୍ତନ, ହଜାର ହଜାର ନରନାରୀଙ୍କ ସମ୍ମିଳିତ ଧ୍ୱନି ସ୍ଥାନଟିକୁ ଏକ ଅବର୍ଣ୍ଣନୀୟ ପବିତ୍ର ଗୁଞ୍ଜରଣରେ ଭରି ଦେଇଥାଏ । ପ୍ରତ୍ୟେକ ପ୍ରତ୍ୟେକଙ୍କୁ 'ସାଇରାମ୍' କହି ସମ୍ଭାଷଣ କରୁଥାନ୍ତି । ତେଣେ ଚିତ୍ରାବତୀର କ୍ଷୀଣ ସ୍ରୋତରେ ଅସଂଖ୍ୟ ଭକ୍ତ ସ୍ନାନ ସାରି ବାବାଙ୍କ ଭଜନ ମାନ ବୋଲି ମୁକ୍ତ ଆକାଶ ତଳେ ଠିଆ ହେଉଥାନ୍ତି । ଠିକ୍ ଭୋର ୬ଟାରେ ବାବା ଉଦୟାଚଳ ଭାନୁ ଭଳି ଆସି ଲକ୍ଷ ଲକ୍ଷ ଦର୍ଶନାର୍ଥୀଙ୍କୁ ଦର୍ଶନ ଦେଲେ । ଉତ୍କଣ୍ଠିତ ଜନତାର ସମସ୍ତ କୌତୁହଳ, ଦର୍ଶନ ପିପାସା ନିର୍ବାପିତ ହେଲା । ମାତ୍ର ପାଞ୍ଚମିନିଟ୍ ରହି ବାବା ଅପସରିଗଲେ ।

ତା ପରେ ଗୃଳଲା ଯଜ୍ଞ । ହାତୀ ଚନ୍ଦ୍ରାବତୀ ନଦୀକୁ ଗଲା । ଶୁଦ୍ଧ ପୂତ ଜଳ ଏବଂ ମନ୍ତ୍ର ସହିତ ଶୁଭଘଟ ଏକ ବଗ୍ଟ ପଟୁଆରରେ ପ୍ରଶାନ୍ତି ନିଲୟମ୍‌କୁ ଆଗେଇ ଆସିଲେ । ବହୁ ବେଦଜ୍ଞ ବ୍ରାହ୍ମଣ ମନ୍ତ୍ର, ସ୍ତୋତ୍ର ବୋଲୁଥାନ୍ତି । ବାବା ନିଲୟମ୍‌ରୁ ଓହ୍ଲେଇ ଆସିଲେ । ଶୋଭାଯାତ୍ରା ସଭା ମଣ୍ଡପକୁ ଆସିଲା । ଉପରେ ଯଜ୍ଞ ମଣ୍ଡପ, ତଳେ ସଭାସ୍ଥଳୀ । ତିଳ ଧାରଣର ସ୍ଥାନ ନଥାଏ । ଯିଏ ଯେଉଁଠି ବସିଥାଏ । ବାବା ପହଞ୍ଚିବା ମାତ୍ରେ ସମସ୍ତେ ଠିଆ ହୋଇ ଭକ୍ତିପୂତ ପ୍ରଣତି ନିବେଦନ କଲେ । ବାବା ଧୀରେ ଧୀରେ ସଭା ମଣ୍ଡପକୁ ଗଲେ । ପ୍ରଧାନ ଓ ବଗ୍ଟ ଯଜ୍ଞ କୁଣ୍ଡ ନିକଟରେ ଠିଆ ହୋଇ ହସ୍ତ ବୁଲାଇବା ମାତ୍ରେ ବିଭିନ୍ନ ରତ୍ନ ତାଙ୍କ ମୁଠା ମଧ୍ୟକୁ ଆସିଗଲା । ସେ ଯଜ୍ଞକୁ ତାହା ନିକ୍ଷେପ କଲେ । ତାପରେ ଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କ ବେଦୋଚ୍ଚାରଣ ଧ୍ୱନିରେ ସେ ସ୍ଥାନ ମୁଖରିତ ହୋଇ ଉଠିଲା । ବାବା ପୂର୍ଣ୍ଣାହୁତି ଦେଲେ, ବହୁ ସମୟ ଧରି । ତା ପରେ ସିରଡ଼ି ସାଇ ବାବାଙ୍କ ଏକ ପ୍ରତିମୂର୍ତ୍ତି, ତାହା ବୋଧ ହୁଏ କୌଣସି ମୂଲ୍ୟବାନ୍ କାଠରେ ତିଆରି । ଦୂରରେ ଥିବାରୁ ଜାଣି ପାରିଲି ନାହିଁ । ମୂର୍ତ୍ତି ଅଭିଷିକ୍ତ ହେଲେ । ତାଙ୍କ ମୁଣ୍ଡ ଉପରେ ଗୋଟିଏ କାଠର ଖୋଲ କଳସ ଜଣେ ସେବକ ଓଲଟାଇ ଧରିଲେ । ବାବା ତା ମଧ୍ୟରେ ଦୁଇଟି ଆଙ୍ଗୁଠି ଭର୍ତ୍ତି କରି ସଞ୍ଚାଳନ କରିବା ମାତ୍ରେ ତଳକୁ ବିଭୂତିର ଧାର ଛୁଟିଲା । ଗୋଟିଏ ଗୋଟିଏ କୁଣ୍ଡ ପୂର୍ଣ୍ଣ ହୋଇ ଯାଉଥାଏ । ଧନ୍ୟ ସେ ହସ୍ତର କରାମତି ! ଧନ୍ୟ ସେ ବାବାଙ୍କ ବିଭୂତି । ଧନ୍ୟ ସେ ଅବତାରଙ୍କ ଅପୂର୍ବ ଲୀଳା । ସମସ୍ତେ ବିସ୍ମିତ, ଅଭିଭୂତ, ମନ୍ତ୍ରମୁଗ୍ଧ । ମୁଁ ଭାବି ପାରୁ ନ ଥାଏ ଏ ସବୁ କିଣ ହେଉଛି ? କେଉଁଠୁ ଏତେ ବିଭୂତି ଆସୁଛି ? କାବା ହୋଇ ବାବାଙ୍କର ଆଶ୍ଚର୍ଯ୍ୟ ମହିମା ଦେଖୁଥାଏ । ବହୁ ସମୟ ବିଭୂତି ନିର୍ଗତ ହେବା ପରେ ବାବା ଏକ ମୁହାଁ ହୋଇ ପ୍ରଶାନ୍ତି ନିଲୟମ୍‌କୁ ଫେରିଗଲେ । ସନ୍ଧ୍ୟାରେ କବି ସମ୍ମିଳନୀ । ପ୍ରତିଦିନ ଭକ୍ତି ସଙ୍ଗୀତ ଏବଂ ନୃତ୍ୟ ନାଟ୍ୟ ବ୍ୟବସ୍ଥା ହେଉଥିଲା । ସେଦିନ ସନ୍ଧ୍ୟାରେ ବାବା ଶୁଭ୍ର ବସ୍ତ୍ର ପରିଧାନ କରି ଦୋଳରେ ଝୁଲିଲେ । ନାନାଦି ଭଜନ ଓ ବାଦ୍ୟରେ ସେ ସ୍ଥାନ ମୁଖରିତ ହୋଇ ଉଠୁଥାଏ । ବହୁ ଗ୍ରନ୍ଥରେ ଉତ୍ସବ ସାଙ୍ଗ ହେଲା । ବାବାଙ୍କ ଶିରରେ ମୟୂର ଚନ୍ଦ୍ରିକାର ଏକ ଅପୂର୍ବ ମୁକୁଟ ଶୋଭା ପାଉଥାଏ । ହାତରେ ମୁରଲୀ । ବର୍ଷରେ ଏହି ଦିନରେ ବାବା କେବଳ ହିଁ ଶ୍ରୀକୃଷ୍ଣ ବେଶରେ ସଜ୍ଜିତ ହୁଅନ୍ତି ।

ପୁଟପାର୍ତ୍ତିରେ ଆଉ ଦୁଇଟି ଦିନ ରହିଲୁ । ବାହାରେ ଶୋଇବା ଫଳରେ ମୋ ଦେହ ଟିକିଏ ଅସୁସ୍ଥ ହେଲା ।

ଥରେ ବାବାଙ୍କ ଶ୍ରୀଚରଣ ସ୍ପର୍ଶ କରିବା ପାଇଁ ଇଚ୍ଛା ପ୍ରକାଶ କରି କୌଣସି-ମତେ ତାହା ପୂରଣ କରି ପାରିଲି ନାହିଁ । ମନର ଦୁଃଖ ମନରେ ଥାଏ । ହଠାତ୍

ମୋ ମନ ଜାଣିଲା ଭଳି ସକାଳେ ମୋ ପାଖରେ ଆସି ଠିଆ ହୋଇଗଲେ । ନୟନ, ମନ ଓ ହାତ ମୋର ପବିତ୍ର ହେଲା । ସେ ଦିନଟି ଭଲରେ ଭଲରେ କଟିଲା । ବାବାଙ୍କ ଅମୃତମୟ ବାଣୀ ଶୁଣି ଏବଂ ଶ୍ରୀଚରଣ ଦର୍ଶନ କରି ଏ ମନ ପବିତ୍ର ହୋଇଗଲା । ତହିଁ ଆର ଦିନ ୮ଟାରେ ବିଭୂତି ବଣ୍ଟନ ହେଲା । ମୋ ଭାଗ ତିନି ପୁଡିଆ, ଶରତକୁମାରୀଙ୍କ ଭାଗ ଆଞ୍ଜୁଳା ଭରି ପୁଡ଼ିଆ ମିଳିଲା । ହଜାର ହଜାର ଲୋକଙ୍କୁ ବାବା ବିତରଣ କରି ଚାଲିଲେ । ଶୃଙ୍ଖଳିତ ଭାବରେ ଧାଡ଼ି ଧାଡ଼ି ହୋଇ ଲୋକେ ବସିଥାନ୍ତି । ଟିକେ ଶବ୍ଦ ନାହିଁ, ବିଶୃଙ୍ଖଳା ବି ନାହିଁ । ପୁଣି ଯେଉଁ-ବାଟେ ଯାଇଥିଲୁ, ସେହିବାଟେ ହିଁ ଫେରି ଆସିଲୁ । ସେହି ଧରମାବରମ୍, ଗୁଣ୍ଡା-କେରମ, ଗୁଣ୍ଟୁର, ବିଜୟୱାଡ଼ା ଓ କଟକ ।

ପ୍ରଶାନ୍ତି ନିଲୟମ୍ ବିଷୟରେ କିଛି କହିରଖେ । ବର୍ତ୍ତମାନ ତ ତାହାର ଅନେକ ଅଗ୍ରଗତି ହେଲାଣି । କଲେଜ, ଡାକ୍ତରଖାନା, ନିଜର ପର୍ମିଙ୍ଗ ଷ୍ଟେସନ୍ ଓ ଜନବସତି ଇତ୍ୟାଦି । ସେତେବେଳେ ମଧ୍ୟ ବଡ଼ ହୋଟେଲ୍ ଖୋଲାଯାଇଥିଲା । ଗାଧୋଇବାକୁ ଗରମ ପାଣି ପଇସା ଦେଲେ ବାହାରେ ମିଳୁଥିଲା । ପ୍ରଶାନ୍ତି ନିଲୟମ୍‌ର ନିଜର canteen ଅଛି । ଶସ୍ତା ଓ ସୁରୁଚି ପୂର୍ଣ୍ଣ ଖାଦ୍ୟ । ବାହାରେ ଦହି ଓ କ୍ଷୀର ପ୍ରଚୁର ପରିମାଣରେ ମିଳୁଥିଲା । ହୋଟେଲରେ ମଧ୍ୟ ଶସ୍ତା ଦରରେ ଭୋଜନ ମିଳୁଥିଲା ।

ପ୍ରଶାନ୍ତି ନିଲୟମ୍‌ରୁ ଫେରି ବାବାଙ୍କ ଉପରେ ସମସ୍ତ ମନପ୍ରାଣ ଢାଳି-ଦେଲୁ । ଯଥା ଶକ୍ତି ତାଙ୍କର ପୂଜା ଅର୍ଚ୍ଚନାରେ ସମୟ ବିତାଇଲୁ । ମୋ ଅପେକ୍ଷା ମୋ ସ୍ତ୍ରୀଙ୍କର ବାବାଙ୍କ ଉପରେ ଅଖଣ୍ଡ ବିଶ୍ୱାସ ଓ ଅଗାଧ ଭକ୍ତି ।

କଳାବିକାଶ କେନ୍ଦ୍ରରେ ଥିଲାବେଳେ ବାବୁଭାଇଙ୍କ କାନ ଦିନକୁ ଦିନ ଖରାପ ହେବାରେ ଲାଗିଲା । ଭେଲୋର୍‌ରେ ଡଃ. ଦେସ୍‌ମଣ୍ଡଙ୍କ ଚିକିତ୍ସାରେ ରହିଲେ ତାଙ୍କର କାନ ଭଲ ହୋଇଯିବ ବୋଲି କେତେକ ବନ୍ଧୁ କହିବାରୁ ସେ ଭେଲୋର ଯିବାକୁ ରାଜି ହେଲେ । ସଙ୍ଗରେ ମୋତେ ନେଲେ ଓ ତାଙ୍କ ପୁରୁଣା ବିପିନଙ୍କୁ ମଧ୍ୟ । ୧୯୭୩ ଜାନୁଆରୀ ୭ ତାରିଖରେ ଭେଲୋର ଅଭିମୁଖେ ଗଲୁ । ମାନ୍ଦ୍ରାଜରେ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚି ବୃନ୍ଦାବନ ଏକ୍ସପ୍ରେସ୍‌ରେ ଯାଇ କାଠପୋଡ଼ି ଷ୍ଟେସନ୍‌ରେ ଓହ୍ଲାଇ ଭେଲୋର୍ ସହରରେ ପହଞ୍ଚିଲୁ । ହୋଟେଲ ସୁଶୀଲରେ ରହିଲୁ । ରହିବା ଏବଂ ଖାଇବାର ଅତି ଉତ୍ତମ ବ୍ୟବସ୍ଥା ।

ଭେଲୋର ହସ୍‌ପିଟାଲ୍‌ଟି ଖ୍ରୀଷ୍ଟିୟାନ୍ ମିଶନ୍ ଦ୍ୱାରା ପରିଚାଳିତ । ଡାକ୍ତର ନର୍ସ, ବେହେରା ସମସ୍ତେ ଯେପରି ଜଣେ ଜଣେ ଉତ୍ସର୍ଗୀକୃତ ଆତ୍ମା ବୋଲି

ଅନୁଭବ କଲି । ଆମ ଏଠିକା ହସ୍‌ପିଟାଲ ଭଳି ସେଠି ବିନା ପଇସାରେ ଟିକେଟ୍‌ ମିଳେନା । ଟିକେଟ୍‌ଟିଏ କରିବାକୁ ହେଲେ ଦୁଇଟଙ୍କା ଦେଇ ଲାଇନ୍ ଲଗେଇବାକୁ ପଡ଼ିବ । ପ୍ରତ୍ୟେକ ଜିନିଷ ଲାଗି ଟଙ୍କା ଦେବାକୁ ହେବ ସତ; କିନ୍ତୁ ବ୍ୟବସ୍ଥା ଅତି ଶୃଙ୍ଖଳିତ ଓ ସୁରୁଚି ପୂର୍ଣ୍ଣ । ହସ୍‌ପିଟାଲ୍‌ରେ ବାବୁଲାଇଙ୍କ Admission ହେଲା । Dr. Desmond ଅତି ଅଳ୍ପ ସମୟ ମଧ୍ୟରେ ବାବୁଲାଇଙ୍କ କାନକୁ ଅପରେସନ୍ କରିଦେଲେ । Operation Theaterକୁ ଯିବା ପୂର୍ବରୁ ଭଗବାନ ଶ୍ରୀ ଶ୍ରୀ ସତ୍ୟସାଇ ବାବାଙ୍କ ହସ୍ତ ନିର୍ଗତ ବିଭୂତି ତାଙ୍କ ଦେହସାରା ବୋଳିଦେଲି ଏବଂ ଅପରେସନ ସମୟରେ ବାବାଙ୍କ ନାମ ସ୍ମରଣ କରିବା ଲାଗି ପରାମର୍ଶ ଦେଲି । ବାହାରେ ମୁଁ ଓ ବିପିନ୍ ଅପେକ୍ଷା କରିଥାଉଁ । ଅତି ଅଳ୍ପ ସମୟ ମଧ୍ୟରେ ତାଙ୍କ କାନଟି Dr Desmond ଠିକ୍ କରିଦେଲେ । ମୁଁ ମଧ୍ୟ ହସ୍‌ପିଟାଲର ସେହି Cabbineରେ ବାବୁଲାଇଙ୍କ ସହିତ ରହିଲି । ମୋର Blood Presure ଏବଂ ପେଟର ସମସ୍ତ ପରୀକ୍ଷା ହେଲା । ଜାନୁଆରୀ ୧୨ ତାରିଖରୁ ୨୫ ତାରିଖ ପର୍ଯ୍ୟନ୍ତ ଡାକ୍ତରଖାନାରେ ରହିଲୁ । ତାଙ୍କ ଖର୍ଚ୍ଚ ସହିତ ମୋ ଖର୍ଚ୍ଚ ମଧ୍ୟ ସେ ବହନ କଲେ । ଏଇଠି ଥାଇ ସେ ସତ୍ୟସାଇ ବାବାଙ୍କ ଦର୍ଶନ କରିବାକୁ ଇଚ୍ଛା ପ୍ରକାଶ କରି ପୁଟ୍ଟାପର୍ତ୍ତିକୁ Reply Paid Telegram କଲେ । ଖବର ଆସିଲା ଯେ ବାବା Bangalore ସ୍ଥିତ White fieldରେ ଅଛନ୍ତି । ବାବୁଲାଇ ଟିକିଏ ସୁସ୍ଥ ହେବାପରେ ଆମେ ଐତିହାସିକ ସ୍ଥାନ ଟିପୁ ସୁଲ୍‌ତାନଙ୍କ ଦୁର୍ଗ ଦେଖିଲୁ । ତା'ପରେ କାଞ୍ଚିବରମ୍ ଦେଖିବାକୁ ଗଲୁ । ତାହା ଏଠାରୁ ପ୍ରାୟ ୫୦ ମାଇଲ ଦୂର । ଟ୍ୟାକ୍ସି ରିଜର୍ଭ କରି ସେଠାରେ ପହଞ୍ଚିଲୁ । କାଞ୍ଚିବରମ୍‌ରେ ଅନେକ ଦର୍ଶନୀୟ ସ୍ଥାନମାନ ଅଛି । ଶିବ କାଞ୍ଚି, ବିଷ୍ଣୁ କାଞ୍ଚି, କାମାକ୍ଷୀ ଦେବୀଙ୍କ ମନ୍ଦିର, ସୁନା ରୂପାର ଝିଟିପିଟି ଇତ୍ୟାଦି । ବିଷ୍ଣୁ କାଞ୍ଚିର ମଣ୍ଡପ ଦର୍ଶନ ଯୋଗ୍ୟ । କାଞ୍ଚିବରମ୍‌ର ସିଲ୍‌କ ଲୁଗା ଜଗତ ପ୍ରସିଦ୍ଧ ।

ଏଠାରେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ଦର୍ଶନ ମିଳିଲା ।

ଭେଲୋରରୁ ବୃନ୍ଦାବନ ଏକ୍‌ସପ୍ରେସରେ ବାଙ୍ଗାଲୋର ଗଲୁ । ସେଠାରେ ରାତିଟି ରହି ଟ୍ୟାକ୍‌ସି ରିଜର୍ଭ କରି White fieldରେ ପହଞ୍ଚିଲୁ । ଅତି ସୁବିଧାରେ ନିକଟରେ ବାବାଙ୍କ ଦର୍ଶନ ମିଳିଲା । ପାଦ ସ୍ପର୍ଶ କରିବାର ଅପୂର୍ବ ସୁଯୋଗ ପାଇଲୁ । ବାବୁଲାଇ ତ ଗୁଲଜାରୀ ନନ୍ଦା ଓ ତାଙ୍କ ସହିତ ଆସିଥିବା କେତେକ ଗୁଜୁରାଟ ସେଠଙ୍କ ସହିତ ହୁଁ ହାଁ କହି ଗାନ୍ଧୀ ଟୋପୀ ପିନ୍ଧି ବାବାଙ୍କ ପାଖକୁ ଚାଲିଗଲେ, ସେ ଯେଉଁଠି ବସନ୍ତି । କିଛି ସମୟ ସେଠାରେ ରହି ଆମଲାଗି ବାବାଙ୍କ

ପ୍ରଦତ୍ତ ଜଳଖିଆ ଏବଂ ଦୁଇଟି ଛଡ଼ା ଫୁଲହାର ନେଇ ଆସିଲେ । ଫୁଲମାଳ ମୁଣ୍ଡରେ ମାରି, ଜଳଖିଆ ଖାଇ ଧନ୍ୟ ହେଲୁ ।

ଏଠାରେ ଖୁବ୍ ବଡ଼ ଅମୃତଭଣ୍ଡା ମିଳେ, ଅତି ଶସ୍ତାରେ । ପ୍ରାୟ ଗ୍ରୀଷ୍ମ ପାଞ୍ଚ କଲେ ଅମୃତଭଣ୍ଡା ମାତ୍ର ପଞ୍ଚସ୍ତରିପଇସା । ବାଙ୍ଗାଲୋର ଫେରିଲୁ । ଦିନଟିଏ ବିଶ୍ରାମ ନେଇ ସିନେମା ଦେଖିଲୁ । ତହିଁ ଆରଦିନ ସକାଳୁ ନିତ୍ୟକର୍ମସାରି ସମଗ୍ର ସହର ବୁଲିଲୁ । ଅତି ରମଣୀୟ ସ୍ଥାନ । ଦେଖିବାର ଅନେକ କିଛି ଅଛି । ସକାଳେ ପୁଣି ଭେଲୋର ଫେରିଆସି ବାବୁଭାଇଙ୍କର Cheek up କରି ୩୦ ତାରିଖ ଜାନୁୟାରୀରେ ମାଡ୍ରାସ ମେଲ ଯୋଗେ କଟକ ଆସିଲୁ । ଆନ୍ଧ୍ର ସୀମାରେ ସେଠାକାର ଲୋକେ ବାଟମୂଳ ଗାଡ଼ି ଅଟକାଇ ରେଳ ଚଳାଚଳରେ ବ୍ୟାଘାତ ସୃଷ୍ଟି କଲେ । ଯାହାହେଉ ରାତି ୧୦ଟା ୩୦ ମିନିଟରେ ୩ ଘଣ୍ଟା ବିଳମ୍ବରେ ଟ୍ରେନ କଟକ ଷ୍ଟେସନରେ ପହଞ୍ଚିଲା । ଅରୁବୋଉ, ବିନୁ, ସ୍ୱର୍ଣ୍ଣ, ଅରୁ ଷ୍ଟେସନକୁ ଯାଇ ବସି ବସି ଫେରି ଆସିଥିଲେ । ପ୍ରତାପ, କାର୍ତ୍ତିକ ଏବଂ ଲଲ୍‌ସା ଆମ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ ।

କଳାବିକାଶ କେନ୍ଦ୍ରରେ ଥିଲାବେଳେ ମୁଁ ଯେଉଁ ଘରେ ଥିଲି, ସେଠୁ ମୋତେ ତଡ଼ିବା ପାଇଁ ନାନା ଚକ୍ରାନ୍ତ ଚାଲିଲା । କେନ୍ଦ୍ରରେ ଛୁଆ ହୋଇ ପଶି ଶାବଳ ହୋଇ ବାହାରିଥିବା କେତେକ ବାବୁ ଭାଇଙ୍କ ଉପରେ ଆଧିପତ୍ୟ ବିସ୍ତାର କରି ରହିଲେ । କେନ୍ଦ୍ର ଘର ଛାଡ଼ିବାକୁ ଅନେକ ଧମକପୂର୍ଣ୍ଣ ଚିଠି ମୋ ପାଖକୁ ଆସିଲା । କେନ୍ଦ୍ର ଘର ନ ଛାଡ଼ିଲେ ମୋତେ ମାରିଦେବେବୋଲି ଧମକପୂର୍ଣ୍ଣ ବେନାମୀ ଚିଠି ମଧ୍ୟ ପାଇଲି । ସେକ୍ରେଟାରୀଙ୍କୁ କହିଲି । ପ୍ରେସିଡ଼େଣ୍ଟଙ୍କୁ କହିଲି । ଅ ନାରେ ଏତାଲ ଦେଲି । କିନ୍ତୁ କିଛି ହେଲା ନାହିଁ । କେନ୍ଦ୍ରଲାଗି ବୁନ୍ଦା ବୁନ୍ଦା ଲହୁ, ଲହୁ ଦେଇଥିବା ଜଣେ କର୍ମୀଙ୍କୁ ସେଠାରୁ ତଡ଼ିବା ଲାଗି ନାନା ଷଡ଼ଯନ୍ତ୍ର ଚାଲିଲା । ବର୍ଷ ବର୍ଷ ଧରି ଖଟି ଖଟି ନିଜ ହାଡ଼କୁ କେନ୍ଦ୍ର ଲାଗି ଗୁଣ୍ଡ କରି ଆଜି କେତେଜଣଙ୍କର ସ୍ୱାର୍ଥରେ ଶିକାର ହେଲି । ଅନେକ ବନ୍ଧୁ କହନ୍ତି ବଇ ଭାଇ ଓ ବାବୁ ଭାଇ କେନ୍ଦ୍ରର ଉତ୍ସର୍ଗୀକୃତ ଆତ୍ମା । କିନ୍ତୁ ତାର ମର୍ଯ୍ୟାଦା ବୁଝୁଛି କିଏ ? ସ୍ୱାର୍ଥାନ୍ଧ କେନ୍ଦ୍ର ଛାଡ଼ିବା ଲାଗି ମୋତେ ବାଧ୍ୟ କରାଗଲା । ଏପରିକି ବାବୁଭାଇ ଏବଂ ଅରୁବୋଉଙ୍କ ମଧ୍ୟରେ ଏ ଘର ଲାଗି ବଚସା ହେଲା । ଏତେ ବାଦାନୁବାଦ ଭିତରେ ନ ପଶି ଆମେମାନେ କେନ୍ଦ୍ର ଘର ଛାଡ଼ି ତୁଳସୀପୁର ମଠସାହିର ଲକ୍ଷ୍ମୀନାରାୟଣ ନନ୍ଦଙ୍କ ଘରକୁ ଚାଲି ଆସିଲୁ । ଭଲ ଘର, ଭଲ ପରିବାର, ଅଳ୍ପଦିନ ମଧ୍ୟରେ ସେ ଆମର ଅତି ନିକଟ ହୋଇଗଲେ । ପଡ଼ଶାମାନେ ମଧ୍ୟ ଅତି ଭଦ୍ର, ନମ୍ର ଓ ସ୍ନେହପ୍ରବଣ ।

ସେହିଠାରେ ରହି ଦେଉଳ ପାହିର ଗୃହଟିକୁ ନିର୍ମାଣ କଲୁ । ବହୁ ଦିନରୁ ସ୍ନେହ, ଶ୍ରଦ୍ଧା ଓ ମମତା ଢାଳି ଦେଇଥିବା ଆମର ଆଦରଣୀୟା ଓ କଲ୍ୟାଣୀୟା ମା'କୁ ପୁତ୍ରବଧୂ ରୂପେ ପାଇଲୁ । ମନର ବହୁତ ଦିନର କାମନା ପୂର୍ଣ୍ଣ ହେଲା । ଈଶ୍ୱର ଅଭିଷ୍ଟ ସିଦ୍ଧି କଲେ ।

ସେଇଠି ଥାଇ ଆମର ଭବିଷ୍ୟତ ବଂଶଧର ରାଜୁବାବୁକୁ ପାଇଲୁ । ୧୯୭୭ ଜାନୁୟାରି ୮ ତାରିଖ ଭୋରରେ ସେ ଜନ୍ମ ହେଲା । ନାତିଟିକୁ କୋଳରେ ଧରି ଆମ ପ୍ରାଣ ପରିପୂର୍ଣ୍ଣ ହେଲା ।

ନାରଣପୁରର ବନ୍ଧୁ ଅତି ସମ୍ଭ୍ରାନ୍ତ କରଣ ପରିବାରର । କିଶୋରଭାଇ ଓ ଅଭୟ ଭାଇଙ୍କୁ ଆମେ ସମ୍ବନ୍ଧ ରୂପେ ନପାଇ ଭାଇ ରୂପେ ପାଇଲୁ । କିଶୋର ଭାଇ ଆଜି ସ୍ୱର୍ଗରେ । କିନ୍ତୁ ତାଙ୍କଭଳି ବନ୍ଧୁବତ୍ସଳ, ସ୍ନେହୀ, ଆତ୍ମୀୟ ମିଳିବା ବିରଳ । ତାଙ୍କର ଅନାବିଳ ମମତା ଭୁଲି ହେବ ନାହିଁ । ସମ୍ବନ୍ଧ ତ ଆମର ଦେବୋପମ ବ୍ୟକ୍ତି । ଆମ ଦୁଃଖରେ ସେ ଦୁଃଖୀ ଓ ଆମ ସୁଖରେ ସେ ସୁଖୀ । ମୋ ଦେହ ଅସୁସ୍ଥତା ନେଇ ସେ ସର୍ବଦା ଚିନ୍ତିତ ଓ ବ୍ୟଥିତ । ଯେଉଁଠି ଥାଆନ୍ତୁ ପଛେ, ଆମ ପରିବାରର କୁଶଳ ମଙ୍ଗଳ ଜାଣିବା ପାଇଁ ତାଙ୍କର ପ୍ରବଳ ଇଚ୍ଛା । ପିଲାମାନେ ମଧ୍ୟ ସେହିପରି ଭଦ୍ର, ନମ୍ର ଓ ସ୍ନେହଶୀଳ । ଏପରି ବନ୍ଧୁ ପାଇ ଆମେ ଧନ୍ୟ ହୋଇଛୁ ।

ତଣ୍ଡିକୂଳ ସମ୍ପତ୍ତିରୁ ମାୟା ତୁଟିଗଲା । ଯାହାଙ୍କର ପ୍ରବଳ ଉଦ୍ୟମ, ପ୍ରଚେଷ୍ଟା ଓ ତ୍ୟାଗ ଫଳରେ ସେ ସମ୍ପତ୍ତି ରହିଥିଲା, ସେ ଯେତେବେଳେ ନିଜକୁ ଅସହାୟ ମନେ କଲେ, ମୋର, ପୁଅର ଏବଂ ମା'ର ତାକୁ ରଖିବାର ପ୍ରବଳ ଇଚ୍ଛା ଥିଲେ ମଧ୍ୟ ରହିପାରିଲା ନାହିଁ । ସେ ସ୍ଥାନ ଯେତେ ଶୀଘ୍ର ପାରନ୍ତି, ସେତେ ଶୀଘ୍ର ତ୍ୟାଗ କରିବାକୁ ସଙ୍କଳ୍ପ ନେଲେ ଅରୁବୋଉ । ଶ୍ୱଶୁର ଯେଉଁଠାରେ ନିଜର ଶେଷ ନିଶ୍ୱାସ ତ୍ୟାଗ କରିଥିଲେ, ସେହି ଘରଟିକୁ ଅତି ମନୋରମ କରି ସଜାଇଥିଲୁ । ଚାରିଆଡ଼େ ଆମ୍ବ, ନାରକେଳ ଏବଂ ଦେବଦାରୁର କୁଞ୍ଜ । ଶ୍ରେଷ୍ଠ ସ୍ଥାନଟିଏ କିନ୍ତୁ ଅତି ଶାନ୍ତ ଶୁଦ୍ଧ ପରିବେଶ । ଅବଶ୍ୟ କେତେକ ପଡ଼ୋଶୀ ଦୁଷ୍ଟ ପ୍ରକୃତିର ଥିଲେ । କିନ୍ତୁ ଆଖ ପାଖର ବହୁ ଗ୍ରାମର ଲୋକେ ଆମକୁ ଶ୍ରଦ୍ଧାପୂର୍ଣ୍ଣ ଚକ୍ଷୁରେ ଦେଖୁଥିଲେ ଓ ସମସ୍ତେ ଅତି ଭଲ ପାଉଥିଲେ । ସେମାନଙ୍କର ସ୍ନେହର ତୁଳନା ନାହିଁ । ମା' (ବୋହୂ) ମାତ୍ର ସାତୋଟି ଦିନ ଯାଇ ସେ ସ୍ଥାନ ଦେଖି ଅତି ଖୁସି ହୋଇଥିଲା । ଅତି ସୁଲଭ ମୂଲ୍ୟରେ ଆଦରର ବସନ୍ତ ବଗିଚା ଓ ପ୍ରାଣର ପଙ୍କଜ ନିବାସ ଏବଂ ଚାରିବର୍ଷ କାଳ ଲଢ଼ି ଲଢ଼ି ଯେଉଁ ସମ୍ପତ୍ତି ପାଇଥିଲୁ, ଦୀର୍ଘ ୩୦ ବର୍ଷ କାଳ ଯେଉଁଠି କଟାଇ

ଥିଲୁ, ତାର ମାସ୍ଥା ମମତା ୧୯୭୭ ଜୁଲାଇରେ ବିସର୍ଜ୍ଜନ ଦେଇ ସେଇ ୧୯୭୭ ଅଗଷ୍ଟ ୭ ତାରିଖ, ଶ୍ରୀଗୁଣ୍ଡିଚ୍ଚା ଦିନ ସାଇଭବନରେ ରହିଲୁ । କଟକ ସହରରେ ଘର ଖଣ୍ଡିଏ କରି ଆମେ ସୁଖୀ । ତା ପାଖ ଜାଗା ଖଣ୍ଡିକ ମଧ୍ୟ ଅରବିନ୍ଦ ନାଁରେ ମିଳିଲା । ଧୀରେ ଧୀରେ ତାର ଘର ତିଆରି ହୋଇ ୧୯୮୪ ଫେବୃୟାରୀ ୧୯ ତାରିଖରେ ତାର ପ୍ରତିଷ୍ଠା ହେଲା ।

୧୯୭୯ ଅକ୍ଟୋବର ୧୯ ତାରିଖ ଦିବା ୧୨ଟା ୪୫ ମିନିଟରେ ସ୍ନେହମୟୀ ନାତୁଣୀ ଗୁଲୁମା' ଆସିଲା ଆମ କୋଳକୁ । ପୁଅଟିଏ, ଝିଅଟିଏ ବାପା ମାଆଙ୍କର । ନାତି ନାତୁଣୀ ଆମ ଦୁହିଁଙ୍କର । ଈଶ୍ୱର ସେ ଦୁହିଁଙ୍କୁ ଚିର ଆୟୁଷ୍ମାନ ଓ ଆୟୁଷ୍ମତୀ କରନ୍ତୁ, ଏତିକ ମାତ୍ର କାମନା । ଭଗବାନ ଶ୍ରୀ ଶ୍ରୀ ସତ୍ୟସାଇ ବାବାଙ୍କ ଶୁଭାଶିଷ ଧାରା ସେ ଦୁହିଁଙ୍କ ଶିରରେ ଝରିପଡ଼ୁ । ଭାଇଭଉଣୀ ଦିଓଟି ନିରାମୟ ଜୀବନଯାପନ କରନ୍ତୁ, ଏହାହିଁ ବାସନା ।

୧୯୭୯ ମେ ୨୧ ତାରିଖ ଦିନ ୩ ଟାରେ ରୋଗ ଭୋଗି ଭୋଗି ମୃତ୍ୟୁ ସହିତ ଲଢ଼ି ଲଢ଼ି ବାବୁଭାଇଙ୍କ ଧର୍ମପତ୍ନୀ, ଆମର ଅତି ଆଦରଣୀୟା ବେନ୍‌ଜୀ ଆରପୁରକୁ ଚାଲିଗଲେ । ମୁଁ କଣିଆ ଯାଇଥିଲି । ତହିଁ ଆର ଦିନ ଆସି ସଙ୍ଗେ ସଙ୍ଗେ ବାବୁ ଭାଇଙ୍କ ଘରକୁ ମୁଁ ଏବଂ ମୋ ସ୍ତ୍ରୀ ଗଲୁ । ଆମକୁ ଦେଖି ବାବୁଭାଇ ଶୋକର ବେଗ ସମ୍ଭାଳି ପାରିଲେ ନାହିଁ । ବହୁ ସମୟ ପର୍ଯ୍ୟନ୍ତ ଆମ ଦୁହିଁଙ୍କୁ ଧରି କାନ୍ଦିଲେ । ଆମେ ବେନ୍‌ଜୀଙ୍କ ବିଚ୍ଛେଦରେ ମ୍ରିୟମାଣ ହୋଇପଡ଼ିଲୁ । ଆମ ପରିବାରର ସମସ୍ତେ ବଡ଼ ମର୍ମାହତ ହୋଇପଡ଼ିଲେ । ଲୋକନାୟକ ଜୟପ୍ରକାଶ ନାରାୟଣ, ରାମମନୋହର ଲୋହିଆ, ଆଚାର୍ଯ୍ୟ କୃପାଲାନି, ଅରୁଣା ଆସଫ୍ ଅଲ୍ଲୀ, ଅଶୋକ ମେହେଟା, ରାମନନ୍ଦନ ମିଶ୍ର ପ୍ରଭୃତି ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ବେନ୍‌ଜୀ ନିଜ ହାତରେ ରାନ୍ଧି ଖୁଆଇବାର ସୌଭାଗ୍ୟ ଅର୍ଜ୍ଜନ କରିଥିଲେ । ବେନ୍‌ଜୀ ଆଜି ନାହାନ୍ତି । କିନ୍ତୁ ତାଙ୍କର ସ୍ମୃତି ଚିରଦିନ ପାଇଁ ମନରେ ଜାଗରୁକ ହୋଇ ରହିବ ।

ଇତିହାସର ଦୁଇଟି ଅଂଶ ଅଛି । ଗୋଟିଏ ଶାଖା ପ୍ରସାର, ବିସ୍ତାର କରି ଲେଖିବା ଓ ଗ୍ରନ୍ଥିବା, ଅନ୍ୟଟି ଅଲିଖିତ ରଖିବା । ସମସ୍ତେ ତାହା ଜାଣନ୍ତି । କିନ୍ତୁ ପ୍ରକାଶ କରିବାକୁ ତାହା ସାହସ କରନ୍ତିନି । ବହିରେ ପଢ଼ିଛି, ଇତିହାସର ଚରିତ୍ର ଗୁଡ଼ିକ ସତ୍ୟ । କିନ୍ତୁ ଘଟଣାଗୁଡ଼ିକ କେତେକାଂଶରେ ମିଥ୍ୟା । ଉପନ୍ୟାସ ନାଟକର ଚରିତ୍ର ମିଥ୍ୟା । ମୋ ମତରେ ଘଟଣାଗୁଡ଼ିକ କେତେକାଂଶରେ ସତ୍ୟ । କିନ୍ତୁ ଏଥିରେ ଦୁଇଟିଯାକ ନିର୍ଭୁଲ ଏବଂ ସତ୍ୟ । ଚରିତ୍ର ଏବଂ ଘଟଣାର ସମନ୍ୱୟ ରଖିବାକୁ ଯଥାସାଧ୍ୟ ଚେଷ୍ଟା କରିଛି ।

ଯୁଗଯୁଗାନ୍ତରୁ ମଣିଷ ଅଶିବ, ଅନିଷ୍ଟକୁ ଜୟ କରିବାର ଯେଉଁ ସାଧନା କରି ଆସିଛି, ତାର ମୂଳସ୍ୱରୂପ ସେ କ'ଣ ପାଇଛି ? ପ୍ରତିଦିନର ଜୀବନଧାରଣର ସମସ୍ୟା ସମାଧାନ ହୋଇଗଲେ ହୁଏତ ନିଶ୍ଚିନ୍ତରେ ନିଜ ଆତ୍ମାର ଉନ୍ନତି ପାଇଁ ସମୟ ମିଳନ୍ତା । କିନ୍ତୁ ତାହା ହୁଏନା । ଯେଉଁ ମାନଙ୍କର ଜୀବନଧାରଣର ଦୁଶ୍ଚିନ୍ତା ନାହିଁ, ଅନେକ ଅଛି, ଯାହା ଚେଷ୍ଟା କରିବେ ଅନାୟାସରେ ପାଇପାରିବେ—ମୁଁ କହିବି ପ୍ରକୃତରେ ସେମାନେ ନିଃସ୍ୱ । ସବୁ ଥାଇ କିଛି ନାହିଁ । ନିଜ ଉପରେ ନିର୍ଭର ନ କରି ଯିଏ ପର ହାତକୁ ଚାହିଁ ବସନ୍ତି, ପ୍ରକୃତରେ ସେମାନଙ୍କ ପ୍ରତି ଦୟା ହୁଏ । କରୁଣା ଆସେ । ସହାନୁଭୂତିରେ ହୃଦୟ ଭରି ଉଠେ ।

ବେଶୀ ଶିକ୍ଷା ପାଇନି ବୋଲି କୌଣସି ଦିନ ମୋ ମନରେ Inferiority Complex ଆସିନି । ତଥାକଥିତ ଉଚ୍ଚ ଶିକ୍ଷା ପାଇଥିଲେ ହୁଏତ ହାକିମ ହୋଇଥାନ୍ତି । ଯଥେଷ୍ଟ ଅର୍ଥ ରୋଜଗାର କରିଥାନ୍ତି । ଘରଦ୍ୱାର, କୋଠାବାଡ଼ି ପିଟିଥାନ୍ତି । ଗାଡ଼ିରେ ବୁଲୁଥାନ୍ତି । କଳାଧନ ଘରକୁ ଆଣି ଅସୁପ ଆରାମରେ ରହିଥାନ୍ତି । କିନ୍ତୁ ଅଳ୍ପ ପାଠ ପଢ଼ି ଦେଶ ସେବାର ବ୍ରତ ଗ୍ରହଣ କରି ମୁକ୍ତ ଅଙ୍ଗନକୁ ଚାଲିଆସି କେବଳ ଯେ ମନୁଷ୍ୟ ଚିହ୍ନିବାର ଦୁର୍ଲ୍ଲଭ ସୁଯୋଗ ମୁଁ ପାଇଛି ତାହା ନୁହେଁ, କେତେ ଆତ୍ମୀୟ ଆବିଷ୍କାର କରି ଅପାର ଆନନ୍ଦ ମିଳିଛି । ଅପରିଚିତ ଏହି ସଂସାରରେ କୌଣସି ଦିନ ମୁଁ ନିଜକୁ ନିଃସଙ୍ଗ ମନେ କରିନାହିଁ । ପୃଥିବୀର ପାନ୍ଥଶାଳାରେ ବସି ଅତୀତର କେତେକ ସହଯାତ୍ରୀଙ୍କ କଥା ଭାବି ବସେ, ଯେଉଁମାନଙ୍କର ଇତିହାସରେ ନାଁ ଲେଖା ହେବନାହିଁ । ମୋର ମନ Projectରେ ସେ ସବୁ ରିଲ୍ ପରେ ରିଲ୍ ଘୂରିଯାଏ । ତାର ମଧ୍ୟାନ୍ତର ନାହିଁ କି ସମାପ୍ତି ନାହିଁ । ମୋ ହୃଦୟର ଆଲବମ୍‌ରେ ସଯତ୍ନରେ ସାଇତି ରଖିଥିବା ସେ ସ୍ନାପଗୁଡ଼ିକୁ ଦେଖିଲେ ହତଶ୍ରୀ ଶିଥିଳ ସ୍ମୃତି ପୁଣି ନବଜୀବନ ଲଭ କରେ । ମୁଁ ଆତ୍ମହରା ହୁଏ ।

ପ୍ରଥମେ ମୋର ମନେ ପଡ଼ନ୍ତି ସପନ ସେନା । କଟକ ଜିଲ୍ଲା ବିଶୁନପୁର କିଲ୍ଲା ବଳରାମପୁର ଗ୍ରାମର ଏକ ଦରିଦ୍ର କୃଷକ । ଯିଏ କି ସତ୍ୟାଗ୍ରହ ଆନ୍ଦୋଳନରେ ଝାସ ଦେଇଥିଲେ । ଗାନ୍ଧିଜୀଙ୍କର ଆହ୍ୱାନ ତାଙ୍କୁ ଗୃହହରା କଲା । ସେ ନିଜର ସ୍ତ୍ରୀକୁ ଭୁଲିଗଲେ । ପୁଅକୁ ପାଶୋରିଲେ । ବାପ, ଅଜା, ଚଉଦ ପୁରୁଷର ହଳକୁ ଛାଡ଼ି ଓରଣ୍ଡ ଲୁଣ ଚଟାଣକୁ ଧାଇଁଲେ । ପୋଲିସ୍ ତାଙ୍କ ଛାତିରେ ଭାରି ବୁଟ୍ ପିନ୍ଧି ଚଢ଼ିଛନ୍ତି । ମୁଣ୍ଡ ବାଳରେ ଦଉଡ଼ି ଲଗାଇ ଝିଙ୍କିଛନ୍ତି । ବୋରିକିନା ହାଟରେ ଆଖିବୁଜା ମାଡ଼ ମାରିଛନ୍ତି । ମୁହଁରେ ପରିଶ୍ରା ମଧ୍ୟ କରିଛନ୍ତି । କିନ୍ତୁ ତାଙ୍କ ହାତରୁ ଲୁଣ ମୁଠିଏ ଛଡ଼ାଇ ପାରି ନାହାଁନ୍ତି । ଦେଶ ପାଇଁ, ଜାତି ପାଇଁ ସବୁ ଯେ ଉତ୍ସର୍ଗ

କରାଗଲେ । ତାଙ୍କ ସ୍ତ୍ରୀ ଅନାହାରରେ ରହୁଛି । ପୁଅ ଶିକ୍ଷା ପାଇ ନାହିଁ, ନିଜେ ମଧ୍ୟ ଔଷଧ ପଥ୍ୟ ବିନା ଅସହାୟରେ ଆଖି ବୁଜିଛନ୍ତି । ଇତିହାସରେ ସେଭଳି ଲୋକର ନାମ ରହିନାହିଁ କି ରହିବ ନାହିଁ ମଧ୍ୟ । କାରଣ, ସେ ଗରିବ, ନିଃସ୍ୱ, ତା ହାତରେ ଅର୍ଥ ନାହିଁ, ସମ୍ବଳ ନାହିଁ, ସମ୍ବାଦ ପତ୍ର ନାହିଁ, ପରିପ୍ରଚାରର ସାଧନ ନାହିଁ ।

ମାନ ସାମଲ, ସେହି ବଣନପୁରର କାନ୍ଧିଆ କଣରେ ଘର । ହଳ ହଡ଼ା ନାହିଁ । ଗୁଣ୍ଠେ ହେଲେ ଜମି ନାହିଁ । ହରିଜନ । ନାଲିଆ, ଗୁଲଧୁଆ ତିଆରି କଲେ ପେଟ ପୋଷନ୍ତି । ଦିନେ ହାଟରେ ବିକି ନ କଲେ, ପିଲାମାନେ ଉପାସରେ ପଡ଼ି ଗଡ଼ି ମରିବେ । କିନ୍ତୁ ସେ ଏହି ଅସହଯୋଗ ଆନ୍ଦୋଳନକୁ କୁଦି ପଡ଼ିଲେ । ମାଡ଼ ଖାଇଲେ । ଅତ୍ୟାଚାର ସହିଲେ । ପିଲା କୁଟୁମ୍ବଙ୍କୁ ଦାଣ୍ଡରେ ବସାଇ ଜେଲ୍ ଗଲେ । କିନ୍ତୁ ଫେରି ବୁଝିଲେ ନାହିଁ ମୁଁ ଜେଲ୍ ଗଲେ ପିଲା କୁଟୁମ୍ବଙ୍କ ଅବସ୍ଥା କ'ଣ ହେବ । କିନ୍ତୁ ସେଭଳି ଦେଶପ୍ରେମୀର ଏ ସମାଜରେ ସ୍ଥାନ ନାହିଁ । ଅଥଚ ସେମାନଙ୍କୁ ଆଗକୁ ଠେଲି ନେତାମାନେ ନେତୃତ୍ୱ ନେଉଛନ୍ତି । ସେହିମାନଙ୍କ ଡାଳରେ ବସି ଜବରଦସ୍ତ ଖଇ ଉଖୁଡ଼ା ଖାଉଛନ୍ତି ।

ଦାସ ମଲ୍ଲିକ, ଘର ନରସିଂହପୁର, ସେହି ବଣନପୁର କିଲ୍ଲାର । ଚୌକିଦାର ଟୋପି, ଲୁରୁଡା ଫିଙ୍ଗି, ଚାକିରି ଛାଡ଼ି ଜେଲ ଗଲା । ତାହାର ଯାହା କିଛି ଥିଲା, ପୋଲିସ୍ ନେଲା । ତାହାର ଅପରାଧ ହେଉଛି, ପୋଲିସ୍ ସବ-ଇନ୍‌ସପେକ୍ଟରର ସତ୍ୟାଗ୍ରହୀଙ୍କୁ ମାଡ଼ ମାରିବାକୁ ତାଙ୍କୁ ନିର୍ଦ୍ଦେଶ ହେଲା । କିନ୍ତୁ ସେ ନ ମାରିବାରୁ ତାକୁ ମାଡ଼ ହେଲା । ତାକୁ ଚାକିରିରୁ ବହିଷ୍କାର କରାଗଲା । ଦିନ ଦିନ ଧରି ତା'ର ପିଲା କୁଟୁମ୍ବ ଉପାସ ରହିଲେ । ସେ କଥା ବୁଝିବ ବା କିଏ ? ଆନ୍ଦୋଳନ ବେଳର କଥା ଆନ୍ଦୋଳନ ପରକୁ ରହିଲା ନାହିଁ । ଦାସ ମଲ୍ଲିକ ସଙ୍ଗହରା ହେଲା । ଏ ଦେଶ ନୁହେଁ କି ଏ ଦେଶର ଶାସକ, ନେତା କେହି ନୁହେଁ ।

ତା'ପରେ ମନେ ପଡ଼ନ୍ତି ରାଧୁ ମହାପାତ୍ର, କଟକ ସହରର ତେଲେଙ୍ଗା ବଜାର ଛକ ଉପରେ ତାଙ୍କ ଘର । ଘରକୁ ଲାଗି ବିରାଟ ଡେକରାଡ ଦୋକାନ । ସେତେବେଳର ଏକମାତ୍ର ବ୍ୟବସାୟୀ କହିଲେ ଚଳେ । ସ୍ୱାଧୀନତା ଆନ୍ଦୋଳନର ସେ ଜଣେ ପୁରୋଧା ଥିଲେ । ସରକାରଙ୍କ କଠୋର କଟକଣା ସତ୍ତ୍ୱେ ବହୁ ଶହ କର୍ମୀଙ୍କ ଲାଗି ତାଙ୍କ ଦ୍ୱାର ଉନ୍ମୁକ୍ତ ଥିଲା । ତାଙ୍କ ମା' ସ୍ତ୍ରୀ କର୍ମୀମାନଙ୍କୁ ପ୍ରତିଦିନ ରାନ୍ଧିବାଢ଼ି ଖୁଆଉଥିଲେ । ବିଛଣା ପାରି ଦେଉଥିଲେ । କେହି ଅଭାବରେ ପଡ଼ିଲେ ରାଧୁବାବୁ ତାକୁ ଆର୍ଥିକ ସାହାଯ୍ୟ ଦେଉଥିଲେ । ରୋଗଗ୍ରସ୍ତ କର୍ମୀଙ୍କୁ ଔଷଧ ଓ

ପଥ୍ୟ ମଧ୍ୟ ଯୋଗାଉଥିଲେ । ସିଏ ଯାହା ଶୁଣୁଥିଲି, ତାଙ୍କଠୁଁ ପାଉଥିଲି । ନେତାଙ୍କଠୁଁ ଆରମ୍ଭ କରି ବର୍ତ୍ତମାନର ଶହ ଶହ କର୍ମୀଙ୍କ ପର୍ଯ୍ୟନ୍ତ, ମୋଟଉପରେ ଏ ସମସ୍ତ ଦେଶଲାଗି, ଏ ଜାତି ଲାଗି ପରିବାରଟି ଥିଲେ ଏକ ଉତ୍ସର୍ଗୀକୃତ ଆତ୍ମା । ବର୍ଷ ବର୍ଷ ଧରି କଂଗ୍ରେସକୁ ସାହାଯ୍ୟ କରି ତାଙ୍କର ଦୋକାନ ଗଲା । ବ୍ୟବସାୟରେ କ୍ଷତିଗ୍ରସ୍ତ ହେଲେ । ଘର ଉଦ୍ଧ ବନ୍ଧି ହେଲା । ବଡ଼ ପୁଅ ଜେଲରୁ ଫେରି ରୋଗ ଶଯ୍ୟାରେ ପଡ଼ି, ମୃତ୍ୟୁ ମୁଖରେ ପଡ଼ିଲା ଔଷଧ ଓ ଉପଯୁକ୍ତ ପଥ୍ୟ ନ ପାଇ । ସ୍ତ୍ରୀ ଓ ମା ଜଣକ ପରେ ଜଣେ ଇହଲୀଳା ସମ୍ବରଣ କଲେ । ଏ ଦେଶର ସ୍ୱାଧୀନତା ସେମାନେ ଦେଖି ପାରିଲେ ନାହିଁ । ସ୍ୱରାଜ୍ୟର ମଧୁ ସେମାନେ ଚାଖି ପାରିଲେ ନାହିଁ । କିନ୍ତୁ ରାଧୁବାବୁ ରହିଲେ । ତାଙ୍କୁ କ'ଣ ତଥାକଥିତ ନେତାମାନେ ଚହ୍ନିଲେ ? ତାଙ୍କର ପିଲାମାନେ କି ଦୁରବସ୍ଥାରେ ରହିଲେ କେହି କ'ଣ ତାର ସନ୍ଧାନ ନେଲା ? କିନ୍ତୁ ରାଧୁବାବୁ ବହୁତ ଦିନ ଜୀବିତ ଥିଲେ । ଦେଶ ପାଇଁ ସେ ଯାହା କରିଛନ୍ତି, ଯାହା ଦେଇଛନ୍ତି, ସେଥିପାଇଁ ସେ ପୁଲକିତ, ଗୌରବାନ୍ୱିତ । ଦିନେ ହେଲେ ସେ ମନ୍ତ୍ରୀଙ୍କ ନିକଟକୁ ଯାଇନାହାନ୍ତି । ନିଜର ପିଲାମାନଙ୍କ ଲାଗି କିଛି ଗୋଟାଏ କରିବା ଲାଗି ଅନୁରୋଧ କରିନାହାନ୍ତି କି ଗୋଡ଼ ଘୋଷି କାହାରି ପାଖରେ ହାତ ପାତି ଠିଆ ହୋଇ ନାହାନ୍ତି । ବହୁ ଲୋକ ଦେଖିଥିବେ, ପ୍ରତି-ଦିନ ଅପରାହ୍ଣ ଚାରିଟାରେ ଶୁଭ୍ର ଖଦଡ଼ ଧୋତି ଓ ଚଦର ପରିହିତ, ଶୁଭ୍ର କେଶ ଓ ଶୁଭ୍ର ଜଣଧାରୀ ଜଣେ ଲୋକ ଯଷ୍ଟିଧାରା ଭବନକୁ ଯାଆନ୍ତି । ସମସ୍ତଙ୍କ ସହ ହସି ହସି ଗପ କରନ୍ତି । ଅନ୍ଧାର ଘୋଟିଗଲେ ନିଜ କୁଡ଼ିଆକୁ ଫେରିଆସନ୍ତି । ତାଙ୍କୁ ବକ୍ତୃତା ଦେଇ ଆସେ ନାହିଁ, ବାତଚିତ୍ କରି ଆସେ ନାହିଁ । ନୀରବ ସେବକ ଓ ସାଧକ ସେ । ଅନେକ ବୟସ ହୋଇଥିଲେ ମଧ୍ୟ ଦାନ୍ତ ପଡ଼ି ନ ଥିଲା । ଦୃଷ୍ଟିଶକ୍ତି ରହିଥିଲା ଅତୁଟ । ସେଭଳି ଲୋକ ଲାଗି କେହି ଇତିହାସ ଲେଖିବନି କି ଇତି-ହାସରେ ସେଭଳି ଲୋକର ନାଁ ରହିବ ନାହିଁ । ସ୍ୱାଧୀନତା ସଂଗ୍ରାମୀ ଭତ୍ତା ତାଙ୍କ ପିଲାଙ୍କୁ ମିଳି ନାହିଁ କି ମିଳିବ ନାହିଁ । ତାଙ୍କ ପିଲାମାନେ ଆଜି ଦୁଃସ୍ଥ, ଅଭାବଗ୍ରସ୍ତ । ନୀରବ କର୍ମୀ ସେ । କିଛି ଦିନ ପରେ ନୀରବରେ ଆଖି ବୁଜି ଖାନନଗର ମଶାଣିକୁ ଚାଲିଗଲେ । ତାଙ୍କଲାଗି ଶୋକସଭା ହୋଇ ନାହିଁ କି ଖବର କାଗଜରେ ଛବି କମ୍ବା ଜୀବନୀ ପ୍ରକାଶ ପାଇ ନାହିଁ ।

ଆଉ ଜଣେ କର୍ମୀ ସାନନ୍ଦ ବେହେରା ମଧ୍ୟ ମୋ ମନ ତଳେ ଉଙ୍କି ମାରନ୍ତି । ସେହି ତେଲେଙ୍ଗା ବଜାରରେ ତାଙ୍କ ଘର । ଷ୍ଟେଟ ଡାଲିଗୁଡ଼ଲ ଦୋକାନ-ଟିଏ । ପରିବାର ଭରଣପୋଷଣ ଲାଗି ପର୍ଯ୍ୟାପ୍ତ ନହେଲେ ମଧ୍ୟ କୌଣସିମତେ ଚଳି ଯାଆନ୍ତି । ଦ୍ୱାର ଦ୍ୱାର ବୁଲି ଚାନ୍ଦା ମାଗି କଂଗ୍ରେସ ଅଫିସକୁ ଦେବା ତାଙ୍କର

ମୁଖ୍ୟ ଭାର ଥିଲା । ଶଙ୍କରପୁର, ଛତ୍ରବଜାର, ଖାନନଗର ଇତ୍ୟାଦି ଯାଇ ପରିବା ସଂଗ୍ରହ କରି ସେ ସ୍ୱରାଜ ଆଶ୍ରମକୁ ଯୋଗାଉଥିଲେ । ପ୍ରତିଦିନ ଜଣେ କର୍ମୀ ତାଙ୍କ ଘରେ ଖାଉଥିଲେ । ଘିଅ, ମାଛ ଇତ୍ୟାଦି ଖୁଆଇ ସେ କର୍ମୀର ଅର୍ଦ୍ଧଭୋଜନରୁ ପେଟକୁ ପରିପୂର୍ଣ୍ଣ କରି ଦେଉଥିଲେ । ଯେତେବେଳେ ଯାହା ଟଙ୍କା ଦରକାର, ସେ କେଉଁଠୁ ଆଣି ସ୍ୱରାଜ ଆଶ୍ରମକୁ ଯୋଗାଉଥିଲେ । ସେପରି ଏକ ନିଷ୍ଠାପର କର୍ମୀର ମୃତ୍ୟୁରେ କେହିଜଣେ ଦୁଃଖ ପ୍ରକାଶ କଲେ ନାହିଁ କି ଲୁହ ଝାରିଲେ ନାହିଁ । ଶେଷ ଜୀବନ ତାଙ୍କର ଅତି ଦୁଃଖରେ ଗଲା । କୁଷ୍ଠ ରୋଗାକ୍ରାନ୍ତ ହୋଇ ସେ ମରଣକୁ ବରଣ କଲେ । ଏ ଦେଶର ତଥାକଥିତ ସ୍ୱାଧୀନତା ଯାହା ଦିନେ ତାଙ୍କର ସ୍ୱପ୍ନ ଥିଲା, ତାହା ଦେଖିପାରିଲେ ନାହିଁ । ବଣ ମାଲତୀ ବଣରେ ହିଁ ଝରି ପଡ଼ିଲେ ।

ତାପରେ ମନେପଡ଼ନ୍ତି ଦାଶରଥୀ ବେହେରା । ପକ୍ୱ କେଶ, ପକ୍ୱ ଶ୍ମଶ୍ରୁଧାରୀ ଜଣେ ନୀରବ, ନିସ୍ୱାର୍ଥପର ଏକନିଷ୍ଠ କର୍ମୀ । ସେ କି ସବୁ କରି, ସବୁ ଗଢ଼ି, ମୁଣ୍ଡ ଝାଳ ତୁଣ୍ଡରେ ମାରି ବଡ଼ ବଡ଼ ଅନୁଷ୍ଠାନ ତିଆରି କରି ସବୁଥିରୁ ବଞ୍ଚିତ, ଅବହେଳିତ । ତାଙ୍କର ପରିଶ୍ରମର ମୂଲ୍ୟ କେହି ଦେଇନାହିଁ । ତାଙ୍କର ସ୍ୱାର୍ଥଶୂନ୍ୟ ସେବାର ମହାନ୍ତି କେହି ବୁଝି ନାହିଁ । ଜଗନ୍ନାଥ ଲେଙ୍କା ଦେଉଳକୁ ଏକ ସୁରୁଚିପୂର୍ଣ୍ଣ ମନ୍ଦିର କଲେ ସେ । ମନ୍ଦିରରେ କେତେଗୁଡ଼ିଏ ସ୍ଥାୟୀ ଓ ଅସ୍ଥାୟୀ ଭଡ଼ା ଘର ଭିକ୍ଷା କରି ନିର୍ମାଣ କଲେ । କିନ୍ତୁ ସେଥିରୁ ତାଙ୍କୁ କେତେକ ସୁବିଧାବାଦୀ ତଡ଼ିଦେଲେ । ସ୍ୱରାଜ ଆଶ୍ରମ (କଟକ କଂଗ୍ରେସ୍ ଅଫିସ୍) ତାଙ୍କର ଖଟଣି ଫଳରେ ନବକଳେବର ଧାରଣ କଲା । ନାନା ରଙ୍ଗର ଫୁଲ ଫଳରେ ତାହା ହସି ଉଠିଲା । କିନ୍ତୁ ଫଳ ଭୋଗ କଲେ ପରାଙ୍ଗପୁଷ୍ଟଦଳ । ଦାଶରଥି ବେହେରାର ସେଠି ନାମ ଗନ୍ଧ ରହିଲା ନାହିଁ । ଟ୍ରେଟ ଘରଟିଏ ମଧ୍ୟ ତାକୁ ରହିବାକୁ ଦିଆଗଲା ନାହିଁ । ସେ ହେଲେ ଉପେକ୍ଷିତ, ପରିତ୍ୟକ୍ତ ।

କଳାବିକାଶ କେନ୍ଦ୍ରର ପ୍ରତି ଇଟା ଝିଣ୍ଟିରେ ଦାଶରଥି ବାବୁଙ୍କ ସ୍ନେହର ପରଶ ଲାଗିଛି । ସେ ଯଦି କଠୋର ଶ୍ରମ କରି ନ ଥାନ୍ତେ, ଦିନ ଦିନ ଧରି ନିଃସ୍ୱାର୍ଥପର ଭାବରେ ଖଟି ନ ଥାନ୍ତେ, ତେବେ ଆଜି ଯେଉଁପରି ଭାବରେ କଳା-ବିକାଶ କେନ୍ଦ୍ର ଦେଖୁଛେ ଦେଖିପାରି ନ ଥାନ୍ତେ । କଳା ହିଁ କଳା ପରଦାରେ ରହି ଯାଇଥାଆନ୍ତା । ବିକାଶ ଅନ୍ୟତ୍ର ବିଳମ୍ବ ହୋଇଥାନ୍ତା । କଳା ବିକାଶ କେନ୍ଦ୍ରର ଜନ୍ମଦାତା ଦୁଇଜଣଙ୍କୁ (ବାବୁ ଭାଇ ଓ ମୋତେ) ବାଦ ଦେଇ ଯେଉଁ ନୂତନ କର୍ମ-କର୍ତ୍ତା ଆସିଲେ, ସେମାନେ ଦାଶରଥି ବାବୁଙ୍କୁ ପଚାରିଲେ ନାହିଁ । ଏକ ମହାନ କର୍ମୀର କର୍ମର ମୂଲ୍ୟ ତାଙ୍କ ନିକଟରେ ଗୌଣ ହେଲା । କଳାବିକାଶ କେନ୍ଦ୍ରରୁ

ଅଣିତପର ବୃଦ୍ଧ ଅତି ମର୍ମବ୍ୟଥା ନେଇ ବିଦାୟ ନେଲେ । ତାଙ୍କର କୁଡ଼ିଆ ଖଣ୍ଡିକ ଭାଙ୍ଗି ପଡ଼ିଥିଲା । ତ୍ରିଶ ଜୀବନ ବିତାଉଥିବା ଏକ ନୀରବ ସାଧକଙ୍କୁ କେହି ଚିହ୍ନି ପାରିଲେ ନାହିଁ । କେନ୍ଦ୍ରର ପିଲାମାନଙ୍କ ପ୍ରତି ତାଙ୍କର କି ସ୍ୱର୍ଗୀୟ ମମତା ! ଯିଏ ଦେଖିଛି, ସେ ଅଭିଭୂତ ହୋଇଛି । ବୃଦ୍ଧ ହେଲେ ମଧ୍ୟ ତାଙ୍କଠାରେ ତରୁଣର ତେଜ ଥିଲା । କିନ୍ତୁ ହାୟରେ ଦେଶ ! ତାଙ୍କୁ କେହି ତାଙ୍କର ଶେଷ ଜୀବନରେ ପଚାରିଲେ ନାହିଁ କିମ୍ବା ତାଙ୍କୁ ମର୍ଯ୍ୟାଦା ଦିଆଗଲା ନାହିଁ ।

ତାପରେ ମନେ ପଡ଼ନ୍ତି ଗୋବିନ୍ଦଭାଇ । ସ୍ୱାଧୀନତା ସଂଗ୍ରାମୀ, ମୁକ୍ତିଯୋଦ୍ଧା, ଲବଣ ସତ୍ୟାଗ୍ରହୀ, ଗୋବିନ୍ଦ ଚନ୍ଦ୍ର ଦାସଙ୍କ ଉଦାତ୍ତ କଣ୍ଠ ଆଜି ନୀରବ ଓ ନିସ୍ପନ୍ଦ— ଯାହାର ଜାତୀୟ ସଙ୍ଗୀତର ଅପୂର୍ବ ତାନ ହଜାର ହଜାର ଲୋକଙ୍କୁ ଉତ୍ତେଜିତ କରୁଥିଲା, ଉଦ୍‌ବେଳିତ କରୁଥିଲା, ହୃଦୟର ପ୍ରତି ତନ୍ତ୍ରେ ତନ୍ତ୍ରେ ଝଙ୍କୃତ ହେଉଥିଲା, ଗତ ୧୯୮୪ ଅଗଷ୍ଟ ୫ ତାରିଖ ଦିନ ଠାରୁ ତାହା ବନ୍ଦ୍ ହୋଇଗଲା । ସେ ସ୍ୱରୂପ ଆଉ କେହି ଦେଖିବେ ନାହିଁ, କି ସେ ସ୍ୱର ଆଉ କେହି ଶୁଣିବେ ନାହିଁ ।

୧୯୩୦ ମସିହା ମେ ମାସର କଥା ଆଜି ଆଖି ଆଗରେ ନାଚି ଯାଉଛି । କଂଗ୍ରେସର ଶୋଭାଯାତ୍ରା ଚାଲିଥାଏ ବାଲିକୁଦା ହାଟ ଦେଇ ବାଲିସାହି ଦୋଳ ମେଲଣ ପଡ଼ିଆକୁ । ସେଠି ସଭା ହେବ । ଆଗରେ ରମାଦେବୀ, ତାଙ୍କ ସହିତ ଚାଲିଥାନ୍ତି ଝିଅ ଅନ୍ନପୂର୍ଣ୍ଣା । ପଛରେ ବିପୁଳ ଜନତାର ବିରାଟ ସମାବେଶ । ନାଲି ଆରପଟ ଡାକ ବଙ୍ଗଳାରେ ଥାନାଯାକର ଚଉକିଆ, ଦଫାଦାର, ଜମିଦାର, ୟୁନିୟନ୍ ପ୍ରେସିଡ଼େଣ୍ଟ ଏବଂ ପୋଲିସ୍‌ମାନଙ୍କୁ ନେଇ ଡେପୁଟି ମାଧବମିଶ୍ର ଏ ସଭା ଭଣ୍ଡୁର କରିବା ପାଇଁ ଗୋଟିପିଲା ନଚାଉଥାନ୍ତି । ହାର୍‌ମୋନିୟମ୍ ବାଜୁଥାଏ । ଢୋଲକ ପିଟା ଚାଲିଥାଏ । ଠିକ୍ ଡାକବଙ୍ଗଳା ସିଧା ପହଁଚିଲେ ହେବାକ୍ଷଣି ଗୋବିନ୍ଦ ଭାଇ ଗାଇ ଉଠିଲେ:—

"ଉଠ ବିଦ୍ରୋହୀ, ଉଠ ସୈନିକ
ଉଠ ରଣନାଶି ରଣ ସେବକ ।
ମୁକ୍ତ କଣ୍ଠେ ଗାଅ ହେ ଆଜି ସ୍ୱାଧୀନ ଦେଶ ଯୁବକ ॥ ପଦ ॥

ସୁପ୍ତ ସିଂହ ଜାଗ୍ରତ ଆଜି
ଅଳସ ତନ୍ଦ୍ରା ଯାଇଅଛି ଭାଜି
ଅତ୍ୟାଚାରୀର ମାନସ ରାଜ୍ୟେ ଆଣିଅଛି ଭୀମ ଚମକ ॥ ୧ ॥

ସେତେବେଳେ ମାଇକ୍ ନ ଥିଲା । ସେହି କଣ୍ଠ, ସେହି ସ୍ୱର ନାଳରେ ତରଙ୍ଗ ତୋଳିଲା । ମୁଖରିତ ହେଲା ସମସ୍ତ ଗ୍ରାମ । ପ୍ରତିଧ୍ୱନିତ ହେଲା ଡାକବଙ୍ଗଳାର ପ୍ରତି କୋଠରୀ । ଗୋଟିପିଲା ନାଚ ବନ୍ଦ୍ । କୌତୂହଳୀ ହୋଇ ଚଉକିଆ, ଦଫାଦାର, ଦେଖଣାହାରୀ ସମସ୍ତେ ଗୁଲିଲେ ପଟୁଆର ଆଡ଼କୁ । ଗୀତ ବୋଲି ଗୁଲିଥାଆନ୍ତି ଗୋବିନ୍ଦଭାଇ । ତାର ବିରାମ ନାହିଁ କି ବିରତି ନାହିଁ । ଲୋକେ ମନ୍ତ୍ରମୁଗ୍ଧ । ମାଧବ ମିଶ୍ର ଗୋଟିଏ ଚେୟାରରେ ଏକୁଟିଆ ବସି କାବା ହୋଇ ଶୁଣୁଥାଆନ୍ତି ଜାତୀୟ ସଙ୍ଗୀତମାନ ।

ସେଇ ଗୋବିନ୍ଦ ଭାଇ ନଈ ବାଲିରେ ଗୀତ ବୋଲି ଅଢ଼େଇ ବର୍ଷ ଜେଲ ଗଲେ । ଶ୍ରୀ ମହ୍‌କେଣ୍ଟିଅରସ୍ ଭଳି ତିନିଜଣ ସଶ୍ରାମୀ ଯୋଦ୍ଧା ଥିଲେ—ଗୋବିନ୍ଦଚନ୍ଦ୍ର ଦାସ, ହରେକୃଷ୍ଣ ବିଶ୍ୱାଳ ଓ ଷାରଦର ଦାସ । ଲୁଣମରା, ପିକେଟିଂ, ପଟୁଆର, ସଭା ଯେଉଁଠି ଗୋବିନ୍ଦ ଭାଇ ସେଇଠି ।

ବନ୍ୟା ହେଲା ୧୯୩୩ରେ । ବାଲିକୁଦା, ହରିପୁର, ବଣ୍ଡନ୍ପୁରର ଏକ ବିସ୍ତୃତ ଅଞ୍ଚଳ ଜଳପ୍ଲାବିତ ହେଲା । ଗୀତ ବୋଲି ଗାଁ ଗାଁରେ ବୁଲି ଚନ୍ଦା ଆଦାୟ କରି ଦୁଃସ୍ଥ ଲୋକଙ୍କୁ ବାଣ୍ଟିଲେ ଗୋବିନ୍ଦଭାଇ ଓ ତାଙ୍କ ସାଥୀମାନେ ।

ତାଙ୍କର ଅସୀମ ତ୍ୟାଗ ଫଳରେ ବାଲିକୁଦା ଥାନାରେ ସେ ହେଲେ ଜିଲ୍ଲା ବୋର୍ଡ଼ର ସଭ୍ୟ । ଏମିତି ଅନେକ କଥା । ଲୋକମାନେ ହାତରୁ ଖାଇ ତାଙ୍କୁ ଭୋଟ୍ ଦେଇଗଲେ । ହରିଜନ ଆନ୍ଦୋଳନ, ଉତ୍କଳ ସମ୍ମିଳନୀ, ପୁରୀରେ ସର୍ବୋଦୟ ସମ୍ମିଳନୀ ସବୁଠାରେ ଗୋବିନ୍ଦଭାଇ ଜଣେ କର୍ମକର୍ତ୍ତା । ପୁରୀର ସର୍ବୋଦୟ ମେଳାରେ ସେ ଯେପରି ସେବେ ଖଟିଛନ୍ତି, ତାର ପଟାନ୍ତର ନାହିଁ । ଏମିତି ଅନେକ କଥା ।

୧୯୪୨ ଭାରତ ଛାଡ଼ ଆନ୍ଦୋଳନ ବେଳେ ସେ ବ୍ରହ୍ମପୁର ଜେଲ୍‌ରେ ରାଜବନ୍ଦୀ ରୂପେ ଥାଆନ୍ତି । ଖବର ଆସିଲା ସ୍ତ୍ରୀ ମୃତ୍ୟୁ ଶଯ୍ୟାରେ । ଅନେକ ପରାମର୍ଶ ଦେଲେ ପ୍ୟାରୋଲରେ ଯାଇ ଟିକିଏ ରୁଗ୍‌ଣା ପତ୍ନୀଙ୍କୁ ଦେଖିଆସ । କିନ୍ତୁ ସେ ଗଲେନାହିଁ । ସ୍ପଷ୍ଟ ମନା କରିଦେଲେ । କିଛିଦିନ ପରେ ପୁଣି ସମ୍ବାଦ ଆସିଲା, ସ୍ୱାମୀ ବିରହ କାତରା ପତ୍ନୀ ତାଙ୍କ ଆସିବା ପଥ ଚାହିଁ ଚାହିଁ ଚିର ଦିନ ପାଇଁ ଆଖି ବୁଜିଲେ । ଘରେ ଛୋଟ ଛୋଟ ପିଲା, ବୃଦ୍ଧ ପିତାମାତା, ନିଅଣ୍ଟିଆ ସଂସାର । ଘରର ଅନେକ ଜିନିଷ ଆଗରୁ ସରକାର ନିଲାମ କରିଥିଲେ । କିନ୍ତୁ ଗୋବିନ୍ଦଭାଇ ନିର୍ବିକାର, ନିର୍ଲୋଭ । କହିଲେ ଲକ୍ଷ୍ୟଟ ନାୟକ ତ ଆମ ଆଖି ଆଗରେ ଦେଶର

ଘଣ ପାଇଁ ଫାଶୀ ପାଇଲା । ତାଠାରୁ ଏ ତ ବଡ଼ କୁହେଁ । ତା ଛଡ଼ା ସେ ସ୍ନେହ, ବନ୍ଧୁବତ୍ସଳ ଥିଲେ ।

ଗତ କେତେ ବର୍ଷ ହେଲା ସେ ଶ୍ୱାସ ରୋଗରେ ପୀଡ଼ିତ ଥିଲେ । ଜାଣି-ପାରିଲେ ମୃତ୍ୟୁ ଆସୀନ । ଜନ୍ମମାଟି ତାଙ୍କୁ ହାତ ଠାରି ଡାକିଲା, ଯେଉଁଠି ତାଙ୍କର ଅଗ୍ନିଢ଼ଶାଳ, ଯେଉଁଠି ସେ ଧୂଳିଘର କରି ଖେଳି, ବଢ଼ି, ପଢ଼ି ଲେଖିଥିଲେ । ଗୋପବନ୍ଧୁଙ୍କ ଖ୍ୱପାରେ—ପୂର୍ବ ପୁରୁଷଙ୍କ ପବିତ୍ର ଶ୍ମଶାନରେ ତାଙ୍କର ଯୁଇ ଜଳି ଉଠିଲା । ତାଙ୍କ ଅସ୍ଥି ପାଉଁଶ ସହିତ ପୂର୍ବ ପୁରୁଷଙ୍କ ଅସ୍ଥି ସହ ମିଶିଗଲା ।

୭୯ ବର୍ଷ ବୟସରେ ସେ ଚାଲିଗଲେ । ଏପରି ଜଣେ ସଂଗ୍ରାମୀଙ୍କ ପାଇଁ ତାଙ୍କର କେତେ ଜଣ ସଂଗ୍ରାମୀ ବନ୍ଧୁଙ୍କ ଛଡ଼ା ଆଉ କେହି ଲୋତକପାତ କଲେ ନାହିଁ । ଶୋକ ସଭାଟିଏ ମଧ୍ୟ କେଉଁଠି ହେଲା ନାହିଁ । ସମ୍ବାଦ ପତ୍ରରେ ମାସକ ପରେ ତାଙ୍କର ମୃତ୍ୟୁ ସମ୍ବାଦ ପ୍ରକାଶ ପାଇଲା । ଆକାଶବାଣୀକୁ ଖବର ଗଲେ ମଧ୍ୟ ତାହା ଘୋଷିତ ହେଲା ନାହିଁ । ଏଇ ତ ଆମ ଦେଶ ! ଏଇ ତ ଆମ ଜାତି !

ସେହିପରି ନଟିଆଇ, ବାବା ଆନନ୍ଦ ସ୍ୱରୂପ, ଶାମ ପ୍ରଧାନ, ସିଦ୍ଧେଶ୍ୱର ସାହୁ, ଲକ୍ଷ୍ମଣ ସାହୁ ପ୍ରଭୃତି ସ୍ୱାଧୀନତା ସଂଗ୍ରାମୀ ଅଭାବ ଅନଟନର ସମ୍ମୁଖୀନ ହୋଇ ଗୋଟିଏ ପରେ ଗୋଟିଏ ଚାଲି ପଡ଼ୁଛନ୍ତି । ତାଙ୍କର ପିଲାମାନେ ଯେ ଅଙ୍କ କ ଅବସ୍ଥାରେ ଅଛନ୍ତି, କେହି ତା'ର ଖବର ରଖିଲାନି । ସ୍ୱାଧୀନତା ସଂଗ୍ରାମୀ ସୈନିକ ସମ୍ମାନ ଭତ୍ତା ତାଙ୍କ ଜୀବଦ୍ଦଶାରେ ସେମାନେ ପାଇଲେ ନାହିଁ, ତାଙ୍କ ପରେ ତାଙ୍କ ପିଲାମାନେ ମଧ୍ୟ ସେଥିରୁ ବଞ୍ଚିତ ହେଲେ । ଯିଏ ତାର ଉଦ୍ୟମ କଲା, ତା ବିରୁଦ୍ଧରେ ମଧ୍ୟ ଲୋକ ଲାଗିବାର ଅଭାବ ରହିଲେ ନାହିଁ ।

ତା ପରେ ବେଲ ଅପା ମୋର ମନେ ପଡ଼ନ୍ତି । ୧୯୩୭ ଶେଷ ଆଡ଼କୁ ଭାରତ ଭ୍ରମଣରୁ ଫେରିଲି ଏ କଥା ମୁଁ ଆଗରୁ କହି ସାରିଛି । ଥରେ ଗୋପବନ୍ଧୁ ଚୌଧୁରୀ ଏଠାକାର କର୍ମୀମାନଙ୍କ ସହିତ ତେଲଙ୍ଗ ସମ୍ମିଳନୀ ନେଇ ପ୍ରାଥମିକ ଆଲୋଚନା କରିବାକୁ ଆମ ଅଞ୍ଚଳକୁ ଆସିଥିଲେ । ସେ ଆସିବେ ବୋଲି ଆମେ ଗୋଟିଏ ସ୍ଥାନରେ ପୂର୍ବରୁ ସମବେତ ହୋଇଥାଉ । ଆଲୋଚନା ପରେ ସେ ମୋତେ ଅନେକ କଥା ପଚାରିଲେ ଏବଂ ବାରି ଯାଇ କୌଣସି ଏକ ରଚନାତ୍ମକ କାର୍ଯ୍ୟ ଯଥା—ସୂତା କଟା, ଲୁଗା ବୁଣା, ମହୁମାଛି ପାଳନ, ତାଳଗୁଡ଼ ତିଆରି ଇତ୍ୟାଦି ଶିଖିବାକୁ ପରାମର୍ଶ ଦେଲେ । ମୁଁ ତ ବେକାର ହୋଇ ଘରେ ବସିଥିଲି, ସହର୍ଷରେ ସ୍ୱୀକାର କଲି । ପନ୍ଦର ଦିନ ମଧ୍ୟରେ ଯାଇ ପହଞ୍ଚିବ ବୋଲି ଗୋପବାବୁଙ୍କୁ ସମ୍ମତି ପ୍ରଦାନ କଲି ।

ରାତି କେତେ ଅଛି କେଜାଣି ଜାଣି ନ ପାରି ହଠାତ୍ ଉଠି ପଡ଼ିଲି । ସେତେବେଳକୁ ଜଗସିଂପୁର ଦଶ ନମ୍ବରରେ ବସ୍ ମିଳୁଥାଏ । ମାର୍ଚ୍ଚ ସରସର ଯାଉଥାଏ, ଏପ୍ରେଲ୍ ଛୁଇଁ ଛୁଇଁ ଆସୁଥାଏ । କୋଇଲି କୁମ୍ଭାଟୁଆ ଡାକରେ ନିଦ ଭାଙ୍ଗିଗଲା । ନିତ୍ୟକର୍ମ ସାରି ଲୁଗାପଟା ବାନ୍ଧି ବୋଉକୁ ମୁଣ୍ଡିଆମାରି, ଆମ ଗ୍ରାମ୍ୟ ଦେବତା ଶ୍ରୀ ଶ୍ରୀ ଗଦାଧର ମହାପ୍ରଭୁଙ୍କୁ ପ୍ରଣତି ଜଣାଇ ବାହାରି ପଡ଼ିଲି । ଆକାଶରେ ଖଣ୍ଡେ ଖଣ୍ଡେ ବଉଦ ଭାସିଯାଉଥାଏ । ତୋଫା ଜହ୍ନ । କୁଆଁ ତାରା ଉଠିଲାଣି କିନ୍ତୁ ରାତି ପାହୁ ନ ଥାଏ । ମନରେ ସାହସ ବାନ୍ଧି ଚାଲିଥାଏ । ଯେଉଁଠି "ବାଘର ଡର ସେଇଠି ସଞ୍ଜ ହେଲା" ବୋଲି କୁହା ଶୁଣା କଥା । ଡେଙ୍ଗାପୋଲ ପାଖରେ ପହଞ୍ଚିଲା କ୍ଷଣି ମୋ ଛାତିରେ ଛନକା ପଶିଲା । ଏ ପୋଲ ଟପିବି କିମିତି ? ଏଠିତ ପଠାଣ ସଇତାନର ଡର । ଲୋକେ କୁହନ୍ତି, ସଇତାନ ଗାଡ଼ି ଓଲଟାଇ ପକାଏ, ବେଣ୍ଟି ଚିପିଦିଏ, ଏମିତି କେତେ କଣ ।

ପୁଣି ମନରେ ସାହସ ବାନ୍ଧି ଆଗେଇଲି । ଭାବିଲି ପଦବ୍ରଜରେ ସମଗ୍ର ଭାରତ ଯିଏ ବୁଲିଛି ତା ମନରେ ପୁଣି ଭୂତର ଡର ? ଏକ ଅଶରୀରୀ ଆତ୍ମାପ୍ରତି ଏତେ କାତରତା, ଏତେ ଦୁର୍ବଳତା, ଯାହାହେବ ତାହା ସବୁ ମୁକାବିଲା କରିବାକୁ ପଡ଼ିବ । ଠିକ୍ ପୋଲର ପାଦ ଦେଶରେ ଦେଖିଲି, ଚାରି ପାଞ୍ଚଖଣ୍ଡ ବଳଦ ଗାଡ଼ି ମୋ ଆଡ଼କୁ ଆସୁଛନ୍ତି । ମନର ସବୁ ଭୟ, ଆଶଙ୍କା ପଛକୁ ପକାଇ ପାଦ ବଢ଼ାଇଲି । ଉହ ସାହିରେ ଭୋର ହେଲା । ଈଶ୍ୱରଙ୍କ କୃପାରୁ ଖଣ୍ଡେ ବସ୍ ସେଠାରେ ଥିଲା । ତାକୁ "ଡଆସିଳ ପେଡ଼ି" ବୋଲି ଲୋକେ କହୁଥିଲେ । ନିର୍ଦ୍ଦିଷ୍ଟ ସମୟରେ ବସ୍‌ରେ ବସି କଟକ ଷ୍ଟେସନ୍‌ରେ ପହଞ୍ଚିଲି । ଟ୍ରେନ୍‌ରେ ହରିଦାସ ପୁର । ସେଠି ଓହ୍ଲାଇ ଟିକେ ଜଳଖିଆ ଖାଇ ନେଉଳପୁର, କାଏମା ହାଟ ଦେଇ କୋଠ ପୁର ପାଖେ ବ୍ରାହ୍ମଣୀ ନଦୀ ପାର ହେଲି । ଅଳ୍ପ ପାଣି, ତରତର ହୋଇ ବହି ଯାଉଥାଏ । ପୁଡ଼ା ପୁଟୁଳି ରଖି ମୁହଁ ହାତ ଧୋଇ ପେଟଭରି ପାଣି ପିଇଲି । ଆହା ! କି ସ୍ୱାଦ, କି ତୃପ୍ତି କି ଆନନ୍ଦ । ବହୁଦିନ ପରେ ଚଳନ୍ତା ନଦୀର ଜଳ ଅଞ୍ଜୁଳାରେ ପାନକରି ପରମ ସନ୍ତୁଷ୍ଟି ଲଭ କଲି । ନଈ ପାରି ହୋଇ ବାଲିରେ ଚାଲି ଚାଲି ଗୋଟିଏ ଆମ୍ବ ତୋଟା ପାଖରେ ପହଞ୍ଚିଛି ଦେଖିଲି ଚାରି ପାଞ୍ଚଜଣ ଗ୍ରାମ୍ୟ ବାଳା ଭୋଗ ଡାଲା ନେଇ ଆସୁଛନ୍ତି । ବୋଧହୁଏ କୌଣସି ଦେବତାଙ୍କ ପାଖକୁ ଯାଇଥିଲେ । ସମସ୍ତଙ୍କ ଆଗରେ ଯେଉଁ ଝିଅଟି ଥାଏ ତାକୁ ମୁଁ ଚାହିଁ ପାରିଲି ନାହିଁ । ଗାଉଁଲି ଝିଅଟିଏ କିନ୍ତୁ ଏତେ ରୂପ, ଏତେ ସୁଷମା, ଅବୟବ ଗଠନରେ ଏତେ ମାଧୁରିମା ? କେଶ ଲମ୍ବି ଆସିଛି ନିତମ୍ବ ଶେଷ ପର୍ଯ୍ୟନ୍ତ । ଘନ ଉରଜ ।

ସ୍ବହାଣୀରେ ମୋହନ ଶକ୍ତି । ତାର ସମସ୍ତ ଅପୂର୍ବ । ବହୁସ୍ଥାନ ବୁଲିଛି । ବହୁ ଝିଅ ବୋହୂଙ୍କୁ ଦେଖିଛି । ବିଭିନ୍ନ ପ୍ରାନ୍ତର, ଜାତିର, ସମ୍ପ୍ରଦାୟର । କିନ୍ତୁ ଏ ଝିଅ ମୋତେ ମନ୍ତ୍ର ମୁଗ୍ଧ କରିଭଳି ଜଣାପଡ଼ିଲା ।

କୈଶୋର ଯାଇ ଯଉବନରେ ମୁଁ ପାଦ ଦେଇଛି । ନାରୀର ସାହଚର୍ଯ୍ୟ କଣ ଜାଣିନି । ହଠାତ୍ କାହିଁକି ବିଚଳିତ ହୋଇ ପଡ଼ିଲି । ଅନ୍ତରରେ ଏକ ଅଜଣା ଶିହରଣ ଅନୁଭବ କଲି । ଦୁଇପଦ କଥା କହିବାକୁ ଇଚ୍ଛା ହେଲା । ପଚାରିଲି ବଜି କେତେ ବାଟ ? ସେହି ଝିଅଟି ଜବାବ ଦେଲା "ସ୍ବରମାଇଲ" । ମୁଁ କହିଲି ଟିକେ କେଉଁଠି ବିଶ୍ରାମ ନେଇ ପାରିବି ? ସେ କହିଲା 'ତୋଟା ଆରପଟରେ ସ୍କୁଲ ଅଛି । ମାଷ୍ଟ୍ରେ ଅଛନ୍ତି । ସେଇଠି ଟିକେ ଖଣ୍ଡିବର୍ଷା ପାରିଯିବ ।' ଅତି ସରଳ ଗାଉଁଲି ଭାଷା କିନ୍ତୁ ଯେପରି କିଏ ମଧୁ ଗୋଳି ଦେଲା । ମୁଁ କହିଲି ତାଲିରେ କ'ଣ ଭୋଗ ? ଆଉ ଗୋଟିଏ ଝିଅ କହିଲା 'ଆଜି ପଗ ଫନାନ୍ତି ? ମଙ୍ଗଳ ଦେବଙ୍କ ପାଖକୁ ଯାଇଥିଲୁ । ଭୋଗ କିଣିସାରି ଘରକୁ ଫେରୁଛୁ ।' ଲୋଭ ସମ୍ବରଣ କରି ନ ପାରି କହିଲି, 'ବହୁ ଦୂରରୁ ଆସିଛି, ଥକି ପଡ଼ିଛି ମୋତେ ଟିକେ ଭୋଗ ଦେଲେ କ'ଣ କିଛି ଦୋଷ ଅଛି ?' ଝିଅ ପାଞ୍ଚୋଟି ସମସ୍ବରରେ କହିଲେ 'ନାହିଁ ନାହିଁ ଦୋଷ କ'ଣ ?' ନିଜ ତାଲିରୁ ଅତି ଆଦରରେ ଉଖୁଡ଼ା, ଲଡ଼ୁ, ନଡ଼ିଆ, ମୋ ଆଞ୍ଜୁଳାରେ ଭରି ଦେବାରେ ଲାଗିଲେ, ମୁଁ ଖାଇବାରେ ଲାଗିଲି । ଆଉ ଆଉ ଖୁବ୍ ହେଲାଣି, ଆଉ ଦରକାର ନାହିଁ, ଯେତେ କହିଲି, ଶୁଣୁଛି ବା କିଏ ? ଆଜି ପ୍ରୌଢତ୍ବକୁ ପଛରେ ପକାଇ ଦେଲିଣି । କିନ୍ତୁ ସେଦିନର ସ୍ମୃତି, ସେ ଝିଅଟିର ରୂପଲାବଣ୍ୟ ଓ ଅନ୍ୟ ଝିଅମାନଙ୍କର ସ୍ନେହମମତା ମତେ ଯେମିତି କାଲିକା ପରି ଲାଗୁଛି । ମୋର ଦୈନିକ ଡାଏରୀ ଲେଖିବାର ଅଭ୍ୟାସ । ଟିପା ଖାତା ଖୋଲୁ ଖୋଲୁ ହଠାତ୍ ବିଷୟଟି ମିଳିଗଲା ।

ଦେଖୁ ଦେଖୁ ମୋ ଆଖି ଆଗରୁ ଉଭେଇଗଲେ ନଈ ଆରପାରିକୁ ଝିଅ ପାଞ୍ଚୋଟି । ସେମାନଙ୍କ ମଧ୍ୟରୁ କେତେ ଆଜି ପୌଢ଼ା ହୋଇଯିବେଣି । କାହାର କେଶ ଧଳା ହୋଇ ଯିବଣି । ଅଣ୍ଟା ନଇଁ ଯିବଣି । କେହି କେହି ନାତି, ନାତୁଣୀ ନେଇ ସୁଖଦୁଃଖର ସଂସାର ପାତି ବସିଥିବେ । କିନ୍ତୁ ଏ ଚତୁର୍ଥାବସ୍ଥାରେ ମଧ୍ୟ ସେ ଝିଅଟିକୁ ମୁଁ ଭୁଲି ପାରି ନାହିଁ । ସେ ଝିଅଟିକୁ ଦେଖି ୧୯୩୬ ମସିହାରେ ଲକ୍ଷ୍ନୌ କଂଗ୍ରେସରେ ପ୍ରଦର୍ଶିତ ସ୍ୱନାମଧନ୍ୟ ଶିଳ୍ପୀ ବିମ୍ବାଧର ବର୍ମାଙ୍କ ଅଙ୍କିତ 'ପଲ୍ଲୀବଧୂ' ଚିତ୍ରଟି ମନେ ପଡ଼ିଗଲା । ଆର୍ଟ ଗ୍ୟାଲେରୀରେ ମୁଁ ସ୍ୱେଚ୍ଛାସେବକ ଥାଏ, ଅନେକ ନାମଜାଦା ଶିଳ୍ପୀଙ୍କ କୃତିର ପ୍ରଦର୍ଶନ ସେଠାରେ ହେଉଥାଏ । କିନ୍ତୁ ବି.ବର୍ମାଙ୍କ ଅଙ୍କିତ 'ପଲ୍ଲୀବଧୂ' ଚିତ୍ରଟି ଯେପରି ସମସ୍ତଙ୍କୁ ଅଭିଭୂତ କରି ଦେଉଥାଏ । କିଏ

ଯେ ସେଠି ଠିଆ ହୋଇ ମନଯୋଗ ସହକାରେ ଦଣ୍ଡେ ନ ଦେଖିଛି ତାହା କହି ହେବନାହିଁ । ଆନନ୍ଦରେ, ଗର୍ବରେ ମୋ ଛାତି ଫୁଲି ଉଠୁଥାଏ—ମୋ ରାଜ୍ୟର, ମୋ ଓଡ଼ିଶାର, ମୋ ଜାତିର ଜଣେ ଶିଳ୍ପୀର ଅପୂର୍ବ କୃତି, ଅନବଦ୍ୟ କଳା କଥା ଭାବି । ଦର୍ଶକମାନଙ୍କୁ 'ଚଲିଏ ଚଲିଏ' ନକହି ସେଠାରେ କିଛି କ୍ଷଣ ଠିଆହେବାକୁ ସୁଯୋଗ ଦେଉଥାଏ । ଉତ୍ତର ଗଡ଼ଓ୍ୱାଲର ମହାରାଜା ସେତେବେଳର ଅନେକ ଟଙ୍କା ଦେଇ ତାକୁ କିଣି ନେବାକୁ ଇଚ୍ଛା ପ୍ରକାଶ କରିଥିଲେ । କର୍ତ୍ତୃପକ୍ଷଙ୍କୁ ମଧ୍ୟ ଅନୁରୋଧ କରିଥିଲେ । କିନ୍ତୁ ତଳେ 'Not for sale'ର କାର୍ଡ଼ ଦେଖି କେହି ନଷ୍ଟ କରିବାକୁ ସାହସ କରୁ ନଥିଲେ । ଦାରିଦ୍ର୍ୟର କଷାଘାତରେ ଜର୍ଜରିତ ବି. ବର୍ମା—ତାହାଙ୍କର ଶେଷ ଜୀବନ ଅଭାବ, ଅନଟନରେ କଟିଲା, ସେ ତାଙ୍କର ଅମୂଲ୍ୟ କୃତୀ, ଅପୂର୍ବ ଶିଳ୍ପ ସମ୍ପଦକୁ ସମସ୍ତେ ଦେଖନ୍ତୁ ବୋଲି ଚାହୁଁଥିଲେ । କିନ୍ତୁ ତାହା ଯେ ବନ୍ଦୀ ହେଉ ଶିଳ୍ପୀଙ୍କର ଇଚ୍ଛା ନ ଥିଲା । ମୁଁ ଯଦି ଜଣେ ଶିଳ୍ପୀ ହୋଇଥାନ୍ତି, ତେବେ ଏପରି ଏକ ପଲ୍ଲୀ କନ୍ୟାଟିର ଛବି ଆଙ୍କି ତାକୁ ଅତି ଯତ୍ନରେ ସାଇତି କରି ରଖିଥାନ୍ତି ।

କ'ଣ ଲେଖିବାକୁ ଯାଇ କ'ଣ ଲେଖିଗଲି । ଅଯଥା ବାଟ ଛାଡ଼ି ଅମଡ଼ା ବାଟକୁ ପଶିଗଲି ।

ଗୋଟିଏ ନିମ୍ନ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ସହିତ ଭୋଜନରେ ଲାଗି ବସିଲି । ଟିକେ ବିଶ୍ରାମ ନେଇ ଚାଲିଲି । ପବନରେ ବଉଳର ସୁବାସ, ଫଗୁଣର ଦୋଳ ଘଣ୍ଟ ବାଜୁଥାଏ ପାଖ ଗ୍ରାମରୁ । ସନ୍ଧ୍ୟା ଆଗତ ପ୍ରାୟ । ଆକାଶରେ ଶୁକ୍ଳ ଏକାଦଶୀର ଚନ୍ଦ୍ର ହସିଉଠିଲାଣି । ରାତି ପ୍ରାୟ ଆଠଟା ହେବ ସେବା ଘରେ ପହଞ୍ଚିଲି । ବିନୋଦ ଭାଇ, ସୁରେନ୍ଦ୍ର ଭାଇ, ବୁଲୁ ଭାଇ, ଗୋପବାବୁ ପ୍ରଭୃତି କୁଆଡ଼େ ଯାଇଥାନ୍ତି । ରମାଦେବୀ ଘରେ ବୋଧହୁଏ ରୁଲା ସୁଆରୁଥିଲେ । ଏକ ଅଜଣା ଯୁବକକୁ ଆଶ୍ରମ ଭିତରେ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଚୁନିଅପା, ମଙ୍ଗଳା ଦିଦି ମଧ୍ୟ ମୋତେ ଚିହ୍ନି ପାରିଲେ ନାହିଁ । ମୁଁ ବୈକୁଣ୍ଠ ବୋଲି ନିଜର ପରିଚୟ ଦେଇ କହିଲି—ବାଲିକୁଦାରୁ ଆସିଛି ବୋଲି । ଯାହାହେଉ ଜଣେ ଭଉଣୀ Tube wellରୁ ପାଣି ଢ଼ାଳେ ଆଣି ଦେଲେ । ପିଣ୍ଡାରେ ଖଣ୍ଡିଏ ଆସନ ପକାଇଦେଲେ । ମୁହଁ ହାତ ଧୋଇ ମୁଁ ବସିଲି । ସର୍ବତ କରି ଆଣି ପିଇବାକୁ ଦେଲେ ଯିଏ, ସେ ଆଉ କେହି ନୁହନ୍ତି—ବେଲଅପା ।

ରମା ଦେବୀ ଆସିଲେ, ଅନେକ ଦିନ ପରେ ମୋତେ ଦେଖି କୁଣ୍ଢାଇ ପକାଇଲେ । ମୋର ଯୌବନ, ମୋର ସ୍ୱାସ୍ଥ୍ୟ ତାଙ୍କୁ ଚକିତ କରିଦେଲା ।

ମା ଡାକ ଦେଲେ, ଆସେ ଚୁନି, ମଙ୍ଗଳା, ଶୋଭା ଏ ପଗ୍ଳା ପାଗଳା ବୈକୁଣ୍ଠ ଭାରତ ଭ୍ରମଣରୁ ଫେରିଛି ! ଖବରକାଗଜରୁ ତାର ଭ୍ରମଣ କାହାଣୀ ପଢ଼ିନ ? ବାପା ସେଦିନ କହୁ ନଥିଲେ, ସେ ଆମର ଏଠାକୁ ଆସିବ ବୋଲି ?

ଗୁଲିଲି ତେଣିକି ଆଦର ଆପ୍ୟାୟନର ପାଳି । ମା କହିଲେ, ବେଲି, ବୈକୁଣ୍ଠ ତମଆଡ଼ର । ତା ଘର ବାଲିକୁଦା, ତୋ ଘର ଏରସମା । ତା ଖାଇବା ଖବରବୁଝ । ଗୁଲି ଗୁଲି ଥକି ପଡ଼ିଛି । ଆମ ଅତିଥି ଭବନରେ ଆଜି ଶୋଇପଡ଼ୁ । ବିଛଣା ପାରିଦେବୁ, ମଶାଙ୍କ ଟାର୍ଚ୍ଚି ଦେବୁ । କାଲି ବାପା ଆସିଲେ କେଉଁ ଶିବିରରେ ରହିବ ସେ ବିଚାର କରିବା । ସେଇଠି ବେଲି ଅପାଙ୍କ ସହ ମୋର ପରିଚୟ ।

ବେଲି ଅପା ମୋଠାରୁ ବୟସରେ ବଡ଼ । ଘର ଏରସମା ଥାନା କଆଦା ଗ୍ରାମରେ । ବାପା ମଣିଚରଣ ଶୁକ୍ଳ । ବେଶ ସ୍ୱଚ୍ଛଳ ଅବସ୍ଥା । ଆଠ ଦଶଟି ମହିଁଷୀ ଏବଂ ପାଞ୍ଚ ସାତୋଟି ଗାଈ ଗୁହାଳ । ପ୍ରଚୁର ଘିଅ, କ୍ଷୀର, ଛେନା, ଖଣ୍ଡ ବସାଦହିରେ ଘର ଭରପୁର । ଖାଣ୍ଟି ଘିଅର ବେପାର । ସେତେବେଳେ ଡାଲଡ଼ା ସ୍ୱପ୍ନ । ଛନଚନିଆ ମଟରଇରେ ସରୁ ମୋଟା ଧାନ । ପୋଖରୀରେ ଭରି ମାଛ । ବାଡ଼ିରେ ପନିପରିବା ।

ବେଲିଅପା ବୋଧହୁଏ ବିବାହିତା । ସଧବା କି ବିଧବା କିମ୍ବା ପରିତ୍ୟକ୍ତା ଏ ବିଷୟରେ ତାଙ୍କୁ ମୁଁ କୌଣସି ପ୍ରଶ୍ନ କରି ନାହିଁ । କାହାରି ମରମର କୋମଳ ଦେଶରେ ଆଘାତ ଦେଇ ଭଲ ଧୃଷ୍ଟତା ମୋର ନାହିଁ । ଏବେ ବି ତାହା ରହସ୍ୟାବୃତ ହୋଇ ରହିଛି । ସେଦିନର ପରିଚର୍ଯ୍ୟା ଏବଂ ତହିଁ ଆରଦିନ ଏକାନ୍ତ ମମତାଭରି ସେବା ଭୁଲିବାର ନୁହେଁ ।

ଗୋପବାବୁ (ଚୌଧୁରୀ) ମୋତେ ମହୁମାଛି ପାଳନ ଶିବିରକୁ ଯିବା ଲାଗି ନିର୍ଦ୍ଦେଶ ଦେଲେ । ଶିକ୍ଷାଦାତା ମନମୋହନ ଚୌଧୁରୀ । ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଅନେକ କର୍ମୀ ଆସି ସେଠାରେ ରହୁଥାନ୍ତି । ଯିବାବେଳେ ରମାଦେବୀ କହିଲେ, ମଝିରେ ମଝିରେ ଆସୁଥିବୁ । ପିଲମାନଙ୍କୁ ଜାତୀୟ ସଙ୍ଗୀତ ଶିଖାଇବୁ । ହସିହାସି ଯିବୁ । ଗୋଟିଏ ରକମ ଜୀବନ ବିତାଇବାରେ ଟିକେ ପରିବର୍ତ୍ତନ ଆଣିବୁ । ବେଲି ତ ଅଛି ! ତୋ ଖବର ବୁଝିବାକୁ ଆଉ ଚିନ୍ତା କ'ଣ ? ମା'ଙ୍କ ଆଦେଶ ମାନି ହଉ କହି ଗୁଲିଲି । କେବେ ସେ ଡକାଇ ନ ପଠାଇଲେ ଯାଏ ନାହିଁ । ଘନ ଘନ ଯିବାକୁ ଲଜ୍ଜା, ସଙ୍କୋଚ ଯେମିତି ମୋତେ ବେଷ୍ଟନ କରି ରଖେ । ଦୁଇମାସରେ ମହୁମାଛି ଧରିବ, ତାକୁ କପରି ଯତ୍ନସହକାରେ ପାଳିବ ଶିକ୍ଷାକରି ଘରକୁ ଫେରିଲି ।

ବଣ୍ଟନପୁର କଲ୍ଲା ଗଣେଶ୍ୱରପୁରଠାରେ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗୀୟ ମଦନ ଜେନାଙ୍କ ସ୍ମୃତି ଉଦ୍ଦେଶ୍ୟରେ ତାଙ୍କର ଗ୍ରାମରେ ହରିବାବୁ (ହରେକୃଷ୍ଣ ବିଶ୍ୱାଳ) ଏକ ଆଶ୍ରମ ପ୍ରତିଷ୍ଠା କରିଥାନ୍ତି ।

ସେଠାରେ ମହୁମାଛି ପାଳନ ଲାଗି ହରିବାବୁ ମୋତେ ଡକାଇନେଲେ । କିଛିଦିନ ପରେ ବେଲଅପା ମଧ୍ୟ ସେଠାରେ ଆସି ପହଞ୍ଚିଲେ । ସେ ସ୍ତ୍ରୀଲୋକମାନଙ୍କ ମଧ୍ୟରେ ସୂତାକଟାର ପ୍ରଚାର ଆରମ୍ଭ କରିଦେଲେ । ଭଗବାନ ମହାନ୍ତି ଲୁଗା ବୁଣିଲେ । ବେଲଅପା ଭାତ ଡାଲମା କରନ୍ତି କିନ୍ତୁ କି ସ୍ୱାଦ ସେ ! ସକାଳ ଜଳଖିଆ ମୁଢ଼ି, ଛେନା, ଗୁଡ଼ । କେବେ କେବେ ଚୂଡ଼ା ବସାଦହି, ଚଣା । ଯାହାର ପ୍ରାଣରେ ମମତା ଅଛି, ସ୍ନେହ ଅଛି, ଦରଦ ଅଛି ତାର ସବୁ ଭଲ । କେବେ କେବେ ତାଙ୍କ ଘରକୁ ଚିଠି ଲେଖି ଚମତ୍କାର ବସାଦହି, ଘିଅ, ଛେନା ଆଦି ମଗାଇ ଆଣନ୍ତି । ଥରେ ତାଙ୍କ ଘରକୁ ଗଲି, ସେକଥା କ'ଣ ଆଉ ଲେଖିବି ? ପହଞ୍ଚୁ ପହଞ୍ଚୁ ବେଲାଏ ସଜ ଛେନା ଆଉ ଗୁଡ଼ ଜଳଖିଆ । ଭାତ ଖାଇବାବେଳେ ଘିଅରେ ଜୁଡ଼ୁଜୁଡ଼ୁ । ତା ସଙ୍ଗରେ ଗୋଟାଏ ବଡ଼ ଭାକୁର ମାଛର ମୁଣ୍ଡର ଝୋଳ । ପୁଣି ଜମାଟବନ୍ଧା ବସାଦହି, ଖିର ଖାଇବ କେତେ ? ଏ ଗାଁର ଏବଂ ଜପାର ବସାଦହି ପ୍ରସିଦ୍ଧ । ଏ ହାଣ୍ଡିରେ ନଯାଇ ପାଚିଆରେ ଯାଏ । ଦୁଇଦିନ ରହି ଖାଇପିଇ ବେଦମ୍ ହୋଇ ଫେରିଲି । ବଣିକଟାଯାକ ସେପରି ଅତିଥି ସେବାରେ ଉନ୍ମୁଖ ।

ତେଲଙ୍ଗ ଗାନ୍ଧୀ ସେବା ସମ୍ମିଳନୀ, ଅନୁଗୁଳ ସର୍ବସେବା ସଂଘ ସମ୍ମିଳନୀ, ପୁରୀ ସର୍ବୋଦୟ ମେଳା, ଯାଜପୁର ସମ୍ମିଳନୀ—ଗ୍ରେଟବଡ଼ ସବୁ ସଭାରେ ବେଲଅପା ହାଜର । ମୁହଁରେ ହସ, ଡାହାଣ ହାତରେ ବଡ ଗ୍ଲାସ୍, ବାଆଁ ହାତରେ ପରିବେଷଣର ବାଲ୍ଟି ।

ବାବୁଲାଲ୍ ଦୋଶୀଙ୍କ ସ୍ତ୍ରୀ ବେନଜା (ଶାନ୍ତା ଦୋଶୀ)ଙ୍କ ଦେହ ଖୁବ୍‌ଷଣ ଅସୁସ୍ଥ ହେଲା । ଅଣ୍ଟୁଗଣ୍ଠି ବାତରେ ସେ ଚଳନ ଶକ୍ତି ରହିତ ହୋଇ ପଡ଼ିଲେ । ତାଙ୍କର ସେବା କରିବାର କେହି ନାହିଁ । ସ୍ତ୍ରୀଜର ଅବଶ୍ୟ ଥାଏ କିନ୍ତୁ ଜଣେ ନାରୀର ସେବା ନାରୀ କରିବା ଉଚିତ୍ ବୋଲି ବାବୁଭାଇ ଭାବିଲେ । ଅତ୍ୟନ୍ତ କାତର ହୋଇ ସେ ମୋତେ କହିଲେ । ମୋ ଆଖି ଆଗରେ ନାଚି ଉଠିଲେ ବେଲ ଅପା । ଚିଠି ଖଣ୍ଡେ ଲେଖିଲି । ତିନିଦିନ ପରେ ଆସି ପହଞ୍ଚିଗଲେ ନିଜ ହାତରୁ ଖର୍ଚ୍ଚ କରି । ସେତେବେଳେ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ମିଳୁ ନ ଥିଲା ତାଙ୍କୁ । ବଡ଼ ଆର୍ଥିକ ଅନଟନରେ ଚଳୁଥିଲେ । ତଥାପି ଅତି ନିର୍ବିକାର ଚିତ୍ତରେ ଦୁଇ ମାସ କାଳ ବେନ୍‌ଜାଙ୍କର ଯେପରି ସେବା କଲେ, ମଳମୂତ୍ର ଉଠାଇଲେ, ତାର ପଟାନ୍ତର

ନାହିଁ । ଅନେକ ଗଞ୍ଜଣା ମଧ୍ୟ ସହିବାକୁ ପଡ଼ିଛି ବେନଜୀଙ୍କଠାରୁ । ଶାରୀରିକ ଅସୁସ୍ଥତା ହେତୁ ସେ କଥାକଥାକେ ବିରକ୍ତ ହୋଇ ପଡୁଥିଲେ । କିନ୍ତୁ ବେଲଅପାଙ୍କ ସେଥିପ୍ରତି ଦୃଷ୍ଟି ନଥିଲା । ସେବିକା ସେ । ସବୁ ସହି ସେବାକରିବା ଯେ ତାଙ୍କର ଧର୍ମ ଓ କର୍ମ । ବେନଜୀ ସୁସ୍ଥ ହେଲେ, ବେଲ ଅପା ଫେରିଗଲେ ଏରିଡ଼ମାର ସେହି ସ୍ନେହ କୁଡ଼ିଆଟିକୁ ମିରବରେ । ବାବୁଜୀ କ'ଣ ତାଙ୍କୁ ପାରିଶ୍ରମିକ ଦେଲେ ସେ କଥା ବେଲ ଅପା ମୋତେ କହି ନାହାନ୍ତି କିମ୍ବା ବାବୁଜୀ ମୋତେ ଜଣାଇ ନାହାନ୍ତି । ସେବା ବଦଳରେ କିଛି ନେବା ବୋଧହୁଏ ତାଙ୍କ ନୀତି ବିରୁଦ୍ଧ ଥିଲା । ତେବେ ଶୁଣିଛି ତାଙ୍କୁ ବିଶେଷ କିଛି ଦିଆଯାଇ ନଥିଲା ।

୧୯୪୨ ଆନ୍ଦୋଳନରେ ଆମ୍ଭେମାନେ ଜେଲ୍ ଗଲୁ । ବେଲ ଅପା ମଧ୍ୟ ଜେଲ୍ ଗଲେ । ସେ କାରାମୁକ୍ତ ହେଲେ କଟକରୁ । ମୁଁ କାରାମୁକ୍ତ ହେଲି ବରହମ୍‌ପୁରରୁ ।

୧୯୪୩ ୪୪ ବାତ୍ୟାରେ ହର୍ଷପୁର, ବିଷୁନୁପୁରର ଏକ ବିସ୍ତୃତ ଅଞ୍ଚଳ କ୍ଷତିଗ୍ରସ୍ତ ହୋଇଥିଲା । ମୁଁ, ଅଗଣୀ ସେଠୀ ଓ ବେଲ ଅପା ତିନି । ଖଣ୍ଡେ ଧରି ସମଗ୍ର ତଲମାଲ ଅଞ୍ଚଳ ବୁଲି କାହାର କେତେ ଘର ଭାଙ୍ଗିଛି, କାହାର କେତେ ଫସଲ ନଷ୍ଟ ହୋଇଛି ଇତ୍ୟାଦି ସର୍ଭେ କଲୁ । ଘୋଡ଼ା ଡିଆ ହାଟରେ କ୍ୟାମ୍ପ୍ ଖୋଲା-ଗଲା । ହରିବାବୁ ହେଲେ ପରିଚାଳକ, ମୁଁ ସହକାରୀ, ବେଲଅପା ଭଣ୍ଡାର ରକ୍ଷକ । ଅଗଣୀ ସେଠୀ ପରିଛା । ଆସିଲା ପ୍ରଚୁର ପରିମାଣ ଚାଉଳ, ଚୂଡ଼ା, ଲୁଗା । ଟୋଷ୍ଟ ଟ୍ରେଞ୍ଚ ପିଲାମାନଙ୍କ ପାଇଁ ଜାମା, ପେଣ୍ଟ ।

ସ୍ୱର୍ଗୀୟ ଠକ୍କର ବାପା କଟକରେ ରହି ସମସ୍ତ ପରିଚାଳନା କରୁଥାନ୍ତି । ବାହାରୁ ଯେଉଁମାନେ କ୍ୟାମ୍ପ୍‌କୁ ଆସିଥାନ୍ତି, ସେମାନେ ଆମ ଘରେ ରହି ଖିଆପିଆ ସାରି, ବିଶ୍ରାମ ନେଇ, କେହି ବଳଦ ଗାଡ଼ିରେ ବା କେହି ଚାଲି ଚାଲି କ୍ୟାମ୍ପ୍‌କୁ ଆସନ୍ତି । ଥରେ ସ୍ୱର୍ଗୀୟ ଈଶ୍ୱରଲାଲ ବ୍ୟାସ ତାଙ୍କ ସଙ୍ଗରେ ଜଣେ ଗୁଜରାଟି ଯୁବକ ଧରି ସାରଙ୍କ ଧରି ଶାମ୍ବଦଶମୀ ଦିନ ଆମ ଘରେ ଆସି ପହଞ୍ଚିଲେ । ସେଦିନ ତ ପ୍ରତ୍ୟେକ ଓଡ଼ିଆ ଘରେ ନାନା ରକମର ପିଠାପଣା ହୁଏ । ତଥାପି ବ୍ୟାସଙ୍କ ଏବଂ ତାଙ୍କ ସହିତ ଗୁଜରାଟର ଆଉ ଜଣେ ଆସିଛନ୍ତି ଜାଣି ଖିରି, ତରକାରୀ ଓ କଦଳୀ ଚକଟା ଇତ୍ୟାଦି ଅତି ଯତ୍ନ ସହକାରେ ମୋ ସ୍ତ୍ରୀ କରିଥିଲେ । ପ୍ରଥମେ ଆମେ ତିନିଜଣ ଖାଇ ବସିଥାଉ । ବ୍ୟାସଜୀ ହଠାତ୍ ମଣ୍ଡା ପିଠାକୁ କାମୁଡ଼ି ଦେଇ କହିଲେ ବୈକୁଣ୍ଠ, ଏତ ଚାରିପାଖ ଯାକ ବନ୍ଦ, ମସଲା କେମିତି ପଶିଲା । ଏକାକ୍ଷିଦ୍ କଲେ ମୁଁ ଦେଖିବି । ପରେ ମୋ ସ୍ତ୍ରୀ ଶରତଚନ୍ଦ୍ରମାଣୀ ତାଙ୍କ ଆଗରେ କରି ଦେଖାଇ ଦେବାରୁ ସେ ବିଶ୍ୱାସ କଲେ ।

ଘୋଡ଼ାଡ଼ିଆଁରେ ଯେତେଦିନ ରହିଲେ ବ୍ୟାସଜୀ ଓ ଧିରୁଭାଇ ବେଲଅପାଙ୍କ ହାତ ରନ୍ଧଣା ଖାଇ ଭୂୟସୀ ପ୍ରଶଂସା କରିଥିଲେ ।

ଆଜି ବେଲ ଅପା ବୃଦ୍ଧା, ରୁଗ୍‌ଣା । ବାଲ ଝୋଟ ହୋଇଗଲାଣି, ଅଣ୍ଟା ନଇଁ ପଡ଼ିଲାଣି । ସେ ବଳ ନାହିଁ କି ସେ ବହପ ନାହିଁ । କିନ୍ତୁ ତୁଣ୍ଡରେ ମିଠା କଥା, ହୃଦୟରେ ମମତା, ପ୍ରୀତି ଓ ସ୍ନେହ ଭରି ରହିଛି । ତାଙ୍କୁ ମୋର ପ୍ରଣାମ ।

ଏରସମା ପାଖର ସିହା ଗ୍ରାମରେ ଏକ ଶ୍ରେଷ୍ଟ କୁଡ଼ିଆ କରି ରହିଥିଲେ । କିନ୍ତୁ କେତେକ ଲୋକ ତାଙ୍କୁ ସେଠାରେ ରହିଦେଲେ ନାହିଁ । ଅତି ଦୁଃଖରେ, ଅତି ହତାଶରେ ସେ ସେହି ସ୍ଥାନ ତ୍ୟାଗ କରିଗଲେ । ଶୁଣିଲି କୌଣସି ଆତ୍ମୀୟଙ୍କ ଘରେ ସେ ମୁଣ୍ଡ ଗୁଞ୍ଜି ଛନ୍ତି । ସରକାରୀ ଭତ୍ତା ଯାହା ପାଉଛନ୍ତି ସେଥିରୁ ବେଶିଭାଗ ତାଙ୍କ ଔଷଧରେ ଖର୍ଚ୍ଚ ହେଉଛି । ସେପରି ଜଣେ ଦେଶପ୍ରେମୀ, ସେବିକା, ସ୍ୱାଧୀନତା ସଂଗ୍ରାମୀ ମହିଳାଙ୍କ ନାମ କ'ଣ ଆମ ଇତିହାସରେ ରହିବା ଉଚିତ୍ ନୁହେଁ ? ଆମର ଦାୟାଦ୍‌ମାନେ ତାଙ୍କୁ କଣ ବିସ୍ମରଣ ହୋଇଯିବେ ?

ପୁଣି ମୋ ଆଖିଆଗକୁ ଆସେ—"ଗୌରି" । ନିଜ ଜୀବନୀରେ ଗୌରି କଥା ନ ଲେଖିଲେ ମୁଁ ଭାବୁଛି ଗୌରି ପ୍ରତି ମୁଁ ଅବିଚାର କରିବି ଏବଂ ନିଜେ ମଧ୍ୟ ନିଜକୁ ଅପରାଧୀ ମଣିବି ।

୧୯୭୦ ମସିହା ବୋଧହୁଏ ହେବ, ମୋ ଦେହ ବ୍ୟସ୍ତ ଯୋଗେ କିଛିଦିନ ହସ୍‌ପିଟାଲରେ ରହି Milk drip ନେବା ଏବଂ ପେଟ wash କରିବା ଲାଗି ମୋର ପରମ ବନ୍ଧୁ ଏବଂ ସଙ୍ଗୀ ବିଭାଗର ସହକାରୀ ଚିକିତ୍ସକ ଡାକ୍ତର ବିଷ୍ଣୁଚରଣ ମିଶ୍ର ପରାମର୍ଶ ଦେଲେ । ମୁଁ ସେତେବେଳେ ଓଡ଼ିଶାର ବିଧାନ ସଭାର ସଭ୍ୟ ଥାଏ । ଇଚ୍ଛା କରିଥିଲେ Nursingh homeରେ ରହି ପାରିଥାନ୍ତି । କିନ୍ତୁ ଜଗତ୍‌ବାବୁ ଏବଂ ବିଷ୍ଣୁବାବୁଙ୍କ ଅଧୀନରେ ଚିକିତ୍ସିତ ହେବାର ଅଭିଳାଷ ନେଇ ଡାକ୍ତରଖାନାର ଦୋତାଲା ବାରଣ୍ଡାରେ କଥା ହେଉଛି, ଦେଖିଲି ଜଣେ Staff Nurse ଆମର ଅନତିଦୂରରେ ମୋତେ ନିର୍ନିମେଷ ଅଥଚ ସତୃଷ୍ଣ ନୟନରେ ଚାହିଁ ରହିଛି । ମୁଁ ବିଷ୍ଣୁବାବୁଙ୍କୁ କହିଲି ସେ ବୋଧହୁଏ ତୁମକୁ ଅପେକ୍ଷା କରିଛନ୍ତି କିଛି ନିର୍ଦ୍ଦେଶ ପାଇଁ । ବିଷ୍ଣୁବାବୁ କହିଲେ ନାଁ ସେ ମୋ wardର ନୁହେଁ । ସେ ବୋଧେ ତୁମ ନିର୍ବାଚନ ମଣ୍ଡଳୀର । ତୁମ ପାଖରେ କିଛି କାମ ଥାଇପାରେ । ଯାଅ । ମୁଁ dutyରେ ଯାଉଛି, କହି ବିଷ୍ଣୁବାବୁ ଚାଲିଗଲେ । ପାଖକୁ ଗଲି । ପାଦଛୁଇଁ ପ୍ରଣାମ କରି ଝିଅଟି କହିଲା ଗୁରୁଜୀ ମୋତେ ଚିହ୍ନି ପାରୁ ନାହାନ୍ତି । ମୁଁ ପରି ଗୌରି ! କେତେ ନାଚ ଶିଖାଇଥିଲେ । ଶବ୍ଦ ନୃତ୍ୟ, ଦାଣ୍ଡିଆ ନୃତ୍ୟ—କେତେ କ'ଣ ?

ମୋ ରୁମ୍‌କୁ ଆସନ୍ତି କଥା ହେବା । ତା duty ରୁମ୍‌କୁ ଡାକ ନେଇ ଭଲରୂପେ Horlics କରି ନିଜ ହାତରେ ପିଆଇଲା । ଗୌରୀକୁ ଦେଖି ବହୁ ସମୟ ପରେ ମୁଁ ଚିହ୍ନିଲି । ଅନେକ କାରଣ ହେତୁ ଗୌରୀର ପ୍ରକୃତ ନାମ ଓ ତାର ଗ୍ରାମ ମୁଁ ଉଲ୍ଲେଖ କରୁନାହିଁ । ୨୫ ବର୍ଷର ଅତୀତକୁ ମୁଁ ଫେରିଗଲି । ଗୋଟି ଗୋଟି କରି ସବୁ ମନେ ପଡ଼ିଗଲା । ବ୍ରାହ୍ମଣୀ ନଦୀ କୂଳରେ ଏକ ବର୍ଦ୍ଧିଷ୍ଣୁ ଗ୍ରାମ ତାଙ୍କର । ସମସ୍ତଙ୍କ ଅବସ୍ଥା ଅତି ସ୍ୱଚ୍ଛଳ । ବନ୍ୟା ଆସି କେବେକେବେ ସେ ଅଞ୍ଚଳର କ୍ଷତି କଲେ ମଧ୍ୟ ବଦଳରେ ଯେଉଁ ପଟୁ ଜମିରେ ଅଜାଡ଼ି ଦେଇ ଯାଏ, ସେଥିରେ ପ୍ରଚୁର କଖାରୁ, ବିରି, ଧନିଆ, ଗହମ, ଚିନାବାଦାମ ଓ ଧୂଆଁପତ୍ର ଉତ୍ପାଦନ ହୁଏ । ବିଶେଷ କରି ଗୌରୀଙ୍କର ବାପା ଅତି ବିତ୍ତବାନ୍ । ପାଞ୍ଚଖଣ୍ଡ ଗାଁର ମାମଲତକାର, ମୁରବୀ, Union President (ସେତେବେଳେ ସରପଞ୍ଚ ନ ଥିଲେ) ।

ମୁଁ ଯାଇ ପହଞ୍ଚିଲି ତାଙ୍କ ଗାଁ ସ୍କୁଲରେ । ଆଉ ଦୁଇଜଣ ଗୁରୁଜୀ ସେଠାରେ ଥାଆନ୍ତି । ମୁଁ ତାଙ୍କ ସହିତ ଡେରା ପକାଇଲି । ଗ୍ରାମବାସୀମାନେ ମୋର ଖାଇବାର ବ୍ୟବସ୍ଥା ସେହିଠାରେ କରିଥିଲେ । ଅନେକ ଝିଅ, ପୁଅ ଯୋଗଦେଲେ । ପୁଅମାନେ ଦାଣ୍ଡିଆ ନାଚଲେ । ଝିଅମାନେ ତାଙ୍କ ସହିତ ଗୀତ ବୋଲିଲେ । ଉଦ୍ଦେଶ୍ୟ ନୃତ୍ୟ ଓ ଗୀତ ମାଧ୍ୟମରେ ଲୋକମାନଙ୍କ ମଧ୍ୟରେ ଜାତୀୟତା ଭାବ ପ୍ରବେଶ କରାଇବା । ଏ ଥିଲା ଗୋପବାବୁ ଏବଂ ରମା ଦେବୀଙ୍କ ପରିକଳ୍ପନା ।

ଗୌରୀର କଣ୍ଠଟି ଅତି ସୁରେଲା । ମୋ ଗୀତ ଗୁଡ଼ିକୁ ସେ ପ୍ରାଣ ଦେଇ ଗାଉଥିଲା, ଯେମିତି ରାମଚନ୍ଦ୍ରପୁରରେ ଅତି ମଧୁର ସ୍ୱରରେ ଗାଉଥିଲା ମାଳ (ଶକୁନ୍ତଳା) । ଅନ୍ୟ ଝିଅମାନେ ତା ସହିତ ସମତାଳରେ ଗାଇ ପାରୁ ନ ଥିଲେ । ସରଳ, ସୁନ୍ଦର, ସୁଠାମ ଝିଅଟିଏ । କେଜାଣି କାହିଁକି ତାକୁ ମୋତେ ଭାରି ଭଲ ଲାଗିଥିଲା । ସେ ମଧ୍ୟ ମୋତେ ଖୁବ ଭକ୍ତି କରୁଥିଲା । ଭଲ ପାଉଥିଲା । ଘର ଦହି, ଛେନା, ଖିରି, ଭଲ ଦିନରେ ପିଠାପଣା ହେଲେ ନେଇ ଆସୁଥିଲା । ଆମେ ତିନିଜଣ ଗୁରୁଜୀ ମିଶି ଖାଉଥିଲୁ । ଶିକ୍ଷକ ଦୁଇଜଣ କହୁଥିଲେ "ଗୌରୀ ଅତି ଅଦ୍ଭୁତ ବାଳିକା" । ମୁଁ କହିଲି, ଖାଲି ଅଦ୍ଭୁତ ନୁହେଁ ଅପୂର୍ବ ମଧ୍ୟ ।

ବାପ, ମା'ଙ୍କର ଅଲିଅଳୀ ଝିଅ । ଦୁଇ ଭାଇଙ୍କର ଅତି ଗେହ୍ଲା ଭଉଣୀ । ଥରେ ମୁଁ ଜ୍ୱର ଜରରେ ପଡ଼ିଲି । ଗୌରୀ ମୋର ଯାହା ସେବା କରିଛି, ତା ଏବେ ବି ମୋର ସ୍ମୃତିର ଗନ୍ତାଘରେ ସାଇତା ଧନ ହୋଇ ରହିଛି । ସାଗୁ, ବାର୍ଲି ପଥ୍ୟ ସବୁ କରି ଦେଇଛି । ଦେହରେ ହାତ ବୁଲାଇ ଦେଇଛି । କୁମାରୀ ହୋଇ ମଧ୍ୟ ଟିକେ ସଙ୍କୋଚ ବୋଧ କରିନି । ମୋର ଅସହାୟ ଅବସ୍ଥାରେ ଯିଏ ଟିକେ ଆଉଁସି

ଦେଲା, ଦେହରେ ମୁଣ୍ଡରେ ହାତ ବୁଲାଇ ଦେଲା, ତାକୁ ମୁଁ କପରି ବିସ୍ମରଣ ହେବି ? କିପରି ମୋର ସ୍ମୃତି ପଟରୁ ତା'ର ମମତା, ତା'ର ଐକାନ୍ତିକ ପରି-ଚର୍ଯ୍ୟାକୁ ପୋଛି ଦେବି ?

ଆଜି ଗୌରୀକୁ ଦେଖି ସବୁକଥା ମୋର ଆଖି ଆଗରେ ନାଚି ଉଠିଲା । ତା'ର ବୟସ ପ୍ରାୟ ଏକତ୍ରିଂଶ କିମ୍ବା ବତ୍ରିଂଶ ପର୍ଯ୍ୟନ୍ତ ହେବ, କିନ୍ତୁ ସ୍ୱାସ୍ଥ୍ୟ ପ୍ରାୟ ଅତୁଟ ରହିଛି । ଯୌବନ ଯାଇ ଯେମିତ ଯାଇ ପାରୁନାହିଁ । ତଥାପି ମୁଣ୍ଡର କେଶରେ ସରୁ ରୁପାର ତାରକଷି ତାର ଗୁଡ଼େଇ ଠାଏ ଠାଏ ଦେଖାଗଲାଣି ।

ପତ୍ନୀବତ୍ସଳ ସ୍ୱାମୀ, ପିଲାପିଲା, ଘରସଂସାର ଗୃହସ୍ଥି ଏଠି କାହିଁକି ? ମୁଁ ତା'ର ସୀମନ୍ତରେ ସିନ୍ଦୂର ରେଖା ଟିକିଏ ଦେଖି ଥିଲେ ଏପରି ପ୍ରଶ୍ନ କରି ନ ଥାନ୍ତି । ସେ ମୋ ପାଖକୁ ଟିକେ ଘୁଞ୍ଚିଆସି ଯାହା କହିଲା ତାହା ଅତି ବେଦନା ଦାୟକ, ଅଶ୍ରୁସିକ୍ତ ଓ ବ୍ୟଥାଭରା । ଆଖିରେ ତାର ଶ୍ରାବଣର ଧାରା । ମୋ ପ୍ରାଣ ବ୍ୟାକୁଳ ହୋଇ ଉଠିଲା । କାଳେ ତାର ଦୁର୍ବଳତା କିଏ ଜାଣିଯିବ, ସେଥିପାଇଁ ସେ ତଳକୁ ମୁହଁ ପୋତି ଲୁହ ପୋଛି ଦେଉଥାଏ । ପୁଣି ଧୀରେ ଧୀରେ ନିଜ କଥା କହି ଚାଲିଥାଏ । ସେ ଯାହା କହିଲା, ମୁଁ ଶୁଣି ସ୍ତବ୍ଧ ହୋଇଗଲି । ମୋ ପାଖରେ ସେ କିଛି ଲୁଚାଇ ନ ଥିଲା । ଅଳ୍ପକେ ଯେଉଁ ଭୁଲ କରି ବସିଲା ଗୌରୀ, ତାକୁ ମୁଁ ଏଠାରେ ବିସ୍ତୃତ ଭାବରେ ବର୍ଣ୍ଣନା କରି ତା'ର ନାରୀତ୍ୱର, ତା'ର ସତୀତ୍ୱର ଅମର୍ଯ୍ୟାଦା କରିବାକୁ ଚାହେଁନା । ମୁଁ କହିଲି ଜାଣ, ପଦ୍ମ ପଙ୍କରୁ ଜାତ ହୁଏ, ତେଣୁ ତା'ର ଅପର ନାମ ପଙ୍କଜ--ଯାହାକୁ ଦେଖି ଭ୍ରମର ଲୁବ୍ଧ ହୋଇ ତା' ପାଖକୁ ଧାଏଁ, ସୂର୍ଯ୍ୟ କିରଣ ଢାଳନ୍ତି, ଆଉ ମନୁଷ୍ୟର ମନ ସେଇ ଫୁଟନ୍ତା ଫୁଲର ସୌରଭ ଓ ବର୍ଣ୍ଣ ଦେଖି ମୁଗ୍ଧ ହୁଏ । ପଦ୍ମ ତ ପୁଣି ଦେବତାଙ୍କ କାମରେ ଲାଗେ ? ତେଣୁ ତୁମେ ଦୁଃଖରେ ଭାଙ୍ଗି ପଡ଼ନା । ନିଜର ସୌରଭରେ ପୁରଭିତ ହୁଅ । ନିଜକୁ ଗଢ଼ିତୋଳ ।

ସେ ପୁଣି ଆରମ୍ଭ କଲା—କେବଳ ଏତକି ଜାଣି ରଖନ୍ତୁ ଗୁରୁଜୀ, ମୁଁ ଡାକ୍ତର ଶରତ ଚନ୍ଦ୍ର ମିଶ୍ରଙ୍କ ଯୋଗେ କୂଳରେ ଲାଗିଛି । ଯେତେବେଳେ କୁଆଡ଼ୁ କିଛି ଆଶା ଭରସା ନ ପାଇ ଅଥଳ ଜଳରେ ମୋର ଭଙ୍ଗା ନାଆ ଖଣ୍ଡକ ମେଲି ଦେଇଥିଲି, ସେତେବେଳେ ସେ ମୋତେ ସାନ୍ତ୍ୱନା ଦେଇ, ଆଶ୍ୱାସନା ଦେଇ, ପିତୃସମ ସ୍ନେହ, ଶ୍ରଦ୍ଧା ଓ ମମତା ଦେଇ ଏଠି ଆଣି ରଖିଛନ୍ତି । ଆଜି ମୁଁ ତାଙ୍କରି ଅନୁକମ୍ପାରୁ Staff Nurse । ଏଠି ଯେ ଅନେକ ପ୍ରଲୋଭନ ଏବଂ ସ୍ଖଳନର ପଥରେ ଯିବାର ଇଙ୍ଗିତ ନ ଆସିଛି ତାହା ନୁହେଁ, କିନ୍ତୁ ମୁଁ ଯେଉଁ ଭୁଲ ଥରେ

କରିଛି, ଆଉ ତାର ପୁନରାବୃତ୍ତି କରନ୍ତି । ବିବାହର ମଧ୍ୟ ବହୁ ପ୍ରସ୍ତାବ ଆସିଥିଲା ।
ମୁଁ ତାଙ୍କୁ ନମ୍ର ଭାବରେ ସହିତ ପ୍ରତ୍ୟାଖ୍ୟାନ କରିଛି । ମୁଁ ଜାଣେ ଅନେକ ଆମକୁ
ଭୋଗର ସାମଗ୍ରୀ ବୋଲି ମନେ କରନ୍ତି । ଆମର ଏକନିଷ୍ଠ ସେବା, ପରିଚର୍ଯ୍ୟା,
ଶୁଶ୍ରୂଷାର କୌଣସି ମୂଲ୍ୟ ସେମାନେ ଦିଅନ୍ତି ନାହିଁ ।

ଶୁଣିଯାଉଥାଏ ଗୌରୀର କଥା । ଏକ ବେଦନାତୁର ନାରୀର ମର୍ମସ୍ପର୍ଶୀ
କାହାଣୀ । ରୁଦ୍ଧକଣ୍ଠ ଆର୍ତ୍ତନାଦ । ପୁଣି ସେ ଆରମ୍ଭ କଲା—୨୪ ବର୍ଷ ତଳେ ଆପଣ
ଯେଉଁ ଗୌରୀକୁ ଦେଖିଥିଲେ ସେ ମରି ଯାଇଛି । ଆଜି ଯାହାକୁ ଆପଣ ଦେଖୁଛନ୍ତି
ଏ ତାହାର ପ୍ରେତାତ୍ମା । ଆପଣ ମୋତେ କେତେ ଭଲ ପାଉଥିଲେ, କେତେ
ଆଦରରେ ଗୀତ ଶିଖାଉଥିଲେ । ଏବେ ବି ଆମ ଗାଁରେ ଲେଖିଥିବା 'ଏଇ ଆମରି
ଗାଆଁ' ଗୀତଟିକୁ ରେଡ଼ିଓରୁ ଶୁଣି ଗୁଣୁଗୁଣୁ ହୋଇ ଗାଏ । ମୋର ମନ ସେହି
ବ୍ରାହ୍ମଣୀକୂଳ, ସେହି ଆମ୍ବ ତୋଟା, ସେହି ଝାଉଁବଣ ଆଉ ମୌଳିକ ବିଦ୍ୟାଳୟକୁ
ଫେରିଯାଏ । ଆଜି ଆପଣଙ୍କୁ ଦେଖି ମୁଁ ଖୁବ ଖୁସି ହୋଇଛି । ମୋର ଗୁରୁ-
ଦକ୍ଷିଣା ଦେଇପାରିନି ।' ମୁଁ କହିଲି ଦେଖ ଗୌରୀ ପେଟ ରୋଗରେ ଆକ୍ରାନ୍ତ
ହୋଇ ମୁଁ ଏଇ ଦୁଇ, ତିନିଦିନ ମଧ୍ୟରେ ବସନ୍ତବାବୁଙ୍କ ଓ୍ୱାର୍ଡ଼ରେ ଭର୍ତ୍ତି ହେବି ।
ଖୁବ୍ ଭୋରରୁ ମୋର milk dripe ଦିଆଯିବ । ଆମ ଘରୁ କ୍ଷୀର ଆସିବାରେ
ଡେରି ହୋଇପାରେ । ଯଦି ଭୋରରୁ ମୋ ପାଇଁ କିଛି କ୍ଷୀର ବ୍ୟବସ୍ଥା କରିପାରିବା
ସଙ୍ଗେ ସଙ୍ଗେ ତୁମ ହାତରେ ମୋତେ Milk dripe ଦେବ ଏବଂ ମୋର ପେଟ
ଧୋଇ ଦେବ, ତେବେ ମୁଁ ମୋର ଗୁରୁଦକ୍ଷିଣା ପାଇଯିବି । ବିନିମୟରେ ତୁମକୁ
ମୁଁ ମୁକ୍ତ ପ୍ରାଣରେ ଶୁଭାଶିଷ ଜଣାଇବି । କଣ ମୋ ଓ୍ୱାର୍ଡ଼କୁ ତୁମେ ଆସିବା ଲାଗି
କାହାର ଅନୁମତି ଦରକାର ? ଗୌରୀ କହିଲା, ସେ ବ୍ୟବସ୍ଥା ମୁଁ କରିବି । ଆପଣ
ଚିନ୍ତା କରନ୍ତୁ ନାହିଁ । ମୁଁ ଶୁଣିଲି ଆପଣ କୁଆଡ଼େ M. L. A. ହୋଇଛନ୍ତି ?
ମୁଁ କହିଲି 'ହଁ' । ଅତି ଆନନ୍ଦରେ ସେ ତାର ସଙ୍ଗିନୀମାନଙ୍କୁ କହିଥିଲା "ମୋର
କାଲିକାର ଗୁରୁଜୀ ଆଜି M. L. A । ବିଧାନସଭାର ସଭ୍ୟ ।" ସେଦିନ ମୋ
ଆଗରେ ଝରି ଝରି ହୋଇ କାନ୍ଦି ପକାଇଥିଲା ଗୌରୀ—ଦୁଃଖରେ ନୁହେଁ,
ବିଷାଦରେ ନୁହେଁ, ଅତି ଆନନ୍ଦରେ ଓ ଅତି ଗର୍ବରେ ।

ପ୍ରାୟ ମାସେ କାଳ ମୁଁ ଜଗତ୍‌ବାବୁ ଓ ବସନ୍ତବାବୁଙ୍କ ଓ୍ୱାର୍ଡ଼ରେ ଥିଲି ।
ଗୌରୀ ମୋର ଯାହା ସେବା କରିଛି ତାର ପଟାନ୍ତର ନାହିଁ । ବିଦାୟ ନେଲାବେଳେ
ମୁଁ କହିଥିଲି, ଗୌରୀ, ନର୍ସମାନଙ୍କୁ ଯିଏ ଯାହା ଭାବୁ ପଛେ, ମୋ ଆଖିରେ
ତୁମମାନଙ୍କର ମର୍ଯ୍ୟାଦାବୋଧ ଢେର ବେଶୀ । ଦୁଃସ୍ଥ ରୋଗଗ୍ରସ୍ତ ମାନବର ସେବା

ଅର୍ଥ ଈଶ୍ୱରଙ୍କ ସେବା, ନରନାରାୟଣ ସେବା । ତୁମେମାନେ Sister, ଭଗ୍ନୀ, ଦେଶ୍ରୁ ମମତା ଘେରା ହେଉ ତୁମମାନଙ୍କ ଜୀବନ । ତୁମ ମାନଙ୍କୁ ସେଇଥିରୁ ଶାନ୍ତି ଓ ଆନନ୍ଦ ମିଳୁ—ଏତିକ ମୋର ଆଶୀର୍ବାଦ । ଗୌରୀର ନୟନରେ ଲୋତକର ବନ୍ୟା । ମୁଁ ମଧ୍ୟ କାନ୍ଦିଥିଲି ।

ପରେ ଗୌରୀ ସନ୍ଧାନରେ ମୁଁ ଦୁଇ ତିନିଥର ଯାଇଚି । କିନ୍ତୁ ତାର ସାକ୍ଷାତ ମିଳିନି । ଗୌରୀ ତୁମେ ଯେଉଁଠି ଥାଅ ପଛକେ ଏଇ ଗରିବ ଗୁରୁଜୀର ସ୍ନେହାଶୀର୍ବାଦ ତୁମ ପଛେ ପଛେ ବରାବର ରହିଚି । ଏ ବହି ଖଣ୍ଡିକ ପଢ଼ିବା ସୁଯୋଗ ଯଦି ତୁମେ ପାଅ, ମୁଁ ଜାଣିବି ମୋ ଲେଖା ସାର୍ଥକ ହୋଇଚି ।

# ଯେଉଁମାନେ ମୋର ପ୍ରେରଣାଦାତା

## ନେତାଜୀ ସୁବାଷଚନ୍ଦ୍ର ବୋଷ

ଭାରତର ତଥା ପୃଥିବୀର ଇତିହାସରେ ନେତାଜୀଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ତାଙ୍କର ଐତିହାସିକ ଭୂମିକାକୁ କେହି ଅସ୍ୱୀକାର କରି ପାରିବେ ନାହିଁ । ସେ ଏ ଜାତିର ଗର୍ବ, ଅଭିମାନ ସବୁକିଛି ।

୧୯୪୩ ଅକ୍ଟୋବର ୨୧ ତାରିଖରେ ଆଜାଦ୍ ହିନ୍ଦ୍ ଫୌଜ ଗଠନ ପରେ ସେ ହିନ୍ଦା ନେତାଜୀ ହେଲେ କିନ୍ତୁ ସେ ଆମର ଅତି ଆଦରର, ଅତି ଆପଣାର, ଅତି ସ୍ନେହର 'ସୁଭାଷ ବାବୁ' । ଜାନକୀ ବାବୁଙ୍କ ପୁଅ ସେ । କଟକର ଓଡ଼ିଆ ବଜାରରେ ଜନ୍ମ ନେଇଥିଲେ । କଲିଜିଏଟ୍ ସ୍କୁଲରେ ପଢ଼ିଥିଲେ । ବିହାର ଓଡ଼ିଶାରେ ସର୍ବୋଚ୍ଚ ନମ୍ବର ରଖି ମାଟ୍ରିକ୍ ମଧ୍ୟ ପାଶ୍ କରିଥିଲେ । ଏହି ଓଡ଼ିଶାର ମାଟିରେ ସେ ବଢ଼ିଥିଲେ । ଏହି ଭୂଇଁରେ ତାଙ୍କ ପ୍ରଥମ ଠୁକୁରୁ ଠୁକୁରୁ ଚାଲି ଲୋକେ ଦେଖିଥିଲେ । ଏହି ପାଣି ପବନ ତାଙ୍କ ଅଙ୍ଗକୁ ପୁଷ୍ଟ କରିଥିଲା ।

ତା ପରବର୍ତ୍ତୀ ଘଟଣାବଳୀ ଇତିହାସ କହିବ । ସେ କିପରି ନିଜ ଜୀବନକୁ ବିପନ୍ନ କରି ବସନ୍ତ ରୋଗୀଙ୍କର ସେବା କରୁଥିଲେ, କିପରି ସନ୍ନ୍ୟାସୀ ହୋଇ ହିମାଳୟରେ ବୁଲୁଥିଲେ, ପୁଣି ଘରକୁ ଫେରି ପାଠପଢ଼ାରେ ମନ ଦେଇ ବିଲାତ ଯାଇ ଆଇ ସି. ଏସ୍ ପଢ଼ି କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇ ସରକାରୀ ଚାକିରୀ ଗ୍ରହଣ କଲେ, ପୁଣି ଦେଶ ଓ ଦଶର ଆହ୍ୱାନ ତାଙ୍କୁ ଏତେ ବିଚଳିତ କଲା ଯେ ଆଇ. ସି ଏସ୍. ପଦ ତ୍ୟାଗ କଲେ, କେତେ ଝଡ, ଝଞ୍ଜା, ଉତ୍ଥାନ, ପତନ ରାଜନୀତିର ଘୋର ଘନଘଟା ମଧ୍ୟଦେଇ ନିଜର ଲକ୍ଷ୍ୟ ପଥରେ ଆଗେଇ ଚାଲିଲେ, ଦୁର୍ଦ୍ଦାନ୍ତ ଇଂରେଜ ସରକାରଙ୍କର ରୋଷ ଚକ୍ଷୁରେ ପଡ଼ି କିପରି ବାରମ୍ବାର କାରା-ବରଣ କରି ମଧ୍ୟ ଦୁର୍ବାର ଗତିରେ ଦେଶର ସେବା ପାଇଁ ସେ ଆଗେଇ ଯାଉଥିଲେ, ତାହା ସମସ୍ତେ ଜାଣନ୍ତି ।

ସୁଭାଷ ବାବୁ କଂଗ୍ରେସରେ ଯୋଗ ଦେଲେ । ଗାନ୍ଧିଜୀ ସେତେବେଳେ କଂଗ୍ରେସର ସବୁଠାରୁ ବଡ଼ କର୍ଣ୍ଣଧାର । ସେ ଗାନ୍ଧିଜୀଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ ସତ୍ୟ କିନ୍ତୁ ତାଙ୍କ ମତ ସହ ଗାନ୍ଧିଜୀଙ୍କ ମତ ମିଳୁ ନ ଥିଲା । ସେ ସଶସ୍ତ୍ର ବିପ୍ଳବର ପକ୍ଷପାତୀ ଥିଲେ । ଗାନ୍ଧୀବାଦରେ ସଶସ୍ତ୍ର ବିପ୍ଳବର ସ୍ଥାନ ନଥିଲା । ପୂର୍ଣ୍ଣ ଅହିଂସ ରହି ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହ କରିଆରେ ଇଂରେଜମାନଙ୍କ ଶାସନ

ଓ ଶୋଷଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଥିଲା ଗାନ୍ଧିଜୀଙ୍କର ମତ । ସେଥି-ପାଇଁ ବହୁ କ୍ଷେତ୍ରରେ ଗାନ୍ଧିଜୀ ଓ ତାଙ୍କର ମତାନ୍ତର ଘଟିଛି କିନ୍ତୁ ମନାନ୍ତର ହୋଇନାହିଁ ।

ମୁଁ ଏବେ ଭିତରକୁ ଆଉ ଯାଉ ନାହିଁ । କେବଳ ସୁଭାଷବାବୁଙ୍କ ସହ ଆମର ଦେଖାସାକ୍ଷାତ ଏବଂ ଆମ ପ୍ରତି ତାଙ୍କର ଅପୂର୍ବ ମମତା ଓ ମାନବିକତା ବିଷୟରେ ଦି'ପଦ ଲେଖୁଛି, ଯାହା ମୋର ଅନୁଭବ ଓ ଅଭିଜ୍ଞତାରୁ ପାଇଛି ।

୧୯୩୫ ମସିହାରେ ବାଙ୍କୁଡ଼ା, ବିଷ୍ଣୁପୁର, ଚନ୍ଦ୍ରକୋଣା ଓ ହୁଗୁଳି ଦେଇ କଲିକତାରେ ପହଞ୍ଚିଲୁ । ଭବାନୀପୁରର ଜଣେ ବଙ୍ଗାଳି ଭଦ୍ରଲୋକ ତାଙ୍କ ଘରେ ସ୍ଥାନ ଦେଲେ । ସେତେବେଳେ 'Sir John Anderson' ବଙ୍ଗଳାର ଲାଟ ସାହେବ । ଚାରିଆଡ଼େ ପୋଲିସର ସନ୍ଦେହ ଦୃଷ୍ଟି । ତଥାପି ସେ ଭଦ୍ରଲୋକ, ଯାହାଙ୍କ ନାମ ମାଖନଲାଲ୍ ଚଟ୍ଟୋପାଧ୍ୟାୟ—କିଛି ଭ୍ରୂକ୍ଷେପ କଲେ ନାହିଁ । ଆତିଥ୍ୟ ଦେବାରେ ବଙ୍ଗାଳୀ ସର୍ବଦା ମୁକ୍ତହସ୍ତ । ତାଙ୍କର ଅନ୍ୟ କିଛି ଦୋଷ ଦୁର୍ବଳତା ଥାଇପାରେ, ମାତ୍ର ମୁଁ କହିବି ବଙ୍ଗାଳୀମାନେ ଏକାନ୍ତ ଅତିଥିପରାୟଣ । ଶତ୍ରୁ ହେଲେ ମଧ୍ୟ ଘରେ ସ୍ଥାନ ଦେବେ । ଯତ୍ନ ଓ ଆଦରରେ ପ୍ରାଣ ପରିପୂର୍ଣ୍ଣ କରିଦେବେ ।

ଶୁଣିଲୁ ସୁଭାଷବାବୁ ଭିଏନାରୁ ସୁସ୍ଥ ହୋଇ ଫେରିଛନ୍ତି ଏବଂ ତାଙ୍କର ୨୯ ନମ୍ବର ଏଲ୍‌ଗିନ୍ ରୋଡ଼ରେ ରହୁଛନ୍ତି । ଥରେ ଆଖିପୂରେଇ ଦେଖିବାର ପ୍ରବଳ ବାସନା ମନରେ ଜାଗିଲା । ସେଠାରେ ପହଞ୍ଚି ଯାହା ଦେଖିଲୁ ଚକ୍ଷୁ ସ୍ଥିର ହୋଇ-ଗଲା । ଆମେ କ'ଣ ଏଲ୍‌ଗିନ୍ ରୋଡ଼୍‌ର ବାଟ ଭୁଲି କାଳିଘାଟର କାଳୀଙ୍କ ପାଖରେ ପହଞ୍ଚିଗଲୁ କି ? ଲୋକ ଭିଡ଼ ଲାଗିଛି । ଯିବା ଆସିବା ଚାଲିଛି । ବେଶୀ ସଂଖ୍ୟାରେ ଯୁବକ । ତେଜ ଓ ଶୌର୍ଯ୍ୟର ପ୍ରତୀକ । ଦେଖିଲେ ମନ ଆନନ୍ଦରେ ପୂରି ଉଠିବ । ତାଙ୍କ ମଧ୍ୟରେ ସାଧା ପୋଷାକଧାରୀ ପୁଲିସ ମାନେ ମଧ୍ୟ ଅଛନ୍ତି । ବାହାରେ ଫୁଟ୍‌ପାଥ ଉପରେ ଆଠଦଶଜଣ ଗୋରା ସର୍ଜେଣ୍ଟ ଅଣ୍ଟାରେ ରିଭଲ୍‌ଭର୍ ଝୁଲେଇ ପଇଁତରା ମାରୁଥାଆନ୍ତି । ଭିଡ଼ ଠେଲି ଆସ୍ତେ ଆସ୍ତେ ଭିତରକୁ ଗଲୁ । ଏତେ ଜନ ସମାଗମ, ମାତ୍ର ପାଟିତୁଣ୍ଡ ନାହିଁ । ଠିଆହେବାକୁ ଜାଗା ଟିକେ ମିଳିଲା । ସୁଭାଷବାବୁଙ୍କ ପାଖକୁ ଯିବାକୁ କାହାକୁ ମନା ନାହିଁ । ଶାହାଣ ମେଳା । ଦୂରରେ ଠିଆ ହୋଇ ଦେଖିଲୁ ସୁଭାଷବାବୁ ସେତେବେଳର କଲିକତା କର୍ପୋ-ରେସନର ମେୟର୍ ନଳିନୀ ରଞ୍ଜନ ସରକାରଙ୍କ ସହ କଥା ହେଉଛନ୍ତି । ବାମ ପଟରେ ବସିଥାନ୍ତି ଏକ ତେଜସ୍ୱୀ ଶ୍ରୀମାନ୍ ଯୁବକ । ପଚାରି ବୁଝିଲୁ ଯେ ସେ

ବାଘାଯତୀନ୍‌ଙ୍କ ପୁଅ (ଇଏ ଯେଉଁ ମଣ୍ଟନ ମୁଖାର୍ଜି ଯିଏ ବାଲେଶ୍ୱର ଜିଲ୍ଲାର ବୁଢ଼ୀ-ଖଣ୍ଡ ଠାରେ ଅନ୍ୟ ସାଥୀମାନଙ୍କ ସହ ଟେଗାର୍ଟ ସାହେବ ସଙ୍ଗରେ ଲଢ଼ି ଆତ୍ମୋତ୍ସର୍ଗ କରିଥିଲେ)। ଆମର ମହାଭାଗ୍ୟ ଯେ ଏପରି ଏକ ବୀର ସନ୍ତାନଙ୍କୁ ଦେଖିଲୁ। ଭାରି ଖୁସି ଲାଗିଲା। ଟେକା ପାରିହେଇ ସୁଭାଷବାବୁ ବସିଥାନ୍ତି। ଶୁଭ୍ର ଖଦଡ଼ ଧୋତି, ପଞ୍ଜାବୀ ପରିଧେୟ। ମସ୍ତକରେ ଗାନ୍ଧୀ ଟୋପି। ଆହା କି ସୁନ୍ଦର, ସୌମ୍ୟ, ଭବ୍ୟ ବପୁବନ୍ତ ପୁରୁଷ। ବିଦ୍ୟା ଯେତିକି, ବୁଦ୍ଧି ସେତିକି। ଶାନ୍ତ, ଧୀର, ଗମ୍ଭୀର ମାତ୍ର ଅନ୍ତରରେ ବିପ୍ଳବର ବହ୍ନି 'ହୁ', 'ହୁ' ହୋଇ ଜଳୁଛି। ଇଂରେଜ ସରକାରଙ୍କ ଖାତାରେ ଏ ତାଙ୍କର ପ୍ରଥମ ନମ୍ବର ଶତ୍ରୁ।

ନଳିନୀ ରଞ୍ଜନ ସରକାରଙ୍କର ସହିତ ସୁଭାଷବାବୁ କୌଣସି ଏକ ଗୁରୁତ୍ୱପୂର୍ଣ୍ଣ କଥାରେ ବ୍ୟସ୍ତ ଥିଲେ। ଆମେ ଆଗରୁ ନଳିନୀ ରଞ୍ଜନ ବାବୁଙ୍କ ସହ ସାକ୍ଷାତ କରି-ଥିଲୁ। ସେ ଆମକୁ ଆର୍ଥିକ ସାହାଯ୍ୟ ଏବଂ ଖଣ୍ଡେ ପ୍ରଶଂସାପତ୍ର ଦେଇଥିଲେ, ଯାହାକି ବଙ୍ଗ ପ୍ରଦେଶର ବିଭିନ୍ନ ସ୍ଥାନ ପରିଭ୍ରମଣବେଳେ ବହୁତ ସାହାଯ୍ୟରେ ଆସିଥିଲା।

କଟକରୁ ଆସିଛୁ ବୋଲି ଖବର ଦେଲୁ। ସାଙ୍ଗେ ସାଙ୍ଗେ ଡାକରା ଆସିଲା। ଯାଇ ହାତଯୋଡ଼ି, ମୁଣ୍ଡ ନୁଆଁଇ ପ୍ରଣାମ କଲୁ। ପାଖରେ ଜଣେ ପ୍ରୌଢ଼ ଭଦ୍ରଲୋକ ବସିଥିଲେ। ଆମକୁ ଦେଖି ସେ କହିଲେ ଏ ପ୍ରଣାମ ଓଡ଼ିଶାର ପରମ୍ପରା। ଅତି ପୂଜନୀୟ ହେଲେ ମୁଣ୍ଡ ନୁଆଁଇ ଗୋଡ଼ତଳେ ପଡ଼ନ୍ତି। ଆଉ ଟିକିଏ ମଧ୍ୟମ ଭଲ ପୂଜନୀୟ ଲୋକଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କରନ୍ତି। ସମବୟସ୍କମାନଙ୍କୁ ଠିଆ ଠିଆ ନମସ୍କାର କରନ୍ତି। ବଙ୍ଗାଳୀଙ୍କ ପରି ନଇଁ ପାଦ ଛୁଅନ୍ତି ନାହିଁ। ଏକଥା ଶୁଣି ହଠାତ୍ ଚମକିପଡ଼ି ପାଦ ଛୁଇଁବାକୁ ଯାଉଛୁ ସାଙ୍ଗେ ସାଙ୍ଗେ ସୁଭାଷବାବୁ ଓଡ଼ିଆରେ କହିଲେ, 'ଥାଉ, ଥାଉ, ତୁମ ପରମ୍ପରାକୁ ତୁମେ ବଜାୟ ରଖ।' ଏତେଦିନ ପରେ ଯେ ସେ ଓଡ଼ିଆ ଭାଷାକୁ ଭୁଲିନାହାନ୍ତି ଏହା ତାଙ୍କ ଅଗାଧ ପାଣ୍ଡିତ୍ୟର ପରିଚୟ। ତାପରେ କୁଆଡ଼େ ଆସିଛ ବୋଲି ପଚାରିବାରୁ ଆମେ କହିଲୁ ଭାରତ ଭ୍ରମଣ କରିବା ବାଟରେ କଲିକତା ଆସିଛୁ। ଟିକେ ଆପଣଙ୍କୁ ଦେଖିବାକୁ ଚାଲିଆସିଲୁ। ଟିକେ ହସି କହିଲେ 'ମୁଁ ତୁମ ଯାତ୍ରାର ସଫଳତା କାମନା କରୁଛି। ଏଡ଼େବଡ଼ ଦେଶ ଭାରତବର୍ଷ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା। କେତେ ଜନପଦ, ଗିରିବନ, ନଦୀ, ସମୁଦ୍ର ଭଲ ଭାବରେ ଦେଖ୍, ଶିଖ। ଡେଲି ଡାଏରୀ ଲେଖୁଛ ତ?' 'ଆଜ୍ଞା ହଁ।' ଆମେ ଉତ୍ତର ଦେଲୁ। ବାସ୍ ଏତିକି। ସେ ହିଁ ଆମ ପକ୍ଷେ ଯଥେଷ୍ଟ। ପାଖରେ କେହି ଜଣେ ଭଦ୍ରଲୋକ ବସିଥିଲେ। ତାଙ୍କୁ ପାଖକୁ ଡାକି ସୁଭାଷବାବୁ ତାଙ୍କ କାନରେ କଣ କହିଲେ। ସେ ବାହାରକୁ ଯାଇ, କିଛି ସମୟ ପରେ ଫେରି

ଆସି ଆମ ପକେଟରେ ପଚଶଟି ଟଙ୍କା ଗୁଞ୍ଜି ଦେଲେ । କହିଲେ ସୁଭାଷବାବୁଙ୍କର ଦାନ । ଧନ୍ୟ ହେଲୁ । କହିଲୁ ଆମେ ତ ତାଙ୍କ ସାକ୍ଷାତ ପାଇଁ ଆସିଥିଲୁ । ଟଙ୍କା ପାଇଁ ତ ନୁହେଁ । ସେ କହିଲେ ନଅନ୍ତୁ । କଛି ଭାବନ୍ତୁ ନାହିଁ । ଏତେବଡ଼ ଲୋକ, କାଳେ କ'ଣ ଭାବବେ ବୋଲି ଆଉ ତାକୁ ଫେରାଇଲୁ ନାହିଁ । ପରେ ଜାଣିଲୁ ଯେ ସେ ତାଙ୍କ ବଡ଼ଭାଇ ଶରତବାବୁଙ୍କର ସ୍ତ୍ରୀଙ୍କଠାରୁ ତାକୁ ଆଣିଥିଲେ । ସେଇ ମହତ ଦାନକୁ ସାଥିରେ ନେଇ ଫେରି ଆସିଲୁ । ରାସ୍ତାରେ ନାନା ଅଭାବ ଅସୁବିଧାରେ ପଡ଼ି ମଧ୍ୟ ସେ ଟଙ୍କାକୁ ଖର୍ଚ୍ଚ କରି ନ ଥିଲୁ । ଅମୂଲ୍ୟ ନିଧି ସମ ବହୁ ଦନ ଯାଏ ସାଇତ ରଖିଥିଲୁ ।

ସୁଭାଷ ବାବୁଙ୍କୁ ଦେଖି ମନେହେଲା ଯେମିତ ସେ ଆମର । ବହୁତ ଦନରୁ ତାଙ୍କ ସହିତ ରକ୍ତର ସମ୍ପର୍କ ରହିଛି । ସେ ଯେମିତ ଅତ ଆପଣାର, ଅତ ନଜର ଲୋକ । ଗର୍ବ ନାହିଁ, ଅଭିମାନ ନାହିଁ, କନ୍ତୁ ସେ ଆମର ଗୌରବ, ସେ ଆମର ଅଭିମାନ, ଆମର ଅମୂଲ୍ୟ ସମ୍ପଦ । ତାପରେ ସୁଭାଷ ବାବୁଙ୍କୁ ଆମେ ଅନେକଥର ଦୂରରୁ ଦେଖିଛୁ । ଲକ୍ଷ୍ନୌଠାରେ, ହରିପୁରା ଏବଂ ତ୍ରିପୁରୀରେ ।

ସୁଭାଷବାବୁଙ୍କୁ ଶେଷଥର ପାଇଁ ଦେଖିଥିଲି ଯେତେବେଳେ ସେ କଂଗ୍ରେସରୁ ଇସ୍ତଫା ଦେଇ ୧୯୩୯ ମସିହାରେ ଫରୱାର୍ଡ୍ ବ୍ଲକ୍‌ର ସଭାପତ ଭାବରେ କଟକ ଆସିଥିଲେ । କଟକ ସହରର ତରଫରୁ କଟକ ରେଳ ଷ୍ଟେସନଠାରେ ତାଙ୍କୁ ଯେଉଁ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା ତାର ପଟାନ୍ତର ନାହିଁ । ସୁଭାଷ ବାବୁଙ୍କୁ ହାତୀ ଉପରେ ବସାଇ ଏକ ପଟୁଆରରେ ଅଣାଗଲା । ସେଦନ ୪ଟାବେଳେ ମୁନସିପାଲିଟି ପଡ଼ିଆରେ ଏକ ବିରାଟ ସାଧାରଣ ସଭା ହେଲା । ପ୍ରବଳ ଜନ-ସମାଗମ ହୋଇଥାଏ । ସୁଭାଷ ବାବୁଙ୍କର ସେହି ପରିଧେୟ—ଖଦଡ଼ ଧୋତି, ପଞ୍ଜାବୀ ଓ ଗାନ୍ଧୀ ଟୋପି । ସଭା ଆରମ୍ଭ ହେବା ମାତ୍ରେ ଓଡ଼ିଆମାନେ କହିଲେ 'ଓଡ଼ିଆରେ କୁହନ୍ତୁ' । ବଙ୍ଗାଳୀମାନେ କହିଲେ 'ବଙ୍ଗଳାରେ କୁହନ୍ତୁ' । ସୁଭାଷବାବୁ ସମସ୍ତଙ୍କୁ ଶାନ୍ତ କରାଇ ଦେଇ କହିଲେ 'ଆପଣମାନେ ସ୍ଥିର ହୁଅନ୍ତୁ । ମୁଁ ବଙ୍ଗାଳୀ ନୁହେଁ କି ଓଡ଼ିଆ ନୁହେଁ, ମୁଁ ହିନ୍ଦୁସ୍ଥାନୀ । ହିନ୍ଦୁସ୍ଥାନର ଭାଷାରେ କହିବି' । ସେ ବହୁ ସମୟ ପର୍ଯ୍ୟନ୍ତ ହିନ୍ଦୀ ଓ ଉର୍ଦ୍ଦୁ ଭାଷା ମିଶାଇ ତାଙ୍କର ନୀତ ଓ ଲକ୍ଷ୍ୟକୁ ପ୍ରାଞ୍ଜଳ ଭାବରେ ବୁଝାଇଲେ । ଲୋକେ ସ୍ତବ୍ଧ ଓ ମୁଗ୍ଧ । ତାପରେ ସୁଭାଷବାବୁ ବହୁ ଦୁଃଖକଷ୍ଟ ଦେଇ ଗତ କରି ୧୯୪୧ରେ ଏକ ମୌଲବୀ ବେଶରେ ଖାଇବର ଓ ଗୁଲାନପସର ଗିରସଙ୍କଟ ଦୌଡ଼ି ଝୋଲରେ ସ୍ଲେଟ ପାର୍ବତ୍ୟ ନଦୀ ପାର ହୋଇ ଘନ ଅରଣ୍ୟାନୀ ଓ ବିପଦସଙ୍କୁଳ ପଥ ଦେଇ, ସ୍ଥାନେ ସ୍ଥାନେ ନଜ ଜୀବନକୁ ବିପନ୍ନ କରି କାବୁଲ ଗଲେ । କାବୁଲରୁ ଗଲେ ବର୍ଲିନ । ବର୍ଲିନରୁ

ଆସିଲେ ଜାପାନ ଦେଇ ସିଙ୍ଗାପୁର । ସେଇଠି ସେ ଜାତୀୟ ସେନାବାହିନୀ ଗଠନ କଲେ । ସମସ୍ତଙ୍କ କଣ୍ଠରେ ନିନାଦିତ ହେଲା 'ଜାତୀୟ ସେନାବାହିନୀ ଅମର ରହେ', 'ନେତାଜୀ ଜିନ୍ଦାବାଦ', 'ଇନ୍‌କିଲାବ୍ ଜିନ୍ଦାବାଦ ।' ନେତାଜୀ ଡାକିଦେଲେ 'ଦିଲ୍ଲୀ ଚଲୋ' ଦିଲ୍ଲୀ ହିଁ ଆମର ଗନ୍ତବ୍ୟ ପଥ । କଦମ୍ କଦମ୍ ବଢ଼େଇ ଦେଇ ଆଗେଇ ଚାଲ । ଦୁଃଖ, ଦୈନ୍ୟ, କ୍ଷୁଧା, ତୃଷ୍ଣା, ବାଧାବିଘ୍ନକୁ ଅତିକ୍ରମ କରି ଆମକୁ ଦିଲ୍ଲୀରେ ପହଞ୍ଚିବାକୁ ହିଁ ହେବ । ଆମର ସ୍ଲୋଗାନ, ଆମର ଜୟଧ୍ୱନୀ ହେବ ଜୟହିନ୍ଦ୍ ।

ନେତାଜୀ ଆଜି ଜୀବିତ ନା ମୃତ ତାହା ଏକ ଦ୍ୱନ୍ଦ୍ୱ । ମାତ୍ର ତାଙ୍କର ଜୟହିନ୍ଦ୍ ସ୍ଲୋଗାନଟି ପ୍ରତିଧ୍ୱନିତ, ନିନାଦିତ ହୋଇ ଉଠୁଛି ସବୁଠାରେ ସବୁ କ୍ଷେତ୍ରରେ । ହେ ବୀର ପୁଙ୍ଗବ, ହେ ମହାନ୍ ଦେଶପ୍ରେମୀ, ହେ ମହାନ୍ ଦେଶସେବୀ, ତୁମେ ଏ ଦୀନ ଲେଖକର ଭକ୍ତିପୂର୍ଣ୍ଣ ପ୍ରଣାମ ଗ୍ରହଣ କର । ଜୟହିନ୍ଦ୍ ।

## ପଣ୍ଡିତ ଜବାହରଲାଲ ନେହେରୁ

୧୯୬୪ ମସିହା ମେ ୨୭ ତାରିଖରେ ମହାନ୍ ନେତା ଜବାହରଲାଲ ନେହେରୁ ସ୍ୱର୍ଗାରୋହଣ କଲେ । ୧୯୬୬ ଜାନୁଆରୀ ୧୦ ତାରିଖ ଭାରତୀୟ ସମୟ ରାତି ୧ ଟାରେ ଲାଲବାହାଦୁର ଶାସ୍ତ୍ରୀ ତାସକେଣ୍ଟଠାରେ ଇହଧାମ ତ୍ୟାଗକଲେ । ଗୋଟିଏ ପରେ ଗୋଟିଏ ଭାରତର ଦୁଇଟି ଉଜ୍ଜ୍ୱଳ ଜ୍ୟୋତିଷ୍କ କକ୍ଷଚ୍ୟୁତ ହେଲେ । ଏ ଦେଶରେ ଦୁଇଜଣ ପ୍ରଧାନମନ୍ତ୍ରୀ ମାତ୍ର ଦେଢ଼ବର୍ଷ ବ୍ୟବଧାନରେ ଚିରବିଦାୟ ଭଜିଲେ । ତୁହିଙ୍କୁ ପରଖିବାର ଅବକାଶ ମୋତେ ମିଳି ନଥିଲା କିମ୍ବା ତୁହିଙ୍କ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଚିନ୍ତା କରିବାର ସମୟ ବା ସୁଯୋଗ ପାଇ ନ ଥିଲି ।

ନେହେରୁ ସେତେବେଳର ବିଖ୍ୟାତ ବାରିଷ୍ଟର ମୋତିଲାଲ ନେହେରୁଙ୍କ ପୁତ୍ର । ଧନୀର ଏକମାତ୍ର ଦୁଲାଲ । ବିଲାତରେ ପାଠ ପଢ଼ିଥିଲେ । ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା ଓ ସଂସ୍କୃତିରେ ନିଜ ଜୀବନ ଗଢ଼ିଥିଲେ । ସେଥିରେ ଅନୁପ୍ରାଣିତ ହେଲେ ମଧ୍ୟ ଦେଶ ମାତୃକାର ଆହ୍ୱାନରେ ସେ ସମସ୍ତ ତ୍ୟାଗ କଲେ । ପିତାମାତା ଗଲେ । ପତ୍ନୀ କାରାଗାରରୁ ଆସି ଶେଷ ନିଃଶ୍ୱାସ ତ୍ୟାଗକଲେ । କିନ୍ତୁ କେହି ତାଙ୍କୁ ତାଙ୍କ ବ୍ରତରୁ ଟଳାଇ ପାରିଲେ ନାହିଁ । ନିରବଚ୍ଛିନ୍ନ ଭାବରେ ଦେଶର ସେ କାମ କରି ଚାଲିଲେ । ଗାନ୍ଧିଜୀଙ୍କର ସେ ହେଲେ ଦାୟାଦ ।

ଗାନ୍ଧିଜୀ ଜୀବିତ ଥାଉଁ ଥାଉଁ ସେ ହେଲେ ଭାରତର କର୍ଣ୍ଣଧାର । ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । ଏକାଦିକ୍ରମେ ୧୯୪୭ ଅଗଷ୍ଟ ତା ୧୫ ରିଖ ଠାରୁ ୧୯୬୪ ମେ ପର୍ଯ୍ୟନ୍ତ ସେ ଏ ଦେଶର ବାଗଡ଼ୋର ଧାରଣ କରିଥିଲେ ।

ନେହେରୁଙ୍କୁ ଅତି ନିକଟରୁ ଏବଂ ଅତି ଦୂରରୁ ଦେଖିବାର ସୌଭାଗ୍ୟ ମୁଁ ଅର୍ଜନ କରିଛି । ଲକ୍ଷ୍ନୌ କଂଗ୍ରେସରେ ପ୍ରିୟତମା ପତ୍ନୀ କମଳା ନେହେରୁଙ୍କ

ଅକାଳ ବିୟୋଗରେ ବ୍ୟଥିତ ହୋଇ ଝରଝର ହୋଇ ଅଶ୍ରୁ ଝରିବାର ଏବଂ ପ୍ରଥମ ପ୍ରଧାନମନ୍ତ୍ରୀ ହୋଇ ତାଙ୍କ ମୁଖରେ ସଦା ମୃଦୁ ହାସ୍ୟ ଫୁଟିବାର ମୁଁ ଲକ୍ଷ୍ୟ କରିଛି ।

ଭାରତ ଯେତେବେଳେ ଦ୍ୱିଖଣ୍ଡିତ, ହିଂସା ଦ୍ୱେଷର ବୀଜବପନ କରି ଦଳେ ଚାଲିଥାନ୍ତି, ସାମ୍ପ୍ରଦାୟିକତାର ବିଦ୍ୱେଷ ସାରା ଅଞ୍ଚଳ ବ୍ୟାପୀ ଜନମତକୁ ବିଭ୍ରାନ୍ତ କରୁଥାଏ, ଚତୁର୍ଦ୍ଦିଗରେ ହାଣ, କାଟ, ମାରର ତାଣ୍ଡବ ଲୀଳା ଚାଲିଥାଏ, ସେତିକବେଳେ ଏତେବଡ଼ ଦେଶର ଶାସନଭାର ହାତକୁ ନେଇ ତାକୁ ସୁପରିଚାଳିତ କରିବା କିଛି କମ୍ କଥା ନୁହେଁ । ଅବଶ୍ୟ ତାଙ୍କ ପଛରେ ଲୌହମାନବ ସର୍ଦ୍ଦାର ପଟେଲ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ମୌଲାନା ଆବୁଲ କଲମ ଆଜାଦ ପ୍ରଭୃତି ଥିଲେ । କିନ୍ତୁ ସେ ଏକାକୀ ନିଜ ସିଦ୍ଧାନ୍ତ ଉପରେ ଅଟଳ ରହି ଦୃପ୍ତ ଭାବରେ ବଢ଼ି ଚାଲିଥିଲେ ଭାରତର ମଙ୍ଗଳପାଇଁ, ଏଦେଶ ଓ ଜାତିର ଉନ୍ନତି ସାଧନ ପାଇଁ । ତାଙ୍କର ସମଗ୍ର ପରିବାର ଥିଲେ ଏ ଦେଶର ଗୋଟିଏ ଗୋଟିଏ ଉତ୍ସର୍ଗୀକୃତ ଆତ୍ମା ।

ଜନମତକୁ ସେ ସବୁବେଳେ ସମ୍ମାନ ଦେଉଥିଲେ । ଲୋକେ ତାଙ୍କ କଥା ମନ୍ତ୍ରମୁଗ୍ଧ ହୋଇ ଶୁଣୁଥିଲେ । ତାଙ୍କ ନିର୍ଦ୍ଦେଶକୁ ଦେବତାର ବରଦାନ ସମ ମନେ କରୁଥିଲେ । ପଞ୍ଚଶୀଳନୀତିର ସେ ଥିଲେ ପ୍ରବର୍ତ୍ତକ । ଶାନ୍ତିପୂର୍ଣ୍ଣ-ସହାବସ୍ଥାନ ନୀତି ତାଙ୍କରି କଳ୍ପନାପ୍ରସୂତ । ହିନ୍ଦି ଚୀନି ଭାଇ ଭାଇ ଧ୍ୱନି ସେ ପ୍ରଥମେ ଆରମ୍ଭ କରିଥିଲେ । ତାଙ୍କରି ଯୋଗେ ଇଣ୍ଡୋନେସିଆର ସୁକର୍ଣ୍ଣ, ହାତା ଏବଂ ଆହୁରି ଅନେକଙ୍କ ଜୀବନ ଡଚ ଆକ୍ରମଣକାରୀଙ୍କ ହାତରୁ ରକ୍ଷା ପାଇଥିଲା ।

ଦେଶୀୟ ରାଜ୍ୟ, ଶ୍ରମିକ, କୃଷକ, ହରିଜନ ଆଦିବାସୀ ତଥା ସବୁ ସ୍ତରର ଲୋକଙ୍କ ସମସ୍ୟାର ସମାଧାନର ସେ ଯେଉଁ ପନ୍ଥା ଅବଲମ୍ବନ କରିଥିଲେ ତାହା ଅନନ୍ୟ ।

ନିଜର ପୈତୃକ ନିବାସ ସ୍ୱରାଜ୍ୟ ଭବନ ଦେଶବାସୀଙ୍କ ଉଦ୍ଦେଶ୍ୟରେ ସେ ଉତ୍ସର୍ଗ କରିଥିଲେ । ଆଜି ତାହା କମଳା ଦେବୀଙ୍କ ନାମରେ ନାମିତ ହୋଇ ବିରାଟ ଚିକିତ୍ସାଳୟରେ ପରିଣତ ହୋଇଛି ।

ଚୀନାମାନେ ଯେତେବେଳେ ମ୍ୟାକ୍ ମୋହନ ଲାଇନ୍‌ଟପି ଆମ ଦେଶର ଭିତର ଭିତରକୁ ପଶି ଆସିଥିଲେ, ନେହେରୁଙ୍କ ବଳିଷ୍ଠ ନେତୃତ୍ୱ ସେତେବେଳେ ଲୋକଙ୍କୁ ଚକିତ କରିଥିଲା, ପ୍ରବୁଦ୍ଧ କରିଥିଲା । ଭାରତବାସୀ ତାଙ୍କ ଦୃଢ଼ ଆହ୍ୱାନରେ ଏକ ହୋଇ ଉଠିଥିଲେ ।

ମହାତ୍ମାଗାନ୍ଧୀଙ୍କ ପରେ ନେହେରୁ ହେଉଛନ୍ତି ଏକମାତ୍ର ନେତା ଯାହାର କଥା ଉପରେ ଭାରତର ଅଗଣିତ ଜନତାର ଅଖଣ୍ଡ ବିଶ୍ୱାସ ଏବଂ ଅଟଳ ଆସ୍ଥା ଥିଲା ।

ଦେଶ ପ୍ରତି ତାଙ୍କର ଅପୂର୍ବ ତ୍ୟାଗ, କର୍ମନିଷ୍ଠା, ସଙ୍ଗଠନ ଶକ୍ତି, ସର୍ବୋପରି ତାଙ୍କର ଉଦାର ନୀତି କେବଳ ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ତାଙ୍କ ବିୟୋଗରେ ଦେଶ ଏକ ବଡ଼ ନେତା ହରାଇଲା ଏଥିରେ ସନ୍ଦେହ ନାହିଁ । ଜବାହାରଙ୍କ ମୃତ୍ୟୁରେ ଦେଶର ଅପୂରଣୀୟ କ୍ଷତି ହେଲା । ଲୋକେ ଏ ଘଡ଼ସନ୍ଧି ମୁହୂର୍ତ୍ତରେ ତାଙ୍କ ବିୟୋଗରେ ମର୍ମାହତ ହେଲେ । ନେହେରୁଙ୍କ ଯୋଗୁ ଭାରତ ବାହାରେ ସମ୍ମାନିତ ହୋଇଛି, ଆଦୃତ ହୋଇଛି । ବିଶ୍ୱ ଦରବାରରେ ତାର ଉଚ୍ଚ ଆସନ ବାଛି ନେଇଛି । ଭିତରେ ନାନା ବିଶୃଙ୍ଖଳା ଥିଲେ ମଧ୍ୟ ଆନ୍ତର୍ଜାତିକ କ୍ଷେତ୍ରରେ ସେ ନିଜକୁ ପ୍ରତିଷ୍ଠା କରି ଯାଇଛନ୍ତି । ଯେତେବେଳେ ପୃଥିବୀର ରଙ୍ଗମଞ୍ଚରେ ଯେଉଁ କେତେକ ନେତା ଆସିଥିଲେ, ଯେପରି କେନେଡ଼ି, କ୍ରୁଶ୍ଚେଭ୍, ନାସେର— ନେହେରୁ ସେମାନଙ୍କ ମଧ୍ୟରେ ଅନ୍ୟତମ ।

## ଲାଲ୍‌ବାହାଦୁର୍ ଶାସ୍ତ୍ରୀ

୧୯୬୬ ଜାନୁୟାରୀ ୧୦ ତାରିଖ ଭାରତ ଇତିହାସରେ ଏକ ସ୍ମରଣୀୟ ଦିବସ । ଏହିଦିନ ତାସ୍‌କେଣ୍ଟଠାରେ ଭାରତ ଓ ପାକିସ୍ତାନ ମଧ୍ୟରେ ଶାନ୍ତିପୂର୍ଣ୍ଣ ସମାଧାନ କରିବାକୁ ଯାଇ ଲାଲବାହାଦୁର ଚିରଦିନ ପାଇଁ ଆଖି ବୁଜିଲେ । ଏ ମୃତ୍ୟୁ ଦେଶର ପ୍ରତ୍ୟେକ ସ୍ତରର ଲୋକଙ୍କୁ ବିହ୍ୱଳିତ କଲା । ବିଭିନ୍ନ ମତବାଦ, ସମ୍ପ୍ରଦାୟର ଲୋକେ ଅନୁଭବ କଲେ ସତେଯେପରି ନିଜ ପରିବାରରୁ ଜଣେ ଅତି ପ୍ରିୟଲୋକ ଚାଲିଗଲେ । ଭାରତର ଚେତନ ଦେବନ ସବୁ ସତେ ଯେପରି ଶାସ୍ତ୍ରୀଙ୍କ ମରଣରେ ମର୍ମାହତ ହେଲେ । ତାଙ୍କର ରାଜନୈତିକ ଜୀବନ ଯୌବନାବସ୍ଥାରୁ ହିଁ ଆରମ୍ଭ ହୋଇଥିଲା । ସରକାରୀ ପଦବୀର ଅହଙ୍କାର ବା ଅଭିମାନ ତାଙ୍କ ପ୍ରାଣରେ ବିଶୃଙ୍ଖଳା ସୃଷ୍ଟି କରି ନ ଥିଲା । କାରଣ କାୟମନୋବାକ୍ୟରେ ସେ ସେବକର ଜୀବନ ହିଁ ଯାପନ କରୁଥିଲେ । ଦେଶ ସେବାକୁ ଆତ୍ମ ସେବାର ମାଧ୍ୟମରୂପେ ସେ କେବେହେଲେ ବରଣ କରି ନାହାଁନ୍ତି । ତାହା କରିଥିଲେ, ମୃତ୍ୟୁ ବେଳକୁ ନିଜ ପରିବାରକୁ ଏକ ଋଣଗ୍ରସ୍ତ, ବାସହୀନ, ନିଃସ୍ୱ ରୂପେ ଅତଳ ସମୁଦ୍ରରେ ଭସାଇ ଦେଇ ଯାଇ ନ ଥାନ୍ତେ । ଆକାରରେ କ୍ଷୁଦ୍ର ହେଲେ ମଧ୍ୟ ପୃଥିବୀର ଏକ ବରିଷ୍ଠ ଶକ୍ତିରୂପେ ସେ ବିଦ୍ୟମାନ ଥିଲେ । ଜନତା ଭିତରୁ ସେ ଉଠିଥିଲେ, ଶେଷ ପର୍ଯ୍ୟନ୍ତ ଜନତାର ହିଁ ରହିଗଲେ । ତାଙ୍କର ଚରିତ୍ର ଦୋଷଶୂନ୍ୟ ରହିଥିଲା । ସେ ଥିଲେ ମଧୁର ଓ ସରଳ, ଅକୃତ୍ରିମ ଓ ତେଜସ୍ୱୀ, ଆତ୍ମତ୍ୟାଗ ଓ ନମ୍ରତାର ପ୍ରତୀକ । ଭାରତର ସଭ୍ୟତାର ଓ ସଂସ୍କୃତିର ଏକ ଜୀବନ୍ତ ନିଦର୍ଶନ । ସତ୍ୟ ଓ ନ୍ୟାୟର ରକ୍ଷା ପାଇଁ ସେ ଯେଉଁ ଚୂଡ଼ାନ୍ତ ଉଦ୍ୟମ କରି ଯାଇଛନ୍ତି, ତାହା ତାଙ୍କ ବନ୍ଧୁମହଲରେ ଓ କଂଗ୍ରେସ ଦଳ ମଧ୍ୟରେ ଖ୍ୟାତ

ସଞ୍ଚାର କରିଥିଲା । ସେତେବେଳର ଅର୍ଥମନ୍ତ୍ରୀ କୃଷ୍ଣମାଚାରୀଙ୍କ ଆବେଦନ ତାଙ୍କ ହୃଦୟରେ ଆଘାତ କରିପାରି ନଥିଲା । ନିର୍ମମ ପ୍ରାଣରେ ସେ ତାଙ୍କର ଇସ୍ତଫା ଗ୍ରହଣ କଲେ । ଗଣତନ୍ତ୍ରର ମୂଳଭିତ୍ତି ହେଲା ବିରୋଧୀ ଦଳକୁ ସହ୍ୟ କରିବା ଓ ତାଙ୍କ କଥା ଶୁଣିବା । ବିରୁଦ୍ଧ ସମାଲୋଚନାକୁ ସେ ସମ୍ମାନ ଦେଉଥିଲେ । କିଛି କରିବା ପୂର୍ବରୁ ବିରୋଧୀ ନେତାଙ୍କ ପରାମର୍ଶ ଗ୍ରହଣ କରୁଥିଲେ । ସେ ଏ ଜାତିର ନମସ୍ୟ, ପ୍ରଣମ୍ୟ ।

ଜାତୀୟ ସ୍ୱାର୍ଥ ହିଁ ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ତାଙ୍କର ବ୍ୟକ୍ତିଗତ ସ୍ୱାର୍ଥ ବୋଲି କିଛି ନ ଥିଲା । ଗର୍ବ, ଅହଙ୍କାର, ଅସହିଷ୍ଣୁତା ଓ ଅକାରଣ ଜିଦ୍ କରି ବସିବା ତାଙ୍କ ଚରିତ୍ରରେ ଦୁର୍ଲ୍ଲଭ ଥିଲା ।

## ଲୋକନାୟକ ଜୟପ୍ରକାଶ ନାରାୟଣ

ନିଦ୍ରା ନାହିଁ ଶୃଙ୍ଖଳିତ ବନ୍ଦୀର ଚକ୍ଷୁରେ । ସାରା ଭାରତ ସେତେବେଳେ ଜଳୁଛି ବିଦ୍ରୋହର ବହ୍ନିରେ । ସର୍ବତ୍ର ଗୋଟିଏ ଧ୍ୱନି-ଇଂରେଜ ଭାରତ ଛାଡ଼ (Quit India)—କରେଙ୍ଗେ ୟା ମରେଙ୍ଗେ । ଏହି ସମୟରେ ଲୌହ ପ୍ରାଚୀର ଘେରା କାରାଗାରରେ ଆବଦ୍ଧ ରହିବାର କୌଣସି କଥା ମନେ ରହୁନା । ଯେମିତି ହେଉ ଏଠାରୁ ପଳେଇଯିବାକୁ ହେବ । ତା'ର କଳ୍ପନା ବାସ୍ତବରେ ରୂପ ନେଲା । ୧୯୪୨ ନଭେମ୍ବର ୮ ତାରିଖ ମଧ୍ୟରାତ୍ରର ହଜାରିବାଗ ଜେଲର ଆକାଶ ଛୁଆଁ ପ୍ରାଚୀର ଡେଇଁ ସେ ଏକା ଗଲେନି, ସାଙ୍ଗରେ ଆଉ ପାଞ୍ଚଜଣ ବିଶ୍ୱସ୍ତ ସହକର୍ମୀଙ୍କୁ ନେଇଗଲେ । ଖବର ଶୁଣି ଯେପରି ଆକାଶ ଭାଙ୍ଗି ପଡ଼ିଲା ଶାସକ ସମ୍ପ୍ରଦାୟଙ୍କ ଉପରେ । କି ସର୍ବନାଶ ! ସେ ଯେ ଅତି ଭୟଙ୍କର ବନ୍ଦୀ । ଶୀଘ୍ର ଧର ତାକୁ । କିନ୍ତୁ ବନ୍ଦୀ କାହିଁ ? ପାହାଡ଼, ପର୍ବତ ଅତିକ୍ରମ କରି ଅନେକ ଝଡ଼ଝଞ୍ଜାଭରା ଦୁର୍ଯୋଗ ରାତି ପାରିହୋଇ ସେମାନେ ପହଞ୍ଚିଯାଇଛନ୍ତି କାଶୀରେ । ପରେ ଦିଲ୍ଲୀରେ ।

ବନ୍ଦୀ କିନ୍ତୁ ଚୁପ୍‌ଚାପ୍ ବସି ରହିଲେ ନାହିଁ । ସମଗ୍ର ଭାରତ ସେ ଅଶାନ୍ତ ଘୂର୍ଣ୍ଣି ଭଳି ବୁଲିବାକୁ ଲାଗିଲେ । କଣ୍ଠରେ ମହା ସଂଗ୍ରାମର ଆହ୍ୱାନ—ଉଠ, ଜାଗ । ଏପରି ସୁଯୋଗ ଆଉ କୌଣସି ଦିନ ପାଇବନି । ଏତେଦିନ ଆମେ ଖାଲି ପିଠି ପତେଇ ମାଡ଼ ଖାଇଛୁ । ଏଥର ତା'ର ପ୍ରତିଶୋଧ ନେବା । ମାଡ଼ର ବଦଳରେ ମାଡ଼, ଚାବୁକ୍ ବଦଳରେ ଚାବୁକ୍ ।

ମାଡ଼ ଯେ ସେମାନେ ଦେଇ ନ ପାରିଲେ, ତାହା ନୁହେଁ । ଯେମିତି ମାରିଛନ୍ତି, ସେମିତି ମରିଛନ୍ତି । ମୋଟ୍ କେତେ ଲୋକ ଯେ ସେଦିନ ପ୍ରାଣବଳି ଦେଇଥିଲେ ତା'ର ହିସାବ ନାହିଁ ।

ଇତିହାସ ସେତେବେଳେ ଆଗେଇ ଚାଲିଛି ଦୁର୍ବାର ଗତିରେ । ଗୋଟିଏ ପରେ ଗୋଟିଏ ଘଟଣା ଘଟି ଯାଉଛି । ରଚିତ ହେଉଛି ତାର ଇତିହାସ । ସରକାରୀ କୋଷାଗାର ଓ ଅସ୍ତ୍ରାଗାର ଦଖଲ କରିବା ପରେ ସ୍ୱାଧୀନ ସରକାର ପ୍ରତିଷ୍ଠିତ ହେଲା, ଉତ୍ତର ପ୍ରଦେଶର ବଲିଆ ଜିଲ୍ଲାରେ, ବିହାରର ଭାଗଲପୁରରେ, ମହାରାଷ୍ଟ୍ରର ସତାରା ଜିଲ୍ଲାରେ ପ୍ରତିଷ୍ଠିତ ହେଲା ସ୍ୱାଧୀନ ସରକାର ।

୧୭ ଡିସେମ୍ବରରେ ସ୍ୱାଧୀନ ତାମ୍ରଲିପ୍ତ ସରକାର ଜନ୍ମନେଲା, ମେଦିନୀପୁରରେ । ସବୁ ଦିଗରେ ବିପନ୍ନ ହୋଇ ଉଠିଛି ବ୍ରିଟିଶ୍ ସରକାର । ଏ ସବୁ ମୂଳରେ ରହିଛି ସେହି ପଳାତକ ବନ୍ଦୀ । ଭାରତ ବ୍ୟାପୀ ଏହି ପ୍ରଚଣ୍ଡ ବିକ୍ଷୋଭକୁ ଦମନ କରିବାକୁ ହେବ, ତାଙ୍କୁ ଗିରଫ୍ କର । ସନ୍ଧାନ ମିଳିଲା ୧୯୪୩ ମସିହା ନଭେମ୍ବର ମାସରେ । ନେପାଳ ଜଙ୍ଗଲରେ ବିଶ୍ୱସ୍ତ ସହକର୍ମୀଙ୍କୁ ନେଇ ସେଇଠି ତାଙ୍କର ହେଡ୍ କ୍ୱାର୍ଟର୍ ସ୍ଥାପନ କରିଛନ୍ତି ।

ଭାରତ ଓ ନେପାଳ ସରକାରଙ୍କ ମିଳିତ ପ୍ରଚେଷ୍ଟାରେ ଶେଷରେ ବନ୍ଦୀ ଧରା ପଡ଼ିଲା । ଅତ୍ୟନ୍ତ ସତର୍କ ପହରାରେ ତାଙ୍କୁ ରଖାଗଲା ନେପାଳର ଦୁର୍ଭେଦ୍ୟ କାରାଗାର ହନୁମାନ ନଗର ଜେଲ୍‌ରେ ।

କିନ୍ତୁ ଏ କ'ଣ ? ଖବର ଶୁଣି ବିସ୍ମୟରେ ସ୍ତମ୍ଭିତ ହୋଇଗଲା ବିଦ୍ରୋହୀ ଭାରତ । ପୁଣି ବନ୍ଦୀ ପଳେଇଛି ଅଭେଦ୍ୟ ହନୁମାନ ଜେଲ୍‌ରୁ । ବ୍ରିଟିଶ୍ ଅମଳରେ ଲଗ୍ ଲଗ୍ ଦୁଇଥର ଜେଲ୍‌ରୁ ପଳାଇବା ଯେ କଳ୍ପନାତୀତ ।

ପୁଣି ଆରମ୍ଭ ହେଲା ଭିତେ ପରିକ୍ରମା । ଏଥିମଧ୍ୟରେ ସୁଭାଷଚନ୍ଦ୍ର ଜର୍ମାନୀରୁ ଦକ୍ଷିଣ ପୂର୍ବ ଏସିଆକୁ ଚାଲି ଆସିଛନ୍ତି । ଥରେ ହେଲେ ତାଙ୍କ ନିକଟକୁ ଯାଇ ହେବ ନାହିଁ !

କୁଆଡ଼ୁ କିଛି ହେଲା ନାହିଁ । ସୀମାନ୍ତର ସବୁଆଡ଼େ ବ୍ରିଟିଶ୍ ଓ ଆମେରିକା ବାହିନୀର ନିଶ୍ଛିଦ୍ର ଜାଲ ବିଛାଯାଇଛି । ଏ ବାଡ଼ ଅତିକ୍ରମ କରି ଅନ୍ୟ ପାଖକୁ ଯିବା ଏକାବେଳେକେ ଅସମ୍ଭବ ।

ବନ୍ଦୀ କିନ୍ତୁ ବସିରହିଲେନି । ପଳାତକ ଅବସ୍ଥାରେ ଗୋଟିଏପରେ ଗୋଟିଏ ପୁସ୍ତକ କ୍ରମାଗତଭାବରେ ଲେଖି ଆମେରିକା ସେନାବାହିନୀଙ୍କ ଉଦ୍ଦେଶ୍ୟରେ ବାଣ୍ଟିବାର ବ୍ୟବସ୍ଥା କଲେ । "ଆମର ଶତ୍ରୁ ଇଂରେଜମାନେ । ତୁମେମାନେ ନୁହଁ । ତାହେଲେ ତୁମେମାନେ କାହିଁକି ଆସିଛ ? ସେମାନଙ୍କ ତରଫରୁ ଆମ ସହିତ ଲଢ଼େଇ କରିବାକୁ ? ଅନୁରୋଧ କରୁଛୁ ତୁମେମାନେ ସ୍ୱଦେଶକୁ ଫେରିଯାଅ ।"

ବନ୍ଦୀଙ୍କ ପ୍ରାଣ ଅସ୍ଥିର ହୋଇ ଉଠିଲା । ପଞ୍ଜାବୀମାନଙ୍କୁ ବ୍ରିଟିଶ୍ ସୈନ୍ୟ ବାହିନୀରେ ଯୋଗଦେବାକୁ ବାରଣ କରିବାକୁ ହେବ, ସେମାନଙ୍କୁ ବୁଝେଇବାକୁ ହେବ, ବ୍ରିଟିଶ୍ ସହିତ କୌଣସି ସହଯୋଗ ତୁମେମାନେ କରନା ।

ପୋଲିସ ଓ ଗୁଇନ୍ଦା ବାହିନୀ ଚୁପ୍ ହୋଇ ବସି ରହି ନାହାନ୍ତି । ସର୍ବତ୍ର ହିଂସ୍ର ଗଧିଆର ଚକ୍ଷୁ । ମୃତ କମ୍ପା ଜବତ ହେଉ ବନ୍ଦୀର ଶିର ଦରକାର । ସେପ୍ଟେମ୍ବର ୧୯୪୩ ମସିହା ୧୮ ତାରିଖ ରାତି ସେତେବେଳେ ଦଶଟା । ଟ୍ରେନ ଠିଆ ହୋଇଛି ଅମୃତସର ଷ୍ଟେସନରେ । ଅଳ୍ପ କିଛି ସମୟ ପରେ ଯାତ୍ରା ଆରମ୍ଭ କରିବ । ଚମକି ଉଠିଲେ ବନ୍ଦୀ । ଡାହାଣରେ ବାମରେ ସର୍ବତ୍ର ଉଦ୍ୟତ ଆଗ୍ନେୟାସ୍ତ୍ର । କାଲ ତ୍ରିଗାରଟା ନଇଁ ଆସିବାର ଅପେକ୍ଷା କରୁଛି ।

ଶୃଙ୍ଖଳିତ ଅବସ୍ଥାରେ ତାଙ୍କୁ ରଖାଗଲା ଲାହୋର ଜେଲରେ । ପରେ ଆଗ୍ରା କେନ୍ଦ୍ର ଜେଲରେ ଏକ ନିଭୃତ କୋଠରୀରେ ।

୧୯୪୪ ମସିହା ଶେଷ ହେଲା । ଆସିଲା ୧୯୪୫ ମସିହା । ଆନ୍ତର୍ଜାତିକ ପରିସ୍ଥିତିରେ ସେତେବେଳେ ଦ୍ରୁତ ପରିବର୍ତ୍ତନ ହେଉଛି । ଦ୍ୱିତୀୟ ମହାସମର ଶେଷ ହୋଇଛି । ଆଜାଦ୍ ହିନ୍ଦ୍ ଫୌଜକୁ କେନ୍ଦ୍ର କରି ସେତେବେଳେ ସାରା ଦେଶରେ ଆଗୁନ ଝଡ଼ ଉଠିଛି । ସର୍ବତ୍ର ଗୋଟିଏ ଆହ୍ୱାନ । ହିନ୍ଦ୍ ଫୌଜକୁ କୌଣସିମତେ ମଜା ଦେବାକୁ ପଡ଼ିବନି । ପରିସ୍ଥିତି ଲକ୍ଷ୍ୟ କରି ସମସ୍ତଙ୍କୁ ଜଣକ ପରେ ଜଣେ ମୁକ୍ତି ଦିଆଗଲା । ଏପରିକି ପ୍ରାଣଦଣ୍ଡ ଆଜ୍ଞା ପାଇଥିବା ବନ୍ଦୀ ମଧ୍ୟ । କିନ୍ତୁ ଏ ବନ୍ଦୀ ? ? --ନା ତାଙ୍କୁ ମୁକ୍ତି ମିଳିବନି । ଇଂରେଜମାନଙ୍କ ଭାଷାରେ ଏ ବନ୍ଦୀ ଅତ୍ୟନ୍ତ ବିପଦ୍ ଜନକ ।

ପ୍ରତିବାଦ କଲେ ଗାନ୍ଧୀଜୀ । ସେ କହିଲେ—ତୁମମାନଙ୍କ ନିକଟରେ ସେ ବିପଦ୍ ଜନକ ହୋଇପାରେ, କିନ୍ତୁ ନିଜ ଦେଶ ପାଖରେ, ନିଜ ଜାତି ପାଖରେ ସେ ମହାନ୍ ତ୍ୟାଗୀ, ସ୍ୱଦେଶବତ୍ସଳ, ବୀରପୁରୁଷ । ମୁଁ ତ ମନେକରେ ସେଭଳି ଶିକ୍ଷିତ ଦେଶପ୍ରେମୀ ପୁତ୍ରକୁ ନେଇ ଯେକୌଣସି ଦେଶ ଓ ଜାତି ଗର୍ବବୋଧ କରିପାରେ ।"

ଅନେକ ତର୍କ ବିତର୍କ, ଆଲୋଚନା ଓ ଆନ୍ଦୋଳନ ପରେ ୧୯୪୬ ମସିହା ମେ ୧୧ ତାରିଖରେ ତାଙ୍କୁ ମୁକ୍ତି ମିଳିଲା ଆଗ୍ରା Central Jailରୁ ।

କିଏ ଏହି ବ୍ରିଟିଶ ଶାସକ ତ୍ରିକାଶ ବନ୍ଦୀ ? କ'ଣ ତାଙ୍କ ନାମ ? ନାମ—ଲୋକନାୟକ ଜୟପ୍ରକାଶ ନାରାୟଣ । ଯିଏ କି ଅନ୍ୟର ଉତ୍ପୀଡ଼ନରେ ସ୍ୱେଚ୍ଛାରେ

ମୃତ୍ୟୁକୁ ବରଣ କଲେ । ମୃତ୍ୟୁର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ସମସ୍ତଙ୍କୁ କହୁଥିଲେ, ପ୍ରିୟଜନମାନଙ୍କୁ ବୁଝାଉଥିଲେ ଯେ ମୃତ୍ୟୁ ଅନିବାର୍ଯ୍ୟ । ସେ ଇଚ୍ଛାମୃତ୍ୟୁ ବରଣ କଲେ । ତାଙ୍କ ଚିତାଭସ୍ମ ନେଇ ଅନେକ ବାଦାନୁବାଦ ହୋଇଛି । ଆମ ନେତୃବୃନ୍ଦ ଦୁଃଖ ପ୍ରକାଶ କରି ଲମ୍ବା ଲମ୍ବା ବକ୍ତୃତମାନ ଦେଇଛନ୍ତି । ବୋଧହୁଏ ଜୟପ୍ରକାଶଜୀ ତାହା ବୁଝି ନ ଥିଲେ । ଯେ ତାଙ୍କର ଦେଶସେବା, ନିର୍ଲୋଭ ତ୍ୟାଗ ଓ ସଂଗ୍ରାମ ଦେଇ ପ୍ରମାଣ କରିଦେଇଛନ୍ତି ଯେ ସେ ମହାନ, ସେ ବିରାଟ । ସିଂହାସନରେ ନ ବସି ମଧ୍ୟ ସେ ଥିଲେ ସମ୍ରାଟ, କୋଟି କୋଟି ଲୋକଙ୍କର ଲୋକନାୟକ, ଓ ନେତା । ଆତ୍ମତ୍ୟାଗୀ ଦେଶ ଓ ଦଶକୁ ଯେ ଭଲପାଏ, ସେ ପ୍ରକୃତ ଦେଶପ୍ରେମୀ । ଜୟପ୍ରକାଶଜୀ ସେହିପରି ପ୍ରେମର ସନ୍ଧାନ କରୁ କରୁ ଅମୃତଲୋକକୁ ଚାଲିଗଲେ ।

P. S. P. ଯୋଗୁ ମୋର ଓ ମୋ ସ୍ୱାମୀଙ୍କର ତାଙ୍କ ସହିତ ବହୁଦିନର ପରିଚୟ । ସେ ଯେତେବେଳେ ଓଡ଼ିଶାରେ P. S. P ର ପ୍ରଚାର ଲାଗି ଆସୁଥିଲେ, ମୁଁ ବରାବର ତାଙ୍କ ପାଖରେ ରହୁଥିଲି ।

ମୋର ମହାଭାଗ୍ୟ ଯେ ମୋ ଲେଖା 'ବାଜି ରାଉତ' ନାଟକକୁ ଦେଖି ସେ ଅତ୍ୟନ୍ତ ପ୍ରଶଂସା କରିଥିଲେ ଏବଂ ନାଟକରେ ବାଜିରାଉତର ମରଣ ଦୃଶ୍ୟ ଦେଖି ସେ ବଡ଼ ବ୍ୟଥିତ ହୋଇ ପଡ଼ିଥିଲେ ।

ଅଗଣିତ ଦେଶବାସୀଙ୍କ ସହିତ ତାଙ୍କ ଉଦ୍ଦେଶ୍ୟରେ କେତେ ଟୋପା ଲୁହ ଢାଳି ସଭକ୍ତି ପ୍ରଣାମ ଜଣାଉଛି ।

## ଡକ୍ଟର ରାମମନୋହର ଲୋହିଆ

ବିଶିଷ୍ଟ ରାଜନୀତିଜ୍ଞ, ସମାଜବାଦୀ ନେତା, ସୁବକ୍ତା, ବିଦ୍ୱାନ ଡଃ ରାମମନୋହର ଲୋହିଆ, ସାମ୍ୟବାଦୀ ଆନ୍ଦୋଳନକୁ ଆଗେଇ ନେବା ଲାଗି ଓଡ଼ିଶା ଭ୍ରମଣରେ ଆସିଲେ । ସବୁ ସମାଜବାଦୀ ନେତାଙ୍କ ଭଳି ସେ ମଧ୍ୟ ବାବୁଭାଇଙ୍କର ଅତିଥି ହେଲେ । ପ୍ରଥମଦିନ ବାବୁଭାଇଙ୍କର ସ୍ତ୍ରୀ (ଶାନ୍ତା ବେନ୍) ତାଙ୍କୁ ରାନ୍ଧିବାଢ଼ି ଖୁଆଇଲେ ଅତି ଯତ୍ନ ସହକାରେ । କିନ୍ତୁ ଲୋହିଆ ମାରୱାଡ଼ି ଥିବାରୁ ମାରୱାଡ଼ି ରାନ୍ଧ । ଖାଇବାକୁ ବାବୁଭାଇଙ୍କୁ ଅନୁରୋଧ କଲେ । ବାବୁଭାଇ ସାଙ୍ଗେ ସାଙ୍ଗେ ବାଲମହାବିରଙ୍କୁ ତାଙ୍କର ପାଚକ ରୂପେ ନିଯୁକ୍ତ କଲେ ।

ଲୋହିଆ ମଣିଷ ହିସାବରେ ଇଷ୍ଟ'ତ ଭଲ । ରାଗିଲେ ବି ପଛେ ନଇଁବ ନାହିଁ । ଥରେ ଯାହା ଠିକ୍ ବୋଲି ବୁଝିଥିବେ ସେଥିରୁ କେହି ତାଙ୍କୁ ଟଳେଇ ପାରିବ

ନାହିଁ । ପାଳସବଷାନ ତାଙ୍କର ମୀତ । ତାଙ୍କ ବକ୍ତୃତା ବୁଝୁ ଥରେଇ ଦେବ । ବାହାରକୁ ସେ ଧୀର, ଗମ୍ଭୀର ଓ କଠୋର ସିନା କିନ୍ତୁ ଅନ୍ୟ ଢଗରେ ଶିଶୁପରି କୋମଳ ସରଳ ମନ । ଓଠରେ ଉଚ୍ଛୁଳା ହସ । ପୂର୍ଣ୍ଣ ଅହିଂସ ଥିଲେ ଲୋହିଆ । କାହାର ଦୁଃଖ ସେ ସହି ପାରୁ ନ ଥିଲେ । ସମାଜବାଦୀ ତ ଥିଲେ କିନ୍ତୁ ଗାନ୍ଧିବାଦ ଉପରେ ତାଙ୍କର ଅଟଳ ବିଶ୍ୱାସ ଓ ପ୍ରବଳ ଆସ୍ଥା ଥିଲା । କେରଳରେ କି ଅନ୍ୟ କେଉଁଠି ମୋର ସ୍ମରଣ ହେଉନି, ନିରୀହ ଲୋକଙ୍କ ପ୍ରତି ପୁଲିସର ଗୁଳି ଗୁଳନାରେ ସେ ଏପରି ବିଚଳିତ ହୋଇ ପଡ଼ିଥିଲେ ଯେ ଅତି କଠୋର ଭାଷାରେ ତାର ପ୍ରତିବାଦ କରିଥିଲେ । ସେତେବେଳେ ସମଗ୍ର ବିଶ୍ୱର ଜନ ସମର୍ଥନ ତାଙ୍କ ଆଡ଼େ ଢଳିଥିଲା ।

ମୋର ସୌଭାଗ୍ୟଯେ ଏପରି ଜଣେ କୃତକର୍ମୀ ମହାନ୍ ବ୍ୟକ୍ତିଙ୍କ ସାନ୍ନିଧ୍ୟ ଲଭ କରିଥିଲି । ମୁଁ ତାଙ୍କୁ କଥାରେ କଥାରେ ହସାଇଥିଲି ଏବଂ କନ୍ଦାଇଥିଲି ମଧ୍ୟ ।

ଲୋହିଆ ଓଡ଼ିଶାର କେତେକ ଦର୍ଶନୀୟ ସ୍ଥାନ ବୁଲି ଦେଖିବାକୁ ଇଚ୍ଛା ପ୍ରକାଶ କଲେ । ଯିବା ପୂର୍ବରୁ ସେ ସମ୍ପର୍କରେ କେତେକ ତଥ୍ୟ ଜାଣିବାକୁ ତାଙ୍କର ପ୍ରବଳ ଆଗ୍ରହ ହେଲା । ବନ୍ଧୁ ବାବୁଭାଇ ଏବଂ ରବିରାୟ ମୋତେ ସେଥିପାଇଁ ନିଯୁକ୍ତ କଲେ ।

ମୋ ଠୁଁ କୋଣାର୍କ ମନ୍ଦିର ନିର୍ମାଣଠାରୁ ଆରମ୍ଭ କରି ବାରବର୍ଷର ଶିଶୁ ଧରମାର ଅପୂର୍ବ ଆତ୍ମୋତ୍ସର୍ଗ କାହାଣୀ ଶୁଣି ସେ ବିଭୋର ହୋଇଗଲେ । ତାଙ୍କ ଆଖିରୁ ଝର ଝର ଲୁହ ବୋହିଗଲା । ମୁଁ କହିଲି କୋଣାର୍କ ମନ୍ଦିର ଜଣେ ଅଶୀ ବର୍ଷର ବୃଦ୍ଧାର ବୁଦ୍ଧିରେ ତିଆରି କରିଗଲେ ଏବଂ ଜଣେ ବାରବର୍ଷର ଶିଶୁ ଏହାର ମୁଣ୍ଡି ମାରି 'ବାରଶହ ବଢ଼େଇରେ ଦାଏ ପୁଅର ଦାଏ ଲୁହେଁ' କହି ଅଥଳ ଜଳକୁ ଡେଇଁ ପଡ଼ିଲା । ଲୋହିଆ କାନ୍ଦି କାନ୍ଦି କହିଲେ ଏ ପିଲାଟିର ଜୀବନରୁ ଆମର ଅନେକ ଶିଖିବାର ଅଛି ମହାନ୍ତ । ସେ ଆମର ଆଦର୍ଶ ହେବା ଉଚିତ । ଆମ ଜୀବନ ପ୍ରକୃତରେ ଦେଶ ସେବା ପାଇଁ, ଜନ ସେବା ପାଇଁ ଉତ୍ସର୍ଗ ହେବା ଉଚିତ୍ । ଶିଳ୍ପୀ ବଂଶକୁ ଲୋପ ପାଇବାକୁ ଦେଲାନାହିଁ । ନିଜ ବଂଶକୁ ଲୋପ କରି ଗ୍ଲଲିଗଲା ।

ମୁଁ କହିଲି ସେହିପରି ଜଗନ୍ନାଥଙ୍କୁ ପ୍ରତିଷ୍ଠା କଲେ ରଜା ଇନ୍ଦ୍ରଦ୍ୟୁମ୍ନ । ତାଙ୍କ ଭକ୍ତିରେ, ତାଙ୍କ ସେବାରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ଜଗନ୍ନାଥ ପଚ୍ଚାରିଲେ 'ତୁମେ ବର ମାଗ ରଜା, ଯାହା ଗ୍ଲହିଁବ ତାହା ପୂରଣ କରିବ ।' ରଜା କହିଲେ 'ପ୍ରଭୁ ମୋତେ ଏହି ବର ଦିଅନ୍ତୁ ଯେ ମୋ ବଂଶରେ ଯେପରି କେହି ନ ରହିନ୍ତୁ, କାରଣ

ସେମାନେ ଭବିଷ୍ୟତରେ ମନ୍ଦିରର ଉତ୍ତରାଧିକାରୀତ୍ୱ ନେଇ ଦାବୀ କରି ବସିବେ ଏବଂ ମନେ ମନେ ଗର୍ବିତ ହେବେ ଯେ ଆମ ପୂର୍ବପୁରୁଷ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରିଛନ୍ତି । ମୁଁ କିନ୍ତୁ ଏହା ଚାହେଁ ନାହିଁ ପ୍ରଭୁ । ଜଗନ୍ନାଥ କହିଲେ 'ତଥାସ୍ତୁ' ।

ଲୋହିଆ ଏକଥା ଶୁଣି ଏତେ ମୁଗ୍ଧ ହୋଇ ଯାଇଥିଲେ ଯେ ଧରମା ଏବଂ ଇନ୍ଦ୍ରଦ୍ୟୁମ୍ନର ଉଦାହରଣ ଖାଲି ଓଡ଼ିଶାରେ ନୁହେଁ ଭାରତର ବିଭିନ୍ନ ସ୍ଥାନରେ ଦେଇଛନ୍ତି ।

ଏତିକି ନୁହେଁ, ମୁଁ ଓଡ଼ିଶାର ବହୁ କିମ୍ବଦନ୍ତୀ ତାଙ୍କୁ ଶୁଣାଇଥିଲି । ସେ ଏତେ ଖୁସି ହୋଇଯାଇଥିଲେ ଯେ ଗଲାବେଳେ ମୋତେ ଖୁବ୍ ପ୍ରଶଂସା କରି ଗଲେ । ତାଙ୍କ ଭଳି ଲୋକଙ୍କ ମୁହଁରେ ମୋର ପ୍ରଶଂସା ଶୁଣି ନିଜ ଜୀବନକୁ ଧନ୍ୟ ମନେ କରିଥିଲି ।

## ସ୍ୱର୍ଗୀୟା ଇନ୍ଦିରା ଗାନ୍ଧୀ

୧୯୮୪ ଅକ୍ଟୋବର ୩୧ତାରିଖ । ଭାରତ ଇତିହାସରେ ଏକ କଳଙ୍କମୟ, ବିଷାଦମୟ, ଅତି ରହସ୍ୟମୟୀ ଦିବସ । ଇନ୍ଦିରାଗାନ୍ଧୀ, ଯେ କି ଦେଶକୁ ପ୍ରଗତି ପଥରେ ଆଗେଇ ନେଉଥିଲେ, ଯେ ଭାରତର ସୁନାମକୁ ପୃଥିବୀବାସୀଙ୍କ ସମ୍ମୁଖରେ ଗରିମାମୟ ଭାବରେ ଯୋଡୁଥିଲେ, ଯାହାଙ୍କ ଯୋଗେ ଭାରତ ବିଶ୍ୱ ସମ୍ମୁଖରେ ଅଭିନନ୍ଦିତ ହେଉଥିଲା, ତାଙ୍କୁ ଅତି ନିର୍ମମ, ଅତି ନିଷ୍ଠୁର ଭାବରେ ହତ୍ୟା କରାଗଲା ତାଙ୍କର ନିଜର ଦୁଇଜଣ ଦେହରକ୍ଷୀଙ୍କ ଦ୍ୱାରା । ସେ ସେହିପରି ମହୀୟସୀ ନାରୀ ଥିଲେ ଯେଉଁ ଶତ୍ରୁଠାରେ ମଧ୍ୟ ଆସ୍ଥା ସ୍ଥାପନ କରିଥିଲେ । ଏ ମୃତ୍ୟୁ ଅତି ଯନ୍ତ୍ରଣାଦାୟକ, ଅତି ହୃଦୟବିଦାରକ । ଦୂରଦର୍ଶନରେ ତାଙ୍କର ମୃତ ଶରୀର ଦେଖି କେଜାଣି କାହିଁକି ମୋ ଆଖିରୁ ଅନେକ ସମୟଯାଏ ଅଶ୍ରୁ ଝରିଥିଲା ।

ଯେଉଁ ଶରୀରର ଜୀବନଦୀପ ଚିରଦିନ ପାଇଁ ଲିଭିଗଲା ସେ ଶରୀର ଶାନ୍ତିବନରେ ଚିରଶାନ୍ତି ଲାଭ କଲା । ଏଡ଼େବଡ଼ ଶରୀର, ଏତେ କାର୍ଯ୍ୟଦକ୍ଷତା, ଏତେ କର୍ମତତ୍ପରତା, ଏତେ ପ୍ରଭାବଶାଳୀନୀଙ୍କ ଦେହ ଚାହୁଁ ଚାହୁଁ କେଇ ମୁଠା ଭସ୍ମରେ ପରିଣତ ହୋଇଗଲା । ଯାହା ବା ଅବଶେଷ ଥିଲା ତାହା ହିମାଳୟର ଘନ ଅରଣ୍ୟାନୀର ଗାଢ଼ ସବୁଜିମାରେ ମିଶିଗଲା ।

# ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ

୧୯୮୪ ଜୁନ୍ ୨୪ ତାରିଖ ରବିବାର ପ୍ରତ୍ୟୁଷରେ ନବକୃଷ୍ଣ ଚୌଧୁରୀ (ଆମର ପ୍ରିୟ ବାପିଙ୍କ)ର ମହାପ୍ରୟାଣ ହୋଇଗଲା । ଏ ସମ୍ବାଦ ପାଇ ଅନୁଗୁଳ ବାଜିରାଉତ ଛାତ୍ରାବାସରେ ବହୁ ସଂଖ୍ୟାରେ ଶୋକାକୁଳିତ ନରନାରୀ ଭାରତର ସ୍ୱାଧୀନତା ସଂଗ୍ରାମର ଜଣେ ମହାରଥୀଙ୍କର ଶେଷ ସଂସ୍କାର ଦେଖିବା ପାଇଁ ବ୍ୟାକୁଳ ହୃଦୟରେ ଧାଇଁ ଆସିଥିଲେ । ଦଳ, ମତ, ଧର୍ମ, ବର୍ଣ୍ଣ ଓ ସମ୍ପ୍ରଦାୟ ନିର୍ବିଶେଷରେ ଓଡ଼ିଶା ତଥା ବାହାରର ବହୁ ଲୋକ ସେଠାକୁ ଆସି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ ।

ଯେଉଁମାନେ ଦେଶରେ ସମାଜବାଦୀ ଆନ୍ଦୋଳନ ଆରମ୍ଭ କରିଥିଲେ, ସେ ଥିଲେ ତାର ଅଗ୍ରଗାମୀ । ସର୍ବୋଦୟ ଚିନ୍ତାଧାରାର ସେ ଥିଲେ ପ୍ରାଣବନ୍ତ ପ୍ରବକ୍ତା । ସର୍ବୋପରି ସେ ଥିଲେ ଜଣେ ଦରଦୀ, ମାନବିକତାବାଦୀ । ସେଥିପାଇଁ ତାଙ୍କର ଚିନ୍ତା, କାର୍ଯ୍ୟ ଓ ସାମାଜିକ ସମ୍ପର୍କ କୌଣସି ବିଷୟରେ ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ନଥିଲା । ଦଳ, ମତ ନିର୍ବିଶେଷରେ ସମସ୍ତେ ତାଙ୍କଠାରୁ ପ୍ରେରଣା ଲାଭ କରୁଥିଲେ ।

ସେ ଥିଲେ ମୋର ଅତି ପ୍ରିୟ, ଅତି ଆଦରର ଭକ୍ତିଭାଜନ 'ବାପି' । କେବଳ ମୋର କାହିଁକି ସମଗ୍ର ଓଡ଼ିଶାର ବହୁ ଲୋକଙ୍କର ସେ ଥିଲେ ବାପି । ତାଙ୍କ ବଡ଼ଭାଇ ଗୋପବନ୍ଧୁ ଚୌଧୁରୀ ଥିଲେ 'ବାପା' । ରମାଦେବୀ ଥିଲେ ଆମର 'ମା' ଓ ମାଳତୀଦେବୀ ଆମର 'ନୁମା' ।

ବାପିଙ୍କର ଦେହାନ୍ତ ସମ୍ବାଦ ପାଇ ମୁଁ ଓ ମୋର ସ୍ତ୍ରୀ ଶରତକୁମାରୀ ଅନୁଗୁଳ ଯିବାକୁ ବସିଥିଲୁ, କିନ୍ତୁ ସେଦିନ ଯିବା ସମ୍ଭବପର ହୋଇପାରିଲା ନାହିଁ । ଦୁଇଦିନପରେ ମୁଁ, ଶରତକୁମାରୀ ଓ ବାବୁଭାଇ ତାଙ୍କ ଜାଗରେ ଅନୁଗୁଳର ବାଜିରାଉତ ଛାତ୍ରାବାସରେ ପହଞ୍ଚିଲୁ । ନୁମାଙ୍କୁ ଦେଖି ଶରତକୁମାରୀ କୋହ ସମ୍ଭାଳି ପାରିଲେ ନାହିଁ । ମୁଁ ମଧ୍ୟ କାନ୍ଦି ଉଠିଲି । ନୁମା ମୋ କୋଳରେ ମୁଣ୍ଡରଖି ଅତି ବ୍ୟଥାତୁର କଣ୍ଠରେ କହିଲେ, "ବାପିଙ୍କର ତ ଯିବାର ବେଳହେଲା ସେ ଗଲେ । ତୁ ତୋର ପିଲମାନେ କେମିତି ଅଛନ୍ତି କହ । ସେ ଆମକୁ ସାନ୍ତ୍ୱନା ଦେଉଥାନ୍ତି । ଆମେ ତାଙ୍କୁ ସାନ୍ତ୍ୱନା ଦେଉଥାଉ । ନୁମା ମଧ୍ୟ ସୁସ୍ଥ ନ ଥାନ୍ତି ।

୧୯୮୭ ମସିହାରେ ଯେତେବେଳେ ମୁଁ ହାର୍ଣ୍ଣିଆ ଅପରେସନ୍ ପରେ ଦୁଇ ତିନିମାସ କେଉଁଠି ବିଶ୍ରାମ ନେବ ବୋଲି ଭାବୁଥିଲି, 'ନୁମା' ମୋତେ ଅନୁଗୁଳ ନେଇଗଲେ । ସେଠାରେ ମୋର ଖାଦ୍ୟପେୟର ଉତ୍ତମ ବ୍ୟବସ୍ଥା କରିଥିଲେ ।

ତୁମା ଓ ବାପି ମୋତେ କେତେ ସ୍ନେହ କରନ୍ତି, ତାହା ମୁଁ ଭାଷାରେ ପ୍ରକାଶ କରି ପାରିବି ନାହିଁ । ଏବେ ବି ତୁମାଙ୍କର ସ୍ନେହ, ଶ୍ରଦ୍ଧା ଓ ସୁହାଗ ମୋର ଭୁଗ୍‌ଣ ଶରୀରରେ ନୂତନ ଜୀବନ ସଞ୍ଚାର କରେ ।

ପୂଜନୀୟ ବାପି ' ଆପଣ ଧର୍ମାତ୍ମା; ଆପଣ ଲୋକନାୟକ । ପର ଦୁଃଖରେ ଆପଣଙ୍କ ଆଖିରୁ ଅଶ୍ରୁ ଝରେ । ଦୀନଦୁଃଖିଙ୍କର କାତରତା ଆପଣ ସହିପାରନ୍ତି ନାହିଁ । ସେଇଥିପାଇଁ କଟକର ବାଖରାବାଦ କୋଠାଘରୁ ଅନୁଗୁଳର ବାଜିଗାଡ଼ିଆ ଗ୍ରାମାବାସର ଏକ କୁଡ଼ିଆରେ ଜୀବନର ଶେଷ ଦିନଗୁଡ଼ିକ କଟେଇ ଗଲେ । ଆପଣ କୌଣସି ସାଧନା ନ କରି ମଧ୍ୟ ମହର୍ଷି; ଆପଣ ନିଃସ୍ୱ ହୋଇ ମଧ୍ୟ ଲୋକଙ୍କ ସ୍ନେହ, ଶ୍ରଦ୍ଧା ଓ ମମତାରେ ବିତ୍ତବାନ । ମୁଁ ଏବଂ ମୋର ପରିବାର ଆପଣଙ୍କୁ ଆମର ଭକ୍ତିପୂତ ପ୍ରଣତି ଅର୍ପଣ କରୁଛୁ । ଆପଣଙ୍କ ଭଳି ଜଣେ ମହାନ୍ ବ୍ୟକ୍ତିର ପୁନର୍ଜନ୍ମ ନାହିଁ । ଆପଣ ସାଧୁ, ସଚ୍ଚରିତ୍ର, ନିଷ୍କଳଙ୍କ ଓ ନିଷ୍କପଟ ।

## ମା' ଚାଲିଗଲେ

ମା' ରମାଦେବୀ ଚାଲିଗଲେ । ସେ ଯେଉଁସ୍ଥାନକୁ ଗଲେ ସେଠାରୁ ଆଉ କେହି ଫେରନ୍ତି ନାହିଁ । କାହାରି ସୁଖ, ଦୁଃଖ, ଭଲମନ୍ଦ, ଦରଦ ସେ ଆଉ ବୁଝି ପାରିବେ ନାହିଁ । ବାତ୍ୟାର ଭୟଙ୍କରୀ ତାଣ୍ଡବ, ବନ୍ୟାର ସର୍ବଗ୍ରାସୀ ରୂପ, ଦୁର୍ଭିକ୍ଷ-ଦାହର ମର୍ମଭେଦୀ ଦୃଶ୍ୟ, ମନ୍ୱନ୍ତର ହା' ଅନ୍ନ ହା' ଅନ୍ନ ଚିତ୍କାର ଏବଂ ଆର୍ତ୍ତଜନର ଡାକ ସେ ଆଉ ଶୁଣି ପାରିବେ ନାହିଁ କି ଦେଖିପାରିବେ ନାହିଁ । ହିଂସା, ଦ୍ୱେଷ, ବାଦବିସମ୍ବାଦ ହୋଇଯିବ ସ୍ୱପ୍ନ । କର୍କଟ ରୋଗ ଯାହାକି ଆରୋଗ୍ୟ ହେବା ଦୁଃସାଧ୍ୟ ତାହା ତାଙ୍କଠାରୁ ବହୁଦୂରରେ ରହିବ ।

ରମା ଦେବୀଙ୍କର ମହାପ୍ରସ୍ଥାଣ ହେଲା । ସେଥିପାଇଁ ରାଜ୍ୟପାଳ, ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି କେତେ ଧନୀ, ଦରିଦ୍ରଲୋକ ଦୁଃଖ ଓ ଶୋକରେ ଭାଙ୍ଗି ପଡ଼ିଲେ । ବାସ୍ତବିକ ଗାନ୍ଧୀ ଓ ବିନୋବା ଯୁଗର ଏକ କର୍ମମୟ ଜୀବନର ଅବସାନ ହେଲା । ଦୀନ ଆତୁରଙ୍କ ଲାଗି ଦେଶ ଓ ଜାତି ପାଇଁ ଖଟି ଖଟି ସେ କ୍ଲାନ୍ତ ହୋଇପଡ଼ିଥିଲେ । ଚିରଦିନ ପାଇଁ ବିଶ୍ରାମ ନେଲେ । ସେ ବିଶ୍ରାମରେ ବ୍ୟାଘାତ ଦେବା ପାଇଁ ଆଉ କେହି ଆସିବେ ନାହିଁ । ଆମକୁ ପିନ୍ଧିବାକୁ ଲୁଗା ଦିଅ, ଖାଇବାକୁ ଦାନା ଦିଅ ଓ ରହିବାକୁ ଘର ଦିଅ ବୋଲି ଆଉ ଚିତ୍କାର ଶୁଭିବ ନାହିଁ । ସେ ମଧ୍ୟ କୋଳକୁ ଆଉଜେଇ ନେଇ, କୁଶଳ, ମଙ୍ଗଳ ପଚାରି ଦେହରେ ମୁଣ୍ଡରେ ହାତ ବୁଲେଇ ଦେଇ ଆଶୀର୍ବାଦ କରିବେ ନାହିଁ ।

ମା ରମାଦେବୀଙ୍କ ସହିତ ମୋର ସଂପର୍କ ଦିନେ ଦୁଇଦିନର ନୁହେଁ । ଦୀର୍ଘ ପଞ୍ଚାବନବର୍ଷର । ୧୯୩୦ ମସିହା ଅସହଯୋଗ ଆନ୍ଦୋଳନ ବେଳରେ ମୋ ବୟସ ସେତେବେଳେ ତେର, ସେ ବାଲିକୁଦା ଅଞ୍ଚଳକୁ କଂଗ୍ରେସ ପ୍ରଚାର ପାଇଁ ଆସି-ଥିଲେ । ତାଙ୍କ ବକ୍ତୃତା ଶୁଣି ମୁଁ ଘର ଛାଡ଼ିଥିଲି । ବାପା, ମା, ଆତ୍ମୀୟ ସ୍ୱଜନଙ୍କ ମାୟାମମତା ପଛକୁ ପକାଇ ପୋଥିରେ ଡୋରି ବାନ୍ଧି କଂଗ୍ରେସରେ ଯୋଗ ଦେଇ ଥିଲି । ଏ ବିଷୟ ମୁଁ ଆଗରୁ ବର୍ଣ୍ଣନା କରିସାରିଛି । ମୁଁ ଦେଖିଛି ମା' ସେତେବେଳେ ଶିବିର କାର୍ଯ୍ୟବ୍ୟସ୍ତ ରହୁଥିଲେ । ଭଲ କରି ଘଣ୍ଟେ ଖାଇବାକୁ, ଦଣ୍ଡେ ବିଶ୍ରାମ ନେବାକୁ ତାଙ୍କୁ ଫୁରସତ୍ ମିଳୁ ନ ଥିଲା । ଏଣେ ଲୁଣ ଚଟାଣକୁ କର୍ମୀମାନଙ୍କୁ ପଠାଇବେ, ତେଣେ ଗାଁ, ଗଣ୍ଡା ସହର ଓ ଘରଘର ବୁଲି ଚାନ୍ଦା ଆଦାୟ କରିବେ । ମାଲଗୋଦାମରୁ ଚାଉଳ, ଡାଲି ଏବଂ ଛତ୍ରବଜାର ଓ ଖାନନଗରରୁ ପରିବାପତ୍ର ଆଣି ସେ ଆଶ୍ରମକୁ ଯୋଗାଉଥିଲେ । ଚାନ୍ଦା ଆଦାୟ କରିବାରେ ସେ ଥିଲେ ସିଦ୍ଧହସ୍ତା ।

ସେତେବେଳେ ମୋର କଣ୍ଠ ଅତି ମଧୁର ଥିଲା । ମୁଁ ଜାତୀୟ ସଙ୍ଗୀତ ଭଲ ଗାଇ ପାରୁଥିଲି । ସେଥିଲାଗି ମା' ମୋତେ ଅତି ସ୍ନେହ କରୁଥିଲେ । ତା' ପରର ଜେଲ୍ ଯିବା, ବାହାରକୁ ଆସି ସତ୍ୟାଗ୍ରହ କରିବା ଇତ୍ୟାଦି ଅନେକ କଥା । ହରିଜନ ଆନ୍ଦୋଳନରେ ଯୋଗ ଦେଲି । ଶ୍ରୀ ମନ୍ଦିରକୁ ଗାନ୍ଧୀଜୀଙ୍କର ପଦଯାତ୍ରା ବେଳେ ମୁଁ ଗୋପବାବୁ ଓ ମା'ଙ୍କ ନିର୍ଦ୍ଦେଶରେ ସୁଧୀର ବାବୁଙ୍କ ସହ ଆଗୁଆ ଦଳରେ ଚାଲିଲି । ଆଗରୁ ଯାଇ ଗାନ୍ଧିଜୀଙ୍କ ରହଣି ସ୍ଥାନର ବନ୍ଦୋବସ୍ତ କରିବାର ସମସ୍ତ ଦାୟିତ୍ୱ ଆମ ଉପରେ ଥିଲା । ତା'ପରେ ଭାରତ ଭ୍ରମଣରେ ବାହାରି ପଡ଼ିଲି । ପାଞ୍ଚ ବର୍ଷକାଳ ପଦବ୍ରଜରେ ଭ୍ରମଣ କରି ଫେରିବା ପରେ ଗୋପବାବୁଙ୍କ ନିର୍ଦ୍ଦେଶରେ ବରି ଯିବାକୁ ପଡ଼ିଲା ମହୁମାଛି ପାଳନ ଶିକ୍ଷା କରିବା ନିମନ୍ତେ । ପୁଣି ମା'ଙ୍କର ସ୍ନେହଦୃଷ୍ଟିର ଅଧିକାରୀ ହେଲି । ଅନ୍ୟ ଶିବିରରେ ମୁଁ ଥିଲେ ମଧ୍ୟ ସେ ମୋତେ ଡକାଇ ସେବା ଘରର ପିଲାମାନଙ୍କୁ ଗୀତ ଶୁଣାଇବାକୁ ଏବଂ ହସାଇ-ବାକୁ କହୁଥିଲେ । ତାପରେ ଅତି ସ୍ନେହରେ ଖୁଆଇ ବିଦା କରୁଥିଲେ ।

ତାପରେ ସେ ହେଲେ ମୋର ମାଇଁ ଶାଶୂ । ମୋ ସ୍ତ୍ରୀ ତାଙ୍କ ଭଣିଜୀ । ଅତି ସ୍ନେହ, ଶ୍ରଦ୍ଧାରେ ସେ ମୋ ସ୍ତ୍ରୀଙ୍କୁ ଦେଖୁଥିଲେ । କିନ୍ତୁ ମୋତେ ଜ୍ୱାଇଁ ହିସାବରେ ନ ଦେଖି ପୂର୍ବ ପରି ସେହି ପୁତ୍ର ପରି ମୋର ଅନ୍ତରକୁ ମମତା ଓ ସୁହାଗରେ ଭରି ଦେଉଥିଲେ । ମା'ଙ୍କ ନିର୍ଦ୍ଦେଶରେ ଜେଲଖାନାରୁ ମୋର ଖଣ୍ଡେ ଚିଠି ପାଇ ଶରତ କୁମାରୀ ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଝାସ ଦେଲେ । ୧୯୪୭ ଜୁଲାଇରେ ମୋ ଶ୍ୱଶୁରଙ୍କର ମୃତ୍ୟୁ ହେଲା । ସେ ତାଙ୍କୁ ସାନ୍ତ୍ୱନା ଦେଇ

ଯେଉଁ ପତ୍ର ଖଣ୍ଡିକ ଲେଖିଥିଲେ, ତାହା ଏବେବି ଆମ ପାଖରେ ଅତି ଯତ୍ନର ସହ ଅଛି । ସେଠାକରେ ତାଙ୍କ ମନ ମାନିଲା ନାହିଁ । ଗାଡ଼ି ଖଣ୍ଡେ କରି ହରେକୃଷ୍ଣ ବଶ୍ୱାଲଙ୍କ ସହ ମୋ ସ୍ତ୍ରୀ ରହୁଥିବା ତାଙ୍କ ବାପ ଘରବୁ ଆସି ଅନେକ ବୁଝାବୁଝି କରି ଗଲେ । ସେଥିପାଇଁ ୧୯୪୭ ମସିହାରେ ଗୋପବାବୁଙ୍କ ନିର୍ଦ୍ଦେଶରେ ଦାଣ୍ଡିଆ ନୃତ୍ୟ ଶିକ୍ଷା କରିବାକୁ ସେବାଗ୍ରାମ ଗଲି । ଉଦ୍ଦେଶ୍ୟ ଗୀତ ଓ ନୃତ୍ୟ ମାଧ୍ୟମରେ ଗାଁ ଗହଳର ଲୋକମାନଙ୍କ ମଧ୍ୟରେ ଜାତୀୟତା ଭାବ ପ୍ରବେଶ କରାଇବା । ସେବା ଗ୍ରାମରୁ ଫେରି ଅନୁଗୁଳ, ବରି ଅଞ୍ଚଳର ବିଭିନ୍ନ ଗ୍ରାମ ଏବଂ ପୁରୀ ଜିଲ୍ଲାର ବିସ୍ତୃତ ଅଞ୍ଚଳରେ ବହୁଦିନ ଧରି ମୋର କାର୍ଯ୍ୟ କଲି । ସମସ୍ତ ପରିଚାଳନା କରୁଥିଲେ ମା । ଇତିମଧ୍ୟରେ ଆମ ସମସ୍ତଙ୍କ ବାପା ଗୋପବନ୍ଧୁ ଚୌଧୁରୀ ୧୯୫୮ ମସିହାରେ ଇହଧାମରୁ ଚାଲିଗଲେ । ସେ ଓ ଆଚାର୍ଯ୍ୟ ମହାଶୟ ସେଦିନ ସକାଳେ ଭୁବନେଶ୍ୱରରେ ମୋ ବାଟ ଦେଇ ଯାଇଥିଲେ । ମା' ଅତି ଦୁଃଖ ଓ ଶୋକରେ ଭାଙ୍ଗି ପଡ଼ିଲେ ମଧ୍ୟ ଦୀନ ଆତୁରଙ୍କ ସେବାରେ କେବେ ତ୍ରୁଟିକରି ନାହାନ୍ତି । ମା' ଥାଆନ୍ତି ଗୁଣନିଧି ଭବନର ଭୂଦାନ ଅଫିସରେ । ମୁଁ ଥାଏ କଳାବିକାଶ କେନ୍ଦ୍ରରେ । ମୋର ଅନେକ ଯୁଗାନ୍ତକାରୀ ନାଟକ ଦେଖିବା ପାଇଁ ମୁଁ ତାଙ୍କୁ ଡାକେ । ମା'ଙ୍କୁ ଯାହା ଭଲ ଲାଗେ, ମା' ଆସି ତାହା ଦେଖିଯାଆନ୍ତି । ନିକଟରେ ମୋ ଦ୍ୱାରା ସଙ୍କଳିତ ଓ ପରିଚାଳିତ ଅଗ୍ନିଯୁଗର ଷ୍ଟୁଲିଙ୍ଗ ଶହୀଦ ଭବନର ଏକ କର୍ମୀ ସମାବେଶରେ ସେ ଦେଖି ଏତେ ଖୁସି ହୋଇ ଯାଇଥିଲେ ଯେ ସେ ଆମ ସମସ୍ତଙ୍କୁ ନେଇ ତାଙ୍କ ଜନ୍ମସ୍ଥାନ ସତ୍ୟଭାମା ପୁର ଗ୍ରାମରେ ତାର ପ୍ରଦର୍ଶନ କରାଇବାର ବନ୍ଦୋବସ୍ତ କରାଇଥିଲେ । ବହୁଲୋକ ତାହା ଦେଖି ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ମା' ନିଜେ ଉପସ୍ଥିତରହି ଆମ ଶିକ୍ଷକ, ଶିକ୍ଷୟିତ୍ରୀ ଏବଂ ଛାତ୍ରଛାତ୍ରୀମାନଙ୍କର ଖାଦ୍ୟ-ପେୟର ସୁବ୍ୟବସ୍ଥା କରିଥିଲେ ।

ଥରେ ମୋର ନାତି ସନ୍ଦୀପ (ରାଜାବାବୁ)କୁ ନେଇ ଯୋଗଆ ପାଇଁ ଗୁଣନିଧି ଭବନକୁ ଯାଇଥିଲି । ସେ ତାକୁ ଦେଖି ଏତେ ଖୁସି ହୋଇଯାଇଥିଲେ ଯେ କୋଳକୁ ଆଉଜେଇ କେତେ ଗେଲ କଲେ । ସନ୍ଦୀପ୍ କେଉଁଠି କିଛି ଖାଏନା । ମା' ତାକୁ କଥାରେ ଭୁଲେଇ କ୍ଷୀର, ଗରମ ଚକୁଳି, ସନ୍ଦେଶ ଖୁଆଇଥିଲେ । ଆସିବାବେଳେ କହିଥିଲେ ବୈକୁଣ୍ଠ ତୁ ତୋ ନାତିଟିକୁ ତୋ ଭଳି ଦେଶସେବୀ କରାଇବୁ ।

କିଛିଦିନ ତଳେ ରଘୁନାଥଜୀଉ ବିଦ୍ୟାପୀଠର ଏକ ସମାବେଶରେ ଯୋଗ ଦେବାପାଇଁ ସେ ଆସିଥିଲେ । ସାଥିରେ ଥିଲେ ତାଙ୍କ ଝିଅ ଚନ୍ଦ୍ରା ଅପା । ସଭା ପରେ ତାଙ୍କୁ ଆମ ଘରକୁ ଡ଼ାକିଲି । ଅତି ସ୍ନେହରେ ସେ ଆମ ଘରେ ପାଦ ଦେଇ

ଆମକୁ ଧନ୍ୟ କରିଥିଲେ । ମା କେଉଁଠି କିଛି ଖାଆନ୍ତି ନାହିଁ । ମାତ୍ର ଆମର ଅନୁରୋଧ ଏଡ଼ି ନ ପାରି ସେ ଅଳ୍ପ କିଛି ଫଳ ଗ୍ରହଣ କରିଥିଲେ । ଏମିତି ଲେଖି ବସିଲେ ଗୋଟାଏ ପୋଥି ହେବ । ମଝିରେ ମଝିରେ ମୁଁ ମୋ ସ୍ତ୍ରୀ ଭୂଦାନ ଅଫିସ ଯାଇ ତାଙ୍କୁ ଦେଖି ଆସୁଥିଲୁ ।

ମା'ଙ୍କୁ ୮୭ ବର୍ଷ ହୋଇଥିଲା ଯେ ଇହଧାମ ତ୍ୟାଗ କରିବା ବେଳକୁ । ତାଙ୍କ ସ୍ଥାନ ପୂରଣ କଲାଭଳି ମୁଁ ଆଉ କାହାକୁ ଦେଖୁନି । ଭାରତବର୍ଷରେ ତାଙ୍କଭଳି ମହିଳା ବିରଳ । କେଜାଣି କାହିଁକି ମା'ଙ୍କ ବିୟୋଗରେ ସମସ୍ତଙ୍କର ନୟନ ଲୋତକାପ୍ଳୁତ ହୋଇପଡ଼ିଥିଲା । ଗୋଟିଏ ଶୋକ ସଭାରେ ମୁଁ ତାଙ୍କ ବିଷୟରେ ଦୁଇପଦ କହୁ କହୁ ହଠାତ୍ ଏତେ ଭାବାବେଶ ଆସିଗଲା ଯେ ତଳେ ବେହୋସ ହୋଇ ପଡ଼ିଗଲି । କିଛି ସମୟ ପରେ ଚେତା ଆସିଲା ।

ଏକ କଲ୍ୟାଣମୟୀ, ମହିମାମୟୀ, ମମତାମୟୀ ନାରୀଙ୍କ ଶରୀର ଖାନନଗର ଶ୍ମଶାନରେ ହୁହୁଁ ହୁହୁଁ କେଇମୁଠା ପାଉଁଶରେ ପରିଣତ ହୋଇଗଲା । ସେ ଥିଲେ ଅଜାତଶତ୍ରୁ । ସାରାଜୀବନ ସେ ସମସ୍ତଙ୍କ ଉପକାର କରିଛନ୍ତି । କାହାର ଅପକାର କରି ନାହାନ୍ତି । ଈଶ୍ୱର ତାଙ୍କ ଆତ୍ମାକୁ ନିଶ୍ଚୟ ଶାନ୍ତି ଦେବେ । ମୁଁ ଏବଂ ମୋ ପରିବାର ତାଙ୍କ ସ୍ମୃତିରେ କେଇଟୋପା ଲୁହ ଢାଳି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ମୁଁ କେନ୍ଦ୍ରରେ ରହୁଥିବାବେଳେ ମୋର ଲେଖା ନାଟକମାନ କେନ୍ଦ୍ରର ଶିଳ୍ପୀମାନେ ପ୍ରାୟ ଅଭିନୟ କରୁଥିଲେ । ଯାହା ଦେଖି ଡକ୍ଟର ପ୍ରାଣକୃଷ୍ଣ ପରିଜା, ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ଶ୍ରୀମତୀ ରମାଦେବୀ, ଶ୍ରୀଯୁକ୍ତ ବୈଦ୍ୟନାଥ ରଥ ଏବଂ ଶ୍ରୀମତୀ ନନ୍ଦିନୀ ଶତପଥୀ ଆଦି ଆହୁରି ଅନେକ ଗଣ୍ୟମାନ୍ୟ ବ୍ୟକ୍ତି ପରମ ସନ୍ତୋଷ ଲାଭ କରିଥିଲେ । ସେ ନାଟକଗୁଡ଼ିକ ହେଲା—'ମିଳନୀ କ୍ଲବ୍', 'ଲକ୍ଷେଶ୍ୱରୀ ଉଠାଣି', 'ନିର୍ବାଚନ', 'ଯୁଗମାନବ ଗାନ୍ଧିଜୀ', 'ନିଶାବାଦୀ', 'ସନ୍ଧି ମୁକ୍ତି' ଓ ଶିଶୁ ନାଟକ 'ଅଜବ ଦେଶ' । ମୋ ଲିଖିତ ଦେଶାତ୍ମବୋଧ ସଙ୍ଗୀତ, ଭଜନ ଓ ଜଣାଣ ଏବଂ ଅନ୍ୟ ସଙ୍ଗୀତ, ନୃତ୍ୟ ରଚନା, ଆକାଶ ବାଣୀ ଓ ଦୂରଦର୍ଶନ ଯୋଗେ ପ୍ରସାରିତ ହୋଇଛି ଏବଂ ହେଉଛି । ଗୁରୁଭକ୍ତ ଆରୁଣୀ ଏବଂ ଶହୀଦ୍ କ୍ଷୁଦୀରାମ ନାଟକ ଦୁଇଟି ଆକାଶବାଣୀରେ ପ୍ରସାରିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଛି । ମୋ ରଚିତ ବାଜିରାଉତ ନାଟକ ଦିଲ୍ଲୀର ଦୂରଦର୍ଶନ କେନ୍ଦ୍ରରେ ଜାତୀୟ ନାଟକ କାର୍ଯ୍ୟକ୍ରମରେ ସର୍ବଜନ ଆଦୃତ ହୋଇଛି ।

ଦେଶାତ୍ମବୋଧ ସଙ୍ଗୀତର ସମାବେଶ, 'ଅଗ୍ନିଯୁଗର ଷ୍ଫୁଲିଙ୍ଗ' ଏବଂ ୧୯୪୨ ଅଗଷ୍ଟ ବିପ୍ଳବ ଉପରେ ଆଧାରିତ ନାଟକ 'ସର୍ବହରାଙ୍କ ସେନାନୀ' ଗ୍ରନ୍ଥମନ୍ଦିର ସମବାୟ ପ୍ରକାଶନ ଆନୁକୂଲ୍ୟରେ ପ୍ରକାଶିତ ହୋଇଛି । ତାହା ମୋର ପରମ ବନ୍ଧୁ ଗୋପୀନାଥ ସାହୁଙ୍କ ଯୋଗେ ସମ୍ଭବ ହୋଇ ପାରିଛି । ମୋଦ୍ୱାରା ଅନୂଦିତ 'ଲଲ୍ ଲେଖା' ଉପନ୍ୟାସ ଏବଂ ରଚିତ 'ତ୍ରିଧାରା'କୁ ଗ୍ରନ୍ଥସାଥି ପ୍ରେସ୍‌ର ମାଲିକ ବନ୍ଧୁବର ନବକିଶୋର ମହାପାତ୍ର ଛପାଇଛନ୍ତି । ଅଜିବ ଦେଶ ଓଡ଼ିଶା ବୁକ୍‌ଷ୍ଟୋରର ସ୍ୱତ୍ତ୍ୱାଧିକାରୀ ଶ୍ରୀ ଗୋବିନ୍ଦଚନ୍ଦ୍ର ପାତ୍ରଙ୍କ କୃପାରୁ ଛପାଯାଇ ସକଳ ନିଃଶେଷ ହୋଇଛି । ସେ ମଧ୍ୟ ମୋ ସ୍ତ୍ରୀଙ୍କ ଲିଖିତ ଶ୍ରୀମଦ୍ ଭଗବତ ଗୀତା ଛପାଇଛନ୍ତି— ଯାହାର ଦୁଇଟି ସଂସ୍କରଣ ହୋଇ ଗଲାଣି । ତାଙ୍କର ଯୋଗେ ଆଜ ମୋର ଆତ୍ମ-ଜୀବନୀ ପ୍ରକାଶ ପାଉଛି । ଜଣାବାଣୀ ବହିଟି ଖଣ୍ଡ କ୍ଷୀରୋଦ ମିଶ୍ର ବୁକ୍‌ସ ଇଣ୍ଟର-ନ୍ୟାସ୍‌ନାଲ୍ ତରଫରୁ ଛପାଇଛନ୍ତି । ସମସ୍ତଙ୍କ ନିକଟରେ ମୁଁ ଆଜୀବନ ଋଣୀ ହୋଇରହିଛି ।

ତା ଛଡ଼ା ଭକ୍ତ ଓ ଭଗବାନ, ରାହୁମୁକ୍ତ, ଯୁବମାନବ ଗାନ୍ଧିଜୀ ପ୍ରଭୃତି ନାଟକ, ଐତିହାସିକ ଉପନ୍ୟାସ ଗୁଣକ୍ୟ ରହସ୍ୟ, ରୋମାଞ୍ଚ ଉପନ୍ୟାସ 'ଦାଗୀ' ଛପାହୋଇ ପାରିନାହିଁ । ସେମିତି ରହିଛି । ଜାଣେନା ତା କେବେ ଲୋକ ଲୋଚନକୁ ଆସିବ । ପ୍ରଭୁ କାଳିଆ ଠାକୁର ଏବଂ ଭଗବାନ ସତ୍ୟସାଇଁ ବାବା ହିଁ ଭରସା ।

ଈଶ୍ୱର ସମସ୍ତଙ୍କର ମଙ୍ଗଳ କରନ୍ତୁ । ସମସ୍ତେ ସୁଖରେ ରୁହନ୍ତୁ । ଆନନ୍ଦରେ ରୁହନ୍ତୁ । ନିରାମୟ ରୁହନ୍ତୁ । ପୃଥିବୀରେ ଶାନ୍ତି ବିରାଜୁ ।

— ଜୟହିନ୍ଦ୍ —

ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ ଗୋପବନ୍ଧୁ ଚୌଧୁରୀ (ଗୋପବାବୁ), ପ୍ରଥମ ଆଇ.ସି.ଏସ୍. ହରେକୃଷ୍ଣ ଦାଶ (ଆଇ.ସି.ଏସ୍. ମହାଶୟ), ନୀରଳସ କର୍ମୀ ଈଶ୍ୱରଲାଲ ବ୍ୟାସ, ନିଃସ୍ୱାର୍ଥପର ଜନସେବକ ଗୁଣନିଧି ମହାନ୍ତି ଆଉ ଏ ସଂସାରରେ ନାହାନ୍ତି । ସମସ୍ତେ ମୋତେ ଭଲ ପାଉଥିଲେ, ସ୍ନେହ କରୁଥିଲେ । ପୁତ୍ରସମ ସ୍ନେହର ଚକ୍ଷୁରେ ଦେଖୁଥିଲେ । ସେମାନେ ମୋର ପ୍ରଣମ୍ୟ, ମୋର ଏକାନ୍ତ ନମସ୍ୟ ।

ଗୁରୁଜନମାନଙ୍କ ଆଜି ସ୍ୱର୍ଗରେ ।

## ଗୋପବାବୁ

ଜାତୀୟ କବି ବୀରକିଶୋରଙ୍କ ଭାଷାରେ—

ତେତାଲା ଉପରେ ବିଳାସରେ ଶୋଇ
ଅଳସେ ଯେ ଧମା ମାରୁଥିଲେ ହାଇ
ଆଜି କଚା ପିନ୍ଧୁଛନ୍ତି ଜୋଡା ମାଡ଼ ଖାଇ
ଜୀବନକୁ ଦେଇ ମୂଲ୍ୟ ।

ଅବଶ୍ୟ ସେ ଜୋତାମାଡ଼ ଖାଇ ନାହାନ୍ତି, କି କଚା ପିନ୍ଧି ନାହାନ୍ତି । କିନ୍ତୁ ବିଳାସବ୍ୟସନ ତେଜି, ଡେପୋଟି କଲେକ୍ଟରୁ ଇସ୍ତଫା ଦେଇ, ଦତାଲା ଉପରୁ ଓହ୍ଲାଇ ଆସି ଧୂଳିଧୂସରିତ ରାଜପଥରେ ଉଭା ହେଲେ ଦେଶ ଓ ଜାତିର ସେବାରେ ନିଜକୁ ନିୟୋଜିତ କରିବା ଲାଗି । ଏକା ନୁହନ୍ତି ସମଗ୍ର ପରିବାର; ସ୍ତ୍ରୀ, ପୁତ୍ର, କନ୍ୟା, ଭ୍ରାତା ଓ ଭ୍ରାତୃବଧୂ ସହିତ—ଯେଉଁମାନେ ଏ ଦେଶର ଗୋଟିଏ ଗୋଟିଏ ଉତ୍ସର୍ଗୀକୃତ ଆତ୍ମା । ସେ ତ୍ୟାଗର ତୁଳନା ନାହିଁ । ସେ ଭୋଗବର୍ଜିତ ଜୀବନର ଦୃଷ୍ଟାନ୍ତର ନାହିଁ । ନାନାଦି ଅନ୍ନବ୍ୟଞ୍ଜନ ଯାହାକୁ ରୁଚୁ ନଥିଲା, ତୁଳୀ ତଳ୍ପରେ ଯାହାର ନିଦ୍ରା ହେଉ ନ ଥିଲା, ବରିର ବନ୍ୟା ଦେଖି ତାଙ୍କ ସରକାରୀ ଜୀବନର ଇତିଶ୍ରୀ ହୋଇଥିଲା । ସେଇଠି ସେ ହଳ କଲେ । କୋଡ଼ି ଧରି ଜମି ସମତୁଲ କଲେ । ହୁଡ଼ା ମାଟି ଢିଡ଼ରେ ଲଦିଲେ । ଶେଷ ଜୀବନରେ ଆଣ୍ଠୁ ନ ଲୁଚୁ ଖଦଡ଼ ଧୋତି ଖଣ୍ଡେ ପିନ୍ଧି, ଗାମୁଛା କାନ୍ଧରେ ପକାଇ, ପଖାଳ, ସାଗ, ଖଟା ଖାଇ ଇହଧାମ ତ୍ୟାଗକଲେ ।

ଗୋପବାବୁ କର୍ତ୍ତବ୍ୟରେ କାହାର ତ୍ରୁଟି ଦେଖୁଥିଲେ ମୋଟେ କ୍ଷମା କରୁ ନ ଥିଲେ । ଲେଖକ ନିଜେ ତା ମର୍ମେ ମର୍ମେ ଅନୁଭବ କରିଛି । ଯେ ନିଷ୍ଠାର ସହିତ

କାମ କରି ଯାଉଥିଲି ତାକୁ ସେ ଖୁବ୍ ପ୍ରଶଂସା କରୁଥିଲେ । ପିଠି ଥାପୁଡ଼େଇ ବାହା ବାହା କହୁଥିଲେ । ବଜ୍ରପରି କଠିନ, କିନ୍ତୁ ଲହୁଣୀ ପରି କୋମଳ ଥିଲା ତାଙ୍କ ହୃଦୟ । ଅଦ୍ଭୁତ ସଂଗଠନ ଶକ୍ତି ମଧ୍ୟ ଥିଲା ତାଙ୍କର । ସେଇଥି ପାଇଁ ତେଲଙ୍ଗ ଗାନ୍ଧି ସେବା ସଂଘ ସମ୍ମିଳନୀ, ପୁରୀ ସର୍ବୋଦୟ ମେଳା, ଅନୁଗୁଳ ସର୍ବୋଦୟ ସମ୍ମିଳନୀ, ତାଛଡ଼ା ଯାଯପୁର ଇତ୍ୟାଦି ଅନ୍ୟାନ୍ୟ ସ୍ଥାନର ସର୍ବୋଦୟ ମେଳା ତାଙ୍କର ଯୋଗେ ସମ୍ଭବ ହୋଇଥିଲା । ଅବଶ୍ୟ ମା' ରମାଦେବୀ ପ୍ରଭୃତି କାର୍ଯ୍ୟରେ ତାଙ୍କର ସହାୟକାରୀ ଥିଲେ ଏବଂ ଆଚାର୍ଯ୍ୟ ମହାଶୟ, ନବବାବୁ, ମାଳତୀ ଦେବୀ, ପଣ୍ଡିତ କୃପାସିନ୍ଧୁ ହୋତା ଓ ବହୁ ନେତା, କର୍ମୀମାନେ ତାଙ୍କୁ ସାହାଯ୍ୟ କରୁଥିଲେ, କିନ୍ତୁ ଗୋପବାବୁ ଥିଲେ ଏ ସବୁର ପ୍ରାଣକେନ୍ଦ୍ର । ପଦପଦବୀର ଲାଳସା ତାଙ୍କର ନ ଥିଲା । ସେ ସଦା ଗୁହିଁଥାନ୍ତେ ବହୁ ଉପରକୁ ଉଠିଥାନ୍ତେ ।

ଗାନ୍ଧିଜୀଙ୍କର ହରିଜନ ପଦଯାତ୍ରା, ବିନୋବା ଜୀଙ୍କର ଭୂଦାନ ଓ ଗ୍ରାମ ଦାନପାଇଁ ଓଡ଼ିଶା-ଭ୍ରମଣର ସମସ୍ତ ଆୟୋଜନର କର୍ତ୍ତାଥିଲେ ଗୋପବାବୁ । ଗାନ୍ଧିଜୀ ଓ ବିନୋବାଙ୍କର ଅତି ପ୍ରିୟ ପାତ୍ର ସେ ଥିଲେ । ତାଙ୍କ ଉପରେ ମହାତ୍ମାଙ୍କର ଅଖଣ୍ଡ ଆସ୍ଥା ଓ ବିଶ୍ୱାସ ଥିଲା ।

ସେ ନାହାନ୍ତି କିନ୍ତୁ ତାଙ୍କର ଆଦର୍ଶ, ତାଙ୍କର ତ୍ୟାଗ, ନିଷ୍ଠା ଆମ ପାଖେ ପାଖେ ରହି ଆମକୁ ଦିଗ୍‌ଦର୍ଶନ ଦେଉଛି, ଉତ୍ସାହିତ କରୁଛି ।

## ଆଚାର୍ଯ୍ୟ ହରିହର

ଧର୍ମପ୍ରାଣ ଋଷି-ପ୍ରତିମ ଆଚାର୍ଯ୍ୟ ମହାଶୟ ଅତି ସରଳ ଓ ନିରାଡ଼ମ୍ବର ଜୀବନଯାପନ କରୁଥିଲେ । ତାଙ୍କପରି ସ୍ନେହୀ, ମମତାମୟ ଓ ମଧୁରଭାଷୀ ମୁଁ କମ୍ ଦେଖିଛି । ସେ କାହାରି ଉପରେ ରାଗିବାର ମୋତେ ଜଣା ନାହିଁ । ମୁଁ ଜାଣେ କେହି କୌଣସି ଭୁଲ୍ କଲେ ସେ ଉପଦେଶ ଛଳରେ ତାର ତ୍ରୁଟି ସଂଶୋଧନ କରୁଥିଲେ ।

ବହୁ ଦିନରୁ ତାଙ୍କ ସ୍ତ୍ରୀ ଗତ ହୋଇଥିଲେ । ସନ୍ତାନ, ସନ୍ତତି କିଛି ନ ଥିଲେ । ଆମେ ସମସ୍ତେ ତାଙ୍କ ସନ୍ତାନ ଥିଲୁ । ଶେଷ ଜୀବନରେ ଦୃଷ୍ଟିହୀନ ହୋଇ ମଧ୍ୟ ନିଜ କର୍ତ୍ତବ୍ୟ କରିବାରେ ସେ କେବେ ପଛଘୁଞ୍ଚା ନ ଥିଲେ । ଭୂଦାନର ଆଦର୍ଶ ପ୍ରଚାର କରିବା ଲାଗି ବାଡ଼ି ଖଣ୍ଡେ ଧରି ସେ ଗାଁ ଗାଁ ବୁଲୁଥିଲେ । ମୁଁ ପ୍ରାୟ ତାଙ୍କ ସାଥିରେ ରହୁଥିଲି ।

ପୁରୀ ଜିଲ୍ଲାର ବିଭିନ୍ନ ଗ୍ରାମରେ ଦାଣ୍ଡିଆ ନୃତ୍ୟ ସହ ଅନ୍ୟାନ୍ୟ ଜାତୀୟ ସଙ୍ଗୀତ ଶିକ୍ଷା ଦେବାର ଦାୟିତ୍ୱ ସେ ନିଜ ମୁଣ୍ଡ ଉପରକୁ ନେଇ ମୋତେ ମେ ସବୁ ସ୍ଥାନକୁ ପଠାଇଥିଲେ । ସେଠାକାର ଲୋକଙ୍କ ଆତିଥ୍ୟ ଭୁଲିବାର ନୁହେଁ । ଏହା କେବଳ ଆଚାର୍ଯ୍ୟ ମହାଶୟଙ୍କଦ୍ୱାରା ସମ୍ଭବ ହୋଇଥିଲା ।

ଜୀବନଟାସାକ ସେ ଦେଶ ପାଇଁ ତ୍ୟାଗ ହିଁ କରିଛନ୍ତି । ଭୋଗର ବାସନା ତାଙ୍କର ଆଦୌ ନ ଥିଲା । ଲୋକେ କହନ୍ତି ଆଚାର୍ଯ୍ୟ ମହାଶୟ ଜଣେ ବିଖ୍ୟାତ ଗଣିତଜ୍ଞ ଥିଲେ । ସରଳ ଓଡ଼ିଆ ଭାଷାରେ ସେ ଶ୍ରୀମଦ୍‌ଭାଗବତ ଗୀତା ରଚନା କରିଛନ୍ତି—ଯାହା ଅତି ସୁଲଭ ଓ ସୁଖପାଠ୍ୟ ହୋଇଛି । ପଣ୍ଡିତ ଗୋପବନ୍ଧୁଙ୍କ ସହକର୍ମୀ, ବକୁଳ ବନର ଆଦର୍ଶ ଶିକ୍ଷକ, କଂଗ୍ରେସ ଏବଂ ଗାନ୍ଧୀବାଦର ଜଣେ ନେତା ମେ ଥିଲେ । ଏବେ ମଧ୍ୟ ତାଙ୍କର ଶିଷ୍ୟମାନେ ବିଦ୍ୱାନ, ସୁପଣ୍ଡିତ, ପ୍ରବକ୍ତା ଓ ସୁଲେଖକ ଭାବେ ଅତି ମହତ୍ତ୍ୱପୂର୍ଣ୍ଣ ସ୍ଥାନରେ ସୁପ୍ରତିଷ୍ଠିତ । ଆଚାର୍ଯ୍ୟ ମହାଶୟଙ୍କ ଭଳି ଜଣେ ମହାନ୍ ବ୍ୟକ୍ତି ଆଉ ଏ ମାଟିରେ ଜନ୍ମ ହେବେ କି ନା ସନ୍ଦେହ ।

## ଇଶ୍ୱରଲାଲ ବ୍ୟାସ

ଗୁଜୁରାଟର ଲୋକ । ଭାରତୀ ସ୍ତରୀ ଜନସେବା କରିବାର ଇଚ୍ଛା ହେଲା । ଗାନ୍ଧିଜୀଙ୍କ ନିକଟକୁ ଯାଇ ପରାମର୍ଶ ଲୋଡ଼ିଲେ । ଗାନ୍ଧିଜୀ କହିଲେ, ତୁମେ ଓଡ଼ିଶାରେ ରହି ସେଠାକାର ନରନାରାୟଣଙ୍କ ସେବା କର । ବାସ୍ ପଦେ କଥା । ଏଇ ଓଡ଼ିଶାର ମାଟି, ପାଣି, ପବନକୁ ନିଜର କରି ଏଇଠାର ଲୋକଙ୍କ ସେବାରେ ମନ ପ୍ରାଣ ନିୟୋଜିତ କଲେ । ଭଦ୍ରକ ବାଲାଶ୍ରମ ତାଙ୍କଦ୍ୱାରା ପ୍ରତିଷ୍ଠିତ ହୋଇ ଅତି ସୁଚାରୁରୂପେ ଚାଲୁଛି । କେତେ ଦରିଦ୍ର, ଅନାଥ ଶିଶୁ ସେଠି ମଣିଷ ହୋଇ ଆଜି ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜ୍ଜନ କଲେଣି । ଇଶ୍ୱରଲାଲ ବ୍ୟାସ ଯେ କେବଳ ରଚନାତ୍ମକ କର୍ମୀ ଥିଲେ ତାହା ନୁହେଁ, ସେ ଜଣେ ସ୍ୱାଧୀନତା ସଂଗ୍ରାମୀ । ବହୁ-ବାର କାରାବରଣ କରିଛନ୍ତି ।

ଯେତେ ବଡ଼ ବା ଛୋଟ ସମ୍ମିଳନୀ ହେବ ମଞ୍ଚରେ ଘଣ୍ଟି ବଜାଇ ସତର୍କ କରିବା ଥିଲା ବ୍ୟାସଜୀଙ୍କର କାର୍ଯ୍ୟ । ତାଙ୍କ ସହିତ ବିଭିନ୍ନ କ୍ଷେତ୍ରରେ ସେବା କରିବାର ସୌଭାଗ୍ୟ ମୋତେ ମିଳିଛି । ଯେଉଁ ଜଙ୍ଗଲକୁ ସେ ନିଜର କର୍ମକ୍ଷେତ୍ର ବୋଲି ବାଛି ନେଇଥିଲେ, ସେଇ ଭୂଇଁରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଆଜିକାଲି ବ୍ୟାସଜୀଙ୍କ ଭଳି ତ୍ୟାଗୀ, ଧର୍ମପ୍ରାଣ, ନିରଳସ ଲୋକ ମିଳିବା ବିରଳ ।

## ଗୁଣନିଧି ବାବୁ (ମହାନ୍ତି)

ଯେତେଦିନ ଗୁଣନିଧି ଭବନ ଥିବ ସେତେଦିନ ଗୁଣନିଧି ବାବୁଙ୍କୁ ସମସ୍ତେ ସ୍ମରଣ କରୁଥିବେ । ଏକ ନିଃସ୍ୱାର୍ଥପର, ନିର୍ଲୋଭ, ନିରଳସ ଜନସେବକ, ଯିଏ ତାଙ୍କ ସଞ୍ଚିତ ଧନରେ କଟକ ସହରରେ ଖଣ୍ଡେ ଜାଗା କିଣିଥିଲେ—ତାହା ହିଁ ପୁଣି ସେ ଭୂଦାନ ଯଜ୍ଞରେ ଆହୁତି ଦେଲେ । ଗୁଣନିଧିବାବୁଙ୍କୁ ଅନେକ ଚିହ୍ନି ନାହାନ୍ତି । କିଏ ଗୁଣନିଧି ବାବୁ ? କାହିଁକି ଭୂଦାନ ଅଫିସକୁ ଏପରି ଜାଗାଖଣ୍ଡିକ ଦେଇ-ଦେଲେ ? ଖାଲି ଦେଇ ନାହାନ୍ତି, ନିଜେ ତାହା ତିଆରି କରିଯାଇଛନ୍ତି । ପରେ ଅବଶ୍ୟ ତାହା କୋଠା ହୋଇଛି । ଏଇଠି ଗୋପବାବୁ ତାଙ୍କର ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି । ଗୁଣନିଧି ବାବୁ ମଧ୍ୟ ଏଇ ସ୍ଥାନରେ ସେପାରିକୁ ଯାଇଛନ୍ତି ।

ଆଚାର୍ଯ୍ୟ ମହାଶୟ, ମା' ରମାଦେବୀ, ଶରତବାବୁ, ବୁଲୁବାବୁ, ମଙ୍ଗଳା ଦେବୀ, ଚନ୍ନ ଅପା ଏବଂ ଆହୁରି ବହୁ ଭୂଦାନ ନେତା, ନେତ୍ରୀଙ୍କର ଏ କର୍ମସ୍ଥଳୀ ଓ ଧର୍ମସ୍ଥଳୀ । ବାହାରର ବହୁ ଗାନ୍ଧିବାଦୀ ଓ ସର୍ବୋଦୟ ନେତା, ନେତ୍ରୀଙ୍କର ଚରଣରେଣୁ ପଡ଼ି ଏ ସ୍ଥାନ ଧନ୍ୟ ହୋଇଛି । ଗୁଣନିଧିବାବୁ ସେଇଥିରେ ହିଁ ଚିର-ସ୍ମରଣୀୟ ହୋଇ ରହିଛନ୍ତି ।

୧୯୩୧ରେ ପୁରୀରେ ନିଖିଳ ଭାରତ କଂଗ୍ରେସ କମିଟିର ବାର୍ଷିକ ଅଧି-ବେଶନ ହେବାର ଥାଏ । ପୁରୀ ସମୁଦ୍ରକୂଳସ୍ଥ ବାଲିଆପଣ୍ଠାର ଏକ ବିସ୍ତୃତ ଅଞ୍ଚଳରେ ନିର୍ମାଣ କାର୍ଯ୍ୟ ଚାଲିଲା । ନିର୍ମାଣ ଦାୟିତ୍ୱ ଦିଆଗଲା ସେତେବେଳର ଓଭରସିୟର ଗୁଣନିଧିବାବୁଙ୍କୁ । ଭୋକ, ଶୋଷ ଭୁଲି ସହର୍ଷରେ ଗୁଣନିଧିବାବୁ କାର୍ଯ୍ୟରେ ଲାଗି ପଡ଼ିଲେ । କାଖରେ ଖଣ୍ଡେ ଗ୍ଲେଷ୍ଟ ବ୍ୟାଗ, ଯେଉଁଥିରେ ଦୁଇ ତିନି କଠା ହାଇଦର ବିଡ଼ି ଏବଂ ଦିଆସିଲି । ତାଙ୍କ ନିର୍ଦ୍ଦେଶରେ ଶହ ଶହ ଶ୍ରମିକ କାମ କରୁଥାନ୍ତି । ଦରକାର ପଡ଼ିଲେ ଏ ଗ୍ଲଷ୍ଟେନ୍ ବଡ଼ା ଫିଟାଉଥିଲେ । ତାଳେଇ ବଣ୍ଡେଲ ଫିଟାଇ ଖଣ୍ଡେ ଖଣ୍ଡେ କରି ଲୋକଙ୍କ ହାତକୁ ଦେଉଥିଲେ । ଅକ୍ଲାନ୍ତ ପରିଶ୍ରମ କରୁଥିଲେ ଦିବାରାତ୍ର । କେଉଁଠି ନେତାମାନେ ରହିବେ, ପ୍ରତିନିଧି ନିବାସ କିପରି ହେବ । ସଭା ମଣ୍ଡପ, ପ୍ରଦର୍ଶନୀ ସ୍ଥାନ, ସ୍ୱେଚ୍ଛାସେବକ ଶିବିର, ରୋଷେଇ ଓ ଖାଇବା ସ୍ଥାନ, ନକ୍ସା ଖଣ୍ଡେ ଧରି, ଏସବୁର ନିର୍ମାଣ କାର୍ଯ୍ୟ ଚର୍କି ଭଳି ବୁଲି ଦେଖୁଥିଲେ ।

କିନ୍ତୁ ସରକାର ୧୯୩୨ରେ କଂଗ୍ରେସକୁ ବେଆଇନ କଲେ । ସୁତରାଂ ଏତେ ସମୟ, ଶକ୍ତି ଓ ସମ୍ବଳ ବିନିମୟରେ ତିଆରି ହୋଇଥିବା ଘର ସବୁ ଏବଂ ଗୁଣନିଧିବାବୁଙ୍କର କଠୋର ସାଧନା, ତାଳୁତଳିପା ଝାଳର କୌଣସି ମୂଲ୍ୟ ରହିଲା

ନାହିଁ । ବଳିଆମଣ୍ଡା ବାଲିରେ ତାହା ମିଶିଗଲା । ଏସବୁ ଦେଖି ଗୁଣନିଧିବାବୁ ପିଲାଙ୍କ ଭଳି କାନ୍ଦୁଥିଲେ । ତାଙ୍କ ଦୀର୍ଘଶ୍ୱାସ ସମୁଦ୍ରର ଉତ୍ତାଳ ତରଙ୍ଗରେ ମିଳେଇ ଗଲା ।

ଗୁଣନିଧିବାବୁ ମୋତେ ଅତି ଭଲ ପାଉଥିଲେ । ୧୯୩୨ରେ ପାଟନା କ୍ୟାମ୍ପ ଜେଲ୍‌ରେ ମୋ ଦେହ ଭୀଷଣ ବ୍ୟସ୍ତ ହେଲା । ଗୁଣନିଧିବାବୁ ଦିନରାତି ବସି ମୋର ଯେଉଁ ସେବା କରିଛନ୍ତି ମୁଁ ତାକୁ ଭୁଲିପାରିବି ନାହିଁ । ତାଙ୍କଠାରେ ମୁଁ ଚିରଋଣୀ । ପିତୃପ୍ରତିମ ଗୁଣନିଧିବାବୁ ବାସ୍ତବିକ ଗୁଣର ନିଧି ଥିଲେ । ସେ ନିଃସନ୍ତାନ ଥିଲେ ମଧ୍ୟ ଆମେ ସମସ୍ତେ ତାଙ୍କର ସନ୍ତାନ, ତାଙ୍କର ଦାୟାଦ । ବର୍ଷକରେ ଥରେ ଅନ୍ତତଃ ତାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ଆମ ସମସ୍ତଙ୍କର କର୍ତ୍ତବ୍ୟ । ମୁଁ ସ୍ୱର୍ଗତ ଆତ୍ମାକୁ ବାରମ୍ବାର ପ୍ରଣାମ କରୁଛି ।

## ଜାତୀୟ କବି ବୀରକିଶୋର

ଇଂରେଜ ସରକାର ବିରୁଦ୍ଧରେ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ ସାରା ଭାରତରେ ସେତେବେଳେ ଚହଳ ପକାଇ ଦେଇଥାଏ । ତାଙ୍କ ଡାକରାରେ କି ଯାଦୁକରୀ ମନ୍ତ୍ର ଥିଲା କେଜାଣି ସ୍କୁଲ କଲେଜ ଛାଡ଼ି ଛାତ୍ରଛାତ୍ରୀ, ସରକାରୀ ପଦ-ପଦବୀ ଛାଡ଼ି କର୍ମଚାରୀ, କୋର୍ଟ କଚେରୀ ଛାଡ଼ି ଓକିଲ, ବ୍ୟବସାୟ ବାଣିଜ୍ୟ ଛାଡ଼ି ବ୍ୟବସାୟୀ ଓ ସର୍ବୋପରି ଏ ଦେଶର ଅଗଣିତ ଦରିଦ୍ର ଜନସାଧାରଣ ସେହି ସଂଗ୍ରାମରେ ଝାସ ଦେଇ ଥାଆନ୍ତି । ଦେଶର ବହୁ କବି ଓ ଲେଖକ ତାଙ୍କର ଦେଶାତ୍ମବୋଧ ରଚନାରେ ଏହି ଆନ୍ଦୋଳନକୁ ଆହୁରି ତେତାଇ ଦେଉଥାଆନ୍ତି । ନେତାମାନଙ୍କ ଭାଷଣର ପ୍ରଭାବ ସଂଗ୍ରାମର କର୍ମୀ ଓ ଜନସାଧାରଣଙ୍କ ମନରେ ଯେତିକି ପ୍ରଭାବ ପକାଉ ନ ଥାଏ, କବିତାର ଭାବ ତାଠାରୁ ଆହୁରି ଅଧିକ ଭାବରେ ସମସ୍ତଙ୍କ ହୃଦୟକୁ ଛୁଇଁ ଯାଉଥାଏ ଏବଂ ଉନ୍ମାଦନାର ସ୍ରୋତ ଛୁଟାଇ ଦେଉ-ଥାଏ । ଆମ ଓଡ଼ିଶାରେ ଏହିଭଳି ଜଣେ ଯୋଗଜନ୍ମା କବି ହେଲେ ଜାତୀୟ କବି ବୀରକିଶୋର ଦାସ । ୧୮୯୬ ମସିହାରେ ସେ ସମୟର ଅନ୍ୟତମ ଆନ୍ଦୋଳନ ପୀଠ ଜଗତସିଂହପୁରର ଅନତିଦୂରରେ ପୁନଙ୍ଗ ଗାଁରେ କବି ଜନ୍ମ ଗ୍ରହଣ କରିଥିଲେ । ପୁନଙ୍ଗର ଅପାଶୋରି ପ୍ରାକୃତିକ ପରିବେଶ ବାଳୁତ ବୀରକିଶୋରଙ୍କ ମନରେ କବିତ୍ୱର ଯଥେଷ୍ଟ ଖୋରାକ ଯୋଗାଇ ଦେଇଥିଲା । ଗାଁ ଦାଣ୍ଡର ଦୂବ ଗଛରେ ଶୀତ ସକାଳର କାକର ଟୋପାକୁ ଦେଖି ତାଙ୍କର ପ୍ରଥମ ରଚନା—

ଆସିଥିଲୁ କରେ ତାଙ୍କର ସଙ୍ଗରେ
ପଡ଼ି ରୁ ରହିଲୁ ପଛେ,

ଭଙ୍ଗୁର ଭବର ଉଚ୍ଚାସନ ସ୍ଥଳ
ବାହି ନେଲୁ ଦୂର ଗଛେ ?

ଏହା ପରେ କୈଶୋରରେ ଅନେକ ଲେଖା ପରେ ତାଙ୍କ କବିତାର ଧାରା ବଦଳି ଗଲା । ଯେତେବେଳେ ୧୯୨୧ରେ ଗାନ୍ଧିଜୀଙ୍କ ଜୀବନୀ ତାଙ୍କ ଆଗରେ ଆଦର୍ଶ ହୋଇ ଉଭା ହେଲା, ଏ ଦେଶ, ଜାତି ପାଇଁ ତାଙ୍କର ଯେଉଁ ମମତା ଜାଗିଲା ସେଥିରେ ସେ ଲେଖିଥିଲେ—

କବି ! ବାନ୍ଧେ କବିତା ବନ୍ଦ କର
ଦଲମ ପରିଏ କଲମ ଧର
ଥରେ ବଜା ନବ ସମର ଭେରୀ
ତରୁଣ ଯେତେ ସେହି ସଙ୍କେତେ
ଆସନ୍ତୁ ତତେ ହର୍ଷେ ଘେରି ।

ଏଣିକି କବିଙ୍କର ସମସ୍ତ ରଚନା ଭିନ୍ନମୁଖୀ ହୋଇଗଲା । ସେହି ସ୍ୱାଧୀନ ଆନ୍ଦୋଳନ, ଦେଶପ୍ରୀତି, ଦେଶ ମାତୃକାର ବନ୍ଦନା, ତାଙ୍କ ଲେଖନୀରେ ରୂପ ନେଲା । ପାଠପଢ଼ା ପରେ ପରିବାର ଚଳେଇବାକୁ ସ୍କୁଲଶିକ୍ଷକ ବାଧ୍ୟ ହୋଇ କଲେ । ହେଲେ ଏ ଲୋକ ସେ ପଞ୍ଜୁରୀରେ ଥାଇ ମଧ୍ୟ ଶୁଆ ରାମ ନାମ ଗାଇଲା ପରି ଖଣ୍ଡିଏ ବହି 'ମୋହନ ବଂଶୀ' ଲେଖି ଇଂରେଜ ସରକାରଙ୍କୁ ଚମକାଇ ଦେଲେ । ସେ ବହିଟିକୁ ଛଦ୍ମ ନାମରେ ଛପାଇ ଉତ୍ସର୍ଗ କରିଥାନ୍ତି କୁଳବୃଦ୍ଧ ମଧୁସୂଦନଙ୍କୁ । ଏଥିରେ ସେ ଲେଖିଲେ—

ସୁନାର ଭାରତ ଆଜ ହେଲା ଛାରଖାର
ଖାଇବାକୁ ନ ପାଇଲେ ଓଳିଏ ଆହାର ।
ବିଦେଶି ଦରବେ ଅମ ଦେଶ ଗଲା ଭରି
ସତ କହିବାକୁ ଲୋକେ ମରୁଛନ୍ତି ଡରି ।

ଏହାପରେ ସେ ସରକାରୀ ବନ୍ଧନ ତୁଟାଇ ସ୍ୱଦେଶୀ ଆନ୍ଦୋଳନକୁ ଡେଇଁ ପଡ଼ିଲେ । ପରେ ସେ ୧୯୩୦ରୁ ୧୯୪୭ ପର୍ଯ୍ୟନ୍ତ ଅତ୍ୟଧିକ କବିତା ରଚନା କରି ସରକାରଙ୍କ ବିଷଦୃଷ୍ଟିକୁ ଆସିଲେ ଏବଂ ବହୁବର୍ଷ ଜେଲରେ କଟାଇଲେ । ଆନ୍ଦୋଳନର ବିଭିନ୍ନ ସ୍ତରକୁ ଲକ୍ଷ୍ୟ ରଖି ସେ ଏଭଳି ସମୟୋପଯୋଗୀ ଲେଖାମାନ ଲେଖି ଦେଉଥାଆନ୍ତି, ତାହା ସମସ୍ତଙ୍କ ପ୍ରାଣକୁ ଛୁଇଁ ଯାଉଥାଏ । ଲୁଣମରା ଅଭିଯାନବେଳେ ସତ୍ୟାଗ୍ରହୀମାନଙ୍କୁ ଉତ୍ସାହିତ କରିବାକୁ ଯାଇ ସେ ରଚନା କଲେ—

ଭେଦ ଅରି ଦୁର୍ଗ ଆଜ
ବଜାଇ ବଜଘ୍ନ ଭେରୀ
ଶିବାଜୀ ଦୁର୍ଗରେ ସେନାପତି ତୋର
ଯୁଝୁଛନ୍ତି ସୈନ୍ୟ ଘେରି ହେ
ଆଉ ଡରନା ଡରନା
ସବୁ ଭରଲାଣି ଜେଲଖାନା । ୧ ।
ଜେଲଖାନା ହେଲା ମୁକତି ମଣ୍ଡପ
ହାଜତ ଧରମଶାଳା
ସେଠି ଚବଣ ପ୍ରହସ୍ତ କୀର୍ତ୍ତନ ଲଗିଛୁ
ଲଗିଛୁ ସ୍ୱରାଜ୍ୟ ପାଲା ହେ
ପିଲାଏ ବାଗୁଡ଼ି ଖେଳ ସେଠି ଉଡ଼ାଇ ଦଅନ୍ତି ଧୂଳି । ୨ ।

ବିଦେଶୀ ଶିକ୍ଷା ବର୍ଜନ ଲଗି ଆନ୍ଦୋଳନ ହେବାଠାରୁ ଛାତ୍ରମାନଙ୍କୁ ଚେତାଇ ଦେଇ ବୀରବାବୁ ଲେଖିଲେ—

ରଣ ସମୟରେ ବହି ଘୋଷିବାକୁ
ମୋତେ ଆଉ ତୁମେ ବଳାନା
ଛାତିର ରକତ ତାତିଉଠେ ମୋର
ବାଜିବାକୁ ଯୁଦ୍ଧ ବାଜଣା ।
ଯୁଦ୍ଧ ଇତିହାସ ହୋଇଲେ ପଠିତ
ଶୁଣି ବଂଶଧର ହୋଇବେ ଲଜ୍ଜିତ
ନରହନ୍ତାର କଂସେଇଶାଳେ ମୁଁ
ଲେଖୁଥିଲି ବସି ରଚନା ।

ବୀରବାବୁ ବୁଝିଥିଲେ ଦେଶର ତରୁଣ ଓ ଯୁବକମାନଙ୍କ ମନକୁ ଦେଶପାଇଁ ନ ଢଳାଇଲେ ଏ ଆନ୍ଦୋଳନକୁ ଚଲାଇ ନେବ କଏ ? ତେଣୁ ସେ ତାଙ୍କୁ କହିଲେ—

ଆମେ ନବଯୁବା ଆମେ ତରୁଣ
ଆମେ ନବୋଦିତ ଦେବ ଅରୁଣ
ଏ ବିଶ୍ୱ ଅନ୍ଧାର ବିନାଶିବା ଲଗି
ଆମ ଜନ୍ମ ଆମ ମରଣ ।

ସ୍ୱାଧୀନତା ଆନ୍ଦୋଳନ କ'ଣ ବୋଲି ଜାଣି ପାରୁ ନଥିବା ୧୧/୧୨ବର୍ଷର ପିଲାମାନେ ମଧ୍ୟ ଗାନ୍ଧୀଙ୍କ କଥାରେ ଘରଦ୍ୱାର ଛାଡ଼ି, ପରିବାରର ମାୟା ମମତା ପଛକୁ ପକେଇ ଦେଇ ବାନର ସେନା ସାଜିଲେ । ତାଙ୍କ କାମ ଥାଏ ମଦ, ଅଫିମ, ଗଞ୍ଜେଇ ଦୋକାନ ଆଗରେ ପିକେଟିଂ କରିବା । ହେଲେ ଗୋରା ପୋଲିସ ଦାଉରୁ ଏମାନେ କ'ଣ ରକ୍ଷା ପାଇଲେ ? କଅଁଳ ପାପୁଲିରୁ ବେତ ମାଡ଼ରେ ରକ୍ତର ଧାର ଛୁଟୁଥାଏ ସିନା, କଅଁଳ ଓଠରୁ ହସ ଝରି ବୀରବାବୁଙ୍କ ଗୀତର ସ୍ୱର ଛୁଟୁଥାଏ ।

ଖାଇ ହେ ମାର କେତେ ବେତ ମାରିବ
ଦେଶ ଲାଗି ଆମେ ଜୀବନ ଦେଇଛୁ
ତୁମେ କି ଆମକୁ ପାରିବ ?
ଆମେ ଡରୁନାହୁଁ ଗୁଳିର ମରଣେ
ମନ ରଖିଅଛୁ ବାପୁଙ୍କ ଚରଣେ
ତୁମ ଆମ କଥା ତାଙ୍କ ମିଶନରେ
ଦିନେ ତ ବିଚାର ହୋଇବ ?

ବିଦେଶୀ ଶାସନ ଭଳି ବିଦେଶୀ ଜିନିଷ ହଟାଇବାକୁ ନେତାମାନେ ସହର ବଜାରରୁ ଗାଁ ଗହଳି ପର୍ଯ୍ୟନ୍ତ ଲୋକମାନଙ୍କୁ ବୁଝାଉଥାଆନ୍ତି । ସେହିମାନଙ୍କ ଲାଗି ବୀରବାବୁ ଲେଖିଲେ—

ସାରା ବିଲାତରେ ହା' ହା' କାର
ଆମେ ପକାଇ ଦେବୁ ହେବୁ
ଗୋରା ବେପାରୀଙ୍କୁ ଏପାରି ସେପାରି
ନଗ୍ରଇ ଦେବୁ ନଗ୍ରଇ ଦେବୁ ।
ଆମେ ନ କିଣିବୁ ବିଲାତି ଚିଜ
ଆଉ ନ ଆସିବ ତାଙ୍କ ଜାହାଜ
ତାଙ୍କ ଠକପଣ ଛଡ଼ାଇ ଦେବୁ ଛଡ଼ାଇ ଦେବୁ ।

୧୯୩୧ରେ ଗାନ୍ଧୀ-ଇର-ଉଇନ ସନ୍ଧି ହେଲା । ଅସହଯୋଗ ଆନ୍ଦୋଳନ ବନ୍ଦ ହୋଇଗଲା । କର୍ମୀମାନେ ବହୁତ ଦିନ କାରାଗାରରେ ଆବଦ୍ଧ ରହି, ନାନା ନିର୍ଯ୍ୟାତନା ସହି ସ୍ୱଗୃହକୁ ଫେରିଯିବା ଲାଗି ବ୍ୟାକୁଳ ହୋଇପଡ଼ିଲେ । ସେଇଟା ସ୍ୱାଭାବିକ । ସେତିକିବେଳେ ବୀରବାବୁ ଡାକ ଦେଲେ—

ହେ ଭାଇ ଗୃହାଭିମୁଖ ହୁଅନା ଅଭ ଯେ ଫେରନ୍ତ ।
ଅଭ ଫେରନାହିଁ ଯୁଦ୍ଧ ସରନାହିଁ
ଆସ ମୋ ଶିବିରେ ଆସ ଭାଇ
ଭକତ କେ ଅଛ ଦେବୀ ପୂଜା କର
ରକତ ମନ୍ଦାର ଡାଳି ଦେଇ
ତରୁଣ କେ ଅଛ ମରଣକୁ ଦଳି
ଅରୁଣ ପରାଏ ଉଠ ଚେଇଁ ॥ ୧ ॥
ମାନବ ମୁକତି ଗଙ୍ଗା ଆସୁଛନ୍ତି
ବାଟେ ଚଉଦିଗ ଦେଖ ଚାହିଁ
ତରଙ୍ଗ ଏଥିର ରୋଧିବ କିଏ ସେ
ଯୁଗାନ୍ତର ଶିବ ବନ୍ଧ ॥ ୨ ॥

୧୯୩୨ ମସିହା ଅଗଷ୍ଟ ୮/୯ ତାରିଖ କଥା । ସତ୍ୟାଗ୍ରହୀମାନେ ସ୍ୱରାଜ ଆଶ୍ରମକୁ ଗୋରା ପୋଲିସ କବଳରୁ ମୁକ୍ତ କରିବାକୁ ଦାବୀ କଲେ । ଚାଲିଲା ପୋଲିସର ନିର୍ମମ ଲାଠି ପ୍ରହାର । ରକ୍ତର ସୁଅ ଛୁଟିଲା । ହେଲେ ସତ୍ୟାଗ୍ରହୀମାନେ ଗାନ୍ଧୀଙ୍କୁ ଜୟ, ଭାରତ ମାତାକୁ ଜୟ କହି ତାଙ୍କ ସଂକଳ୍ପରେ ଅଟଳ ଥାଆନ୍ତି । ସେମାନଙ୍କ ମନୋବଳକୁ ଆହୁରି ଦୃଢ଼ କରୁଥାଏ ଜାତୀୟ କବି ବୀର କିଶୋରଙ୍କ ଲେଖା ।

ଭାଇ ମରିବା ତ ଦିନେ ମରିବା
ଛେଳି ମେଣ୍ଢା ପରି ପାଷାଣକୁ ଡରି
ପୁଚ୍ଛୁରି ପରିକି ଡରିବା ?
ଜାତୀୟ ପତାକା ଜାତିର ଜୀବନ
ତାକୁ ଚିରି ଚିରି ଦେଲେ ଅପମାନ
ସ୍ୱରାଜ୍ୟ ଆଶ୍ରମ କଲେ ସେ ଦଖଲ
କପଟ ତାହାକୁ ସହିବା ?

ଜାତୀୟ ଆନ୍ଦୋଳନର ସୈନିକ ଓ ନେତାମାନଙ୍କ ଲାଗି କବିଙ୍କ ମନ ସବୁବେଳେ ବ୍ୟାକୁଳ ହେଉଥିଲା । ତେଣୁ ସେମାନଙ୍କ ଲାଗି ତାଙ୍କ ଲେଖା—

ଦିନ ରାତି ମୋର ସେହି ଚିନ୍ତା ବନ୍ଧୁ ସେହି ଚିନ୍ତା
ଏହି ସରକାର ଶବ ଦାହ ହେବ କେବେ
ଦେଖିବି ମୁଁ ତାର ଶେଷ ଚିତା ।

ଭଗତ ସିଂହଙ୍କୁ ଦେଲ ଫାଶୀ
ମାରିଲ ଯତୀନ୍ଦ୍ର ଉପବାସୀ
ଲାଲ ଲଜପତ ମରିଲ ଦିନଠୁ
ଅନ୍ନଜଳ ମୋତେ ଲାଗେ ପିତା ।
ବନ୍ଧୁ ସେଇ ଚିନ୍ତା ॥

କେତେ ବୀରଙ୍କ ତ୍ୟାଗ, ନିଷ୍ଠା, ନେତୃତ୍ୱ ସର୍ବୋପରି କେତେକଙ୍କ ଆତ୍ମ-ଦାନର ବିନିମୟରେ ଆମେ ସ୍ୱାଧୀନତା ପାଇଲୁ । ଠିକ୍ ତା ପରେ ପରେ ଗାନ୍ଧିଜୀଙ୍କ ମୃତ୍ୟୁ ଜନିତ ଦୁଃଖରେ କବିଙ୍କ ଲେଖନୀ କିଛିଦିନ ନୀରବ ହୋଇ ଯାଇଥିଲା, ପରେ ଏହା ଶିଶୁ ସାହିତ୍ୟ ରଚନାରେ ଲାଗିଲା । ହେଲେ ଦେଶପ୍ରୀତି, ଜାତିପ୍ରୀତି ଯାହାଙ୍କ ରକ୍ତରେ ମିଶି ଯାଇଥିଲା, ସେ ଛାପ କଣ ସହଜେ ତାଙ୍କ ଲେଖାରୁ ହଜିଯିବ ? ବରହମ୍ପୁର ଜେଲରେ ତାଙ୍କ ସହ ବନ୍ଦୀ ଲକ୍ଷ୍ମଣ ନାୟକଙ୍କ ଫାଶୀ ଦେଖି ସେ ଲେଖିଲେ—

ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ଫାଶୀରେ ଚଢ଼ିଲୁ ଆମରି ପାଇଁ
ମୁକତି ଲଢ଼େଇ ଡାକରା ପାଇଁ
ଆଗଭର ହୋଇ ଆସିଲୁ ଧାଇଁ
ଜାତିକୁ କରି ତୁ ଗଳାର ମାଳ
ଦେଶ ଲାଗି ଦେଲୁ ଜୀବନ ଡାଳି ।

ସାରା ଜୀବନ ଓଡ଼ିଆ ଭାଷା ଓ ସାହିତ୍ୟର ଏହି ସାଧକଙ୍କୁ 'ଜାତୀୟ କବି'ର ସମ୍ମାନ ମିଳିଥିଲା । ୧୯୭୩ ମସିହା ଅପ୍ରେଲ ୨୮ ତାରିଖରେ ସେ ମର ସଂସାରରୁ ବିଦାୟ ନେଲେ । ତାଙ୍କର ଜୀବନ ଆଦର୍ଶରୁ ସମସ୍ତ ଯେତେ ଯାହା ପୋଛି ଦେଲେ ବି ତାଙ୍କର ଅମର ରଚନା ସେହିପରି କାଳଜୟୀ ହୋଇ ରହିଥିବ ।

ବୀରବାବୁ ମୋର ଅତି ପ୍ରିୟ, ଅତି ଆପଣାର ଲୋକ ଥିଲେ । ମୋ କଣ୍ଠରେ ତାଙ୍କର ଗୀତ ଗୁଡ଼ିକ ଶୁଣି ସେ ଅତି ମୁଗ୍ଧ ହୋଇ ଯାଉଥିଲେ । ସତରେ କେତେ ଭଲ ପାଉଥିଲେ ମତେ ସେ ! ଆଜି ସେ ନାହାନ୍ତି । କିନ୍ତୁ ତାଙ୍କର ରଚନାର ଶକ୍ତି ଯେପରି ମୋ ଠାରେ ଆତ୍ମପ୍ରକାଶ କରିଛି । ବୀରବାବୁ ମରିଯାଇଛନ୍ତି, ମାତ୍ର ତାଙ୍କର ଲେଖା ମରିନାହିଁ । ତାଙ୍କର ରଚନା ସେମିତି ଅମରତ୍ୱ ଲାଭ କରି ରହିଛି । ସେ ମୋର ଚିର ନମସ୍ୟ ।



## ମୋର ଶେଷ ମାଗୁଣୀ :

ଜୀବନରେ ବହୁବାଟ ଚାଲି ଆସିଲି । କ୍ଳାନ୍ତ, ଶ୍ରାନ୍ତ ମନ ନେଇ ଆଉ କେତେ ପାଦ ବା ଚାଲିବ ? ଏହି ବାଟରେ ବହୁ ବାଟୋଇଙ୍କୁ ଭେଟିଛି । ସ୍ୱଭାବ ସେ ଚଳଚଞ୍ଚଳ । ବୈଚିତ୍ର୍ୟମୟ ସେ ଅନୁଭୂତି । ପାଣୁ ଦାସ ଭଳି ଅଶିକ୍ଷିତ ଅଥଚ ନିଷ୍ପାପ ହୃଦୟବାନ ମଣିଷଟିଏଠାରୁ ମହାମାନବ ଗାନ୍ଧିଜୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସାନ୍ନିଧ ମିଳିଛି । ପ୍ରତ୍ୟେକଙ୍କ ବ୍ୟକ୍ତିତ୍ୱ ଓ ନୈତିକ-ବୋଧ ଏବେବି ମୋ ମନ ଦର୍ପଣରେ ପ୍ରତିଫଳିତ ।

ଏ ଦେଶର ମାଟି, ପାଣି, ପବନ ମୋର ଅତି ପ୍ରିୟ— ଯାହାର କୋଳରେ ମୁଁ ହସି ଖେଳି ଶୈଶବ, କୈଶୋର ଓ ଯୌବନ କଟାଇ ଦେଇ ଆଜି ପ୍ରୌଢ଼ତ୍ୱରେ ପଦାର୍ପଣ କଲି, ଯାହାର ଶ୍ୟାମଳ ଶସ୍ୟ କ୍ଷେତ୍ର, ସବୁଜ ବନାନୀ, ପଲ୍ଲୀ, ଜନପଦ ଓ ସହର ମୋତେ ଏପରି ପାଗଳ କଲା ଯେ ପାଦରେ ଚାଲି ଚାଲି ତା'ର ପ୍ରତିଟି କୋଣ, ଅନୁକୋଣ ନୟନ ଭରି ଦେଖି ଆସିଲି । ସେହି ପ୍ରେରଣା ମୋତେ ସବୁବେଳେ ମଣିଷ-ଟିଏ ଭଳି ବଞ୍ଚିବାର ଖୋରାକ ଯୋଗାଇଲା । ଜନ୍ମେ ଜନ୍ମେ ଏ ମାଟିର ଋଣ ମୁଁ ସୁଝି ପାରିବିନି ।

ମୋର ଜୀବନଧାରା ସାହିତ୍ୟ, ସଂସ୍କୃତି, ରାଜନୀତି ଓ ସମାଜ ସେବାର ପରିଧିକୁ ଛୁଇଁ ଛୁଇଁ ଯିବାରୁ ସମାଜର ସବୁ ଶ୍ରେଣୀର ଲୋକଙ୍କର ଘନିଷ୍ଠ ସମ୍ପର୍କରେ ଆସିଲି । କେତେବେଳେ ତାହାର ଆଦର, ସ୍ନେହ, ସୁହାଗ ମୋ ଜୀବନକୁ ପୁଷ୍ଟ କରିଛି ତ କେତେବେଳେ ତାହାର ଲାଞ୍ଛନା ଓ ତାଡ଼ନାରେ ମୁଁ ମର୍ମାନ୍ତକ ବେଦନା ଅନୁଭବ କରିଛି । ସମସ୍ତଙ୍କ ପ୍ରତି ମୁଁ ଆଜି ସମସ୍ତଙ୍କୁ ସଶ୍ରଦ୍ଧ ସ୍ମରଣ କରୁଛି ।

ସ୍ମୃତିର ପାଖୁଡ଼ା କେତୋଟି ସଜାଡ଼ି ସଜାଡ଼ି ଅଜାଣତରେ ତାହା ଫୁଲଟିଏ ହୋଇଗଲାଣି । ସାହିତ୍ୟର ବର୍ଣ୍ଣବିଭବରେ ତାହା ଉଦ୍‌ଭାସିତ ନହେଲେ ମଧ ଅନୁଭୂତିରେ ତାହା ସୁରଭିତ । ସେଇ ଫୁଲର ସୁବାସ ସମସ୍ତଙ୍କୁ ଆମୋଦିତ କଲେ ଜୀବନ ସାର୍ଥକ ମଣିବି । ମୁଁ ଧନ୍ୟ ହେବି ।

—ବିନୀତ ଲେଖକ